ତିନୋଟି ଉପନ୍ୟାସ
ଗଣେଶ୍ୱର ମିଶ୍ରଙ୍କ ଉପନ୍ୟାସଗୁଚ୍ଛ

ପ୍ରକାଶକ : ଟାଇମ୍ ପାସ୍

ପ୍ରଥମ ପ୍ରକାଶ : ମାର୍ଚ୍ଚ ୨୦୦୭



**tinoti upanyas**
group of three novels by **ganeswar mishra**

published & printed by **time pass**
4696 / 98, adimata colony, bhubaneswar-17, india

cover design : **saroj bal**
first edition : march 2007

୨0.00

ସମୁଦ୍ରର ଲହଡ଼ିରେ ଯେଉଁ ମଣିଷ ଡଙ୍ଗା ଚଳାଏ;
ଖରା, ବର୍ଷା, ତିମି, ହାଙ୍ଗରକୁ ଡରେ ନାହିଁ;
ଡରେ ଖାଲି ସହରର ପକ୍‌କା ରାସ୍ତା ଓ କୋଠାଘରକୁ;
ସେଇ ନିର୍ଭୟ ଅଥଚ ଭୀରୁ ମଣିଷ ହାତରେ
ମୋର ଏଇ ଉପନ୍ୟାସ,
ଆଉ ଅନ୍ତରର ସବୁଯାକ ଶ୍ରଦ୍ଧା ଟୋକିଦେଲି

**- ଲେଖକ**

ଉପରେ ମାଇଲ୍ ମାଇଲ୍ ଧରି ଲମ୍ବିଯାଇଛି ନେଳି ଆକାଶ, ଆଉ ତଳେ ଯେତେଦୂର ଆଖି ପାଉଛି, ଦେଖାଯାଉଛି ବାଲି ଆଉ ବାଲି- । ସେପାଖେ ଶୋଇ ରହିଛି ସମୁଦ୍ର - ମାଡ଼ି ଆସୁଛି ଢେଉ ପରେ ଢେଉ । ଏଇ ଅଥଳ ସମୁଦ୍ର ଛାତିରେ କେବେ ପ୍ରଥମ ଢେଉ ଉଠି କୂଳର ବାଲିକୁ ଧୋଇ ଦେଇଥିଲା ଓ କେବେ ପୁଣି ସେଇ ଢେଉ ସବୁଦିନ ଲାଗି ସ୍ଥିର ହୋଇଯିବ, ତାହା କହିବା ସହଜ ନୁହେଁ । ଆଦିମ ମଣିଷ କେବେ ଏ ସମୁଦ୍ର କୂଳେ ଘର କରି ରହିଥିଲା କି ନାହିଁ, ତାହା ସିନା ଇତିହାସ କହିବ; କିନ୍ତୁ ଏ ଯୁଗର ମଣିଷ ଏଠି ପାଦ ପକାଇଥିବାର ଜଣା ନାହିଁ ।

ସେଇଠି .....

ଦିନେ ପାହାନ୍ତି ଆଲୁଅରେ ଶୁଣାଗଲା ମଣିଷର କଣ୍ଠସ୍ୱର । ବିଚିତ୍ର କଥା । ସମୁଦ୍ର ତାର ଲହଡ଼ିଗୁଡ଼ାକ କଚାଡ଼ି ନିଜର ବିସ୍ମୟ ପ୍ରକାଶ କଲା । ଆକାଶ ଭୟରେ ଆଉରି ତଳକୁ ନଇଁ ଆସିଲା ଯେମିତି ସମୁଦ୍ର ପାଖକୁ । ରାତ୍ରିଚର ଚଢ଼େଇମାନେ ବସାକୁ ଯାହା ଫେରି ଯାଉଥିଲେ, ମଣିଷମାନଙ୍କ କଣ୍ଠସ୍ୱର ଶୁଣି ତାଜୁବ୍ ହୋଇ ବାଟରେ ଅଟକି ଗଲେ । ଦଳ ଦଳ ହରିଣ, ସମ୍ବର, କଳାବାହୁଟିଆ ଥକ୍କା ମାରି ଦୂରକୁ ଅନେଇ ରହିଲେ ।

ଦୂରରୁ ଭାସି ଆସୁଛି ମଣିଷର କଣ୍ଠସ୍ୱର । ଜଣେ କି ଦି' ଜଣ ମଣିଷର ସ୍ୱର ନୁହେଁ, ବହୁ କଣ୍ଠର ମିଳିତ ସଙ୍ଗୀତ । ଏବେ ବି ଅନ୍ଧାର ଢାଙ୍କି ରଖିଛି ଚାରିଦିଗ । ପୂର୍ବ ଦିଗରେ ସିନ୍ଦୁରା ଫାଟି ଆସୁଛି । ସୂର୍ଯ୍ୟ ଦେବତା ଉଇଁବାକୁ ଅନେକ ଡେରି ଅଛି ।

ଦୂରରୁ ଭାସି ଆସୁଛି ଗୀତ । ଲହରେଇ ଲହରେଇ ବୋଲୁଛନ୍ତି ସ୍ତ୍ରୀ, ପୁରୁଷ, ବାଳକ ଓ ବାଳିକାମାନେ । ଆସ୍ତେ ଆସ୍ତେ ଗୀତଟି ସ୍ପଷ୍ଟ ହେଉଛି । ସମୁଦ୍ରର ଢେଉସବୁ ସେ ଗୀତ ଶୁଣି ରାଗରେ ମଥା କୋଡୁଛନ୍ତି । ଆକାଶର ଶୂନ୍ୟରେ ମିଳେଇ ଯାଇ ସେ ଗୀତ ଯେମିତି ସାରା ଦୁନିଆରେ ବ୍ୟାପୀ ଯାଉଛି । ଝାଉଁଗଛର ଅଗସବୁ ସେ ଗୀତ ଶୁଣିବାକୁ ଟାକି ରହିଛନ୍ତି ।

କ୍ରମେ ଆଲୁଅ ହେବାରୁ ଦେଖାଗଲା - ଦୂର ଦିଗ୍‌ବଳୟ ଆଡୁ ମାଡ଼ିଆସୁଛନ୍ତି କେତୋଟି କୃଷ୍ଣବିନ୍ଦୁ - ସମୁଦ୍ର କୂଳର କଙ୍କଡ଼ା ପରି । ଆସ୍ତେ ଆସ୍ତେ ବିନ୍ଦୁଗୁଡ଼ିକ ବଡ଼ ହେଉଛନ୍ତି । ସୂର୍ଯ୍ୟର ଆଲୁଅରେ ସେମାନେ ଦେଖାଯାଉଛନ୍ତି ଚଳନ୍ତା ସିଲ୍‌ହୋଏଟ୍ ଛବି ପରି । ସେମାନଙ୍କ ଚେହେରା କ୍ରମେ ବାରି ହୋଇ ପଡୁଛି । ଜଣାପଡୁଛି - କିଏ ପୁରୁଷ, କିଏ ସ୍ତ୍ରୀ । ପୁରୁଷମାନଙ୍କ ଦେହ ସୁଧୁ ଲଙ୍ଗଳା-କେବଳ କୌପୁନୀ ଖଣ୍ଡିଏ ଖଣ୍ଡିଏ ସେମାନଙ୍କ ଲଜ୍ଜା ଦୂର କରିବାକୁ ଯଥେଷ୍ଟ । କାନ୍ଧରେ ସେମାନେ ଓହଳାଇଛନ୍ତି ବଡ଼ ବଡ଼ ବୁଜୁଲିସବୁ । ଚାରି ପାଞ୍ଚ ଜଣ ମିଶି ଭାର କରି ମଧ୍ୟ ଜିନିଷପତ୍ର ବୋହି ଆଣିବାର ଦେଖାଯାଉଛି । ସ୍ତ୍ରୀମାନେ ପିନ୍ଧିଛନ୍ତି ଘାଗରା ଓ ଛିଣ୍ଡା ମଇଳା ବ୍ଲାଉଜ୍ । ମୁଣ୍ଡର ବାଳସବୁ ମେଞ୍ଚାଏ ଲେଖାଏଁ ପାଳ ଦଉଡ଼ି ପରି ଫୁରୁ ଫୁରୁ ଉଡୁଛି । ବ୍ଲାଉଜ୍ ଭିତରୁ ପଦାକୁ ବାହାରି ଆସିଚି ଉଞ୍ଚା ଉଞ୍ଚା ଛାତି । କାଖରେ ଗୋଟିଏ ଗୋଟିଏ ପିଲା ଧରି ସେମାନେ ବି ପାଦ ମିଳାଇ, ଗୀତ ଗାଇ, ପୁରୁଷମାନଙ୍କ ସଙ୍ଗେ ଆଗେଇ ଆସୁଛନ୍ତି ।

କେତେ ବାଟରୁ ସେମାନେ ଆସିଛନ୍ତି, ଜାଣିବାର ଉପାୟ ନାହିଁ । ଦେହରୁ ବହି ଯାଉଚି ଗମ ଗମ ଝାଳ । ଦଳରେ ବିଭିନ୍ନ କିସମର ମଣିଷ ଅଛନ୍ତି - ବୁଢ଼ା, ବୁଢ଼ୀ, ଟୋକା, ଟୋକୀ, ଶିଶୁ । ମଣିଷଙ୍କ ସଙ୍ଗେ ସଙ୍ଗେ ଅଛନ୍ତି କେତେଟା କୁକୁର ଓ ଖଣ୍ଡେ ଖଣ୍ଡେ ବାଡ଼ିରେ କୁକୁଡାମାନଙ୍କ ଗୋଡ଼ବାନ୍ଧି ସେଇ ବାଡ଼ିସବୁକୁ କାନ୍ଧରେ ପକାଇଛନ୍ତି କେତେକ ପୁରୁଷଲୋକ । ବେଳେ ବେଳେ କେଉଁ କୁକୁରର ଦୃଷ୍ଟି ପଡ଼ି ଯାଉଚି କୁକୁଡ଼ାମାନଙ୍କ ଉପରେ, ତାର ଗତି ବନ୍ଦ ହୋଇଯାଉଚି କ୍ଷଣକ ଲାଗି । ଜିଭଟାକୁ ସେ ବୁଲାଇ ଆଣୁଚି ତା ଶୁଖିଲା ଓଠ ଉପରେ ।

ସମୁଦ୍ର ପାଣିରେ ଗୋଡ଼ ଓଦା କରି ହେଇ ଯେଉଁ ଲୋକଟି ସମସ୍ତଙ୍କ ଆଗେ ଆଗେ ଚାଲିଚି, ତା ନାଁଆ ସିମାଦ୍ରୀ । ତା ପଛକୁ ଓସାରିଆ ଛାତି ଓ ସରୁ ମୁହଁ ଯେଉଁ ଯୁବକଟିର, ତା ନାଁ ବଡେୟା । ତା ପଛକୁ ଗୁରାୟା, ଜୋଲ୍‌ଦେଲା, ଆପ୍‌ପା ରାଓ, ଯାନି, ନରସିଂ । ଗୁରାୟା ମୁହଁଟି ଚକୁଳି ପିଠା ପରି ଗୋଲ, ଆଖି ଦୁଇଟି ଛୋଟ ଛୋଟ । ଚଢ଼େଇ ଅଣ୍ଡାପରି ଲମ୍ବା

ନାକଟା ତା ପାଲିସ୍ କରା ସାଉଁଳିଆ ମୁହଁକୁ ବେଶ୍ ମାନେ ।

ଗୁରାୟା ମଇଳା କୌପୁନୀ ପିନ୍ଧିଚି, ମୁଣ୍ଡରେ ବେତଟୋପି ଲଗେଇଚି ଓ ବେକରେ ମାଳି ପକେଇଛି । କାନ୍ଧରେ ତାର ଝୁଲୁଚି ଗୋଟାଏ ଭାର । ସେ ଭାରରେ ଅଛି ଅନେକ ଦରକାରୀ ଜିନିଷ - ସମୁଦ୍ରରେ ପକାଇବା ଛୋଟ ଜାଲ, ପୋଡୁଅ ତିଆରି ପାଇଁ କେତେଖଣ୍ଡ ଆମ୍ବ କାଠ, ମେଞ୍ଚାଏ ସୁତା, ଦୁଇ ତିନିଟା ହାଣ୍ଡି ଓ ମାଠିଆ । ତା ଛଡ଼ା ମଇଳା ଲୁଗାପଟା କିଛି ଅଛି ।

ବଡେୟା ଦେହର ମାଂସପେଶୀ ସବୁ ଫୁଲି ଉଠୁଚି ନିଃଶ୍ୱାସ ପ୍ରଶ୍ୱାସ ବେଳେ । କଳା ମଚ ମଚ ଭୁଷୁଣ୍ଡା ଦେହଟା ତାର ବେଶ୍ ସୁନ୍ଦର ଦିଶୁଚି ସୂର୍ଯ୍ୟର ତେର୍ଛା ଆଲୁଅରେ । ଦେହରେ ତାର ଛୋଟ କୌପୁନୀ ଓ ଛିଣ୍ଡା ଗଞ୍ଜି ଖଣ୍ଡେ । ବଡେୟାର ହାତ ଧରିଚି ତା ସାନ ଭାଇ କ୍ରିଷ୍ଣା । ଗମ ଗମ ଝାଳ ବି ବହି ଆସୁଚି ତା ଦେହରୁ ।

ପୁରୁଷମାନଙ୍କ ପଛେ ପଛେ ଆସୁଛନ୍ତି ସ୍ତ୍ରୀମାନେ । ବୁଢ଼ୀମାନେ ଆସୁଛନ୍ତି ଆଗେ ଆଗେ, ଯୁବତୀମାନେ ଖୁସିଗପ କରି ଆସୁଛନ୍ତି ପଛେ ପଛେ । କଳା ମୁଗୁନି ପଥରରେ ଗଢ଼ା ସେମାନଙ୍କ ଦେହରେ ପୁରୁଷମାନଙ୍କ ଶକ୍ତି । ଯୁବତୀମାନେ ମୁଣ୍ଡରେ ବୋଝ ମୁଣ୍ଡାଇଛନ୍ତି, କେହି କେହି ଛାତିରେ ପିଲାଟିଏ ଜାକିଛନ୍ତି । କାହା ବୋଝରେ ମାଣ୍ଡିଆ, କାହା ବୋଝରେ ଶୁଖୁଆ କେତେ ଖଣ୍ଡ, କାହା ବୋଝରେ ବା ଅନ୍ୟାନ୍ୟ ଘରକରଣା ଜିନିଷ ।

ଯୁବତୀମାନଙ୍କ ଭିତରେ କର୍ଲା, ରାଜୁଲୁଆମା, ଏର୍ରାପା, କାମୁଡୁ ଓ ଏଲାମା । ସେମାନେ ବାଟ ଚାଲୁଛନ୍ତି ଆଉ ବାଟ କଷ୍ଟ ଭୁଲିବାକୁ ଗପ କରୁଛନ୍ତି । ଝାଳରେ ସେମାନଙ୍କ ବ୍ଲାଉଜ୍ ସବୁ ଓଦା ହୋଇ ଛାତିର ଚମଡାରେ ମିଶି ଗଲାଣି । ଉଞ୍ଚା ଉଞ୍ଚା ଛାତିର ଗଢ଼ଣ ବାହାରକୁ ବାରି ହୋଇ ପଡୁଛି । ମୁଣ୍ଡର ବାଳରେ କିଏ ଖୋସିଚି ସମୁଦ୍ର କୂଳର ଛୋଟ ଆଇଁଷିକାତି ଫୁଲ, କିଏ ବା କେଉଁ ଅନାବନା ସବୁଜ ପତ୍ର ପେନ୍ଥାଏ । ବେଳେ ବେଳେ କ'ଣ କଥା ପଡ଼ିଲେ ଖିଲ୍ ଖିଲ୍ ହସୁଛନ୍ତି ସେମାନେ, ଆଉ ସେ ହସ ଦାଢୁଆ କତୁରୀ ପରି କାଟି ଦେଉଚି ଯୁବକମାନଙ୍କ ମନ । ଅନେକ ଥର ପଛକୁ ବୁଲିପଡ଼ି ଗୁରାୟା ଚାହିଁଲାଣି କର୍ଲା ଆଡ଼େ । ତା ଇଚ୍ଛା ହେଉଛି, କର୍ଲା ପାଖେ ପାଖେ ଦେହକୁ ଦେହ ଘଷି ଚାଲନ୍ତା । ତା ମୁଣ୍ଡର ବୋଝଟା ଆଣି ନିଜ ମୁଣ୍ଡରେ ଥୁଅନ୍ତା । କିନ୍ତୁ ଯାନି, ବଡେୟା, ଜୋଲ୍ ଦେଲାଙ୍କ ହଳ ହଳ ଆଖି ତାକୁ ଜଗିଛି ଯେମିତି । ପଛକୁ ବେଳେ ବେଳେ ଚାହିଁ ସେ ପୁଣି ଚାଲିଛି ଆଗକୁ । ସମସ୍ତଙ୍କ ସଙ୍ଗେ ସ୍ୱର ମିଳେଇ ଗାଉଛି -

ହେ ସମୁଦ୍ର, ତତେ ଆମେ ଜୁହାର ହେଉଚୁ ।
ତୁ ଆମକୁ ଖାଦ୍ୟ ଦେଇଚୁ ଖାଇବାକୁ ।
ତୁ ଆମକୁ ଲୁଗା ଦେଇଚୁ ପିନ୍ଧିବାକୁ ।
ତୋ କୂଳରେ ଆମେ ଆଶ୍ରା ପାଇଛୁ ।

ତୋତେ ଆମେ ଛାଡ଼ି ପାରିବୁ ନାହିଁ – ଛାଡ଼ି ପାରିବୁ ନାହିଁ ।

ପୁରୁଷ, ସ୍ତ୍ରୀ, ପିଲା ସମସ୍ତେ ଗାଉଛନ୍ତି ଏଇ ଗୀତ । କେଉଁ ପୁରୁଣା ଯୁଗର ନୋଳିଆ କବିର ରଚନା । ସମୁଦ୍ରର ଲହଡ଼ି ପରି ଗୀତର ସ୍ୱର ଉଠୁଛି ପଡୁଛି । କେଡ଼େ ସରଳ ଗୀତ, ଅଥଚ ଶୁଣିବା ଲୋକର ମନକୁ ଛୁଇଁଯାଏ । ସମୁଦ୍ର ହିଁ ସେମାନଙ୍କୁ ଦେଇଛି ଖାଦ୍ୟ, ବସ୍ତ୍ର, ଆଶ୍ରୟ । ତେଣୁ ସେମାନେ ସମୁଦ୍ରକୁ କୃତଜ୍ଞତା ଜଣାଉଛନ୍ତି । ସରଳ ମଣିଷ ସେମାନେ । ସମୁଦ୍ର ସଙ୍ଗେ ଲଢ଼ି ପେଟ ପୋଷନ୍ତି । ମନରେ ଛଳ ନାହିଁ, ଦକ ନାହିଁ । ସମୁଦ୍ରର କୂଳେ କୂଳେ ଆକାଶର ଛାତତଳେ ସେମାନଙ୍କ ଘର ।

ଖରା କ୍ରମେ ଟାଣ ହେଉଛି । ସୂର୍ଯ୍ୟଟା କେତେ ଉପରକୁ ଉଠିଲାଣି । ସମୁଦ୍ରର ବାଲି ଚିକ୍ ଚିକ୍ ଝିଲ୍ ମିଲ୍ ହେଉଚି । ସମୁଦ୍ରର ପାଣି ଦେଖାଯାଉଚି ଗାଢ଼ ନୀଳ । ଚଢ଼େଇମାନେ କୋଳାହଳ କରି ଆକାଶ ପବନ କମ୍ପାଇ ଦେଉଛନ୍ତି । ହେଲେ, କୁଆଡ଼କୁ ଦୃଷ୍ଟି ନ ଦେଇ ଆଗକୁ ଚାଲିଛି ଗୋଟିଏ ମଣିଷର ଦଳ । ବୁଢ଼ା, ପିଲା କାହାରି କ୍ଲାନ୍ତି ନାହିଁ । ସବୁରି ମୁହଁରେ ହସ । ଦୋହରେଇ ଦୋହରେଇ ସେଇ ଗୀତଟି ଗାଉଛନ୍ତି ସେମାନେ । ବାରମ୍ବାର ଘୋଷା ଧରୁଛନ୍ତି –

ହେ ସମୁଦ୍ର, ତତେ ଆମ ଜୁହାର ହେଉଚୁ,
ଜୁହାର ହେଉଚୁ ।
ତତେ ଆମେ ଛାଡ଼ି ପାରିବୁ ନାହିଁ,
ଛାଡ଼ି ପାରିବୁ ନାହିଁ ।

ଚାରି ଦିନ ଆଉ ଚାରି ରାତି ସମୁଦ୍ର କୂଳେ କୂଳେ ଚାଲି ଆସିଲା ସେଇ ମଣିଷର ଦଳ ।

ବାଟରେ ସେମାନେ ଥକ୍‌କା ମାରନ୍ତି । ଝାଉଁଗଛ ଛାଇରେ ଭାତ ରନ୍ଧାହୁଏ, ଶୁଖୁଆ ପୋଡ଼ା ହୁଏ । ଯାହାର ଭାତ ନାହିଁ, ତା ପାଇଁ ମାଣ୍ଡିଆ ପେଜ ଟିକିଏ ଯଥେଷ୍ଟ । ଉଦୁଉଦିଆ ଖରାବେଳେ ସମୁଦ୍ର ବାଲି ତାତିଯାଏ ନିଆଁ ପରି –ତଥାପି ସେମାନେ ମାଡ଼ି ଚାଲନ୍ତି ଆଗକୁ । ଡାହାଣ ପଟେ ସମୁଦ୍ରର ନେଳି ପାଣି ଲମ୍ବି ଯାଇଛି ଦୂରକୁ ଦୂରକୁ – ଯେତେ ଆଗକୁ ଚାଲିଲେ ବି ତାର ଶେଷ ନାହିଁ । ଅସରନ୍ତି ଢେଉ ତାର । ଢେଉ ପରେ ଢେଉ ଆସି କୂଳରେ ମଥା କୋଡୁଛନ୍ତି । ପାଣିରେ ଉକୁଟି ଉଠୁଚି କେତେ ରଙ୍ଗ । ସକାଳ ଆଲୁଅରେ ଯେଉଁ ରଙ୍ଗ, ଦି'ପହରକୁ ତା ନାହିଁ । ରାତିରେ ଆଉ ଗୋଟାଏ ରଙ୍ଗ; ମାତ୍ର ସବୁବେଳେ ସେଇ ଏକ ଶବ୍ଦ ଘୁ-ଘୁ- । ସେ ଶବ୍ଦର ବିରାମ ନାହିଁ । ଥାଟ ଥାଟ କଳା ଘୋଡ଼ା ପରି ସମୁଦ୍ରର ଢେଉ ସବୁ ମାଡ଼ି ଆସୁଛନ୍ତି କୂଳକୁ, ଧଳା ଧଳା ବିଲାତି କୁକୁର ପରି ବାଲି ଉପରେ ଗଡ଼ି ଯାଉଛନ୍ତି ସେମାନେ । ବଡ଼ ବଡ଼ କଳା ଢେଉରୁ ଛିଟିକି ପଡୁଛି ଜଳୀୟ କଣାସବୁ – ସୂର୍ଯ୍ୟ ଆଲୁଅରେ ଦେଖା ଯାଉଛି ମୁକ୍ତା ପରି । କଳା କଳା ଢେଉ ମଝିରେ ନେଳି ପାଣି । ବହୁତ ଦୂରରେ ଆକାଶ ଓ ପୃଥିବୀକୁ ଯୋଗ କରିଛି ଗୋଟିଏ ଜ୍ୟାମିତିକ ସରଳରେଖା – ଯାହାର ପ୍ରସ୍ଥ ନାହିଁ, ଦୈର୍ଘ୍ୟ ଅଛି; ଯାହାର ଅସ୍ତିତ୍ୱ ଅଛି, ମାତ୍ର ଯାହା ଅଦୃଶ୍ୟ ।

ଝାଉଁ ଗଛ ଛାଇରେ ଥକ୍‌କା ମାରି, ଭୋକ ହେଲେ ଭାତ, ଶୁଖୁଆ ପୋଡ଼ା ଓ ମାଣ୍ଡିଆ ପେଜ ଖାଇ, ଦଳ ଦଳ ମଣିଷ ସମୁଦ୍ର କୂଳେ କୂଳେ ଆଗେଇ ଆସୁଛନ୍ତି । ସେମାନେ ସହର ବା ଗ୍ରାମର ସୁସଭ୍ୟ ମଣିଷ ନୁହନ୍ତି । ଦିଲ୍ଲୀ, କଲିକତା, ବମ୍ବେ, ରାଉରକେଲା ଦେଖି ନାହାନ୍ତି । ସେମାନଙ୍କ ଘର ସମୁଦ୍ର କୂଳେ କୂଳେ । ଜନ୍ମ ହେଲାବେଳେ ସେମାନେ ଶୁଣି ନାହାନ୍ତି ନର୍ସର କଣ୍ଠସ୍ୱର, ସେମାନଙ୍କ ଦେହ ଛୁଇଁ ନାଇଁ ଡାକ୍ତରଖାନାର ଖଟିଆ । ଏଇ ସମୁଦ୍ର ବାଲି ଉପରେ ସେମାନେ ଜନ୍ମ ହୋଇଛନ୍ତି, – ଆଖି ମେଲି ଅନାଇ ଦେଖିଛନ୍ତି

ନେଳି ଆକାଶ, କାନରେ ବାଜିଛି ସମୁଦ୍ରର ସେଇ ଶାଶ୍ୱତ ସଙ୍ଗୀତ ଘୁ - ଘୁ ।

ସେମାନେ ଚାଲିଛନ୍ତି ଆଗକୁ ଆଗକୁ । ସେମାନଙ୍କ କଳା କଳା ଛାଇ ସବୁ ସୂର୍ଯ୍ୟ ଆଲୁଅରେ କେତେବେଳେ ତାଳଗଛ ପରି ଲମ୍ୱା ହେଉଛି, ପୁଣି କେତେବେଳେ ଦେହ ସଙ୍ଗେ ମିଶି ଯାଉଛି ଭୟରେ । ରାତିର ନିର୍ଜନତାକୁ ଚିରି ସେମାନେ ଆଗେଇ ଚାଲିଛନ୍ତି ।

ସେମାନଙ୍କ ଘର ପଲାସା-ଆନ୍ଧ୍ର ଓ ଓଡ଼ିଶା ସୀମାରେ । ସେମାନଙ୍କ ଭାଷା ତେଲୁଗୁ ଓ ଓଡ଼ିଆ ମିଶା । ସେମାନେ ନୋଳିଆ - ସମୁଦ୍ରରୁ ମାଛ ମାରିବା ସେମାନଙ୍କ ବାପ ଅଜା ଅମଳରୁ ବ୍ୟବସାୟ । ସେମାନଙ୍କର ଧର୍ମ ଅଛି , ସାମାଜିକ ଉତ୍ସବ ଅଛି, ସେମାନେ ହିନ୍ଦୁଙ୍କ ପରି କାଠ ପଥରର ଦେବତାଙ୍କୁ ପୂଜା କରନ୍ତି । ସେମାନେ ଏକ ମଣିଷ ଗୋଷ୍ଠୀ - ଯେମିତି ଇଂରେଜମାନେ, ଯେମିତି ଆରବମାନେ ।

ନିଜ ଦେଶରେ ଖାଇବାକୁ ନପାଇ ସେମାନେ ପଳାଇ ଆସୁଛନ୍ତି ଓଡ଼ିଶା । ଶୁଣିଛନ୍ତି -- ଓଡ଼ିଶା ଜଗନ୍ନାଥଙ୍କ ଦେଶ । ସେଠି ଖାଇବାର ଅଭାବ ହେବ ନାହିଁ । ଜଗନ୍ନାଥ ମହାପ୍ରଭୁଙ୍କ ଦୟାରେ ସେଠି ସବୁବେଳେ ଆନନ୍ଦ । ଦେଶ ବିଦେଶରୁ କେତେ ଜାତିର କେତେ ଭାଷାର ଲୋକ ସେଠି ଏକାଠି ହୁଅନ୍ତି । ସମୁଦ୍ର କୂଳରେ ମଥା ଟେକିଛି ପୁରୀ ଦେଉଳ । ଯାହା ଉପରକୁ ଚାହିଁଲେ ମୁଣ୍ଡ ବୁଲାଇ ଦିଏ । ମୁଣ୍ଡର ପଗଡ଼ି ଖସିପଡ଼େ । ବହୁତ ମହିମା ଜଗନ୍ନାଥଙ୍କର । ପୁରୀ ଲୋକେ ଧାର୍ମିକ, ଦୟାଳୁ । ସେଠି ଖାଇବାକୁ ଭାତର ଅଭାବ ହେବ ନାହିଁ । ପିନ୍ଧିବାକୁ କନା ଖଣ୍ଡେ ଯେମିତି ହେଲେ ମିଳିବ । ଜଗନ୍ନାଥଙ୍କ ପାଦ ତଳେ ଆଶ୍ରୟର ଅଭାବ ହେବନି ।

ଏହିପରି ବହୁ କଥା ଶୁଣି ସେମାନେ ଆସୁଛନ୍ତି ପୁରୀ । ପଛରେ ରହି ଯାଇଛି ସେମାନଙ୍କ ମାତୃଭୂମି ପଲାସା । ଦୂର ଦିଗ୍‌ବଳୟରେ ହଜି ଯାଇଛି ଆନ୍ଧ୍ର ଓ ଓଡ଼ିଶାର ସୀମା । ସେମାନେ ପାରିହୋଇ ଆସିଛନ୍ତି କେତେ ଝାଉଁବଣ - ସମୁଦ୍ର ବାଲିରେ ମେଞ୍ଚାଏ ମେଞ୍ଚାଏ ନେଳି ପରି ଯାହା ଦୂରକୁ ଦେଖାଯାଏ । ସମୁଦ୍ର କୂଳିଆ ଗାଁସବୁ ପଛରେ ହଜିଗଲାଣି - ସମୁଦ୍ର ବାଲିରେ କୁଆଡ଼େ ମିଳାଇ ଗଲାଣି ଅସୁମାରି ଛୋଟ ଛୋଟ ଚାଳଘର, ଦେଉଳ, ନଡ଼ିଆଗଛ । କେତେ ଅଚିହ୍ନା ଗାଁଆର ଲୋକେ ଆଗ୍ରହରେ ସେମାନଙ୍କୁ ଅନାଇ ରହିଛନ୍ତି; ପଛରେ ରହିଗଲାଣି ସେମାନଙ୍କ ପ୍ରଶ୍ନବାଚକ ଆଖିସବୁ । ପୁରୀ ନିକଟ ହେଲାଣି । ପୁରୁଣା ପୃଥିବୀ ଛାଡ଼ି ସେମାନେ ନୂଆ ପୃଥିବୀକୁ ଆସିଛନ୍ତି ।

ଗୁରାୟା କର୍‌ଲା ପାଖକୁ ଲାଗି ଆସି ପଚାରିଲା, "ବଡ଼ ହାଲିଆ ହୋଇଗଲୁଣି; ନୁହେଁ ରେ କର୍‌ଲା ?"

କର୍‌ଲା ମୁହଁ ଛିଞ୍ଚାଡ଼ି ଦେଲା । ପାଖରେ ଏର୍‌ରାପା, କାମୁଡୁ, ଏଲାମା । ବଡ଼ ଅଲାଜୁକ ଏ ଗୁରାୟା । ସବୁବେଳେ ତା'ରି ସଙ୍ଗେ ଲଗେଇବ, ତାକୁ କଥା କଥାକେ ଥଟ୍ଟା କରିବ ।

ମୁହଁଟା ଶୁଖେଇ ଦୂରେଇ ଗଲା ଗୁରାୟା । କର୍‌ଲା ତାକୁ ମୁହଁ ବୁଲେଇ ଚାହିଁଲା । ଗୁରାୟା ବୁଝିଲା, ଆଉ ତା' ଆଖିରେ ଘୃଣା ବା କ୍ରୋଧ ନାହିଁ । ଅଛି ଯେମିତି ତା ପ୍ରତି ଅକପଟ ପ୍ରେମ ଓ ସରଳତା । ମୁହଁର ଭାଷାଠାରୁ କର୍‌ଲା ଆଖିର ଭାଷା ବେଶି ଭଲ ବୁଝିହୁଏ ।

ବଡେୟା ଯାନିକୁ ଆଖି ମାରି ଦେଲା - ଗୁରାୟା ଓ କର୍‌ଲାଙ୍କ ଆଖି ଆଖି ମିଶିଯିବା ଦେଖି । ଗୁରାୟା କିଛି ନ ଜାଣିବା ପରି ବାଟ ଚାଲିଲା । ବଡେୟାକୁ ପଚାରିଲା, "ପୁରୀ ଆଉ କେତେ ଦୂର, ବଡେୟା ?"

ବଡେୟା କହିଲା, "କେଜାଣେ ।"

ବେଳ ରତ ରତ ହେଉଛି, ସେମାନେ ଦୂରରୁ ଦେଖି ପାରିଲେ ନୀଳଚକ୍ର - ନାଳି ଆକାଶରେ ପତିତପାବନ ବାନା ଫର ଫର ଉଡୁଚି । ସମସ୍ତଙ୍କ ମୁହଁରେ ଖେଳିଗଲା ହସ - ଯେଉଁ ହସରେ ଛଳନା ନାହିଁ, ଅଛି ହୃଦୟର ସରଳତା । ସବୁରି ମୁହଁରେ ଫୁଟି ଉଠିଲା ପ୍ରସନ୍ନତାର ଭାବ । ଏଇ ଦେଉଳ, ଏଇ ପତାକା ଦେଖିବାକୁ ସେମାନେ ଶହ ଶହ ମାଇଲ ଦୂରରୁ ଚାଲି ଆସିଛନ୍ତି । ଜୀବନରେ କେବେ ଦେଖି ନଥିଲେ ଏଦୃଶ୍ୟ । ହେଲେ ଏହା ବିଷୟରେ କେତେ କାହାଣୀ ଶୁଣିଛନ୍ତି ବୁଢ଼ାବୁଢ଼ୀଙ୍କ ମୁହଁରୁ । ପରସ୍ପରକୁ ଅନାଇ ଆନନ୍ଦ ପ୍ରକାଶ କଲେ ସେମାନେ । ମାଆ ପୁଅ ମୁହଁରେ ବୋକ ଦେଲା; ଭଉଣୀ ଭାଇ ପାଖକୁ ଲାଗି ଆସି କହିଲା, "ଦେଖ ଭାଇ, ପତାକାଟା କେମିତି ପବନରେ ଫର ଫର ଉଡୁଛି ।" ସ୍ୱାମୀ ସ୍ତ୍ରୀକୁ କହିଲା, "ଆଉ ମନରେ ଭୟ କେଉଁଥିପାଇଁ ? ଜଗନ୍ନାଥଙ୍କ ଦେଶକୁ ଆମେ ଆସିଚୁ । ଏ ଦେଶରେ ଖାଇବାକୁ ଭାତର ଅଭାବ ହେବ ନାହିଁ । ରହିବାକୁ ଆଶ୍ରୟର ଅଭାବ ହେବନାହିଁ । ଆମ ପିଲାଏ ଭଲରେ ରହିବେ ।"

ଯୁବକମାନେ ଯୁବତୀମାନଙ୍କ ପାଖକୁ ଲାଗି ଆସିଲେ । ସେମାନଙ୍କ ମନରେ କେତେ କଳ୍ପନା - ଭବିଷ୍ୟତର କେତେ ରଙ୍ଗୀନ୍ ଛବି । ଗୁରାୟା କର୍‌ଲା ହାତଟାକୁ ଟାଣିଦେଲା । କର୍‌ଲା ଖିଲ୍ ଖିଲ୍ ହସି ପକାଇ କହିଲା, "ଆଉ ଆମର ଚିନ୍ତା ନାହିଁରେ ଗୁରାୟା । ଆମେ ପୁରୀ ଆସିଲୁଣି । ଜଗନ୍ନାଥଙ୍କ ଜାଗା ଏଇଟା ।"

ସମସ୍ତଙ୍କ ମୁହଁରେ ହସର ଲହଡ଼ି । ଦୋହରେଇ ଦୋହରେଇ ପୁଣି ସମସ୍ତେ ଗାଇବାକୁ ଲାଗିଲେ ସେଇ ପୁରୁଣା ଗୀତ - ହେ ସମୁଦ୍ର, ତତେ ଆମେ ଜୁହାର ହେଉଚୁ, ଜୁହାର ହେଉଚୁ ।

ଜଗନ୍ନାଥଙ୍କ ଦେଉଳକୁ ସମସ୍ତେ ଜୁହାର ହେଲେ । ବୁଢ଼ା ପୁରୋହିତ ବାଙ୍ଗନେୟା ମାସାନି ଜଗନ୍ନାଥଙ୍କ ଦେଉଳକୁ ଚାହିଁ ଚାହିଁ ମନକୁ ମନ କ'ଣ ଗୁଣୁ ଗୁଣୁ ହୋଇ କହିବାକୁ ଲାଗିଲା ତା' ଦଳର ସମସ୍ତଙ୍କର ଭଲ ହେଉ, କାହାରିକୁ ରୋଗ ନ ହେଉ, ଖାଇବାକୁ ମିଳୁ ପ୍ରଚୁର, ଭୂତପ୍ରେତ ଚଣ୍ଡିଚାମଡାର ଅଶୁଭ ଦୃଷ୍ଟି ସେମାନଙ୍କ ଉପରେ ନ ପଡୁ, ସମୁଦ୍ର

ସବୁଦିନେ ସେମାନଙ୍କଠାରେ ପ୍ରସନ୍ନ ଥାଉ - ଏହା ହିଁ ଜଗନ୍ନାଥଙ୍କଠାରେ ତାର ପ୍ରାର୍ଥନା ।

ସଞ୍ଜ ନଇଁ ଆସୁଚି ସମୁଦ୍ର ଉପରେ, - ଆକାଶରେ ଘନେଇ ଆସୁଚି ଥାକ ଥାକ ଅନ୍ଧାର । ବୁଢ଼ୀ କେତେଜଣ ଠିଆହୋଇ କଥାବାର୍ତ୍ତା ହେଉଛନ୍ତି - କେଉଁଠି ସେମାନେ ରହିଲେ ସୁବିଧା ହେବ । ଟୋକାମାନେ ବି ଏଣେ ତେଣେ ଅନାଇ ସ୍ଥାନଟିକୁ ନିରୀକ୍ଷଣ କରୁଛନ୍ତି । ଏଇଠି ସେମାନେ ଆଶ୍ରା ନେବେ - ଏଇଠି, ଏଇ ନିଛାଟିଆ ପୁରୀ ସମୁଦ୍ର କୂଳରେ, ସେମାନଙ୍କର ଗଢ଼ିଉଠିବ ନୂଆ ବସ୍ତି - ନୂଆ ମଣିଷ ବସତି । ଶେଷକୁ ସ୍ଥାନ ଠିକ୍ ହେଲା । ଝାଉଁ ଜଙ୍ଗଲ ଯେଉଁଠି ଶେଷ ହୋଇଚି, ଯେଉଁଠି ନୂଆ ନଈର ନେଳି ହଳଦିଆ ମିଶା ପାଣିର ଚାଦରଟି ସମୁଦ୍ର ସହିତ ମିଶି ଯାଇଛି, ସେଇଠି ଗୋଟିଏ ଢାଲୁ ଜାଗା । ବୁଢ଼ାମାନେ କହିଲେ, "ବର୍ଷାଦିନେ ଏ ଢାଲୁ ଜାଗାଟି ଶୁଖିଲା ରହୁଥିବ । ତେଣୁ ଏଇଠି ଆଶ୍ରା ନେବା ଭଲ ।"

ସେତେବେଳକୁ ରାତି ଘଡ଼ିଏ ହେଲାଣି । ସମୁଦ୍ର ଭିତରୁ ଛୋଟ ସରୁଆ ଜହ୍ନଟିଏ ଉଙ୍କିମାରି ଅନେଇ ଦେଖିଲା, ସମୁଦ୍ର ବାଲି ଉପରେ ଜମାହୋଇଛନ୍ତି ଦଳ ଦଳ ମଣିଷ । କେଉଁଠି ଚୁଲି ଲାଗି ରନ୍ଧା ହେଉଛି । କଳା ଆକାଶ ଉପରକୁ ସାପ ପରି ମୋଡ଼ି ମୋଡ଼ି ହୋଇ ଉଠୁଚି ଧୂଆଁ । ପିଲାମାନେ ହାଲିଆ ହୋଇ କନା ଖଣ୍ଡିଏ ପାରି ନିଦରେ ଶୋଇ ପଡ଼ିଲେଣି । ବୁଢ଼ାମାନେ ଭାବୁଛନ୍ତି - କେମିତି ଏଠି ଘର କରି ସେମାନଙ୍କ ପିଲାପିଲିଙ୍କୁ ଖରା ବର୍ଷା ଝଡ଼ ଦାଉରୁ ରକ୍ଷା କରିବେ । ଆପ୍‌ପା ତା ସ୍ୱାମୀକୁ କହୁଚି, "କାଲି ପାଇଁ ତୋର କାହିଁକି ଚିନ୍ତା ପଡ଼ିଚି ରେ ଏତେ ? ଏଠି ଅଭାବ ହେବ ନାହିଁ ।"

ଦୁଇ ତିନୋଟି କିଶୋରୀ ଝିଅ ବସି ଗୀତ ବୋଲୁଛନ୍ତି । ତେଲୁଗୁ ଭାଷାରେ ମାଆ ପିଲାକୁ ଶୁଆଇ ଦେବାର ଗୀତ । ସେମାନଙ୍କ କଣ୍ଠରୁ ମହୁ ଝରି ପଡୁଚି ସତେ ବା ! ସେମାନେ ବି ଦିନେ ମା ହେଲେ ଏଇ ଗୀତ ଗାଇ ସେମାନଙ୍କ ପିଲାମାନଙ୍କୁ ଶୁଆଇବେ । ଆଜି ଯେଉଁ ଗୀତ ସେମାନଙ୍କୁ କେବଳ ଆନନ୍ଦ ଦେଉଚି, ଦିନେ ସେଇ ଗୀତ ପିଲାକୁ ଶୁଆଇବା ଲାଗି ଆବଶ୍ୟକ ହେବ । ଆଜି ଯେଉଁ ଗୀତ ଅର୍ଥହୀନ ମନେ ହେଉଚି, ଦିନେ ସେ ଗୀତ ସେମାନଙ୍କ ନିକଟରେ ଅର୍ଥପୂର୍ଣ୍ଣ ହୋଇଉଠିବ ।

ଭାତ, ମାଣ୍ଡିଆ ପେଜ, ଶୁଖୁଆ ପୋଡ଼ା ଖାଇ, ମାଟିପାତ୍ରରେ ସାଇତିଥିବା ତାଉଳି ମଦରୁ ଟିକିଏ ଟିକିଏ ପିଇ, ଖୋଲା ଆକାଶ ତଳେ ଶୋଇ ପଡ଼ିଲେ ଅସୁମାରି ମଣିଷ - ବିଭିନ୍ନ ଆକାରର, ବିଭିନ୍ନ ପ୍ରକୃତିର । କିଏ ପକେଇଲା ଛିଣ୍ଡା ମଇଳା କନା ଖଣ୍ଡେ; କିଏ ବା ସମୁଦ୍ରର ଥଣ୍ଡା ବାଲି ଉପରେ ସେମିତି ଶୋଇ ପଡ଼ିଲା ହାତ ପାପୁଲିକୁ ତକିଆ କରି । ଟିଣ ପାତିଆ ପରି ସରୁ ଜହ୍ନଟି ତାଜୁବ୍ ହୋଇ ଏଇ ନୂଆ ମଣିଷମାନଙ୍କୁ ଅନେଇ ରହିଲା । ଜହ୍ନର ମଳିନ ଆଲୁଅରେ ସମୁଦ୍ର ବାଲିରେ ଛାଇ ଆଲୁଅ ଗୋଳି ହୋଇ ବୋଳି ହୋଇଗଲା ଯେମିତି । ନୂଆ ନଈର ଛୋଟ ଛୋଟ ଢେଉସବୁ ଏ ମଣିଷମାନଙ୍କୁ ଦେଖି ପଚାରିଲା, - କିଏ

ଏମାନେ ? କେଉଁଠୁ ଆସିଲେ ? ମୋ କୂଳରେ ଏମାନଙ୍କର କି କାମ ?

ସମୁଦ୍ର ଗର୍ଜନ କରି କୂଳରେ ମଥା କୋଡ଼ିଲା । ସନାତନ ଯୁଗର ସେଇ ପୁରୁଣା ଅଥଚ ଚିର ନୂତନ ସଙ୍ଗୀତ ଘୁ-ଘୁ । ଏଇ ଅଜଣା ଅଶୁଣା ନୂଆ ମଣିଷମାନଙ୍କୁ ଘମାଘୋଟ ନିଦରେ ଶୁଆଇଦେଲା । ସମୁଦ୍ରର ଥଣ୍ଡା ପବନ ମାଆର ଅଙ୍ଗୁଳି ପରି ସେମାନଙ୍କୁ ଆଉଁଷି ଦେଲା, ପିଠି ଥାପୁଡ଼େଇ ଦେଲା, କାନରେ ଗୁଣୁ ଗୁଣୁ ହୋଇ କ'ଣ ଗୀତ ବୋଲିଲା । ଝାଉଁ ଗଛର ଫାଙ୍କରେ ନୂଆ ମଣିଷମାନଙ୍କୁ ଅନେଇଲେ ହରିଣ, ହରିଣୀ, କଳା ବାହୁଟିଆ, ବିଲୁଆ । ଗଛ ଡାଳରୁ ଚଢ଼େଇମାନେ ଚିଁ ଚିଁ ଶବ୍ଦ କଲେ । ସେମାନଙ୍କ ମନରେ ବି ସେଇ ପ୍ରଶ୍ନ - କିଏ ଏମାନେ ?

ସୃଷ୍ଟିର ପ୍ରଥମ ସକାଳରୁ ହୁଏତ ଯେଉଁଠି କେବେ ମଣିଷର ପାଦ ପଡ଼ି ନଥିଲା, ସେଠି ଠିଆ ହେଲା ଏକ ମଣିଷ ବସତି । ଏ ପାଖେ ନୂଆ ନଈର ନେଳି ପାଣିଧାର - ସେ ପାଖେ ସମୁଦ୍ରର କାନଅତଡ଼ା ଗର୍ଜ୍ଜନ, ଦୂରରେ ଧୂସର ଝାଉଁ ଗଛର ଗହଳିଆ ବଣ ଛବି ଆଙ୍କିଲା ପରି । ଉପରେ ଆକାଶ ଆଉ ଆକାଶ । ବେଶ୍, ଏହାରି କୋଳରେ ଆଶ୍ରା ପାଇଲେ କେତୋଟି ମଣିଷ - ବିଶାଳ ଏ ସୃଷ୍ଟିରେ ଯେଉଁମାନେ ଅଣୁ ପରମାଣୁଠାରୁ ଆହୁରି ହୀନ, ଆହୁରି ନଗଣ୍ୟ ।

ଚାହୁଁ ଚାହୁଁ ମୁଣ୍ଡ ଟେକିଲା କେତେ ଛୋଟ ବଡ଼ ଘର - ଗୋଲ୍ ଗୋଲ୍ ତମ୍ବୁ ପରି । ମଣିଷ ଯେଉଁଠି ରହେ, ତାର ମୁଣ୍ଡ ଗୁଞ୍ଜିବାକୁ ଘରଟିଏ ତିଆରି କରେ ଆଗେ । ଆଫ୍ରିକାର ବଣଜନ୍ତୁପୂର୍ଣ୍ଣ ଜଙ୍ଗଲ, ସାହାରା ମରୁଭୂମିର ସୀମାହୀନ ବାଲୁକା, ପାହାଡ଼ପୂର୍ଣ୍ଣ କୋରାପୁଟର ମାଳ ଅଞ୍ଚଳ- ସବୁଠି ମଣିଷ ରହେ । ଭଗବାନ୍ ତାକୁ ବାଘ ବା ସିଂହ ପରି ଦାନ୍ତ, ନଖ ଦେଇ ନାହାନ୍ତି; ଗଣ୍ଡାର ପରି ଶିଂଘ ଦେଇ ନାହାନ୍ତି ଭୂଷିବାକୁ; ସାପ ପରି ତା ମୁହଁରେ ଦେଇ ନାହାନ୍ତି ବିଷ । ତଥାପି ମଣିଷ ବାଘ, ସିଂହ, ଗଣ୍ଡାର, ସାପ ସବୁରି ସଙ୍ଗେ ଲଢ଼େ - ସେଇମାନଙ୍କ ମେଳରେ ରହି ସେଇମାନଙ୍କୁ ଶିକାର କରେ । ଏଇ ତ ମଣିଷର ବାହାଦୂରୀ ! !

ସୁଦୂର ପଲାସାରୁ ଭାତ ଗଣ୍ଡିଏ ଖାଇବା ଲୋଭରେ ଓଡ଼ିଶା ପଳାଇ ଆସି ପୁରୀ ସମୁଦ୍ର କୂଳରେ ଆଶ୍ରୟ ନେଇଥିବା ଏଇ ମଣିଷ ଗୋଷ୍ଠୀକୁ କୌଣସି ହିଂସ୍ରଜନ୍ତୁଙ୍କ ସଙ୍ଗେ ଲଢ଼ିବାକୁ ପଡ଼ିଲା ନାହିଁ । ଝାଉଁ ଗଛର କାଠ, ସମୁଦ୍ର କୂଳେ କୂଳେ ଉଠିଥିବା ଅନାବନା ବୁଦାର ଲଇରେ ସେମାନେ ତିଆରି କଲେ ସେମାନଙ୍କର ଗୋଲ୍ ଗୋଲ୍ କୁଡ଼ିଆ ଘର । ସମୁଦ୍ରର ବାଲିରେ ଘର ଚାରିପଟେ ହାତେ ଲେଖାଏଁ ବାଡ଼ ଦେଲେ, ପ୍ରତ୍ୟେକ ପରିବାରର ଗୋଟିଏ ଲେଖାଏଁ ଘର । ସେଇ ଘରେ ରୋଷେଇ ହୁଏ ସକାଳ ସଞ୍ଜରେ; ସେଇ ଘରେ ଏକାଠି ଶୁଅନ୍ତି ବାପା ମାଆ, ପୁଅ ବୋହୁ ଆଉ ଛୋଟ ଛୋଟ ପିଲାମାନେ । କେହି କେହି

ଘର ଛାତରେ ଚାଞ୍ଚ, କୁଟା ପ୍ରଭୃତି ପକାଇ ଘରକୁ ମଜବୁତ୍ କଲେ । କିଏ ବା ଛିଣ୍ଡା ଜାଲ, ଚିରା ଗାମୁଛାକୁ ଘେରାଇ ଦେଲେ ଘର ଚାରିପାଖେ - କୌଣସି ପ୍ରକାରେ ସୂର୍ଯ୍ୟଦେବତାର ଦାଉରୁ ଟିକିଏ ରକ୍ଷା ମିଳିବ ବୋଲି । ଘର ତିଆରି କରାଯାଏ ପ୍ରକୃତିର ଦାଉରୁ ପାଇବାକୁ । ସହରର ବଡ କୋଠାଘର ହେଉ ବା ସମୁଦ୍ର କୂଳର ନୋଳିଆମାନଙ୍କର ନୁଆଁଣିଆ ଝାଉଁପତ୍ରଘେରା କୁଡିଆ ଘର ହେଉ ସବୁଠି ସେଇ ଏକା ଉଦ୍ଦେଶ୍ୟ - ଖରା ବର୍ଷାରୁ ଟିକିଏ ଆଶ୍ରୟ ।

ଗୁରାୟା ବି ସମସ୍ତଙ୍କ ଭଳି ତା ଛୋଟ କୁଡ଼ିଆ ଘରଟି ତିଆରି କଲା । ସମୁଦ୍ର କୂଳର ଘାସ ଆଉ ଅନାବନା ଗଛର ପତ୍ରରେ କୁଡ଼ିଆ ଉପରଟି ଢାଙ୍କି ଦେଲା; ଘର ସାମ୍ନାରେ ପୋତିଲା କେତୋଟି ଆଇଁଷିକାତି ଚାରା । ଘର ଚାରିପାଖେ ଆଣି ଲଗାଇଦେଲା ଚାରି ପାଞ୍ଚୋଟି ଝାଉଁଗଛ । ଏତିକିରେ ଘରତୋଳା ଶେଷ ।

ଗୁରାୟା ଘର ପାଖକୁ ବଡେୟାର ଘର, ହେଇ, ସେ ପାଖକୁ ଯାନିର, - ପାଖକୁ ପାଖ ଲାଗି ଆରେୟା, ଜୋଲ୍‌ଦେଲା, ରାମାନା, ସୁବ୍‌ବାରାଓ, ନରସିଂ - ସମସ୍ତଙ୍କର ଏକାପରି ଘର । ଦୂରରୁ ଏଇ ଘରସବୁ ଛୋଟ ଛୋଟ ବାଲିକୁଦ ପରି ଦିଶେ ।

ଖାଲି ଘର ତିଆରି କରିଦେଲେ ତ ହେବ ନାହିଁ, ପେଟକୁ ଦାନା ଯୋଗାଡ଼ କରିବାକୁ ହେବ । ଛୋଟ ଛୋଟ ପୋଡୁଅମାନ ତିଆରି ହେଲା । କେହି କେହି ପଲାସାରୁ ଆମ୍ବକାଠ, ପାଲଧୂଆକାଠ ସବୁ ବୋହି ଆଣିଥିଲେ । ଗୁରାୟା ମଧ୍ୟ ଆଣିଥିଲା । ସେ ଓ ବଡେୟା ମିଶି ପୋଡୁଅଟିଏ ତିଆରି କଲେ । ପୋଡୁଅରେ ଲୁହାକଣ୍ଟା ମରା ହେବା ଦରକାର ପଡ଼େ ନାହିଁ, ଖାଲି କାଠକିଲା ମାରିଦେଲେ ଚଳେ । ଫାଳ ଫାଳ କାଠସବୁକୁ ଦଉଡ଼ିରେ ବାନ୍ଧି ଗୋଟା କରାଯାଏ । ନୋଳିଆ ପୁଅ ପିଲାଦିନୁ ପୋଡୁଅ ତିଆରି କରିବା ଜାଣେ - କେହି ତାକୁ ଏ ବିଦ୍ୟା ଶିଖାଇବା ଦରକାର ନାହିଁ । ବାପ ଭାଇଙ୍କ କାମକୁ ନିଘା କରି କରି ସେ ସବୁ ଶିଖେ । କାମ ନଥିବା ବେଳେ ଦଉଡ଼ି ବୁଣେ, ସମୁଦ୍ରର ସିପସବୁ ଗୋଟାଇଆଣି ଭାଟିରେ ତରଳାଇ ଚୁନ କରେ, ମାଛ ଶୁଖାଇ ଶୁଖୁଆ କରେ; ତା ନ ହେଲେ ସମୁଦ୍ର ପାଣି ସିଝାଇ ଲୁଣ ମାରେ । ଏଡ଼େ ବକଟେ ବକଟେ ପିଲା ଛୋଟ ଛୋଟ କୌପୁନୀ ଖଣ୍ଡିଏ ଲେଖାଏଁ ପିନ୍ଧି, ବେକରେ ମାଳି ଓ ହାତରେ ତେଉଁରିଆ ବାନ୍ଧି ସମୁଦ୍ର କୂଳେ ବାପ-ଭାଇଙ୍କୁ ସାହାଯ୍ୟ କରିବାରେ ଲାଗିଯାନ୍ତି । ଅଣ୍ଟାରେ ସେମାନଙ୍କର ଗୁଡ଼ା ହୋଇଥାଏ ସରୁ ସରୁ ପଇତା, ସେଇ ପଇତାରେ ଖୋସା ହୋଇଥାଏ ଛୋଟ କନା ଖଣ୍ଡିଏ ଖଣ୍ଡିଏ - କୌପୁନୀ । ବାପମାନେ ସଞ୍ଜବେଳକୁ ମାଛ ମାରି ଫେରନ୍ତି । ସେତେବେଳେ ଛୋଟ ଛୋଟ ପିଲାମାନଙ୍କର କି ଆନନ୍ଦ ! ତାଳି ମାରି ପାଟି କରି ସେମାନେ ଧାଇଁଯାନ୍ତି ପୋଡୁଅ ପାଖକୁ - ବାଲିରେ ପଡୁଥିବା ଛୋଟ ଛୋଟ ମାଛଗୁଡିକୁ ଗୋଟାଇ ଖାଲୁଆରେ ଭର୍ତ୍ତି କରନ୍ତି । ଏଇ ଛୋଟ ମାଛସବୁ ସେମାନଙ୍କର ତରକାରୀ ହୁଏ । ବଡ଼ ମାଛସବୁ ବିକା ହୁଏ ହାଟରେ ।

ଗୁରାୟା ଓ ବଡେୟା ଲେଖାଯୋଖାରେ ଦି' ଭାଇ । ଦୂରରୁ ଦୁହିଁଙ୍କୁ ଚିହ୍ନି ହୁଏ ନାହିଁ - ଏକା ଚାଲି, ଏକା ଗଢ଼ଣ, ଏକାପରି ଦୁଇପଟ ଲେଖାଏଁ ଲମ୍ବା ଲମ୍ବା ନିଶ । ବଡେୟା ଗଲା ଖରା ମାସରେ ବାହାହେଲା ଏଲାମାକୁ । ଏବେ ତାର ଗୋଟିଏ ପୁଅ । ବଡେୟାର ବାପା ମାଆ ନାହାନ୍ତି । ବାପ ତ କୋଉ କାଳରୁ ମଲାଣି । ସମୁଦ୍ରକୁ ମାଛମାରି ଯାଇଥିଲା । ଖଣ୍ଡିଆ ଭୂତ ପରି ମାଡି ଆସିଲା ଝଡ଼ - ଆଉ ରକ୍ଷା ପାଏ କୁଆଡେ ?

ବାପ ମଲାବେଳକୁ ବଡେୟାକୁ କୁଆଡ଼େ ଚାରି ବରଷ - ମାଆ ଦୁତିଅ ହେଲା ଶବ୍‌ରାକୁ । ଶବ୍‌ରାର ଭାର୍ଯ୍ୟାଟା ବି ଯବାନ୍ ବୟସରେ ଯୋଡ଼ାଏ ଯାଆଁଳା ଝିଅ ଜନ୍ମ କରି ସେଇ ପ୍ରସୂତିକଷ୍ଟରେ ମରିଥିଲା । ଶବ୍‌ରା ଆଉ ବଡେୟାର ମାଆ ପୁଣି ନୂଆ ଘର କଲେ । ଏଇ ଗଲା ସାଲ ତ ତକାତକି ହୋଇ ବୁଢ଼ା ବୁଢ଼ୀ ଚାଲିଗଲେ । ବାପ ମାଆ ମରିଯିବା ପରେ ବଡେୟା ବାହା ହେଲା - । ଛୋଟ ଭାଇଟି କ୍ରିଷ୍ଣା ତା ପାଖେ ମଣିଷ ହେଉଛି ।

ଗୁରାୟାର ବୁଢ଼ା ବାପ ଭେଙ୍କଟ୍ ଆଉ ଛୋଟ ଛୋଟ ଚାରୋଟି ଭାଇ ଭଉଣୀ । ଭଉଣୀ ଯୋଡ଼ିକ ବଡ଼ - ଭାଇ ଯୋଡିକ ଛୋଟ । ତିନି ସାଲ ତଳେ ତା ମାଆ ମରିଛି । ଭଉଣୀମାନେ ରୋଷେଇ କରନ୍ତି । ବୁଢ଼ା ଆଉ କାମକୁ ପାରୁନି । ଘର ଭିତରଟାରେ ସେ ବସିଥାଏ । ନୂଆ ଜାଗାକୁ ଆସି ସେ ଖୁସୀ । କାରଣ ତାର ବିଶ୍ୱାସ, ପୁରୀରେ ମଲେ ସ୍ୱର୍ଗକୁ ଯିବା ସହଜ । ସମସ୍ତେ କାମକୁ ଗଲେ ସେ ଛୋଟ କୁଡ଼ିଆ ଘର ଭିତରୁ ବାହାରି ଆସି ବାଡ଼ିଟିରେ ଭରାଦେଇ ଚାରିଦିଗକୁ ଅନାଏ - ଦେଖେ, ଏ ଅପରିଚିତ ନୂଆ ଜାଗାରେ ସେମାନଙ୍କର ଛୋଟ ବସ୍ତିଟି ଗଢ଼ି ଉଠିଲାଣି । ଦୁଇ ଧାଡ଼ି ଛୋଟ ଛୋଟ ଗୋଲ ଗୋଲ କୁଡ଼ିଆ ଘର ମଝିରେ ଲମ୍ବା ସରୁ ରାସ୍ତା । କାହାରି କାହାରି ଘର ସାମ୍ନାରେ ଆଇଁଷିକାତି, ଝାଉଁ, ଅରଖ, ଚାକୁଣ୍ଡା ବା ଅଜଣା ଅଶୁଣା ଅନାବନା ଗଛ । ଠାଏ ଠାଏ ମେଞ୍ଚାଏ ମେଞ୍ଚାଏ ଶୁଖିଲା ମୁରୁକୁଟା ଘାସ ଓ ସେଥିରେ ଛୋଟ ଛୋଟ କେତୋଟି ଧଳା ଫୁଲ - ଯକ୍ଷ୍ମା ରୋଗୀର ଶେତା ହସ ପରି । ବସ୍ତି ସେ ମୁଣ୍ଡେ ଭେଣ୍ଡିଆମାନେ ଗୋଟିଏ ବାଲିବନ୍ତ ଉପରେ ବାଉଁଶଟିଏ ପୋତି ନାଲି ପତାକାଟାଏ ଉଡ଼ାଇଛନ୍ତି । ବସ୍ତିର ଠାକୁରାଣୀଙ୍କ ରହିବା ସ୍ଥାନ ସେଟା । ବାଉଁଶକୁ ଲାଗି ଛୋଟ କୁଡ଼ିଆଟିଏ - ସେଇ କୁଡ଼ିଆ ଘରେ ପଥରଟିଏ ଥୁଆ ହୋଇଚି । ଠାକୁରାଣୀ ସେ - ସୁଦୂର ପଲାସାରୁ ମଣିଷ କାନ୍ଧରେ ବୁହା ହୋଇ ଏଠାକୁ ଆସିଛନ୍ତି ।

ବୁଢ଼ା ଭେଙ୍କଟ୍ ଠାକୁରାଣୀଙ୍କ ଉଦ୍ଦେଶ୍ୟରେ ଭୂଇଁରେ ମୁଣ୍ଡ ଲଗାଇଲା ।

ନିଛାଟିଆ ଖରାବେଳଟାରେ ବୁଢ଼ା ଭେଙ୍କଟ୍ ତା' ନୂଆ କୁଡ଼ିଆ ଘରେ ବସି ଚାରିଆଡ଼କୁ ଢୁଲୁ ଢୁଲୁ ଅନାଇଲା । ପିଲାମାନେ କାମରେ ଯାଇଛନ୍ତି । ବଡେୟା ଓ ଗୁରାୟା ଆଜି ଜାଲ ନେଇ ବହୁତ ଦୂରକୁ ଯିବେ ବୋଲି କହୁଥିଲେ । ଫେରୁ ଫେରୁ କେତେବେଳ ହେବ, କେ ଜାଣେ । ଝିଅ ଦି'ଟା ସେମାନଙ୍କ ସାଥୀଙ୍କ ସଙ୍ଗେ କୋଉଠି ଖୁସିଗପ ଜମାଇଥିବେ; ନ

ହେଲେ ବାଲିରେ ଗାର କାଟି କେତେ କ'ଣ ଖେଳ ଖେଳୁଥିବେ ।

ଭେଙ୍କଟ୍ ଘର ଭିତରକୁ ନିରୀକ୍ଷଣ କଲା - ସାବାସ୍‌ରେ ଝିଅମାନେ - ଘରଟିକୁ ତ ବେଶ୍ ସଜାଇଛନ୍ତି । ଗୋଟିଏ କୋଣରେ ହାଣ୍ଡି ତିନୋଟି, ଭାତ କି ମାଣ୍ଡିଆ ପେଜ ଥିବ ସେଥିରେ । ଶିକାରେ ଶୁଖୁଆ ଖଣ୍ଡେ ଦି'ଖଣ୍ଡ । ବାସନକୁସନସବୁ ସମୁଦ୍ର ଜନ୍ତୁର ହାଡ଼ରେ ତିଆରି । ଶାଙ୍କୁଚ ମରିଗଲେ ତା ପିଠି ହାଡ଼ଟା ଗୋଟାଏ ବଡ଼ କରେଇର କାମ ଦିଏ । ମାଟିରେ ତିଆରି ଖଣ୍ଡେ ବାସନ ବି ଅଛି ।

ଘରର ଅନ୍ୟ କୋଣରେ ଜମା ହୋଇଛି ମଇଳା ଲୁଗା ଆଉ ଅଖା କେତୋଟି । ପିଲାମାନଙ୍କ ଶେଯ ପାଇଁ ସେଇ ଯଥେଷ୍ଟ । ଇତସ୍ତତଃ ହୋଇ ପଡ଼ିଛି ଖଣ୍ଡେ ଦି'ଖଣ୍ଡ ଚିରା ଜାଲ, କେତୋଟା ବଡ଼ ବଡ଼ ସିପ, ସନ୍ତରା ମଶିଣାଟାଏ, ଆଉ କେତେଖଣ୍ଡ ଜାଳେଣି କାଠ ।

ବେଶ୍, ଏଇ ତାର ଘର...।

ଭେଙ୍କଟ୍ ଖୁବ୍ ଆତ୍ମତୃପ୍ତି ଲାଭ କଲା । କର୍ କର୍ ରଡ଼ି ଛାଡ଼ି ଘର ଭିତରକୁ ପଶି ଆସିଲେ ଦୁଇଟି ମାଈ ଓ ଅଣ୍ଡିରା କୁକୁଡ଼ା, ଆଉ ସେମାନଙ୍କ ପଛେ ପଛେ ଛୋଟ ଛୋଟ ଛୁଆ କେତୋଟି । ଭେଙ୍କଟ୍ ଭାବିଲା, ଗୁରାୟାଟା ଚଲାକ୍ ଟୋକା । ଏଠାକୁ ଆସୁ ଆସୁ କୁକୁଡ଼ା କେତୋଟା ଆଣି ରଖିଲାଣି । ହେଇ, ସେଠି ଛାଇରେ ବସି ଜିଭରୁ ଲାଳ ଗଡ଼ାଉଚି ଯେଉଁ କୁକୁରଟା, ସେଇଟା ବି ଗୁରାୟା ନୂଆ କରି ଆଣିଛି କେଉଁଠୁ ।

ଖରା ଆସ୍ତେ ଆସ୍ତେ ମହଳଣ ପଡ଼ିଆସୁଛି । ପବନଟା ଶୀତୁଳିଆ ଶୀତୁଳିଆ ଲାଗିଲାଣି । ବାଲି ଉପରେ ନାଚି ଯାଉଛି କେତେ ଆକାରର ଛାଇ । ଗୋଟିଏ ଗୋଟିଏ ମାଛମରା ଡଙ୍ଗା ଦିଗ୍‌ବଳୟ ଭିତରୁ ଦେଖା ଦେଲେଣି । ମୁହଁ ସଞ୍ଜବେଳକୁ ସେମାନେ କୂଳରେ ପହଞ୍ଚିଯିବେ । ଏହାରି ଭିତରେ କେଉଁ ଡଙ୍ଗାରେ ଗୁରାୟା ଓ ବଡେୟା ଫେରୁଥିବେ ।

ଭେଙ୍କଟ୍‌ର ଧୂଆଁପତ୍ର ଖାଇବାକୁ ଇଚ୍ଛା ହେଲା । ଘର ଦରାଣ୍ଡିଲା । ଧେତ୍ - ଧୂଆଁ ପତ୍ର ଟିକିଏ ଖୋଜିଲାବେଳକୁ ନାହିଁ । ପଡ଼ିଶା ଘରୁ ଧୂଆଁ ପତ୍ର ଟିକିଏ ଆଣି ନିଆଁ ଧରାଇଲା ଭେଙ୍କଟ୍ । ତା ମୁହଁରୁ ବାହାରିଲା ଛୋଟ ଛୋଟ ନେଳି ନେଳି ଧୂଆଁର କୁଣ୍ଡଳୀ - ଗଛରୁ ଓହଳିଥିବା ଲଟା ପରି ମୋଡ଼ି ମୋଡ଼ି ହୋଇ ଆକାଶକୁ ଉଠିଗଲା । ସେଇ ଧୂଆଁ ପରି ହାଲୁକା ଲାଗିଲା ଭେଙ୍କଟ୍‌ର ମନଟା ।

ଭେଙ୍କଟ୍ ଭାବିଲା, ସେ ବି ଦିନେ ଏମିତି ସମୁଦ୍ର ଭିତରେ ମାଛ ମାରିବାକୁ ଯାଉଥିଲା - ଆଜି ଯେମିତି ବଡେୟା ଓ ଗୁରାୟା ଯାଇଛନ୍ତି । ହଠାତ୍ କାହିଁକି ବୁଢ଼ାର ଇଚ୍ଛା ହେଲା - ପୁଣି ସେଇ ପଲାସାକୁ ଫେରି ଯିବାକୁ । ତାର କାହିଁକି ମନେ ହେଲା, ସେ ଏଠାକୁ ଆସି ଭୁଲ୍ କରିଛି । ସେଠା ସମୁଦ୍ର କୂଳଟା ପୁରୀ ସମୁଦ୍ର କୂଳ ପରି ଏଡେ ସୁନ୍ଦର ନୁହେଁ । ଟିକିଏ ଭୟଙ୍କର ଦିଶେ । ଠାଏ ଠାଏ କଳା ବାଲି - ଦୂରରେ କଳା କଳା ପାହାଡ଼ ସବୁ ଆକାଶ

ସଙ୍ଗେ କ'ଣ ଟୁପ୍ ଟାପ୍ ହେଉଥାନ୍ତି ସବୁବେଳେ । ଦୂରରୁ ଦେଖାଯାଏ ଜଙ୍ଗଲଗୁଡ଼ାକ ଠିକ୍ ଗୋଟାଏ ଶାଗୁଆ କାନ୍ଥି ପରି । ତଥାପି ଭେଙ୍କଟ୍‌ର ମନେ ହେଲା, ସେ ସ୍ଥାନ, ସେ ଦୃଶ୍ୟ ତାର ଯେମିତି ବେଶି ଆପଣାର । ହେଲେ, ସେଠି ଖାଇବାକୁ ଭାତ ମିଳିଲା ନାହିଁ । ତେଣୁ ଗାଆଁଟାଯାକର ସବୁ ଲୋକେ ପଳାଇ ଆସିଲେ ଓଡ଼ିଶା । ଯେଉଁ କେତେ ଜଣ ବଡ଼ ବଡ଼ ସହରରେ କାମ ଖୋଜିବାକୁ ଗଲେ, ସେମାନେ ଆଜି କେମିତି ଥିବେ, କିଏ ଜାଣେ ? ତଥାପି ବାପ ଅଜା ଅମଳର ବ୍ୟବସାୟ ମାଛମରା ଛାଡ଼ି ସହରର ନୌକରୀ କରିବାଟାକୁ ପସନ୍ଦ କଲାନି ଭେଙ୍କଟ୍ । ପେଟ ପୋଷ୍, ନାହିଁ ଦୋଷ–।

ଭସ୍ ଭସ୍ ରଡ଼ି ଛାଡ଼ି, ଝାଉଁବଣ ଓ ଆକାଶକୁ ଦି'ଖଣ୍ଡ କରି ଦୂରରେ ରେଲ୍‌ଗାଡ଼ିଟା ଚାଲିଗଲା । ନୋଳିଆ ବସ୍ତିରୁ ଦୁଇ ତିନି ମାଇଲ ଦୂରରେ ପୁରୀ ଷ୍ଟେସନ ଭେଙ୍କଟ୍‌କୁ ଖୁବ୍ ଭଲ ଲାଗିଲା । ତା' ପିଲାମାନେ ଭଲ ଜାଗାକୁ ଆସିଛନ୍ତି ଏକା । ସେମାନେ ଏଠି ନୂଆ ସଂସାର କରିବେ । ପୁରୁଣା ଯୁଗଟା ସାପର ଅଦରକାରୀ ଖୋଳପା ପରି ଏଥର ଫିଙ୍ଗି ଦିଆହେବ । ତା ସାଙ୍ଗର ବୁଢ଼ାମାନଙ୍କ ଭିତରୁ ଆଉ କେହି ନାହାନ୍ତି କହିଲେ ଚଳେ । ଯେଉଁ ଜଣେ ଦି'ଜଣ ଅଛନ୍ତି, ସେମାନଙ୍କ ଅବସ୍ଥା ବି ଠିକ୍ ତା'ରି ପରି । ବସିଲା ଜାଗାରୁ ଉଠି ପାରନ୍ତି ନାହିଁ । ହାତ ଗୋଡ଼ ଥରୁଚି । ଆଖିକୁ ଦିଶୁନି । ପାଚିଲା ପତ୍ର ପରି କେତେବେଳେ ଯେ ସେମାନେ ଝଡ଼ି ପଡ଼ିବେ, ଠିକଣା ନାହିଁ ।

ବାଲି ଉପରେ ଚିତ୍ ହୋଇ ଶୋଇ ଭେଙ୍କଟ୍ ଭାବିଲା – ତା ସ୍ତ୍ରୀ ଏଚାମା କଥା । ଏଚାମା ମରିବାର ତିନି ବରଷ ହୋଇଗଲା । ଏ ଯାଏଁ ଗୁରାୟା ବାହା ହେଲା ନାହିଁ । ବଡ଼ଝିଅ ପୁନ୍ନାମା କେତେମାସ ହେଲା ବାହା ହେବ ବୋଲି ଘରେ ରହିଲାଣି । ଏଚାମା ମଲାବେଳକୁ କହିଥିଲା, ଗୁରାୟାକୁ କର୍‌ଲା ସଙ୍ଗେ ବାହା କରିବ । ପୁନ୍ନାମାକୁ ଯାନି ସଙ୍ଗେ ବାହା କରିବ, କିନ୍ତୁ ଆଜିଯାଏଁ ଏଚାମାର ଭାବନା ସତ ହେଲା ନାହିଁ । ତାର ଆତ୍ମା ଏବେ ଆକାଶରେ ଛଟପଟ ହେଉଥିବ – ଦୁଃଖ କରୁଥିବ ଯେ ବଡେୟା ବାହା ହେଲା, ଗୁରାୟା ବାଡୁଅ ରହିଛି । କାମୁଡୁ ବାହା ହେଲା, ରାଜୁଲୁଆମାର ଦୁଇଟା ପିଲା ହେଲାଣି, କିନ୍ତୁ ପୁନ୍ନାମାର ବାହାଘର ଏ ଯାଏଁ ଠିକ୍ ହେଲା ନାହିଁ ।

ଭେଙ୍କଟ୍‌ର ଢେଗା ଢେଗା କୋରଡ଼ପଶା ଆଖି ଦି'ଟା ଓଦା ହୋଇଗଲା । ସତେ ତ । ଏଚାମା ମରିବାର ତିନି ତିନି ବରଷ ହେଲାଣି । ତାର ମଲାବେଳର ଇଚ୍ଛା ଆଜିଯାଏଁ ପୁରଣ ହୋଇ ପାରିଲା ନାହିଁ ।

ଧୂଆଁପତ୍ର ଖାଉ ଖାଉ ବୁଢ଼ା ଟିକିଏ ଢୁଳେଇ ପଡିଲା ।

ସମୁଦ୍ରର ଉଞ୍ଚା ଉଞ୍ଚା ଲହଡ଼ି ଭିତରେ ବଡେୟା ଓ ଗୁରାୟାଙ୍କ ଛୋଟ ପୋଡୁଅଟି- ନିଘଞ୍ଚ ଜଙ୍ଗଲରେ ବାଟହଜା ଶିଶୁଟି ପରି ସମୁଦ୍ରର ଅଥଳ ପାଣି ଉପରେ ପୋଡୁଅଟି ଉଠୁଛି, ପଡୁଛି-ଲହରୀର ଛନ୍ଦ ସଙ୍ଗେ ସଙ୍ଗେ ନାଚି ଯାଉଛି ଯେମିତି । ଗୁରାୟା ମନଟା ଖୁସ୍

ଅଛି । କାରଣ ଆଜି ସେମାନଙ୍କ ଭାଗ୍ୟ ଭଲ-ବହୁତ ମାଛ ପଡ଼ିଛି । ବେତବୁଣା ଖାଲୁଆଟିରେ ମାଛ ଭର୍ତ୍ତି-ବଲାରା (ଭେକ୍‌ଟା), ଓ୍ୱାଲା (ସମୁଦ୍ର ଚିଙ୍ଗୁଡ଼ି), ସାବାର୍ଲି (ଏକ ପ୍ରକାର ସାପୁଆ ମାଛ), ଉଂକ୍ରୁମ୍, ସାନ୍ଦାଓ୍ୱା (ଚାନ୍ଦି), କୋକ୍‌ଲି – ଏମିତି ଜାତିଜାତିକା ଛୋଟ ବଡ଼ ମାଛ । ଆଜି ସେମାନେ ସକାଳୁ ଭଲରେ ଅନୁକୂଳ କରି ଆସିଥିଲେ । ଠାକୁରାଣୀଙ୍କୁ ମୁଣ୍ଡିଆ ମାରିଥିଲେ । ସବୁ ମାଛତକ ବିକିଲେ ତିନି ଚାରି ଟଙ୍କା ହେବ । ଓଡ଼ିଶା ଦେଶରେ ମାଛ ଦାମ୍ ବେଶି । ପଲାସାରେ ବହୁତ ନୋଳିଆ ତେଣୁ ବହୁତ ମାଛ ମରେ । ଦାମ୍‌ଟା କମିଯାଏ । ଓଡ଼ିଶାରେ ସେମାନେ ବେଶି ରୋଜଗାର କରିପାରୁଛନ୍ତି – ଭଲରେ ରହୁଛନ୍ତି ।

ବଡେୟା ଓ ଗୁରାୟା ପୋଡୁଅର ଦୁଇ ପାଖରେ ବସି ଆହୁଲା ମାରୁଥାନ୍ତି । ନେଳି ନେଳି ସମୁଦ୍ର ପାଣି ଓ ଧଳା ଧଳା ଫେଣ କାଟି କାଟି ସେମାନେ କୂଳକୁ ଆସୁଛନ୍ତି । ଜଣାପଡୁଛି – ସତେ ଯେମିତି ସମୁଦ୍ରର ବିସ୍ତୃତି ଅସରନ୍ତି । ଯେତେ ଆହୁଲା ମାରିଲେ ବି ସେମାନେ ଯେଉଁଠି ଅଛନ୍ତି, ସେଇଠି । ଆଉ ଆଗକୁ ଆସିପାରୁ ନାହାନ୍ତି । ସେଇ ଗୋଟିଏ ଜାଗାରେ ଉଠୁଛନ୍ତି, ପଡୁଛନ୍ତି – ।

ସବୁ ଦିଗରୁ ଘୋଟି ଆସୁଚି ଅନ୍ଧାର । ସମୁଦ୍ର ପାଣିରେ ନାଲି ନାଲି ସିନ୍ଦୂରଗୁଡ଼ା ବୋଳିଦେଇ ସୂର୍ଯ୍ୟ-ଦେବତା ବୁଡିଗଲେଣି । ହେଇ, ସେପାଖେ ଉଙ୍କିମାରି ଅନାଉଚି ଛୋଟ ଜହ୍ନଟିଏ- ଅଗସ୍ତି ଫୁଲ ପରି ସରୁ, ବଙ୍କିମ । ସବୁଦିନେ ଏମିତି ଲୁଚକାଳି ଖେଳୁଥାନ୍ତି ସୂର୍ଯ୍ୟ ଓ ଚନ୍ଦ୍ର । ଜଣେ କଠୋର, ନୀରସ, ଅଗ୍ନିଶିଖା ପରି ଉତପ୍ତ; ଆଉ ଜଣେ ଶାନ୍ତ, ସ୍ନିଗ୍ଧ, ମାଆର ସ୍ନେହପରି ଶୀତଳ । ସେଇମାନଙ୍କ ଲୁଚକାଳି ଖେଳ ଫଳରେ ପୃଥିବୀକୁ ଆସେ ଦିନ ଓ ରାତି । ସେମିତି ବି ମଣିଷ ଜୀବନରେ ଆସେ ସୁଖ, ଦୁଃଖ । ଗୋଟିକ ପଛେ ଆଉ ଗୋଟିଏ ଗୋଡ଼ାଇଥାଏ । ସମୁଦ୍ରର ଲହଡ଼ି ସବୁ କୂଳରେ ଭାଙ୍ଗି ପଡ଼ିବା ପରି ସାହସୀ ମଣିଷ ନିକଟରେ ଦୁଃଖର ଲହଡ଼ିସବୁ ନଇଁ ପଡ଼େ । ମେହେନତି ମଣିଷ ପାଇଁ ଦୁନିଆର ଯେଉଁଠି ହେଲେ ଖାଦ୍ୟ ଥୁଆ ହୋଇଛି । ପଲାସାରେ ଖାଇବାକୁ ନ ମିଳିଲେ ଓଡ଼ିଶା ଅଛି । ଓଡ଼ିଶାରେ ନ ମିଳିଲେ ବଙ୍ଗଦେଶ ଅଛି ।

ଗୁରାୟା ଆହୁଲା ମାରୁଥାଏ, ଆଉ ଭାବୁଥାଏ କର୍‌ଲା କଥା । ପଥରରେ ତିଆରି ତାର ହାତ ଦୁଇଟା କଳ ଭଳି କାମରେ ଲାଗିଥାନ୍ତି – ଅଳସ ନାହିଁ, କ୍ଲାନ୍ତି ନାହିଁ । ମେଞ୍ଚାଏ ସମୁଦ୍ର ପାଣି ପଛକୁ ଫିଙ୍ଗି ଦେଲା ବେଳକୁ ପୁଣି ଆଉ ଗୋଟିଏ ଲହଡି ଆସି ପୋଡୁଅଟିର ବାଟ ଓଗାଳେ । ସେ ଲହଡ଼ିଟିକୁ ବାଟରୁ ହଟାଇଦେଲା ବେଳକୁ ଆଉ ଗୋଟିଏ – ଆଉ ଗୋଟିଏ – ଏମିତି ଲାଗିଥାଏ । ପିଲାଦିନୁ ଏଇ ଲହଡ଼ି ଭାଙ୍ଗିବାବେଳେ ନୋଳିଆ ପୁଅ ତା' ଅଲକ୍ଷ୍ୟରେ ବି ଜୀବନର ମୁହୂର୍ତ୍ତଗୁଡ଼ିକୁ ପଛକୁ ପକାଇ ଦେଇ ଆଗେଇ ଆସେ । ଶେଷକୁ ସେ ଦେଖେ ତା ଆଗରେ ମୃତ୍ୟୁର ସମୁଦ୍ର-ଏଡ଼େ ଭୟଙ୍କର-ପୁଣି ଏଡ଼େ ସୁନ୍ଦର !

ବଡେୟା କହିଲା, "ଆରେ, ବାବୁଠଉଁ ଜାଲ ମାଗି ଆଣିଚେ । ଆଗ ଗଲା ମାତ୍ରେ

ତାକୁ ମାଛ ଦେଇ ଆସିବା । ତାକୁ ଖୁସି ନ କଲେ ସେ ଆଉ ଦିନେ ଜାଲ ଦେବ ନାହିଁ । ବଡ଼ ଭଲ ବାବୁ, ନୁହେଁ ରେ ?"

ଗୁରାୟା ମୁଣ୍ଡ ଟୁଙ୍ଗାରିଲା । ନୋଳିଆ ବସ୍ତିଠାରୁ ରେଲ୍‌ୱେ କର୍ମଚାରୀମାନଙ୍କ କଲୋନୀ ବେଶି ଦୂର ନୁହେଁ । ବାଣୀଗୁପ୍ତ ଟି.ଟି.ସି.- ପୂର୍ବବଙ୍ଗରୁ ପଳାଇ ଆସି ଭାରତରେ ଚାକିରୀ କରିଛି । ସେ ଘରେ ତିନି ଚାରିଟା ଜାଲ ରଖିଛି । ନୋଳିଆମାନେ ବେଳେ ବେଳେ ତା'ଠୁ ଜାଲ ଆଣନ୍ତି । ଜାଲ ବାବତ୍ ତାକୁ ଦୁଇ ତିନିଟା ବଡ଼ ମାଛ ଦେବାକୁ ପଡ଼େ । ବାଣୀଗୁପ୍ତ ଭଲ ଲୋକ । ନୋଳିଆମାନଙ୍କର ସେ ବହୁତ ଉପକାର କରେ । କାରଣ ସେ ଭାବେ -- ତା'ରି ପରି ଆଶ୍ରୟ ନ ପାଇ ଦୂର ଜାଗାରୁ ଆସିଛନ୍ତି ଏଇ ନୋଳିଆମାନେ - ତା'ରି ଦେଶର ଭାଇ । ସେମାନଙ୍କୁ ଟିକିଏ ସ୍ନେହ ଆଦର ନ ଦେଖାଇଲେ ଗରିବ ନିରୀହ ମଣିଷଗୁଡ଼ିକ ସବୁଦିନେ ସହରୀ ପେଣ୍ଟ୍‌ପିନ୍ଧା ବାବୁମାନଙ୍କୁ ଡରୁଥିବେ ଯେ !

ତେଣୁ ବାଣୀଗୁପ୍ତ ନୋଳିଆମାନଙ୍କୁ ହିମ୍ମତ୍ ଦେଲା, "ଦେଖ, ତମେମାନେ ବହୁ ଦୂରରୁ ଏଠାକୁ ଆସିଛ । ଏଠି ମାଛ ମାରି ବଜାରରେ ବିକିବାକୁ କେହି ତୁମକୁ ମନା କରୁନାହିଁ । ହେଲେ, ଚୋରି କରିବ ନାହିଁ, ମଦ ଖାଇବ ନାହିଁ, ବାବୁମାନଙ୍କ କଥା ମାନି ଚଳିବ, ବୁଝିଲ ?"

ନୋଳିଆମାନେ କେବେ ଚୋରି କରନ୍ତି ନାହିଁ; କିନ୍ତୁ ମଦ ନ ଖାଇଲେ ସେମାନେ ଚଳିବେ କେମିତି ? ଦିନଯାକ ହାଡ଼ଭଙ୍ଗା ପରିଶ୍ରମ ପରେ ସଞ୍ଜବେଳକୁ ଟିକିଏ ଉଷୁମ ହାଣ୍ଡିଆ ମଦ - ସରଗର ଅମୃତ ଯେମିତି ! ଯାନି ସାଫ୍ ସାଫ୍ ବାଣୀଗୁପ୍ତକୁ କହିଦେଲା, "ଦେଖ୍ ବାବୁ, ଆମେ ଚୋରି କରିବୁ ନାହିଁ କେବେ । ଚୋରି କଲେ ଠାକୁରାଣୀ ଅନିଷ୍ଟ କରିବ ବୋଲି ଜାଣୁ । ହେଲେ, ମଦ ନ ଖାଇବା କଥା କହୁଚୁ ଯେ, ମଦ ନ ଖାଇଲେ ହାତ ଗୋଡ଼ ଚଳିବ କେମିତି ? ସମୁଦ୍ର ଲହଡ଼ି ସଙ୍ଗେ ଲଢ଼ିବୁ କେମିତି ? ସମୁଦ୍ର ନ ଗଲେ ପିଲା ମାଇପ ଉପାସ ମରିବେ ସିନା !"

ବାଣୀଗୁପ୍ତ ହସିଲା; "ଆରେ, ତୁମେ ସମୁଦ୍ର ନ ଯିବାକୁ ତୁମକୁ କେହି କହୁଚି କି ? ହେଲେ, ମଦ ଖାଇ ଯଦି କୌଣସି ଗଣ୍ଡଗୋଳ କର, ତେବେ ଜାଣିଥାଅ, ପୋଲିସ ଅଛି ।"

"ନାଇଁ ବାବୁ, ଆମେ ସେମିତି ଲୋକ ନୁହଁ" - ସମସ୍ତେ ଏକ ସଙ୍ଗେ କହିଲେ । ବାଣୀଗୁପ୍ତର ଡର, କାଳେ ମଦ ଖାଇ ନୋଳିଆମାନେ ରେଲ୍‌ୱେ କଲୋନୀରେ ଗଣ୍ଡଗୋଳ କରିବେ; କିନ୍ତୁ ସେମାନେ ଏଠାକୁ ଆସିବାର ମାସେ ହୋଇଗଲାଣି । କୌଣସି ଦିନ ସେପରି କିଛି ଘଟିନାହିଁ ।

ହେଇ, କୂଳ ଦେଖାଗଲାଣି । ଅନ୍ଧାରୁଆ ଅନ୍ଧାରୁଆ ଖୋପ ପରି ଦେଖା ଯାଉଛି ନୂଆ ନୋଳିଆ ବସ୍ତିର କୁଡ଼ିଆସବୁ । ଜୁଲୁଜୁଲିଆ ପୋକପରି ଆଲୁଅଟିମାନ ଜଳୁଛି । ଏଇ

ଆଲୁଅ ଭିତରୁ କେଉଁଟି ବଡେୟା ଘରେ ଜଳୁଥିବ – ଏଲାମା ପିଠି ଥାପୁଡ଼େଇ ଥାପୁଡ଼େଇ ତା' କୁନି ପୁଅକୁ ଶୁଆଇ ଦେଉଥିବ । କେଉଁ ଆଲୁଅଟି ଜଳୁଥିବ ଗୁରାୟା ଘରେ – ପୁନ୍ନାମା ଭାତ ରାନ୍ଧୁଥିବ, ବୁଢ଼ା ବାପା ଧୂଆଁ ପତ୍ର ଖାଉଥିବ, ଆଉ ସାନ ଭଉଣୀ ରାଜ୍‌ଜାମା ତା' ସାଥୀ ପିଲାଙ୍କ ସଙ୍ଗେ ଜହ୍ନକୁ ଦେଖି ଗୁଣୁ ଗୁଣୁ ହୋଇ ଗୀତ ଗାଉଥିବ ।

"ଆଜି ବହୁତ ଡେରି ହୋଇଗଲା ରେ –" ଗୁରାୟା କହିଲା ।

ସତକୁ ସତ ଜହ୍ନଟା କେତେ ଉପରକୁ ଉଠିଲାଣି । କୂଳ ଆଉରି ଅନେକ ବାଟ ଅଛି । ବଡ଼ ମାଛ ମାରିବେ ବୋଲି ସେମାନେ ବହୁତ ଦୂରକୁ ଚାଲିଯାଇଥିଲେ । କୂଳରୁ ତିନି ଚାରି ମାଇଲ ଗଲା ପରେ ପାଣିଟା ଟିକିଏ ସ୍ଥିର – କୂଳପରି ବଡ ବଡ ଢେଉ ଉଠେ ନାହିଁ । ସେଇ ଗଭୀର ପାଣିରେ ଭଲ ମାଛ ମରନ୍ତି । କୂଳରେ ଲହଡ଼ିଗୁଡ଼ାକ କେତେ ରଙ୍ଗରେ ନିଜକୁ ସଜେଇଥାନ୍ତି – କିନ୍ତୁ ଦୂରକୁ ଚାଲିଗଲେ ପାଣି ଦେଖାଯାଏ ଗାଢ଼ ନେଳି – ଯୁଆଡ଼େ ଚାହିଁବ ଖାଲି ନେଳି – ନେଳି ଆକାଶ, ନେଳି ସମୁଦ୍ର, ନେଳି ବି ଦେଖାଯାଏ ମଣିଷର ଦେହର ଚମଡ଼ା ।

ଅନ୍ଧାରର କାରାଗାର ଭିତରେ ସମୁଦ୍ରଟା ପୁରୁଣା କାଳର ଗୋଟାଏ ସରୀସୃପ ଭଳି ରଡ଼ି କରୁଛି । ଝାପ୍‌ସା ଦେଖାଯାଉଛି ଲହଡ଼ିଗୁଡ଼ାକ । ଠାଏ ଠାଏ ଧଳା ଧଳା ଲହଡ଼ି – ଦାନ୍ତ ଖିଙ୍କାରି ସମୁଦ୍ର ଯେମିତି ସେମାନଙ୍କୁ ଖତେଇ ହୋଇ ପଚାରୁଛି, "କିରେ ବଡେୟା, କିରେ ଗୁରାୟା, ତମର ମୋ' ଠାରେ କି କାମ ?"

ଦୂରରେ ଦେଖାଯାଉଛି ଆଉ ଗୋଟିଏ ମାଛମରା ସାନ ଡଙ୍ଗା (ତେପ୍‌ପା) । ପାଟିକଲା ଗୁରାୟା, "ସେ ଡଙ୍ଗାରେ କିଏ କିଏ ଅଛ ?" ଉତ୍ତର ଆସିଲା, "ଆମେ ତିନି ଲୋକ ଅଛୁ – ଯାନି, ଆରେୟା, ଜୋଲ୍‌ଦେଲା । ତମେ ଦି' ଜଣ ଗୁରାୟା, ବଡେୟା, ନୁହେଁ ରେ ?"

"ହଁ" – ଗୁରାୟା କହିଲା ।

ଡଙ୍ଗା ଦୁଇଟି ପାଖକୁ ପାଖ ଲାଗିଆସିଲା । କୂଳ ନିକଟ ହେଉଛି । କୂଳରେ ତିନି ଚାରିଲୋକ ଠିଆ ହୋଇ ସମୁଦ୍ର ଭିତରକୁ ଚାହିଁଲା ପରି ଦିଶୁଛି । ଯାନି କହିଲା, "ଏତେ ଡେରି ହୋଇଗଲା ଆଜି । ଆମ ଲୋକେ ମନରେ ଭୟ ପାଇବେଣି – କେଜାଣି, ନୂଆ ସମୁଦ୍ର – ତାର କି ପ୍ରକୃତି, କି ଇଚ୍ଛା କାହାକୁ ଜଣା ନାହିଁ । କ'ଣ ବିପଦ ପଡ଼ିଲା କି ?"

ସମସ୍ତେ ହସିଲେ । ସମସ୍ତଙ୍କ ମନ ଖୁସି ଅଛି – ବହୁତ ମାଛ ପଡ଼ିଛି । ଖାଲୁଆସବୁ ମାଛରେ ଭର୍ତ୍ତି । କୂଳଲୋକେ ସେମାନଙ୍କୁ ଦେଖି ପାରୁ ନଥିବେ । ତେଣୁ ସମସ୍ତେ ବଡ଼ ପାଟିରେ ଆରମ୍ଭ କରିଦେଲେ ଗୀତ – ଯେଉଁ ଗୀତଟା ବଡ଼ଜାଲ ପରବରେ ସମୁଦ୍ରକୁ ବଡ଼ଜାଲ ଗଲାବେଳେ ବୋଲା ହୁଏ । ଏ ଗୀତଟି ବୋଲି ନୋଳିଆ ପୁଅ ବଡଜାଲ ପରବର ସ୍ମୃତି ମନକୁ ଆଣେ –

ଏଲେ ରାମାନା, – ଏଲ୍‌ସା, ବେଲ୍‌ସା (ଢେଉ ଆସିଲାଣି,ଭିଡ ।)

ନାଲମାନ୍ଦୁ ପାଡଓ୍ୱା, ନାଗିରା - ବାବୁ - (ପ୍ରଥମ ଜଣକ ଅଫିମଖିଆ ଲୋକ ।)

ନାଗିନଡୁ - ନାଲଟଡୁ - ଏଲ୍‌ସା, ବେଲ୍‌ସା (ପ୍ରଥମ କଳା ଲୋକଟା ଆହୁଲା ଧରିଚି ।)

ନାମ୍ବା କି ନାଗରା, ଏଲ୍‌ସା, ବେଲ୍‌ସା (ଆହୁଲାଟା ଲମ୍ବା ପକାଇ ଟାଣ ।)

ମେଗୁମ୍ ଅସ୍ତାଦି, ବେଏଗି ପାଣ୍ଡି (ମେଘ ଆସିବ, ବେଏଗି ଚାଲ ।)

ମୁସୁରୁ ଅସ୍ତାଦି, ବେଏଗି ପାଣ୍ଡି (ଝଡ ଆସିବ, ବେଏଗି ଚାଲ ।)

ଏଅଳ ଗଣ୍ଣା ଓଡ୍‌ଡୁନେ ସସ୍ତନାଦି, ଏଲ୍‌ସା ବେଲ୍‌ସା (କାହା ଟୋକିଟା କୂଳରେ ଚାହିଁଚି ।)

ଆଗଣ୍ଡା ଦାଗିରେ ନାଦି ମାତି, ଏଲ୍‌ସା, ବେଲ୍‌ସା (ସେ ଟୋକିଠାରେ ମୋର ଶରଧା ।)

ବେଏଗି ପାଣ୍ଡି, ବେଏଗି ପାଣ୍ଡି - (ବେଏଗି ଚାଲ, ବେଏଗି ଚାଲ ।)

କୂଳରେ କ'ଣ ପାଟିତୁଣ୍ଡ ଶୁଭୁଛି । ସେମାନେ ସମସ୍ତେ ଭଲରେ ଭଲରେ ଫେରି ଆସିବା ଦେଖି ବନ୍ଧୁବାନ୍ଧବମାନେ ଖୁସିରେ ହଲ୍‌ଲା କରୁଛନ୍ତି ।

ମାଛମରା ଡଙ୍ଗାଦୁଇଟି ଘେନି କୂଳରେ ପହଞ୍ଚିଲେ ବଡେୟା, ଗୁରାୟା, ଯାନି, ଆରେୟା, ଜୋଲ୍‌ଦେଲା । ଦି'ଘଡ଼ି ରାତି ହେଲାଣି । ଆକାଶରେ ଗୋଟିଏ ଗୋଟିଏ ତାରା ସେମାନଙ୍କୁ ଜୁଳୁ ଜୁଳୁ ଅନାଇଲେ, ଆଖି ମିଟିକା ମାରିଲେ । ଝାଉଁଗଛର ଡାଳଗୁଡ଼ିକ ପବନରେ ଦୋହଲି ଦୋହଲି ସତେ ଅବା କହିଲେ, "ବହୁତ ଡେରି ହେଲାଣି । ଏତେବେଳ ଯାଏଁ କାହିଁକି ଫେରି ନଥିଲ ଆଜି ?"

ସମୁଦ୍ର ପବନ ଦେହରେ ଧକ୍‌କା ଦେଉଥିଲେ ବି ଗୁରାୟା ପୋଷ ପୋଷ ଝାଳରେ ବିଲ୍‌କୁଲ୍ ଜୁଡୁବୁଡୁ ଓଦା । ପୁନ୍ନାମା ଭାଇକୁ ସଂଖୋଳିବାକୁ ଆସି ମୁହଁ ଫୁଲାଇ କହିଲା, "କି'ରେ ଭାଇ, ତୁ ଏଡ଼େ ମନମୋଟିଆ ହେଲୁଣି । ବୁଢ଼ାବାପା ଘରେ ବ୍ୟସ୍ତ ହେଉଚି । ବେଏଗି ଫେରିଲୁନି କେଉଁଥିପାଇଁ ?"

"ବେଏଗି ଫେରିଥିଲେ ଏତେ ମାଛ କୁଆଡୁ ଆସିଥାନ୍ତାରେ ?" ଗୁରାୟା ମୁରବ୍‌ବି ଢଙ୍ଗରେ କହିଲା । ପୁନ୍ନାମା ଭାଇ ଖାଲୁଆକୁ ଚାହିଁ ଖୁସି ହୋଇଗଲା । ଖାଲୁଆରେ ଖାଲୁଆଏ ମାଛ – ଭେକ୍‌ଟା, ସାବାର୍ଲିଠାରୁ ଆରମ୍ଭ କରି କୋକ୍‌ଲି, ଚାନ୍ଦି ପର୍ଯ୍ୟନ୍ତ ଛୋଟ ବଡ଼ ଜାତି ଜାତିକା ମାଛ । ଛାଇଛାଇଆ ଜହ୍ନ ଆଲୁଅରେ ମାଛଗୁଡ଼ିକ ଦେଖା ଯାଉଥାନ୍ତି ଚିକ୍ ଚିକ୍ - ଶଙ୍ଖ ମଲମଲ ପଥରରେ ଗଢ଼ା କଣ୍ଢେଇ ପରି । କେତୋଟି ସମୁଦ୍ର ଚିଙ୍ଗୁଡ଼ି ମୁଣ୍ଡ ହଲାଉଥାନ୍ତି, ଲାଞ୍ଜ ହଲାଉଥାନ୍ତି । ନାଲି ନାଲି ଦିହ ଉପରେ କଳା କଳା ପଟା ପଟା ଗାର – ଲମ୍ୱା ଲମ୍ୱା ନିଶ ।

"ଏତେ ମାଛ ଆଣିଚୁ ଜାଣିଲେ ବାପ ଖୁସି ହେବ–" ପୁନ୍ନାମା କହିଲା ।

ମନେ ମନେ ଖୁସି ହେଲା ଗୁରାୟା । ଭାବିଲା, ଆଜି ଟିକିଏ ଭଲ କରି ହାଣ୍ଡିଆ ପିଇବ, କରଲା କଥା ଭାବିବ । ଗୁରାୟା, ବଡେୟା ଓ ଅନ୍ୟ ନୋଳିଆମାନେ ମିଶି ଡଙ୍ଗାଗୁଡ଼ିକୁ କୂଳକୁ ଆଣିଲେ । ମାଛ ସବୁ ଭାଗ ବଣ୍ଟା ହେଲା । ବଡେୟା ଓ ଗୁରାୟା ଏକ ସଙ୍ଗେ ମାଛ

ମାରି ଯାଇଥିଲେ । ତେଣୁ ଏହାର ଅଧେ, ତାର ଅଧେ । ଜାଲ ଝାଡ଼ି ଛୋଟ ଛୋଟ ମାଛସବୁ ସେମାନେ ଘରକୁ ନେଲେ – ତରକାରି କରିବା ପାଇଁ । ବଡ଼ ମାଛସବୁକୁ ଖାଲୁଆରେ ରଖି, ଖାଲୁଆକୁ କାନ୍ଧରେ ପକାଇ, ଧୂଆଁପତ୍ର ପିଇ ପିଇ ସେମାନେ ଚାଲିଲେ ବଜାରକୁ - ସମୁଦ୍ର କୂଳରୁ ମୁନିସିପାଲିଟି ବଜାରଟା ବେଜାଏ ବାଟ ।

ଧୂଆଁପତ୍ରର ନେଳି ନେଳି ବାମ୍ଫ ପରି ହାଲୁକା ଲାଗୁଥାଏ ଗୁରାୟାର ମନ । ତର ତର ହୋଇ ପାଦ ପକେଇ ମାଛ ବିକି ଗଲାବେଳେ ସେ ଗୁଣୁଗୁଣୁ ହୋଇ ଗୀତ ଗାଉଥାଏ । ତାକୁ ଜଣାପଡୁଥାଏ, ସତେ ଯେମିତି କର୍‌ଲା ତା ବାଟ ଓଗାଳି ଠିଆ ହେଉଚି – ପଛରୁ ତାଳି ମାରି ଡାକୁଚି । କହୁଚି, 'କି'ରେ, ତୋର ତ କାହିଁ ଦେଖା ନାହିଁ ଏବେ ?'

କର୍‌ଲା କଥା ଭାବିବାରୁ ବାଟ କଷ୍ଟ ଜଣାପଡ଼ିଲା ନାହିଁ । ମନକୁ ମନ ସେ ହସି ପକାଇଲା । କର୍‌ଲାଟା କେଡ଼େ ସୁନ୍ଦର ସତେ ! ହଳଦି ଲଗାଇଲା ପରି ଗୋରା ଦେହ ଜଡାତେଲବନ୍ଧା ଚିକି ଚିକି ଜୁଡ଼ାରେ ମେଞ୍ଚାଏ ମେଞ୍ଚାଏ ହଳଦିଆ ଆଇଁଷିକାତି ଫୁଲ – ଆଖି ଦି'ଟା ତୁଳିରେ ଗାର ଟାଣି ଦେଲା ପରି । ଆଜିକାଲି ଏଠାକୁ ଆସିବା ଦିନୁ ସେ ଆଉରି ସୁନ୍ଦର ଦେଖାଯାଉଚି । କେତେଥର ସେ ଲଗାଇଲାଣି ଗୁରାୟା ସଙ୍ଗେ – "ବାହାଘର କଥା ତୁ ଉଠାଉନାହୁଁ କାହିଁକି ? ତୋର ଆଉ କୋଉଠିକି ମନ ଗଲାଣି କି'ରେ ?"

ସବୁ ଝିଅମାନେ ଏମିତି ଅଭିମାନ କରନ୍ତି ।– ଗୁରାୟା ଭାବିଲା । – କର୍‌ଲା ବି ସେମିତି ଅଭିମାନ କରୁଚି । ହେଲେ କ'ଣ କରିବ ସେ ? ବୁଢ଼ା ବାପ ତ କାମକୁ ପାରୁନି । ଖାଲି ବସି ବସି ଗୁଣ୍ଡା ମାରୁଚି । ଝିଅ ଦି'ଟା ସିନା ଭାତ ରାନ୍ଧିବେ, ଘରକଥା ବୁଝିବେ, ମାଛରେ ଲୁଣ ଦେଇ ଶୁଖୁଆ କରିବେ, ସେମାନେ ତ ଆଉ ପୋତୁଅରେ ସମୁଦ୍ର ଭିତରକୁ ଯାଇ ମାଛ ମାରିବେ ନାହିଁ । ଭାଇ ଦି'ଟା ପିଲା । ସେମାନେ ଦଉଡି ବଲୁଛନ୍ତି, ଗାତରୁ କଙ୍କଡ଼ା ଧରୁଛନ୍ତି, ବାବୁମାନଙ୍କୁ ପଇସା ମାଗୁଛନ୍ତି । ହେଲେ, ସେମାନଙ୍କର କି ରୋଜଗାର ?

ପାଞ୍ଚ ପାଞ୍ଚଟା ମଣିଷଙ୍କ ଭାର ପଡୁଚି ଗୁରାୟା ଉପରେ । ସେ ଏକ୍‌ଲା ଲୋକ, କେମିତି ପାରିବ ? ପୁନ୍ନାମା ବାହା ହେଲାନି । ତାର ଆଣ୍ଡ୍ରୁ (ପ୍ରେମିକ) ଯାନି ଏବେ କୁଆଡ଼େ ତା ଭାଇକୁ କହିଲା, "ପୁନ୍ନାମା ପାଇଁ ଆଉ କେତେ ଅନାଇବି ? ସେଠି ନ ହେଲେ ଆଉ କୋଉଠି ବୁଝି ଦେ ।"

ଯାନି ଆଉ ପୁନ୍ନାମା ପାଖକୁ ଆସେ ନାହିଁ – ଯେମିତି ଆଗେ ଆସୁଥିଲା । ପୁନ୍ନାମାଠାରୁ ତାର ମନ ଛାଡ଼ିଗଲାଣି ।

ଗୁରାୟାର ଭାଗ୍ୟ ଉପରେ ରାଗ ହେଲା । ସେମାନେ ଗରିବ ହେଲେ କାହିଁକି ? – ବୁଢ଼ା ବାପଟା ବସି ବସି ଖାଇବ । ହେଲେ, ତାର କି ଦୋଷ ? ସେ ତ ସମୁଦ୍ର କୂଳର ଗୁଡ଼କଙ୍କ ପରି । କେତେବେଳେ ଟିକିଏ ପବନ ବହିଲେ ଉଡ଼ିଯିବ । ଆଉ ଝିଅ ଦି'ଟା ବା କ'ଣ ଦୋଷ କଲେ ? ଭାଇ ଦି'ଟା ତ ପିଲା ।

ଏମିତି ଭାବୁ ଭାବୁ ଗୁରାୟା ସ୍ୱପ୍ନ ଦେଖିଲା – ପୁନ୍ନାମା ଯାନିକୁ ବାହା ହୋଇଛି । କାଖରେ ଟିକି ପୁଅଟିଏ ଧରି ସେ ଗେଲ କରୁଚି – ତାକୁ ଜହ୍ନ ଦେଖାଉଚି । ଆଉ ସେ ନିଜେ ବି ବାହା ହୋଇଛି କର୍‌ଲାକୁ । ତାର ଛୋଟ କୁଡ଼ିଆ ଘରେ ପ୍ରଜାପତିଟିଏ ପରି ହସି ହସି ଗଡ଼ି ଯାଉଛି କର୍‌ଲା । ଗୁରାୟା ତା ପାଖକୁ ଗଲେ ସେ ପଳାଇ ଯାଉଛି ଦୂରକୁ – ଦୂରକୁ – ଅଭିମାନରେ, ଲାଜରେ । ଗୁରାୟା ତାର ପୂରିଲା ପୂରିଲା ବାହା ଦି'ଟା ଧରି ତାକୁ ପାଖକୁ ଟାଣି ଆଣୁଛି– ।

ଏଇ ସ୍ୱପ୍ନ ଦେଖୁ ଦେଖୁ ସେ ଆସି ପହଞ୍ଚିଲା ବଜାରରେ । ଯେଉଁଠି ମାଛ ବିକ୍ରୀ ହୁଏ, ସେଠାକୁ ଗଲା । ତାର ପରିଚିତ ଗୋଖା ସାହୁକାର ପର୍‌ଦେଶୀ ଚକା ପକେଇ ବସି ଆଉ କେତେଜଣ ନୋଳିଆଙ୍କ ଠାରୁ ତରାଜୁରେ ମାଛ ଓଜନ କରି ରଖୁଥାଏ । ଗୁରାୟାକୁ ଦେଖି ଠିଆ ହେବାକୁ ପର୍‌ଦେଶୀ ଆଖି ମାରିଦେଲା ।

ପର୍‌ଦେଶୀ ପରି ଆଉ କେତେଜଣ ବି ବସିଥାନ୍ତି ମାଛ ଗଦାଏ ଲେଖାଏଁ ଆଗରେ ଥୋଇ । ମାଛ ବିକିବା ପାଇଁ ସରକାର ଏବେ ଲମ୍ବା ଘର ତିଆରି କରି ବିଜୁଳି ଆଲୁଅ ଲଗାଇ ଦେଇଛି । ଭଣ ଭଣ ଆଇଁଷିଣିଆ ଗନ୍ଧ ହେଉଥିଲେ ବି ଗୁରାୟାକୁ ଘୃଣା ଲାଗିଲା ନାହିଁ । ମାଛଗନ୍ଧ ଶୁଂଘିବାରେ ତାର ନାକପୁଡା ଦି'ଟା ଅଭ୍ୟସ୍ତ । ବିଜୁଳିବତୀକୁ ଚାହିଁ ସେ ଭାବିଲା – ଏମିତି ଗୋଟିଏ ବତୀରେ ତ ତାଙ୍କ ନୋଳିଆ ବସ୍ତିଟା ଆଲୁଅ ହୋଇଯାନ୍ତା ! କେମିତି ବିଜୁଳି ଆଲୁଅ ଜଳୁଛି, ତାହା ବୁଝିବାକୁ ତାର ଶକ୍ତି ନଥିଲା । ବୋକାଙ୍କ ପରି ସେ ଚାରି ଆଡ଼କୁ ଅନାଇଲା ।

ପର୍‌ଦେଶୀର ଅଳ୍ପ ପାଖକୁ ଲାଗି ବୁଢ଼ୀଟିଏ ବସିଚି । ତା ଦେହରୁ ବି ବାହାରୁଚି ଆଇଁଷିଣିଆ ଗନ୍ଧ । କୋରଡ଼ପଶା ଆଖି ଦି'ଟା ଉପରକୁ ଟେକି ସେ ଧୀରେ ଧୀରେ ପାଟି କରୁଚି – "ହେ ବାବୁ, ତଟ୍‌କା ମାଛ ନେ । ଏଠି ଶସ୍ତା ପାଇବୁ ।" ଛୋଟ ଛୋଟ ନଈ ଚିଙ୍ଗୁଡ଼ି କେତୋଟି ବାଉଁଶିଆଟିରେ ଥୋଇଚି ବୁଢ଼ୀ । ମଝିରେ ମଝିରେ ବାଉଁଶିଆରୁ କେତୋଟି ଚିଙ୍ଗୁଡ଼ି ଆଣି ତଳେ ସିମେଟ ଚଟାଣ ଉପରେ ଖେଳେଇ ଥୋଉଛି – ସେଥିରେ ଟିକିଏ ପାଉଁଶ ଗୋଳେଇ ଦେଉଛି । ପାଟି କରୁଚି – "ଏଠିକି ଆ' ବାବୁ ।"

ଗୁରାୟା ଏଠିକି ନୂଆ ହୋଇ ଆସିଚି । ତାକୁ ଏଠି କେହି ଚିହ୍ନି ନାହିଁ । ତା'ର ପଲାସା କଥା ମନେ ପଡ଼ିଲା । ସେଠି ଏମିତି ହାଟ ନାହିଁ । ଏମିତି ବିଜୁଳି ଆଲୁଅ ତଳେ ବସି ସେମାନେ ମାଛ ବିକନ୍ତି ନାହିଁ । ଖାଲୁଆରେ ମାଛ ଧରି ପାଖ ଆଖ ଗାଁଆକୁ ଚାଲିଗଲେ ମାଛ ବିକ୍ରୀ ହୋଇଯାଏ । ଚଳନ୍ତା ଛବି ପରି ପରିଚିତ ଗାଁ' ସବୁ ଗୁରାୟାର ଆଖି ଆଗରେ ନାଚିଗଲା – ଧାଡ଼ି ଧାଡ଼ି ନାଲିମାଟି ଲିପା ଘର, ନଡ଼ିଆ ଗଛ, ପୋଖରୀ – ଚମକି ପଡ଼ିଲା ସେ । ସାହୁକାର ତା ଆଡ଼କୁ ଅନାଇ ପଚାରୁଛି, "କିରେ, ମାଛ ବିକିବୁ ନାହିଁ କି ?"

ସାହୁକାର ଗୁରାୟାର ମାଛସବୁ ଓଜନ କରି ନେଲା । ସେ ଓଜନର କୌଣସି ଅର୍ଥ

ବୁଝିଲା ନାହିଁ ଗୁରାୟା । ସବୁଦିନ ସେ ମାଛ ଆଣି ଏଇ ସାହୁକାରକୁ ଦିଏ । ସାହୁକାର ମାଛସବୁ ଓଜନ କରି କହିଲା, "ଆଜି ତିନିଟଙ୍କା ହେଲା ।"

ତିନିଟଙ୍କା !! ଗୁରାୟା ମନଟା କୁଣ୍ଢେମୋଟ ହୋଇଗଲା । ତିନିଟା ଧଳା ଧଳା ଚିକି ଚିକି ମୁଦ୍ରାକୁ ଅଣ୍ଟାରୁ ଓହଳିଥିବା ଜାଲୁଜାଲୁଆ ମୁଣାରେ ରଖି ସେ ସଉଦା କିଣିବାକୁ ବାହାରିଲା । ଗୋଖା ସାହୁକାର ଗୁରାୟା ଠାରୁ ମାଛ ନେଇ ସାରି ଅନ୍ୟମାନଙ୍କ ମାଛ ଓଜନ କରିବାରେ ଲାଗିଲା ।

ଗୁରାୟାର ଚିହ୍ନା ଲୋକ କେତେ ଜଣ ମାଛଧରି ଠିଆ ହୋଇଛନ୍ତି । ଖାଲୁଆଟିମାନ ଧରି ଠିଆ ହୋଇଛନ୍ତି ଯାନି, ସିମାଦ୍ରୀ, ରାମାନା – । ନୋଳିଆ ବସ୍ତିର ପ୍ରାୟ ସମସ୍ତେ ପର୍‌ଦେଶୀକୁ ମାଛ ବିକନ୍ତି । ପର୍‌ଦେଶୀ କାହା ସଙ୍ଗେ ମୂଲଚାଲ କରେନାହିଁ । ହାତରେ ତରାଜୁଟା ଧରି ସଞ୍ଜବେଳୁ ସେ ମାଛ ହାଟରେ ବସିଥାଏ । କାନରେ ସୁନା କୁଣ୍ଡଳ, ବେକରେ କଳାସୂତା, ନାକରେ ଛୋଟ ସୁନାଡିମ୍ବ, ଫୁରୁ ଫୁରୁ ମୁଣ୍ଡବାଳ । ଆଉଟା ଲୁହାରେ ତିଆରି ହାତଗୋଡ଼ । ସେ ପର୍‌ଦେଶୀ ସାହୁକାର ।

ବଜାରରୁ ସଉଦା କିଣିଲା ଗୁରାୟା – ଚାଉଳ, ତିନ୍ତୁଳି, ଲଙ୍କା, ଲୁଣ, ପିଆଜ, ଏମିତି କେତେ କ'ଣ । ଭୋଗେଇଟିରେ ସଉଦା ରଖି ମୁଣ୍ଡରେ ଥୋଇଲା । ଖାଲି ଖାଲୁଆଟି କାନ୍ଧରେ ଝୁଲାଇଲା । କେତେ ରାତି ହେଲାଣି, ସହରରେ ତ ରାତିଦିନ ସବୁବେଳେ ଗହଳ ଚହଳ ଲାଗିଥାଏ । ବସ୍ତିଟା ଗୁଡ଼ାଏ ଦୂର ।

ଫେରିବା ବାଟରେ ପୁଣି ସେଇ ସ୍ୱପ୍ନ – ପୁନ୍ନାମା ବାହା ହୋଇଚି ଯାନିକୁ । -ସେ ବାହା ହୋଇଛି କର୍‌ଲାକୁ । – ଏମିତି ସ୍ୱପ୍ନରେ ହିଁ ତ ମଣିଷର ଶାନ୍ତି ଥାଏ – ସେ ସ୍ୱପ୍ନ ସତ ହେଉ କି ମିଛ ହେଉ, କ୍ଷତି ନାହିଁ। ସମୁଦ୍ର କୂଳର ମଣିଷ ସମୁଦ୍ରକୁ ଚାହିଁ ଚାହିଁ ସ୍ୱପ୍ନ ଦେଖେ । ସମୁଦ୍ର ଲହଡ଼ି ପରି ସେ ସ୍ୱପ୍ନ ବାସ୍ତବତାର ବେଳାଭୂମିରେ ବିଲୀନ ହୋଇଯାଏ । ପୁଣି ଆସେ ନୂଆ ରୂପରେ – ସମୁଦ୍ରର ରଙ୍ଗପରି ଝିଲିମିଲି ସ୍ୱପ୍ନ । ଲହଡ଼ି ପରେ ଲହଡ଼ି ଆସେ – ତାର ଯେମିତି ବିରାମ ନାହିଁ, ସେମିତି ବି ବିରାମ ନାହିଁ, ମଣିଷ ମନରେ ଉଙ୍କି ମାରୁଥିବା ସ୍ୱପ୍ନର ।

ଫେରିଲା ଗୁରାୟା । କଳା ରାତି ଓ ପାଉଁଶିଆ ଜହ୍ନ ଆଲୁଅ ମିଶି କେମିତି ଗୋଟାଏ ଡର ଡର ଭାବ ମନରେ ଆଣୁଥାନ୍ତି । ସମୁଦ୍ରଟା ଗଡୁଚି ବାଲି ଉପରେ – ଗୋଟାଏ ବିରାଟ ଜୀବନ୍ତ ଦେହପରି । ତା'ର ବି ଯେମିତି ଇଚ୍ଛା ଅଛି, ଦୁଃଖ ଅଛି, ଆନନ୍ଦ ଅଛି– ଯେମିତି ତା କୂଳେ କୂଳେ ବସା ବାନ୍ଧିଥିବା ଟିକି ଟିକି ମଣିଷମାନଙ୍କର । ଅନ୍ଧାରରେ ସେ ଗର୍ଜନ ଛାଡୁଛି । ହାତଗୋଡ଼ କଚାଡ଼ି ଯେମିତି କହୁଛି – ଏ ଅନ୍ଧାରରୁ ମତେ ମୁକ୍ତ କର । ମୁଁ ଆଲୁଅରେ ରହିବାକୁ ଚାହେଁ ।

ସବୁଦିନେ ସମୁଦ୍ର ଗର୍ଜନ କରେ । ପଲାସା ଆଉ ପୁରୀ, ସବୁଠି ଶୁଭେ ସେଇ

ଗୋଟିଏ ପ୍ରକାର ଗର୍ଜନ । ସମୁଦ୍ରର ଭାଷା ମଣିଷ ବୁଝି ପାରେନା । ଗୁରାୟା ଭାବିଲା, ଏଇ ସମୁଦ୍ର ହିଁ ତା'ପାଇଁ ଖାଦ୍ୟ ସାଇତି ରଖିଚି ଭଣ୍ଡାରରେ । ସମୁଦ୍ରଟା ଦେଖିଲେ ଡର ଲାଗୁଛି ଆଜି । କଳା କଳା ପାଣି ଥରୁଚି - ଯେମିତି କ'ଣ ଗୋଟାଏ ଅଜଣା ଦୁଃଖରେ ତା'ର ହୃଦୟ ଫାଟି ଯାଉଛି । ଅନ୍ଧାର ଭିତରୁ ମାଡ଼ି ଆସୁଚି ଗୋଟାଏ ଗୋଟାଏ ଧଳା ଢେଉ-ସମୁଦ୍ର ଯେମିତି ଅନ୍ଧାର ଭିତରୁ ତାର ଦାନ୍ତ ଦେଖାଇ ମଣିଷକୁ ଖତେଇ ହେଉଚି । କହୁଚି - ମୋ କୂଳରେ ତୁ କିଏ ରେ, ପିମ୍ପୁଡ଼ି ?

ତଥାପି ମଣିଷ ସମୁଦ୍ରର ଛାତି ଚିରି ତା' ରକ୍ତରେ ଜୀବାଣୁ ପରି ପହଁରୁଥିବା ମାଛମାନଙ୍କୁ ଧରିଆଣୁଛି । ତା ଭଣ୍ଡାରରୁ ଚୋରି କରି ଆଣୁଛି ମଣି, ମୁକ୍ତା, ହୀରା । ସମୁଦ୍ର କୂଳେ ବସା ବାନ୍ଧି ସେ ସମୁଦ୍ରକୁ ଶାସନ କରୁଛି । ସମୁଦ୍ରର ଗର୍ଜନକୁ ସେ ଡରି ନାହିଁ । ତା'ର ବାପ ଅଜା ଭିତରୁ କେହି କେହି ହୁଏତ ହଜି ଯାଇଛନ୍ତି ସମୁଦ୍ର ଭିତରେ - ସମୁଦ୍ରର ଅଥଳ ପାଣି ଭିତରେ ହୋଇଛନ୍ତି ଗୋଟିଏ ବିନ୍ଦୁ । ସେମାନଙ୍କ ହାଡ଼ରେ ସମୁଦ୍ର ଭିତରର ପାହାଡ଼ ଉଞ୍ଚା ହୋଇଛି; ମାତ୍ର ଯା ବୋଲି ମଣିଷ କେବେ ସମୁଦ୍ରକୁ ଡରି ପଳାଇ ଯାଇନାହିଁ । ସମୁଦ୍ର ସଙ୍ଗେ ସେ ଲଢୁଛି - ଯୁଗେ ଯୁଗେ । ଗୁରାୟା ଭାବିଲା, ତା ବାପ ସମୁଦ୍ରରେ ମାଛ ମାରି ପେଟ ପୋଷୁଥିଲା, ଆଉ ଆଜି ସେ ବି ସେୟା କରୁଛି । ସମୟର ଥାକେ ଥାକେ ସେମିତି ତା'ର କେତେ ପୂର୍ବ ପୁରୁଷ ଏଇ ସମୁଦ୍ର ଭିତରକୁ ଡଙ୍ଗା ନେଇ ଖାଦ୍ୟ ଚୋରାଇ ଆଣି ବଞ୍ଚିଥିବେ, ପିଲା ମାଇପଙ୍କୁ ପୋଷିଥିବେ । ଯଦି କିଏ କଦବା ଚୋରି କରୁ କରୁ ଧରା ପଡ଼ିଥିବ, ତେବେ ପୁଲିସର ଘେରପରି ସମୁଦ୍ରର ବଡ଼ ବଡ଼ ଲହଡ଼ିସବୁ ତା ବାଟ ଓଗାଳିଥିବ; ଝଡ଼ ହୋଇଥିବ; ତୋଫାନ ବହିଥିବ; ଆଉ ସମୁଦ୍ର ଭିତରେ ସବୁଦିନ ପାଇଁ ବନ୍ଦୀ ହୋଇ ରହିଥିବ ସେ - ଅଥଳ ପାଣି ଭିତରେ ବୁନ୍ଦାଏ ଲୁଣିଆ ପାଣି ହୋଇ ।

ଗୁରାୟାର ମନେ ହେଲା, ସତେ ଯେମିତି ସମୁଦ୍ର ଭିତରୁ ହଳ ହଳ ଆଖି ଜୁଳୁ ଜୁଳୁ ହୋଇ ତା ଆଡ଼କୁ ଅନାଇଛନ୍ତି । - ସେ ଚିହ୍ନିଛି - ସେ ଆଖି ସବୁ ତା ପୂର୍ବପୁରୁଷମାନଙ୍କର । ସେମାନେ ମଲା ପରେ ଯେମିତି ସମୁଦ୍ରର ମାୟା ମମତା ଛିଣ୍ଡାଇ ପାରିନାହାନ୍ତି । ସେମାନଙ୍କ ସୂକ୍ଷ୍ମ-ଶରୀର ସତେ ଅବା ସମୁଦ୍ର ଲହଡ଼ି ସଙ୍ଗେ ଡେଇଁ ଡେଇଁ ଖେଳୁଛି, ସମୁଦ୍ର ମାଛ ଦେଖିଲେ ଧରିବାକୁ ଗୋଡ଼ାଉଛି, ସମୁଦ୍ର ବାଲିରେ ଲୋଟି ଯାଉଛି ହସି ହସି, ଝାଉଁ ବଣ ପବନରେ ଦେହ ଘଷିଲାପରି ସୁ-ସୁ ନିଃଶ୍ୱାସ ଛାଡୁଛି ।

ଦିନେ ଗୁରାୟା ବି ସେଇ ପୂର୍ବ ପୁରୁଷଙ୍କ ଆତ୍ମା ସହିତ ମିଶିବ । ଭେଙ୍କଟ୍ ଆଗେ, ଗୁରାୟା ପଛେ । ଏମିତି ତ ଚାଲିଛି ଦୁନିଆର ଲୁଚକାଳି ଖେଳ - କେଉଁ କାଳରୁ, କିଏ କହିବ ? ପୁରୁଣା ବାଲିବନ୍ତ ପବନରେ ହୋଇଛି ସମତଳ, ପୁଣି ବାଲି ଜମି ଜମି କେଉଁଠି ଗଢ଼ି ଉଠିଛି ନୂଆ ବାଲିବନ୍ତ । ସେ ବି ଦିନେ ସମତଳ ହୋଇଛି । ସେମିତି ଏ ମଣିଷ ଜୀବନ ।

ଘରେ ଭାତ ଦୋ'ଟି କେତେବେଲୁ ରାନ୍ଧି ପୁନ୍ନାମା ଅନାଇ ବସିଛି - ଭାଇ ଆସିନି । ସାନ ଭଉଣୀ ଓ ସାନ ଭାଇ ଦୁଇଟି ଶୋଇଲେଣି ନିଘୋଡ଼ ନିଦରେ- ଭେଙ୍କଟ୍‌କୁ ନିଦ ଲାଗିନି-ସେ ଆଖି ମୁଜି ଘାଲେଇ ପଡ଼ିଛି । ମଝିରେ ମଝିରେ ଉଠି ବିଳିବିଳେଇଲା ପରି ପଚାରୁଛି- "କିରେ ଝିଅ, ଭାଇ ଆଇଲା କି ?"

"ନା, ବାପା -" ପୁନ୍ନାମା କହୁଛି ।

ଖଣ୍ଡେ ଖଣ୍ଡେ ମଇଳା କନା ପକାଇ ପିଲାଗୁଡ଼ିକ ଶୋଇଛନ୍ତି । ସମୁଦ୍ର ଗର୍ଜନ ସଙ୍ଗେ ତାଳ ଦେଇ ସେମାନଙ୍କ ନାକପୁଡ଼ା ବି ଗର୍ଜନ କରୁଛି - ଛୋଟ ସମୁଦ୍ର ସାପ ସଁ ସଁ ହେଲାପରି । ଛୋଟ ଦୀପଟିଏ ଥୁଆହୋଇ ଆଲୁଅ ହେଉଛି ଯେତିକି, ଧୂଆଁ ଦେଉଛି ତା'ର ଦି'ଗୁଣ । ବୁଢ଼ା ବାପ ସନ୍ତରା ମଶିଣାଟା ଉପରେ ଭଙ୍ଗା ଅଦରକାରୀ ମାଦଳଟାଏ ପରି ଗଡୁଛି । ତା ପାଟିରୁ ଟୋପା ଟୋପା ଲାଳ ବହି ମଶିଣାରେ ଜମା ହେଉଛି । ସମୁଦ୍ର ପବନଟା ଭାରି ଦୁଷ୍ଟ, ବେଳେ ବେଳେ ସିସୁରି ମାରୁଛି ପୁନ୍ନାମାର କାନ ପାଖରେ - ସତେ ଅବା ଭାଇ ଆସିଲା । ବେଳେ ବେଳେ କାନ୍ଧ ଉପରେ ଦେଉଛି ମୃଦୁ ସ୍ପର୍ଶ - ସତେ ଯେମିତି ଯାନି ଆସିଛି ! ପୁନ୍ନାମା ବାହାରକୁ ଅନାଉଛି - ନୂଆ ନଈର କଳା ପାଣି ଉପରେ କ'ଣ ଗୋଟାଏ ଧଳା ଧଳା ଚିକି ଚିକି ଜିନିଷ ଭାସୁଚି । କେଉଁ ସାପର ମଣି କି କେଉଁ ଜନ୍ତୁର ଆଖି ହୋଇଥିବ ।

ଆଜି ନଈରେ ଗାଧୋଇଲାବେଳେ ଏର୍‌ରାପା କହୁଥିଲା, "ହଇରେ ସଙ୍ଗାତ, ଯାନି କୁଆଡ଼େ ଆମୁଜିକି ବାହା ହେବ ବୋଲି ମୋ ଭାଇ କହୁଥିଲା । ସତ କି ?" 'କେଜାଣେ' - କିଛି ନ ଜାଣିଲାପରି ଉତ୍ତର ଦେଇଛି ପୁନ୍ନାମା । ହେଲେ, ସେତିକିବେଳୁ ମନଟା ଭଲ ଲାଗୁନି - ମୁଣ୍ଡଟା ଭାରି ଭାରି ଲାଗୁଛି । ସବୁ ଝିଅମାନେ ସଞ୍ଜବେଳେ ଖୁସିଗପ କରୁଥିଲେ । ତାକୁ ଡାକିବାରୁ ସେ ମନାକଲା । ଏର୍‌ରାପା ତ ମିଛ କହି ନଥିବ । ସତରେ ଏବେ ଯାନି ତାଙ୍କ ଘରକୁ ଆସୁନାହିଁ । ଆଗେ ସବୁଦିନେ କିଛି ନା କିଛି ଗୋଟାଏ ବାହାନା କରି ସେ ତାଙ୍କ ଘରକୁ ଆସୁଥିଲା । ପଲାସାରେ ତ ଯାନି ସଙ୍ଗେ ସେ କେତେଥର ନିଛାଟିଆ ଜାଗାରେ ଗପ କରିଛି । ତା ହାତ ଧରି କହିଛି, 'ଯାନି, ମତେ କେବେ ଘରକୁ ନେଉଚୁ ରେ ?' ଯାନି ତା ମୁହଁ ପାଖକୁ ମୁହଁ ଲଗାଇ ଆଣିଛି ସ୍ନେହରେ, ଆଉ ତା କଅଁଳ ହାତ ପାପୁଲିକୁ ଚାପି ଧରି ଉତ୍ତର ଦେଇଛି, "ଖାଲି କ'ଣ ମୁଁ ଭାବିଲେ ହେବ କି ? ତୋ ବାପ ତ ସବୁବେଳେ ଦିନ ଗଡ଼ାଉଛି । କହୁଛି, ଏଇଲେ ଅଭାବ ପଡ଼ିଛି; ଆସନ୍ତା ଖରାମାସକୁ କରିବି ।"

ସତରେ ତା ବାପର ସବୁ ଦୋଷ । - ପୁନ୍ନାମା ଭାବିଲା । - ଦୁଇ ଦୁଇଟା ଖରା ଋତୁ ଗଲାଣି । ଗଲା ଖରା ମାସରେ ଆରେୟା ବାହା ହେଲା ଆପ୍‌ପାକୁ । ତା' ଆଗ ଖରାମାସରେ ବଡେୟା ବାହା ହେଲା ଏଲାମାକୁ; କାମୁଡୁ ଓ ରାଜୁଲୁଆମା ବି ବାହା ହେଲେ । ତା' ମା

ଝିଅକୁ ବାହା ଦେବାକୁ ବାପ ସଙ୍ଗେ କେତେ ଲଗାଇ ଲଗାଇ ମଲା । ମଲାବେଳକୁ କହିଗଲା, "ପୁନ୍ନାମାକୁ ଯାନି ସଙ୍ଗେ ବାହା କରିବ ।"

ପୁନ୍ନାମାର ଗତ ବଡ଼ଜାଲ ପରବ କଥା ମନେପଡ଼ିଲା । ଭାଇ ସମୁଦ୍ରରୁ ଫେରି ନଥାଏ । ଭାଇ ଯେଉଁ ଦଳରେ ଥିଲା, ସେ ଦଳଟା ସମୁଦ୍ର ଭିତରକୁ ବେଶି ଦୂର ଯାଇଥାନ୍ତି । ସେଦିନ କୁଆଁର ପୁନିଅଁ ଯେ କୁଲେଇ କୁଲେଇ ଜହ୍ନ ଆଲୁଅ ଅଜାଡ଼ି ହୋଇ ପଡ଼ିଥାଏ ସମୁଦ୍ରରେ, ବାଲି ଉପରେ - ସତେ ଯେମିତି ଗୁଡାଏ ଚିକି ଚିକି ହୀରା ଗୁଣ୍ଡ ସବୁଠି ଖେଳେଇ ହୋଇ ପଡ଼ିଛି । ସେ ଏକ୍‌ଲା ଘରେ ବସିଥିଲା । ଯତ୍ନକରି ମୁଣ୍ଡ ବାନ୍ଧି ସଫା ଲୁଗାଟିଏ ପିନ୍ଧି ବସିଥିଲା । ପଛରୁ ଆସିଲା ଯାନି । କହିଲା, "କିରେ ଟୋକି, ମନକୁ ମାରି ଏମିତି ବସିଚୁ କାହିଁକି ? ବାହାରକୁ ଆ' ।" କୃତ୍ରିମ ଅଭିମାନ କରି ସେ କହିଥିଲା, "ମୁଁ ଯିବିନି, ତୁ ଯା' ।"

ଯାନି ବଳାତ୍କାରରେ ତା ହାତ ଦି'ଟା ଟାଣିଆଣି ତାକୁ ବାହାରକୁ ନେଇଗଲା । ଜହ୍ନ ଆଲୁଅର ସମୁଦ୍ର ଭିତରେ ସେମାନେ ମିଶିଗଲେ - ଦୁଇଟି ଛୋଟ ଛୋଟ ରଙ୍ଗବେରଙ୍ଗ ମାଛ ପରି । କେତେ ଗପ, ଅଭିମାନ, ଲାଜସରମ-ସେସବୁ ଆଜି ସ୍ୱପ୍ନ ହୋଇଛି । - ସମୁଦ୍ରପାଣି ଉପରେ ଶୀତ ଦିନେ ଝୁଲି ରହୁଥିବା କୁହୁଡ଼ି ପରି ହୋଇଚି ଅସ୍ପଷ୍ଟ । ପାଉଁଶିଆ ଜହ୍ନ ଆଲୁଅ ପରି ସେ ସ୍ମୃତିସବୁ ଆଜି ମଳିନ ଦିଶୁଛି ।

ପୁଣି ବାହାରକୁ ଅନାଇଲା ପୁନ୍ନାମା । ଭାଇ ଆସୁଚି କି ? ଦୂରରେ କାହାର ଚାଲି ଦେଖାଯାଉଚି; ଜମାଟବନ୍ଧା ଅନ୍ଧାରରେ ତିଆରି ମୂର୍ତ୍ତିଟିଏ ଆଗକୁ ଆଗକୁ ଆସୁଚି । ଭାଇ ପରି ଚାଲି - ଦେହର ଗଢ଼ଣ । ପୁନ୍ନାମା ଡାକିଲା, "ବାପା, ଭାଇ ଆସୁଚି ।"

ବୁଢ଼ା ଶୋଇପଡ଼ିଲାଣି କେତେବେଳୁ । ଉତ୍ତର ଦେଲାନି । କୁଆଡୁ ମନଇଚ୍ଛା ପେଟେ ହାଣ୍ଡିଆ ମଦ ପିଇ ଢୁଲୁ ଢୁଲୁ ଆଖିରେ ଆସି ଠିଆ ହେଲା ଗୁରାୟା । ଗୋଡ଼ ଏତେ ତେଣେ ପଡୁଛି । ମୁଣ୍ଡ ଉପରୁ ସଉଦା ଭୋଗେଇଟା ଓ କାନ୍ଧରୁ ଖାଲି ମାଛ ଖାଳୁଆଟା ଘରର ଗୋଟାଏ କଣରେ ଲଥ୍‌କରି ଥୋଇଦେଇ ନବାବ୍ ଭଙ୍ଗୀରେ ଗୁରାୟା କହିଲା, "କ'ଣ ଅଛି, ଖାଇବାକୁ ଆଣ୍ ।"

ହାଣ୍ଡିଆ ମଦର ନିଶାରେ କ୍ରମେ କ୍ରମେ ଗୁରାୟାର ଚେତନା ହଜି ଆସୁଥିଲା । ଆଖି ଦୁଇଟିରେ ଜମିଯାଇଥିଲା ନିଦ । ହାତ ଗୋଡ଼ ସବୁ ଯେମିତି ହୁଗୁଳିଯାଇ ଦେହରୁ ଖଣ୍ଡ ଖଣ୍ଡ ହୋଇ ଭାଜି ପଡୁଥିଲା; ଆଉ ତାକୁ ସବୁ ଲାଗୁଥିଲା ହାଲୁକା ହାଲୁକା – ଯେମିତି ସେ ଯୁଗଯୁଗର ବନ୍ଧନରୁ ମୁକ୍ତ ହେଉଛି । ମୁଣ୍ଡ ଭିତରେ ତାର ଯେମିତି ଗୋଟାଏ ନଟୁ ଘିରି ଘିରି ବୁଲୁଥିଲା – କିଛି ମନେ ପଡୁ ନଥିଲା ତାର । ତାର ଯେମିତି ଅତୀତ ନାହିଁ, ଭବିଷ୍ୟତ ନାହିଁ; ଅଛି କେବଳ ବର୍ତ୍ତମାନ – ତାର ସ୍ଥିତି ପୁଣି କେବଳ ଘୂର୍ଣ୍ଣନରେ ! ଗୁରାୟାର ମୁଦି ମୁଦି ହୋଇ ଆସୁଥିବା ଆଖି ଦୁଇଟି ଆଗରେ ଦୁନିଆଟା ଘୂରି ଯାଉଥିଲା – ଘୁରୁଥିଲା ଝାପ୍‌ସା ଝାଉଁବଣ, ଅନ୍ଧାରି ସମୁଦ୍ର, ଉଚ୍ଚ ଉଚ୍ଚ ବାଲିବନ୍ତ, ଅର୍ଦ୍ଧବୃତ୍ତ ପରି ଆକାଶଟା ବି । ସେ ଯେମିତି ଏ ସବୁ ଘୂର୍ଣ୍ଣନର କେନ୍ଦ୍ରବିନ୍ଦୁ; ସେ ଯେମିତି ଏ ସୃଷ୍ଟିର ସବୁଠାରୁ ବଡ଼ ଚିଜ – ଏ ସୃଷ୍ଟି, ଏ ସମୁଦ୍ର, ଏ ଆକାଶ – କେବଳ ତା'ରି ପାଇଁ ।

କେତେବେଳେ ପୁନ୍ନାମା ତା ଆଗରେ ମାଟି ଥାଳିଆଟିରେ ଗରମ ବାମ୍ଫ ବାହାରୁଥିବା ଭାତ ଓ ଟାମଡ଼ା ଝୋଳ ଥୋଇଲା, କେତେବେଳେ ଯେ ସେ ଭାତ ଖାଇ ସମୁଦ୍ର ବାଲିରେ ତା ପୋଢୁଅ ଭିତରେ ଶୋଇବାକୁ ଗଲା, ସେକଥା ତାର ମନେ ନାହିଁ । ନିଦ ଭାଙ୍ଗିଲା ବେଳକୁ ପ୍ରଥମେ ସେ ଦେଖିଲା, – ତା ଉପରକୁ ଅଜାଡ଼ି ହୋଇପଡ଼ିବା ଠାଣିରେ ଅନାଇଚି କଳା ମିଚ୍ ମିଚ୍ ଆକାଶଟା – ଫାଳିକିଆ ଜହ୍ନଟା ଝାଉଁବଣରେ ଶାଗୁଆ ଚାଦର କାନିରେ ଆସ୍ତେ ଆସ୍ତେ ମୁହଁ ଲୁଚାଉଛି । ଉଠି ପଡ଼ିଲା ବେଳକୁ ତାର ମନେହେଲା, ଯେମିତି ଦୁନିଆ ସାରା ଅଗଣିତ ଦୀପାଳୀ ଜଳୁଛି – ଆକାଶରେ ପ୍ରତିଟି ତାରା ଗୋଟିଏ ଗୋଟିଏ ଆଲୁଅ – ବତୀ, ସମୁଦ୍ରରେ ବି କଳା କଳା କୁଞ୍ଚୁ କୁଞ୍ଚୁ ପାଣି ଭିତରେ ଠାଏ ଠାଏ ମେଞ୍ଚାଏ ଲେଖାଏଁ ଧୋବ ଫରଫର ଫେଣ – ଗୋଲ ଗୋଲ ଟର୍ଚ୍ଚ ଆଲୁଅ ପଡ଼ିବା ପରି । ଗୁରାୟା ଦେହରେ କ୍ଳାନ୍ତି ନାହିଁ, ମନରେ ଆଉ ଅବସାଦ ନାହିଁ । ସମୁଦ୍ର ପୁଣି ତାକୁ ଡାକୁଛି – "ଏଥର ମୋ କୋଳକୁ ଫେରି ଆ' ।

ସକାଳ ହେଲାଣି ।"

ଗୁରାୟା ଭାବିଲା, ଆଉରି ରାତି ଘଡ଼ିଏ ଅଛି । ବସ୍ତିଠାରୁ ଅଳ୍ପ କେତେ ଦୂରରେ ଥୁଆ ହୋଇଥିବା ପୋତୁଅ ଭିତରେ ବସି ସେ ଅନାଇଲା ଛୋଟ ଛୋଟ କୁଡ଼ିଆ ସବୁକୁ – ସମୁଦ୍ର ଜନ୍ତୁଗୁଡ଼ାଏ ଗୁରୁଣ୍ଡି ରହିଛନ୍ତି ଅବା ! ବସ୍ତି ସେମୁଣ୍ଡ ଠାକୁରାଣୀଙ୍କ କୁଡିଆପାଖେ ଲମ୍ବା ବାଉଁଶ ଉପରେ ବତୀଟିଏ ଜଳୁଛି – ମଲାମଣିଷର ବଡ଼ ଆଖିଟାଏ ପରି । କେଜାଣି କାହିଁକି ଗୁରାୟା ମନରେ ଡର ହେଲା ।

ବସ୍ତି ଭିତରେ ଗୋଟିଏ ଗୋଟିଏ କଳାଛାଇ ଏପଟ ସେପଟ ହେଉଥିବାର ଦେଖାଗଲାଣି । ବେଏଗି ବେଏଗି ପୋତୁଅ ନେଇ ମାଛ ମାରିଯିବା ନିତିଦିନିଆ କାମ । ଦିନ ସାରା ସମୁଦ୍ର ଢେଉରେ ପୋତୁଅ ଉପରେ ଉଠପଡ଼ ହୋଇ କଟିବ । ହାତ ଦୁଇଟି ଆହୁଲାରେ ସମୁଦ୍ର ପାଣି ପଛକୁ ଫିଙ୍ଗିବାରେ ଅଭ୍ୟସ୍ତ । ନୋଳିଆମାନେ ଡଙ୍ଗା ନେଇ ମାଛ ମାରି ବାହାରିଲେ ସେମାନଙ୍କ କଥାବାର୍ତ୍ତା, ସେମାନଙ୍କ ଗୀତରେ ସୂର୍ଯ୍ୟର ନିଦଟା ଭାଙ୍ଗିଯିବ । କେତେ ଉଛୁର ହୋଇଗଲା ଭାବି ଲାଜରେ ଲାଲ୍ ପଡ଼ି ସେ ଉଠି ପଡ଼ିବ । କାନ୍ଥରେ ଝୋଟି ଦେଲା ପରି ଆକାଶରେ ଲେଖି ହୋଇଯିବ କେତେ ରଙ୍ଗର ଚିତ୍ର – କେତେ ବର୍ଣ୍ଣ ଫୁଟିବ । ପ୍ରଥମେ ନାରଙ୍ଗି, ତା'ପରେ ଗାଢ ନାଲି, ତା'ପରେ ହଳଦିଆ, ଶେଷକୁ ଉଜ୍ଜ୍ୱଳ ଧଳା । ପ୍ରଥମେ ସୂର୍ଯ୍ୟ କିରଣ ଲାଗିବ ଦେହକୁ ସାଉଁଳେଇ ଦେଲା ପରି, ତା'ପରେ ଆସ୍ତେ ଆସ୍ତେ ଖରା ଟାଣ ହେବ – ଲୁହା ଛୁଞ୍ଚ ପରି ଫୋଡ଼ି – ହୋଇଯିବ ଦେହରେ । ଗୁରାୟା ସେଥିପାଇଁ ଡରିବ ନାହିଁ ।

ଗୁରାୟା ଭାବିଲା, ସୂର୍ଯ୍ୟ ଏଥର ଉଇଁବ । ତାର ଆଲୁଅ କଣା ସବୁ ବସାରୁ ଦଳ ଦଳ ଚଢେଇ ଉଡ଼ିଗଲା ପରି ଏଡ଼େ ବଡ଼ ଆକାଶରେ ବ୍ୟାପିଯିବେ । ତା'ପରେ ଢେଉଢେଉକା ସମୁଦ୍ର, ଖାଲଢିପ ବାଲିପଡ଼ିଆ, ଶୂନ୍‌ଶାନ୍ ଝାଉଁବଣ – ସବୁଠି ବହିଯିବ ସୂର୍ଯ୍ୟ ଆଲୁଅ – ସବୁ ଦେଖାଯିବ ଚିକ୍ ଚିକ୍ । ସକାଳୁ କେତେ ବାବୁ ସମୁଦ୍ର କୂଳେ ବୁଲି ଆସିବେ । ହେଇ, ଦୂରରେ ଗୋଟାଏ କିଏ ଚାଲିବା ପରି ଦିଶୁଛି । –ଧଳା ଧଳା ଜାମା ପେଣ୍ଟ୍ ପିନ୍ଧିଛି – ଅନ୍ଧାର ଭିତରେ ତାର ମୁହଁ ପାଦ ଦେଖାଯାଉନି – ଖାଲି ଦେଖାଯାଉଛି ଚଳନ୍ତା ଗୋଟାଏ ସରଳରେଖା ।

ହାତ ଗୋଡ଼ ଛାଟି ଗୁରାୟା ଅଳସ ଭାଙ୍ଗିଲା । ତା'ପରେ ବଡେୟାକୁ ଡାକିବାକୁ ଗଲା । ଅଳସୁଆଟା ଏତେବେଳ ଯାଏଁ ଉଠିନି କାହିଁକି ! ବଡେୟା ଘର ପାଖକୁ ଯାନି ଘର, ତା ପାଖକୁ ଜୋଲ୍‌ଦେଲାର । ଜୋଲ୍‌ଦେଲାର ଭଉଣୀ କର୍‌ଲା । ସେ ଶୋଇଥିବ ବୋଧେ । – ଭାବିଲା ଗୁରାୟା । ମନଟା କେମିତି କେମିତି ଲାଗିଲା । ମନ ଭିତରେ କିଏ ଯେମିତି ତାକୁ ମୁରବ୍‌ବୀ ଭଙ୍ଗୀରେ ପଚାରିଲା, "କର୍‌ଲାକୁ କେବେ ଘରକୁ ଆଣୁଛୁ ?"

ବଡେୟା ଘରକୁ ନଯାଇ ଜୋଲ୍‌ଦେଲା ଘର ଭିତରକୁ ଅନାଇଲା ଗୁରାୟା । ଜୋଲ୍‌ଦେଲା ଉଠି ବାହାରକୁ ଯାଇଛି । କର୍‌ଲା ମାଟି ହାଣ୍ଡିଟିରେ ମାଣ୍ଡିଆ କି ଚାଉଳ ଖୁଦ ଦି'ଟା ମାପି ରଖୁଛି । ଗୁରାୟା ଡାକିଲା, "କିରେ, ଆଜି ଏଡ଼େ ସହଳ କାମରେ ଲାଗିଗଲୁଣି ଯେ ?"

"ତୋ ଆଖିରେ କ'ଣ ନିଦ ନାହିଁ କି ? ସକାଳୁ ସକାଳୁ ଆମ ଘରକୁ ଆଇଲୁଣି ?" - ବାହାରକୁ ଆସି କର୍‌ଲା କହିଲା । ଅଭିମାନରେ ସେ ଗୁରାୟା ମୁହଁକୁ ଅନାଇଲା - ଥମ ଥମ ମେଘ ଖଣ୍ଡେ ଯେମିତି - ଟିକିଏ ଥଣ୍ଡାପବନ ହେଲେ ବରଷିଯିବ । କହିଲା, "ଦେଖ୍, ଗୁରାୟା, ଭାଇ କହୁଛି, ତୁ ଯଦି ମତେ ଶୀଘ୍ର ଘରକୁ ନ ନେବୁ, ତେବେ ସେ ଆଉ କୋଉଠି ମୋ ପାଇଁ ବୁଝିଦେବ । ତୁ ସକାଳୁ ସକାଳୁ ଆସିଛୁ, ସତ କରି କହ - କେବେ ମତେ ନେଉଚୁ ?"

"ଆସନ୍ତା ଖରା ମାସରେ ।" ଗୁରାୟା ସ୍ୱରରେ ଦୃଢ଼ତା ରଖି ଉତ୍ତର ଦେଲା । ହେଲେ, ମନରେ ଡର ହେଲା, ତା ଆଗରୁ ଯଦି ଜୋଲ୍‌ଦେଲା କର୍‌ଲା ପାଇଁ ଆଉ କେଉଁଠି ବୁଝିଦିଏ ! ଭାବିଲା, ଆଜି ସେ ଜୋଲ୍‌ଦେଲାକୁ ସବୁ ବୁଝାଇଦେବ । କହିବ ଯେ ତାର ଟିକିଏ ଅଭାବ ପଡିଛି । ହେଲେ, ସେ ଆଉ ଡେରି କରିବ ନାହିଁ । ଖରା ମାସକୁ ଯେମିତି ହେଲେ ବାହାଘରଟା ଛିଣ୍ଡିଯିବ ।

କର୍‌ଲାକୁ ଆଶ୍ୱାସନା ଦେଇ ଗୁରାୟା ଫେରିଲା । ବଡେୟା ତାକୁ ଯା ଭିତରେ ଘରେ ଖୋଜି ନ ପାଇବାରୁ ଟିକିଏ ଚିଡ଼ି ଯାଇଥିଲା । ଦେଖିବାରୁ କହିଲା, "ତୁ ସବୁଦିନେ ଏମିତି ବାହାରିଲା ବେଳେ ଡେରି କରୁଚୁ ଯେ ଫେରୁ ଫେରୁ ଉଛୁର ହେଉଚି ।"

ଗୁରାୟା ଦୁଃଖ କଲା, ସତରେ ଟିକିଏ ଡେରି ହୋଇଗଲାଣି । କେତେ ଖଣ୍ଡି ପୋତୁଅ ବାହାରିଗଲାଣି ସମୁଦ୍ରକୁ । ସୂର୍ଯ୍ୟ ନଇଁ ନଥିଲେ ବି ସଫା ଦେଖାଗଲାଣି ଅକାଶଟା । ବାବୁମାନେ ଦଳ ଦଳ ହୋଇ ବୁଲୁଛନ୍ତି ସମୁଦ୍ର କୂଳରେ । କିଏ ହାତରେ ବାଡ଼ି ଘୁରାଇ ଘୁରାଇ ବୀରଦର୍ପରେ ମାର୍ଚ୍ଚ କରି ଚାଲିଛି, କିଏ ତା ସ୍ତ୍ରୀ ସଙ୍ଗେ କଥାଭାଷା ହେଉ ହେଉ ସମୁଦ୍ର ଦେଖାଇ କ'ଣ ବୁଝାଉଛି, କିଏ ଧନୁପରି ବଙ୍କେଇ ଯାଇ ସିପ ଗୋଟାଉଛି କିମ୍ବା କଙ୍କଡ଼ା ଧରୁଛି - ସମସ୍ତେ କାମରେ ଲାଗିଛନ୍ତି । ନୀରବ ଭାଷାରେ ସମସ୍ତେ ଯେମିତି କହୁଛନ୍ତି - "କିରେ ଗୁରାୟା, ଆମେ ସବୁ କାମରେ ଲାଗିଗଲୁଣି । ତୁ କାହିଁକି ଉଛୁର କରୁଛୁ ?"

ଉଛୁର ନକରି ଡଙ୍ଗାଟାକୁ କୂଳକୁ ନେଇଗଲେ ଗୁରାୟା ଓ ବଡେୟା । ଦେହରୁ ପୋଷ ପୋଷ ଝାଳ ବହିପଡ଼ିଲା । ବାଟରେ ଖାଇବେ ବୋଲି ମାଟି ହାଣ୍ଡିଟିରେ ନେଲେ ମାଣ୍ଡିଆ ପେଜ ଟିକିଏ, ଶୁଖୁଆ ପୋଡ଼ା ଦି'ଟା, ପିଆଜ କେତୋଟି, ଲୁଣ ଓ ତେନ୍ତୁଳି କିଛି । ପିଇବା ପାଣି ବି ନେଲେ ଆଉ ଗୋଟିଏ ଜାଗାରେ । ମୁଣ୍ଡରେ ଦେଉଳ ପରି ଗୋଜିଆ ଗୋଜିଆ ଟୋପି ଲଗାଇ ସେମାନେ ପୋତୁଅଟି ଭସାଇ ଦେଲେ ସମୁଦ୍ର ଭିତରେ । ଲହଡ଼ିଗୁଡ଼ା ରାଗରେ ଆସି ସେମାନଙ୍କ ପୋତୁଅକୁ କୂଳରେ ଫିଙ୍ଗିଦେବାକୁ ଚେଷ୍ଟାକଲା-ଆହତ ଅଜଗର ପରି ଭୟଙ୍କର ଗର୍ଜନ କରି ମାଡ଼ି ଆସିଲା ଗୋଟାକ ପରେ ଗୋଟାଏ ଲହଡ଼ି । ତାଳଗଛ ଉଞ୍ଚା ଲହଡ଼ି ଉପରେ ସେମାନଙ୍କ ଟିକି ପୋତୁଅଟି - ଯେମିତି ଦୀପଗୁଖା ଉପରେ ପିମ୍ପୁଡ଼ି ! ପୋତୁଅ ଭିତରେ ପୁଣି ଛୋଟ ଛୋଟ ମଣିଷ ଦୁଇଟି - ଆଖି, କାନ, ନାକ କିଛି ଦେଖାଯାଉନି - ଖାଲି ମଣିଷର ଛାଞ୍ଚ ଦୁଇଟି !

କୂଳ ସହିତ ପ୍ରଥମେ ଏକ ସୂକ୍ଷ୍ମକୋଣ କରି ପୋତୁଅଟିକୁ ଭିତରକୁ ନେଲେ ସେମାନେ; କାରଣ ଏପରି କଲେ କୂଳର ବଡ଼ ବଡ଼ ଲହଡ଼ି ଭାଙ୍ଗିବା ସୁବିଧା । ମାଳ ମାଳ ପୋତୁଅ ସମୁଦ୍ରର ଦୂପେଲି ଢେଉରେ ଭାସୁଥାଏ । ସବୁ ପୋତୁଅର ଗଢ଼ଣ ଏକାପରି – ପ୍ରତି ପୋତୁଅ ଭିତରେ କେତୋଟି ମଣିଷ । ଆହୁଲା ଖଣ୍ଡିଏ ଖଣ୍ଡିଏ ଧରି ସମସ୍ତେ ସମୁଦ୍ରର ଦେହଟାକୁ କ୍ଷତବିକ୍ଷତ କରିବାକୁ ଚେଷ୍ଟା କରୁଥାନ୍ତି । ତଥାପି ସମୁଦ୍ର ଯେମିତି, ସେମିତି । ସବୁବେଳେ ତାର ପରିପୂର୍ଣ୍ଣ ସ୍ୱାସ୍ଥ୍ୟ – ଯୌବନର ଉଚ୍ଛଳ ଲହରୀ ! ମଣିଷ ପୋତୁଅ ନେଇ ଗଲାବେଳେ ତା ଛାତିରେ ପକାଇଦିଏ ଟିକି ଗାରଟିଏ – ମାତ୍ର ଦୁଃଖୀର ହସପରି ସେ ଗାରଟି ବେଶି ବେଳ ରହେ ନାହିଁ । ପୁଣି ସମୁଦ୍ରର ଜଳରାଶି ହୋଇଯାଏ ସମତଳ, ଅଳ୍ପ ସମୟ ପୂର୍ବେ ଯେପରି ଥିଲା ।

ଗୀତର ଲହରୀ ପରି ଉଠୁପଡ଼ ହୋଇ ଗୁରାୟା ଓ ବଡେୟାର ପୋତୁଅଟି ସମୁଦ୍ର ଭିତରକୁ ଭିତରକୁ ଚାଲି ଯାଉଥାଏ । କୂଳ ଦେଖାଯାଉଥାଏ ଅଥଳ ପାଣି ଭିତରେ ଦ୍ୱୀପଟିଏ ଯେମିତି ! ଦ୍ୱୀପ ଉପରେ ଚଳପ୍ରଚଳ କେତୋଟି ମଣିଷ ଓ ପୁଞ୍ଜାଏ ଦି'ପୁଞ୍ଜା କୁଡ଼ିଆ ଘର । ଏଇ ତ ସେମାନଙ୍କ ପୃଥିବୀ । ଗଛଡାଳରେ ଚଢ଼େଇଙ୍କ ବସା ଭଳି ସେମାନଙ୍କର ଟିକି ଟିକି ଘରଗୁଡ଼ିକ ! ସକାଳୁ ଚଢ଼େଇ ଉଡ଼ିଯାଏ ଆହାର ପାଇଁ, ଦିନସାରା ଆହାର ଖୋଜି ସଞ୍ଜକୁ ବସାକୁ ଫେରେ । ପୁଣି ସକାଳୁ ଉଡ଼ିଯାଏ ଆକାଶକୁ । ଗୁରାୟା ଭାବିଲା, ସେମାନେ ତ ଆକାଶର ଚଢ଼େଇ ପରି । ସକାଳୁ ଆହାର ଖୋଜି ଯିବେ ସମୁଦ୍ରକୁ – ସଞ୍ଜକୁ ଫେରି ଆସିବେ । ମଣିଷ ଓ ଚଢ଼େଇ ଭିତରେ ତଫାତ୍‌ଟା କେଉଁଠି ?

ନାଲି ଟହ ଟହ ଗୋଟାଏ ଖୁବ୍ ବଡ଼ ପାଚିଲା ବିଲାତି ବାଇଗଣ ପରି ସୂର୍ଯ୍ୟଟା ଭାସୁଛି ସମୁଦ୍ରପାଣି ଉପରେ । କହୁଛି – "ମୁଁ ଏଇଠି ଅଛି, ମତେ ଛୁଇଁ ପାରିବୁ ?" ପୋତୁଅଟା ଯେତେ ଯେତେ ଭିତରକୁ ଯାଉଛି, ସୂର୍ଯ୍ୟଟା ବି ଦୂରକୁ ଦୂରକୁ ପଳାଉଛି ସେତିକି । ଚଢ଼େଇ କୋଡୋଟି ପବନରେ ଉଡୁଛନ୍ତି ବୃତ୍ତାକାର କ୍ଷେତ୍ରରେ – ଉଡ଼ାଜାହାଜ ପଡ଼ିଆରେ ଓହ୍ଲାଇବା ଆଗରୁ ଯେମିତି ଉଡ଼େ । ବେଳେ ବେଳେ ଚଢ଼େଇଟା ଏ ସମୁଦ୍ର ପାଣିରୁ ଝାମ୍ପି ନେଉଛି ଗୋଟାଏ ମାଛ – ଦୂରକୁ ଉଡ଼ିଯାଉଛି – ପୁଣି ଖୋଜୁଛି ନୂଆ ଶିକାର । ସମୁଦ୍ରଟା ଟିକିଏ ଅନ୍ୟମନସ୍କ ହେଲେ ଟିକି ଚଢ଼େଇଟା ବି ତା ଭଣ୍ଡାରରୁ ଚୋରୀ କରିପାରୁଛି ।

ନୋଳିଆମାନେ ଜାଲ ପକାଉଛନ୍ତି । ଛକାପଂଝା ଖେଳ ଲାଗିଛି ମାଛ ଆଉ ମଣିଷ ଭିତରେ । ମଣିଷ ଚାହୁଁଛି, ମାଛକୁ ଜାଲରେ ବାନ୍ଧି ରଖିବ । ମାଛ ମଣିଷକୁ ବୋକା କରି ଜାଲରୁ ଖସି ତାର ଘର ସମୁଦ୍ରର ସେଇ ଅଥଳ ପାଣିରେ ଛପି ଯିବାକୁ ଚାହୁଁଛି । କେତେ ମାଛ ଖସି ଯାଉଛନ୍ତି – କେଉଁଟା ଜାଲ ଭିତରୁ, କେଉଁଟା ଜାଲ ଟେକୁ ଟେକୁ – କେଉଁଟା ବା ଡେଇଁ ପଳାଉଛି ଡଙ୍ଗା ଭିତରୁ, ତାର ଭାଗ୍ୟ ଟାଣ ଅଛି । ଜାଲରେ ଖାଲି ମାଛ ପଡୁନାହିଁ– କେତେ ନୂଆ ନୂଆ ଜୀବ ବି ପଡୁଛନ୍ତି । ବେଳେବେଳେ ପାଳ ଦଉଡ଼ି ପରି ସାପ ଗୋଟାଏ ଦି'ଟା ବି ଧରା ଦେଉଛନ୍ତି ଜାଲରେ । କେବଳ ମାଛତକ ଖାଲୁଆରେ ରଖି ଆଉମାନଙ୍କୁ ମୁକ୍ତି ଦେଉଛି

ମଣିଷ । ସତେ ଅବା ମାଛମାନେ ହିଁ ମଣିଷର ଶତ୍ରୁ । ମଣିଷକୁ କ୍ଷତବିକ୍ଷତ କରି ମଣିଷର ସର୍ବନାଶ ଘଟାଇ ସେମାନେ ଆସି ସମୁଦ୍ର ପାଣିରେ ଲୁଚିଛନ୍ତି । ମଣିଷ ସେମାନଙ୍କୁ ଗୋଡ଼ାଇ ଗୋଡ଼ାଇ କଳେ ବଳେ କୌଶଳେ ହତ୍ୟା କରୁଛି । ସେ ଏତେ ବେଶି ପ୍ରତିହିଂସାପରାୟଣ ହୋଇପଡ଼ିଛି ଯେ ସେମାନଙ୍କ ରକ୍ତ ପିଉଛି, ମାଂସ ଖାଉଛି, ଏପରି କି ହାଡ଼ ବି । ମାତ୍ର ଅନ୍ୟ ଜୀବମାନେ ସରଳ, ନିରୀହ । ସେମାନେ ମଣିଷର କ୍ଷତି କରିନାହାନ୍ତି । ତେଣୁ ମଣିଷ ସେମାନଙ୍କୁ ମୁକ୍ତ କରି ଦେଉଛି । ସେମାନେ ଶତ୍ରୁଦଳର ନୁହନ୍ତି । ସେମାନେ ନିରପେକ୍ଷବାଦୀ ।

ସବୁଠି ଏମିତି ଖେଳ ଲାଗିଛି – ଲାଗିଛି ଜୀବନ ସଂଗ୍ରାମ । ଯିଏ ବଳୁଆ, ସିଏ ଆଉ ପାଞ୍ଚଟା ପ୍ରାଣୀଙ୍କ ରକ୍ତ ପିଇ ବଞ୍ଚୁଛି । ଏ ପୃଥିବୀରେ ସ୍ନେହ ସହାନୁଭୂତି ନାହିଁ; ଯଦି ବା ଅଛି, ଖାଲି ଗୋଟାଏ ପୁରୁଣା ପ୍ରଥାପରି ରହିଛି । ତାର କୌଣସି ଲୋଡ଼ା ନାହିଁ । ମଣିଷ ସମୁଦ୍ର ଭିତରେ ପଶି ମାଛ ଖୋଜୁଛି । କାରଣ ସେ ଜାଣେ ଯେ ମାଛ ଦୁର୍ବଳ ଜୀବଟିଏ । ମଣିଷ-ବାହିନୀ ସଙ୍ଗେ ଲଢ଼ିବାକୁ ତାର ଶକ୍ତି ନାହିଁ । ସେମିତି ଲାଗିଛି ଜୀବଜଗତରେ, ଉଦ୍‌ଭିଦ ଜଗତରେ, ବସ୍ତୁଜଗତରେ । କଙ୍କି ଝଡ଼ିପୋକ ଖାଉଛି; ବେଙ୍ଗ କଙ୍କି ଖାଉଛି; ସାପ ଖାଉଛି ବେଙ୍ଗକୁ; ଆଉ ସାପ ପଛକୁ ଛକି ପାଟି ପାକୁ ପାକୁ କରୁଛି ନେଉଳ । ବଡ଼ଗଛଟା ସାନଗଛକୁ ଛାଇ କରି ଉପରକୁ ଉପରକୁ ବଢ଼ି ଚାଲିଛି । ସାନଗଛଟିକୁ ମିଳୁନାହିଁ ସୂର୍ଯ୍ୟ ଆଲୁଅ, ଖୋଲା ପବନ, ବର୍ଷା ପାଣି । ସେ ଅକାଳରେ ଶୁଖି ଯାଉଛି । ଯେଉଁ ବସ୍ତୁର ଶକ୍ତି ବେଶି, ସେ ଅନ୍ୟ ବସ୍ତୁକୁ ଗ୍ରାସ କରୁଛି । ଲୁଣିପବନ କ୍ଷୟ କରି ଲାଗିଛି ସମୁଦ୍ର କୂଳର ଏଡ଼େ ଏଡ଼େ କୋଠା ଘରକୁ; ପୋଖରୀର ଜଳ କ୍ଷୟ କରି ଲାଗିଛି କୂଳର ମୃତ୍ତିକାକୁ – ସବୁଠାରେ ସେଇ ଏକାକଥା । ବଞ୍ଚିରହିବାକୁ, ଅନ୍ୟ ଉପରେ ନିଜର କର୍ତ୍ତୃତ୍ୱ ଜାରି କରିବାକୁ, ସବୁଠାରେ ଅଦମ୍ୟ ବ୍ୟାକୁଳତା !

ତେଣୁ ବଞ୍ଚି ରହିବାକୁ ସମୁଦ୍ର ଢେଉ ଡେଇଁ ଡେଇଁ ମାଛମାନଙ୍କୁ ଗୋଡ଼ାଇଛନ୍ତି ଗୁରାୟା ଓ ବଡେୟା । ସେମାନଙ୍କର ସବୁ ବୁଦ୍ଧି ଖର୍ଚ୍ଚ କରି ସେମାନେ ସମୁଦ୍ର ପାଣିରୁ ଛାଣି ଆଣୁଛନ୍ତି ଟିକି ଟିକି ଜୀବଗୁଡ଼ିକୁ । ସେମାନଙ୍କ ମନରେ ଦୟା ନାହିଁ – ସେମାନଙ୍କ ହୃଦୟ ଡିନାମାଇଟ୍ ପରି ଟାଣ । ସେମାନେ ସମୁଦ୍ରକୁ ଡରନ୍ତି ନାହିଁ; ଡରନ୍ତି ନାହିଁ ଖରା, ବର୍ଷା, ଶୀତ, ଝଡ଼ ତୋଫାନକୁ । ସେମାନଙ୍କ ବାପ ଅଜା ଭିତରୁ କେହି କେହି ହୁଏତ ଏଇ ସମୁଦ୍ରରେ ସମାଧି ପାଇଛନ୍ତି; ମାତ୍ର ସେମାନେ ଛାନିଆ ହୋଇ ପଳାଇ ଯାଇନାହାନ୍ତି ଦୂରକୁ । କାଉଁରିଆ କାଠି ଭାଙ୍ଗିଯାଏ ସିନା ନଏଁ ନାହିଁ । ସମୁଦ୍ର ସଙ୍ଗେ ଲଢୁଥିବା ମଣିଷ କାଉଁରିଆ କାଠିପରି । ତାକୁ ସମୁଦ୍ର ହତ୍ୟା କରିପାରେ; ତାର ହାଡ଼ମାଉଁସ କେତେ ପଳକୁ ଛିନ୍‌ଛତର୍ କରି ବାଲି ଉପରେ ଫିଙ୍ଗି ଦେଇପାରେ; ତାକୁ ଚଟଣି ପରି ପାଟିରେ ପକାଇ ହଜମ୍ କରିଦେବାକୁ ହୁକୁମ୍ ଦେଇପାରେ ତିମି ବା ଅନ୍ୟ କୌଣସି ପ୍ରାଣୀଙ୍କୁ; ମାତ୍ର ମଣିଷକୁ ସେ ଡରାଇ ପାରିବ ନାହିଁ । ସବୁଦିନେ ଛାତି ଫୁଲାଇ ଗୁରୟା ଓ ବଡେୟା ପରି ଟିକି ଟିକି କଳା କଳା ମଣିଷ ସମୁଦ୍ର ଭିତରେ ପଶି ଆହାର ସଂଗ୍ରହରେ ଲାଗିଥିବେ ।

ଶୀତ ଦିନେ ମାଛ ମରେ ଭଲ । ସମୁଦ୍ର ପାଣି ସ୍ଥିର ଥାଏ । ତେଣୁ ମାଛମରା ଡଙ୍ଗାସବୁ ବେଶି ଦୂରକୁ ନେଇହୁଏ । ହେଲେ, ଖରାଦିନେ ବେଶି ଦୂରକୁ ଯାଇହୁଏନି । ବର୍ଷାଋତୁଟା ତ ସହଜେ ନୋଳିଆମାନଙ୍କ ଶତ୍ରୁ । ଦିନ ଦିନ ଧରି ଝଡ଼ିବର୍ଷା ଲାଗି ରହିଲେ ସେମାନଙ୍କ ଅସୁବିଧା କହିଲେ ନସରେ । ପିମ୍ପୁଡ଼ି ଗାତରେ ଲୁଚିଲା ପରି ଛୋଟ ଛୋଟ କୁଡ଼ିଆ ଘରଟିମାନଙ୍କରେ ଜାକିଜୁକି ହୋଇ ବସିଥାନ୍ତି ପଂଝା ପଂଝା ମଣିଷ । ସମୁଦ୍ରଟା ଦିଶୁଥାଏ ଭୟଙ୍କର । ସତେ ଯେମିତି ପ୍ରଳୟର ସମୟ ଆସି ପହଞ୍ଚିଗଲାଣି । ଆକାଶରେ ଲଦି ହୋଇଥାଏ ଥାକ ଥାକ ମେଘ । କଳା ନେଳି ମିଶା ମେଘ ସବୁ ମଲ୍ଲଯୁଦ୍ଧ ଲଗାନ୍ତି । ପ୍ରକାଣ୍ଡ ପ୍ରକାଣ୍ଡ ଲହଡ଼ିମାନ ସବୁବେଳେ ସେମାନଙ୍କୁ ଡରାଉଥାନ୍ତି । ସମୁଦ୍ର ରଡ଼ି କରୁଥାଏ – "ମୋ କୂଳରେ କିଏ ତମେମାନେ ? ଦେଖିବ, ମୁଁ ତମର କ'ଣ କରିପାରେ ? ଜାଣିଚ ମୋର ଶକ୍ତି ?"

ବର୍ଷାଦିନକୁ ଭାରି ଡର ନୋଳିଆ ପୁଅର । ବେଳେ ବେଳେ ସମୁଦ୍ର ପାଣି ସେମାନଙ୍କ ବସ୍ତିର ଖୁବ୍ ପାଖକୁ ଲାଗିଆସେ । ପୁରୋହିତ ମାସାନି ଭୂଇଁରେ ମୁଣ୍ଡ ଲଗାଇ ପ୍ରାର୍ଥନା କରେ, "ହେ ସମୁଦ୍ର ମାତା, ଆମେ ତୋ'ରି ପିଲାକବିଲା । ତୁ ଆମକୁ ଖାଇବାକୁ ଦେଉଛୁ; ପିନ୍ଧିବାକୁ ଦେଉଛୁ । ତୋ' କୂଳରେ ଆମେ ଟିକେ ଆଶ୍ରା ପାଇଛୁ । ତୁ ଆମକୁ ନିରାପଦରେ ରକ୍ଷା କର । ବର୍ଷାଦିନ ଗଲେ ତତେ ଆମେ କୁକୁଡ଼ା ବଳି ଦେବୁ, ମେଣ୍ଢା ବଳି ଦେବୁ, ଛେଳି ବଳି ଦେବୁ । ତୁ ଆମର ମାତା । ତୁ ଆମକୁ ରକ୍ଷା କର ।"

ସତକୁ ସତ ମାସାନିର ପ୍ରାର୍ଥନା ଶୁଣି ସମୁଦ୍ର ଶାନ୍ତ ପଡ଼େ । ଦିନେ ଦୁଇଦିନ ପାଇଁ ସେ ଆଖି ବୁଜି ଢୁଳାଏ ନିରୀହ ସରଳ ମେଣ୍ଢା ଛୁଆଟିଏ ପରି । ଦିନ ଦିନ ଧରି କୁଡ଼ିଆ ଘରେ ବନ୍ଦୀ ହୋଇ ନୋଳିଆମାନଙ୍କୁ ଭଲ ଲାଗେ ନାହିଁ । ବର୍ଷା ଛାଡ଼ିଗଲେ ସେମାନେ ବାହାରି ଆସନ୍ତି ପଦାକୁ । ବର୍ଷା ଦିନେ ଗାଁ ବିଲରେ ମେଞ୍ଚା ମେଞ୍ଚା ଢିଆ ପୋକ ପରି ସମୁଦ୍ର କୂଳଯାକ ବ୍ୟାପିଯାନ୍ତି ସେମାନେ । ସବୁଠୁ ବେଶି ଛୋଟ ପିଲାଙ୍କ ସଂଖ୍ୟା । ଏତେ ଲୋକ

ଏଡ଼େ ଟିକିଏ ଟିକିଏ କୁଡ଼ିଆ କେତେ ଖଣ୍ଡିରେ ଲୁଚି ରହିଥିଲେ ବୋଲି ବିଶ୍ୱାସ ହୁଏ ନାହିଁ । ମନେ ହୁଏ ବର୍ଷା ପାଣି ପଡ଼ିବାରୁ ସତେ ଯେମିତି ଭୂଇଁ ତଳୁ ବାହାରି ଆସିଲେ ଏଇ ମଣିଷ ଗୁଡ଼ିକ !

ବର୍ଷା ଚାରିମାସ ସବୁବେଳେ ଏମିତି ଲାଗିଥାଏ । କେତେବେଳେ ଢୁ ଢୁ ମେଘ, କେତେବେଳେ ଝିପି ଝିପି, କେତେବେଳେ ତୋଫାନ । ବର୍ଷାଦିନେ ସମୁଦ୍ରକୁ ବିଶ୍ୱାସ ନାହିଁ । ଏଇଲେ ହୁଏତ ବାଛୁରୀ ମା' ପହ୍ନାରେ ମୁହଁ ଗୁଞ୍ଜି ଗେହ୍ଲେଇ ହେଲା ପରି ଭୂଇଁ ଉପରେ ଛୋଟ ଛୋଟ ଲହଡ଼ି କଚାଡୁଥିବ, ଆଉ ଟିକିଏ ଗଲାବେଳକୁ ସେ ବାଳ ମୁକୁଳାଇ ବେକରେ ମୁଣ୍ଡମାଳ ପକାଇ ହାତରେ ଖଣ୍ଡା-ଖର୍ପର ଧରି କାଳୀବେଶରେ ବାହରିଲାଣି । ସେଥିପାଇଁ ବର୍ଷାଦିନେ ମାସାନି ସମୁଦ୍ର ମାତାକୁ ସ୍ତୁତି କରୁଥାଏ । ବର୍ଷାଦିନେ ମାସାନିକୁ ସମସ୍ତେ ବେଶି ଖାତିର୍ କରନ୍ତି । କାରଣ ତା'ରି ଉପରେ ହିଁ ନିର୍ଭର କରେ ନୋଳିଆ ବସ୍ତିର ଭବିଷ୍ୟତ । ତାର ସ୍ତୁତିରେ ଯଦି ସମୁଦ୍ର ମାତା ଖୁସି ନ ହୁଏ, ତେବେ କ'ଣ ହେବ ସେମାନଙ୍କ ଅବସ୍ଥା ?

ବର୍ଷା ମାସଟାରେ ହାତଗୋଡ଼ ବାନ୍ଧି ଆସି ରହିବାକୁ ହୁଏ । କେତେବେଳେ ଟିକିଏ ଶୁଖିଲା ପାଗ ହେଲେ କୂଳରେ ଛୋଟ ଛୋଟ ମାଛ ଧରାହୁଏ - କୂଳରେ ତ ଆଉ ବଡ଼ମାଛ ପଡ଼ିବେ ନାହିଁ, ଖାଲି ଚୁନାମାଛ ପଡ଼ନ୍ତି । ସେତକ ତରକାରୀ ପାଇଁ ନିଅଣ୍ଟ, ଆଉ ବିକା ହେବ କ'ଣ ? ପିଲାମାନେ ଗାତରୁ କଙ୍କଡ଼ା ଧରିବାରେ ଲାଗିଯାନ୍ତି; ସମୁଦ୍ର ଶଙ୍ଖ ଓ ସିପକୁ ମାଳ ମାଳ କରି କୁଡ଼ିଆ ଘରେ ଝୁଲାଇ ରଖନ୍ତି । ଖରାଦିନେ ସଞ୍ଜବେଳେ ଯେତେବେଳେ ହାଓ୍ୱା ଖାଇବାକୁ ଆସନ୍ତି ଦଳ ଦଳ ବଙ୍ଗାଳୀ, ପଞ୍ଜାବୀ, ହିନ୍ଦୁସ୍ଥାନୀ ଓ ସାହେବ ଲୋକ, ସେତେବେଳେ ନୋଳିଆ ପିଲାମାନେ ସେଇ ଶଙ୍ଖମାଳ ସବୁକୁ ବିକ୍ରୀ କରନ୍ତି । ପ୍ରତି ନୋଳିଆ ଘରେ ସମୁଦ୍ରଜାତ ଦ୍ରବ୍ୟଗୁଡ଼ିଏ ସଞ୍ଚିତ ଥାଏ । ବର୍ଷା ଋତୁରେ ଅଭାବ ଦିନଟାରେ ବେଳେ ବେଳେ ସେ ସବୁ ବିକିବାକୁ ନେଇ ସହରକୁ ଯାଆନ୍ତି ଯୁବକମାନେ । ହେଲେ, ସେ ସବୁରେ ତ ପେଟ ପୋଷି ହେବନାହିଁ ! ତେଣୁ ବର୍ଷାଦିନ ପାଇଁ ଆଗରୁ ସତର୍କ ରହିବାକୁ ପଡ଼େ । ଝାଉଁକାଠ ସବୁ ଆଗରୁ ସାଇତି ରଖିବାକୁ ହୁଏ । ବେଳେବେଳେ ସାହୁକାର ଦୁଆରେ ଯାଇ ଠିଆ ହେବାକୁ ପଡ଼େ । ସାହୁକାର ଦୁଆରେ ବାଉଁଶିଆଟିମାନ ଥୋଇ ଅପେକ୍ଷା କରନ୍ତି ଗୁରାୟା, କର୍‌ଲା, ଯାନି, ଜୋଲ୍‌ଦେଲା, ମାସାନି । ପରସ୍ପର ମୁହଁକୁ ଅନାନ୍ତି - ଗୁଣ୍ଡୁଚି ମୂଷା ପରି ଆଖି ମିଟିକା ମାରନ୍ତି । ସାହୁକାର ସେମାନଙ୍କ ବାଉଁଶିଆରେ ସେରେ ଲେଖାଏଁ ଚାଉଳ ପକାଇଦିଏ; ଚାରଣା ଲେଖାଏଁ ପଇସା ଦିଏ ପରିବାର ପିଛା । ସେତକ ନେଇ ଫେରି ଆସନ୍ତି ସେମାନେ । କୌଣସି ମତେ ଟାଣଟୁଣ କରି ବର୍ଷା ଦିନଟା କଟାଇ ଦିଅନ୍ତି ।

ତା'ପରେ ଆସେ ଶୀତଋତୁ । ଏ ଋତୁରେ ସବୁଠାରୁ ବେଶି ମାଛ । ଆଞ୍ଜୁଳାଏ ପାଣି ଟେକି ଦେଲେ ଗୋଟାଏ କି ଦି'ଟା ମାଛ ଡେଇଁ ପଡ଼ନ୍ତି । ବେଶି ପବନ ନାହିଁ - ସମୁଦ୍ରର

ଥଣ୍ଡା ନେଳି ପାଣି ଯେମିତି ଚୁପ୍‌ଚାପ୍ ଶୋଇ ରହେ; ଆଉ କହେ, "କିରେ ପିଲାମାନେ, ମନ ଦୁଃଖ କରୁଛ କି ? ଆଉ ତୁମ ଉପରେ ରାଗ କରିବି ନାହିଁ । ଏଥର ମନଇଚ୍ଛା ମଉଜ କର, ଉତ୍ସବ କର, ବଡ଼ଜାଲ ନେଇ ଯେତେ ମାଛ ନେବ, ନେଇଯାଅ ।"

ଶୀତଦିନ ଆକାଶଟା ଦେଖାଯାଏ ନିର୍ମଳ- ମେଘର ଅଳିଆସବୁ କିଏ ଯେମିତି ଝାଡ଼ିଝୁଡ଼ି ସଫା କରିଦେଇଛି । ବଡେୟା ଡାକେ ଗୁରାୟାଙ୍କୁ, "କିରେ, ଏଥର, କ'ଣ ବଡ଼ଜାଲ ପଡ଼ିବ ନାହିଁ କି ? ବଡ଼ ପୋଢୁଅ ତିଆରି କେବେ ହେବ ?"

ଦିନେ ସକାଳୁ ବସ୍ତିର ଟୋକାମାନେ ବଡ଼ ବଡ଼ ପୋଢୁଅ ତିଆରି କରିବାରେ ଲାଗିଯାନ୍ତି । ସମସ୍ତଙ୍କ ଦେହରେ ଝାଳ, ମୁଣ୍ଡରେ ଟୋପି, ଦେହରେ ମାଂସପେଶୀର ସୁନ୍ଦର ଗଢ଼ଣ । ଫାଳ ଫାଳ କାଠକୁ ସେମାନେ ଏକାଠି ଯୋଡ଼ି ଦିଅନ୍ତି ଏମିତି ଢଙ୍ଗରେ ଯେ ଦୁଇ ତିନି ଦିନରେ ତିଆରି ହୋଇଯାଏ ପୁରୁଷେ ଉଚ୍ଚ ଗୋଟାଏ ପୋଢୁଅ । କାଠ କିଳା ଦେଇ ଦଉଡ଼ିରେ ବାନ୍ଧି ଦିଅନ୍ତି କାଠଫାଳ ସବୁକୁ । ଜଣେ ଦି'ଜଣ ଚିତ୍ରକର ରଙ୍ଗ ବେରଙ୍ଗର ଚିତ୍ରସବୁ ଆଙ୍କି ଦିଅନ୍ତି ପୋଢୁଅ ଉପରେ । କେଉଁ ସମୁଦ୍ର ଜନ୍ତୁର ହାଡ଼ ଘୋରିଲେ, କେଉଁ ଗଛର ପତ୍ରରେ କ'ଣ ଗୋଳାଇଲେ କି ରଙ୍ଗ ବାହାରେ, ସେକଥା ଆପଲସ୍ୱାମୀ ଜାଣେ । ସେ ରାତିଦିନ ବସି ପୋଢୁଅ ଉପରେ ଚିତ୍ର ଆଙ୍କେ - ସମୁଦ୍ର, ମଗର, ତିମି, ଶାଙ୍କୁଚ, ହାଙ୍ଗର ଓ ଆଉରି କେତେ ଅଜବ ଜଳଜନ୍ତୁଙ୍କ ଛବି । ବୋଇତରେ ଦଳ ଦଳ ନୋଳିଆ ଆହୁଲା ମାରି ସମୁଦ୍ର ଭିତରେ ମାଛ ମାରିବାର ଛବି ସେ ଆଙ୍କେ; ଆଉରି ମଧ୍ୟ ଆଙ୍କେ ସୂର୍ଯ୍ୟ ଓ ଚନ୍ଦ୍ର ସମୁଦ୍ରରେ ବୁଡ଼ିଯାଉଥିବାର ଛବି । ସମସ୍ତେ ତାଜୁବ୍ ହୁଅନ୍ତି - ନାଲି, ନେଳି, ହଳଦିଆ, ଏତେ ରଙ୍ଗ କେଉଁଠୁ ପାଇଲା ଆପଲସ୍ୱାମୀ ? ଏତେ ସୁନ୍ଦର ଛବି ସେ ଆଙ୍କି ପାରିଲା କେମିତି ? ଆପଲସ୍ୱାମୀ କାହାରି ପ୍ରଶ୍ନର କିଛି ଉତ୍ତର ଦିଏ ନାହିଁ । ପୋଢୁଅ ପାଖରେ ବସି ଚିତ୍ର ଆଙ୍କି ଆଙ୍କି ତା ଅଣ୍ଟା ଲାଗିଯାଏ, ମୁଣ୍ଡ ଘୋଳି ହୁଏ - ତଥାପି ସେ ଦୁଃଖ କରେ ନାହିଁ - ସବୁ ବଡ଼ଜାଲ ପରବରେ ତାକୁ ଏମିତି ଟିକିଏ ପରିଶ୍ରମ ପଡ଼େ ।

ବଡ଼ଜାଲ ପରବ ପାଇଁ ମାସକ ଆଗରୁ ପ୍ରସ୍ତୁତ ହୋଇ ରହିବାକୁ ହୁଏ । ଉପାସ ରହି ପଇସା ସଞ୍ଚିବାକୁ ପଡ଼େ । ସମସ୍ତେ ସେତେବେଳେ ନୂଆ ଲୁଗା ପିନ୍ଧନ୍ତି - ବୁଢ଼ାବୁଢ଼ୀଠାରୁ ମା' କୋଳର ଦୁଧଖିଆ ଶିଶୁ ପର୍ଯ୍ୟନ୍ତ । ଭେଣ୍ଡିଆମାନେ ପୋଢୁଅରେ ବଡ଼ଜାଲ ନେଇ ଅନୁକୂଳ କରନ୍ତି - ସମୁଦ୍ର ଭିତରକୁ । ସଞ୍ଜବେଳକୁ କୂଳରେ ଜମା ହୁଏ ଗାଡ଼ି ଗାଡ଼ି ମାଛ - ସେମାନଙ୍କ ରଙ୍ଗରେ ରୂପାପରି ଚିକି ଚିକି ଦେଖାଯାଏ ସମୁଦ୍ର କୂଳଟା । ବଡ଼ଜାଲ ପରବ ପାଇଁ ବସ୍ତି ମୁଣ୍ଡରେ ଛାମୁଣ୍ଡିଆ ହୋଇଥାଏ । ପ୍ରତି ଘର ସଫାସୁତୁରା ହୋଇଥାଏ । ଛାମୁଣ୍ଡିଆ ତଳେ ପୁରୋହିତ ମାସାନି ମନ୍ତ୍ର ପଢ଼େ । ବସ୍ତିଟାଯାକର ଲୋକ ତା' ଚାରିପାଖେ ଜମା ହୋଇ ଜୁଳୁଜୁଳୁ ହୋଇ ତା' ଆଡ଼କୁ ଅନାନ୍ତି । ପଲାସାରୁ ମଣିଷ କାନ୍ଧରେ ବୁହା ହୋଇ ଆସିଥିବା ଠାକୁରାଣୀଙ୍କ ଆଗରେ ମାସାନି ଭୂଇଁରେ ମୁଣ୍ଡ ଲଗାଏ - ଦି'ଦିନ ହେଲା ସେ

ଖାଇ ନଥାଏ । ତା ଆଖି ଦେଖାଯାଉଥାଏ ଲାଲ୍ ଲାଲ୍, ମୁହଁର ନିଶଦାଢ଼ି ଓ ମୁଣ୍ଡବାଳ ଦିଶୁଥାଏ ଭୟଙ୍କର । ମୁଣ୍ଡରେ ସେ ମାରିଥାଏ ସିନ୍ଦୂର ଚିତା, ଆଗରୁ ବସ୍ତିରୁ ଚାନ୍ଦା କରି ରାମାନା କୁକୁଡ଼ା, ମେଣ୍ଢା ଓ ଛେଳିସବୁ କିଣି ଆଣିଥାଏ ପଠାଣମାନଙ୍କ ପାଖରୁ । ସେମାନେ ବଳି ପଡ଼ିବେ ବୋଲି ସେମାନଙ୍କୁ ଭଲକରି ଖାଇବାକୁ ଦିଆଯାଏ । ପାଣିରେ ଭଲକରି ଗାଧୋଇ ଦିଆଯାଏ । ସେମାନଙ୍କ ମୁଣ୍ଡରେ ଲଗାହୁଏ ସିନ୍ଦୂର, ବେକରେ ଓହଳିଥାଏ ଫୁଲମାଳ ଓ ନାଲିଗାମୁଛା । ତା'ପରେ ସେମାନଙ୍କୁ ଧାଡ଼ି ଧାଡ଼ି କରି ଠିଆ କରାଯାଏ ଠାକୁରାଣୀଙ୍କ ସାମ୍ନାରେ ।

ଭଣ୍ଡାରି ନରସିଂ ହାତରେ ଗୋଟାଏ ଲମ୍ବା କଟୁରି ଧରି କାଠଗଡଟା ଉପରେ ବସିଥାଏ । ମାସାନି ଠାକୁରାଣୀଙ୍କ ଆଗରେ ଗୁଣୁ ଗୁଣୁ ହୋଇ ଦି'ଘଣ୍ଟା କି ତିନି ଘଣ୍ଟା ମନ୍ତ୍ର ପଢ଼ି ସାରିବା ପରେ ଆକାଶକୁ ଅନାଏ । ଯେତେବେଳେ ସମୁଦ୍ରର ପାଣି ଜୁଆରରେ ଫୁଲି ଉଠିବ, ପଶ୍ଚିମ ଆକାଶରେ ଗୋଟିଏ ସରଳରେଖାରେ ଦେଖାଯିବେ – ସାତୋଟି ତାରା ଓ ସୁ-ସୁ ପବନ ବହିବ, ସେତିକିବେଳେ ଏ ଜନ୍ତୁମାନଙ୍କୁ ବଳିଦେବା ବିଧି । ଆଗରୁ କେତେ ଭାବିଚିନ୍ତି ବସ୍ତିର ବୁଢ଼ାମାନେ ଏ ସମୟ ଠିକ୍ କରିଛନ୍ତି । ସେଇ ସମୟ ଆସିଲେ ନରସିଂହର ଦାଢୁଆ କଟୁରିଟା ଆପେ ଆପେ ସବୁ ଜନ୍ତୁଙ୍କ ବେକ ଛୁଇଁଯାଏ; ଆଉ, ଜନ୍ତୁମାନଙ୍କ ଚିତ୍କାରକୁ ଟପିଯାଏ ଦର୍ଶକମାନଙ୍କ କୋଳାହଳ, ଧୁଡୁକୀ ବାଜାର ଶବ୍ଦ ଓ ହରିବୋଲ । ସବୁ ଜନ୍ତୁଙ୍କ ମୁଣ୍ଡଠାରୁ ଗଣ୍ଡି ଅଲଗା କରି ନରସିଂ ଥକ୍କା ହୋଇ ବସିପଡ଼େ । ଅଧ ଘଣ୍ଟାଏ ଯାଏ ଏମିତି ରକ୍ତ ଜୁଡୁ ବୁଡୁ ମୁଣ୍ଡ ଓ ଗଣ୍ଡିସବୁ ତଳେ ପଡ଼ିରହେ । ମାସାନି ଗୁଣୁ ଗୁଣୁ ହୋଇ ମନ୍ତ୍ର ବୋଲି ଠାକୁରାଣୀଙ୍କୁ କହେ, "ହେ ମା, ତୋ'ରି ପାଇଁ ଏ ରକ୍ତ । ତୁ ଏଇ ରକ୍ତ ଖାଇ ସନ୍ତୁଷ୍ଟ ରହ । ଆମର ସବୁ ମଙ୍ଗଳ ହେଉ । ସମୁଦ୍ରରୁ ମାଛ ମିଳୁ ପ୍ରଚୁର । ଖାଇବାକୁ ଅଭାବ ନ ହେଉ ।"

ରକ୍ତରେ ଜୁଡୁ ବୁଡୁ ଜନ୍ତୁମାନଙ୍କର ଖଣ୍ଡ ଖଣ୍ଡ ଦେହ ଦେଖି ଆକାଶରେ ଚକର୍ ମାରନ୍ତି କୁଆ, ଶାଗୁଣା ଓ ଚିଲମାନେ; କିନ୍ତୁ ସେମାନଙ୍କୁ ନିରାଶ କରି ନୋଳିଆ ବସ୍ତିରେ ଆରମ୍ଭ ହୋଇଯାଏ ରୋଷେଇ । ଟୋକାମାନେ ହାତରେ ଦୁଇଖଣ୍ଡି ଲେଖାଏଁ ଛୋଟିଆ ବାଡ଼ି ଧରି ଗୋଲ ହୋଇ ଠିଆ ହୁଅନ୍ତି । ସେମାନଙ୍କ ଭିତରେ ଯେ ସବୁଠାରୁ ବଡ଼, ସେ ବୋଲେ ଗୀତ ଓ ଅନ୍ୟମାନେ ଗୀତର ପାଳି ଧରିବା ସଙ୍ଗେ ସଙ୍ଗେ ବାଡ଼ି ଠକ୍ ଠକ୍ କରି ଆରମ୍ଭ କରି ଦିଅନ୍ତି ନାଚ । ବସ୍ତିଟା ଯାକର ଲୋକେ ଜମାହୋଇ ନାଚ ଦେଖନ୍ତି, ଖୁସି ହୋଇ ତାଳି ମାରନ୍ତି, କିଏ ଗୀତ ସଙ୍ଗେ ପାଦ ମିଳାଇ ନାଚି ନପାରିଲେ ତାକୁ କଠୋର ସମାଲୋଚନା ବି କରନ୍ତି ।

କ୍ରମେ ରାତି ଗାଢ଼ ହୋଇଆସେ । ଭେଣ୍ଡିଆମାନେ ମଦ ଖାଆନ୍ତି ମନଇଚ୍ଛା । ଆଜି ଆଉ କୌଣସି ବାଧା ବନ୍ଧନ ନାହିଁ – ବରଷଟାରେ କେତୋଟି ବା ଦିନ ବଡ଼ଜାଲ ପରବ ! ଦଶହରାଠାରୁ ଆରମ୍ଭ କରି ସପ୍ତାହେ ପର୍ଯ୍ୟନ୍ତ ଲାଗି ରହେ ଉତ୍ସବ । ମନଇଚ୍ଛା ମଦ ପିଇ

ସମୁଦ୍ର ବାଲିରେ ଗଡ଼ନ୍ତି ଭେଣ୍ଡିଆମାନେ – ମଦନିଶାରେ ମନର ସବୁ ଅଶ୍ଳୀଳ ଭାବନା ପ୍ରକାଶ କରନ୍ତି – ବରଷକରେ ଥରେ ଆସେ ବଡ଼ଜାଲ ପରବ । ସେତେବେଳେ ଆନନ୍ଦ ନକଲେ ବରଷ ସାରା ପସ୍ତେଇବାକୁ ପଡ଼ିବ ।

ରାତି ଅଧକୁ ଆରମ୍ଭ ହୁଏ ଭୋଜୀ । ଭୋଜୀ ସରିଲେ ଯେ ଯୁଆଡେ ଯାଆନ୍ତି । ସକାଳୁ ପୁଣି ଉତ୍ସବ ଆରମ୍ଭ । ସମୁଦ୍ରକୁ ବଡ଼ଜାଲ ନେଇ ବାହାରନ୍ତି ଗୁରାୟା, ବଡେୟା, ଜୋଲ୍‌ଦେଲା, ଯାନି, ସୁବ୍‌ବାରାଓ, ଆପଲ୍‌ସ୍ୱାମୀ ଓ ଅନ୍ୟ ସମସ୍ତେ । ସମୁଦ୍ରମାତା ଉଦ୍ଦେଶ୍ୟରେ ମାସାନି ମନ୍ତ ବୋଲେ, କୁକୁଡ଼ା ବଳିଦିଏ । ତା'ପରେ ଅନୁକୂଳରେ ବାହାରନ୍ତି ନୋଳିଆମାନେ ସମୁଦ୍ର ଭିତରକୁ ।

ଏମିତି କଟିଯାଏ ବଡ଼ଜାଲ ପରବ । ଆଖିମିଟିକା ମାରିଲା ପରି ଦିନ କେତୋଟି ଜଣାପଡ଼େ ନାହିଁ । ମାସକ ଆଗରୁ ପରବ ଆସିବ ଆସବ ବୋଲି ସମସ୍ତେ ଟାକି ରହିଥାନ୍ତି, କିନ୍ତୁ ପରବଟା କେଡ଼େ ବେଏଗି ଚାଲିଯାଏ । ବରଷେ ପରେ ପୁଣି ଥରେ ଆସିବ । – ବରଷେ ଯାଏଁ ଖାଲି କାମ – କାମ । ଆଉ ଆନନ୍ଦ ଉତ୍ସବ କରିବାକୁ ସମୟ କାହିଁ ?

ଶୀତ ମାସଟା ବଡ଼ ଚଞ୍ଚଳ ସରିଯାଏ । ତା' ପରେ ଆସେ ଖରାମାସ । ଉପରେ ଟାଇଁ ଟାଇଁଆ ମୁଣ୍ଡଫଟା ଖରା – ତଳେ ଧୂ ଧୂ ବାଲି ନିଆଁ ଗୁଣ୍ଡ ପରି । ଏ ମାସରେ ବେଶି ମାଛ ନାହିଁ । ହେଲେ, ଯେତେକ ବାହାଘର, ସବୁ ଏଇ ଋତୁରେ । ତେଣୁ ନୀରସ ଋତୁଟା ବାହାଘର ଉତ୍ସବ ଓ ଆମୋଦ ପ୍ରମୋଦରେ ଟିକିଏ ସରସ ହୋଇଉଠେ ।

ଖରାଦିନର ସମୁଦ୍ରକୁ ଚାହିଁ ହୁଏନି – ଝିଲ୍‌ମିଲ୍ କରୁଥାଏ ତା'ର ନେଳି ନେଳି ପାଣି, ଠିକ୍ କାଚର ଦର୍ପଣ କରି । ବେଶି ଲହଡ଼ି ନଥାଏ । ପାଣି ନିଦ୍ରିତ ଅଜଗର ପରି ଚୁପ୍‌ଚାପ୍ ଶୋଇରହି ଘୁଙ୍ଗୁଡ଼ି ମାରେ । ମାଛମାନେ ବୁଡ଼ିଯାନ୍ତି ଅକାତକାତ ପାଣିର ଭିତରେ । ଆକାଶରେ ଚଢ଼େଇଟିଏ ବି ଉଡ଼େ ନାହିଁ ଉଦୁ'ଦିଆ ଦି'ପହର ବେଳେ ।

ତାଳୁଫଟା ଖରାବେଳେ ନୋଳିଆ ଘରଣୀ କୁଡ଼ିଆ ଘରେ ବସି ବାହାରକୁ ଅନାଏ । ସ୍ୱାମୀମାନେ କିଏ କେଉଁ କାମରେ ଯାଇଥାନ୍ତି । ମାଛ ନମିଳିଲେ ନାହିଁ, ଆଉ ଗୋଟାଏ କିଛି କାମ ନକଲେ ପେଟ ପୋଷାହେବ କେମିତି ? ବର୍ଷା ଋତୁଟାରେ ସାହୁକାର ଯେତେ ଧାର୍ ଦେଇଛି, ସେସବୁ ଶୀତ ଓ ଖରା ଋତୁରେ ଶୁଝାହୁଏ । ଖରାଦିନେ କିଏ ରିକ୍‌ସା ଖଣ୍ଡିଏ ନେଇ ସହରକୁ ଯାଏ, ରିକ୍‌ସା ମାଲିକକୁ ସଞ୍ଜବେଳେ ଭଡ଼ା ବାବତ୍ ଦୁଇଟଙ୍କା ବୁଝାଇଦେଲା ପରେ, ଆଉ ବଳେ ଟଙ୍କେ କି ଆଠଣା । ସେତିକି ଅଣ୍ଟା ଗାଞ୍ଜିଆରେ ଖୋସି ନୋଳିଆ ଘରକୁ ଫେରେ । ବୋକାଙ୍କ ଭଳି ସମୁଦ୍ରକୁ ନାଇ ଭାବେ – ଏଡ଼େ ଖରାରେ ଖାଲି ପାଦରେ ସେ ଦିନସାରା ଧାଉଁଛି ସହରର ପିଚୁ ରାସ୍ତାରେ – ଯେଉଁଠି ଧାନ ପଡ଼ିଲେ ଲିଆ ହୋଇଯିବ । କିନ୍ତୁ ପାଇଲା ବେଳକୁ ପାଉଛି ଆଠଣା କି ଟଙ୍କାଏ । ଏତିକି କ'ଣ ତା' ପରିଶ୍ରମର ମୂଲ୍ୟ ?

କିନ୍ତୁ ବେଶି ବେଳ କୌଣସି ବିଷୟରେ ଚିନ୍ତା କରିବା ନୋଳିଆ ପୁଅର କର୍ତ୍ତବ୍ୟ ନୁହେଁ । କିଛି ଗୋଟାଏ ଚିନ୍ତା ମନକୁ ଆସିଲେ ଘଷିନିଆଁ ପରି ଘଡ଼ିଏ ଦି'ଘଡ଼ି କୁହୁଳି ପୁଣି ସେ ଲିଭିଯାଏ । ଚିନ୍ତା ଭୁଲିବାକୁ ସେ ହାଣ୍ଡିଆ ଖାଏ । ସମୁଦ୍ର ବାଲିରେ ଗଡ଼ି କେଉଁ ଚିହ୍ନା ଯୁବତୀ ବିଷୟରେ ଅଶ୍ଳୀଳ ମନ୍ତବ୍ୟ କରେ । ଅଭାବ ବଢ଼ିବା ସଙ୍ଗେ ବଢ଼ି ଚାଲନ୍ତି ତାର ପିଲାଛୁଆ । ପ୍ରତିବର୍ଷ ଗୋଟିଏ ସନ୍ତାନର ବାପ ହୁଏ ସେ । ଭାବେ, ସମୁଦ୍ରମାତା ଯାହାକୁ ଜନ୍ମ ଦେଇଛି, ସେଇ ସମୁଦ୍ରମାତା ତା ପାଇଁ ନିଶ୍ଚୟ ଖାଦ୍ୟ ଥୋଇଥିବ ଭଣ୍ଡାରରେ ।

ଖରା ମାସରେ ନୋଳିଆ ଘରଣୀ ପାଖ ଆଖ ଝାଉଁବଣରୁ କାଠ ଆଣି ବିକେ । ଝାଉଁପତ୍ର ଗୋଟାଇ ଜାଳେଣି ସଂଗ୍ରହ କରେ । ପିଲାମାନେ ହାତରେ ଗୋଟାଏ ଲେଖାଏଁ ଟାକୁଡ଼ି ଧରି ପଇତା ବଳନ୍ତି । ତା' ଛଡ଼ା ତ ଗାତରୁ କଙ୍କଡ଼ା ଧରିବା ଗୋଟାଏ ନିତିଦିନିଆ କାମ ।

ଖରାଦିନେ ଧୂ-ଧୂ-ବାଲି ଉପରେ ମରୀଚିକା କେତେ ଛଇ ଦେଖାଏ । କଳା କାଚକେନ୍ଦୁ ପାଣି ଧାରଟିଏ ପରି ସେ ଆଖିକୁ ଆକର୍ଷଣ କରେ । ସବୁଆଡ଼ ଖାଁ ଖାଁ ଲାଗେ । ସମୁଦ୍ର ବାଲିରେ କଅଁଳିଥିବା ଅରଖ, ଆଇଁଷିକାତି, ଚାକୁଣ୍ଡା ଓ ସୁନ୍‌ସୁନିଆ ଶାଗପରି ଜାତିଜାତିକା ଗଛସବୁ ଶୁଖିଯାନ୍ତି ଓ ଅପେକ୍ଷାକରି ରହନ୍ତି ବର୍ଷାକୁ – ।

ରାତି ପାହିଲେ ଦଶହରା ।

ବଡ଼ଜାଲ ପରବ ଆରମ୍ଭ ହେବ ଦଶହରା ଠାରୁ – ସାତ ଦିନ ଯାଏଁ ଲାଗି ରହିବ ଆନନ୍ଦ ଉତ୍ସବ । ବହୁଦିନର ନିଦ ପରେ ହଠାତ୍ ଚେଇଁଉଠିବ ଛୋଟିଆ ନୋଳିଆ ବସ୍ତିଟି । ନୋଳିଆ ନୋଳିଆଣୀମାନଙ୍କର କେତେଦିନର ସ୍ୱପ୍ନ, କେତେଦିନର ପ୍ରତୀକ୍ଷାର ଫଳ ଏଇ ବଡ଼ ଜାଲ ପରବ୍ ।

ଶରତ ଋତୁର ସମୁଦ୍ର ଆଖିକୁ ଭଲ ଲାଗେ । ବର୍ଷାର ରଣତାଣ୍ଡବ ଦୃଶ୍ୟ ନାହିଁ, ଗ୍ରୀଷ୍ମର ସ୍ଥିରତା ନୀରବତା ନାହିଁ, ଶରତର ସମୁଦ୍ର ଯୌବନ ଓ ଆନନ୍ଦର ଉତ୍ସ । ଆକାଶରେ ମାଳକୁ ମାଳ ମେଘ ଜାତିଜାତିକା ରଙ୍ଗର । କେତେବେଳେ ଖଣ୍ଡିଏ ମେଘ ଭାସି ଯାଉଛି ଜାହାଜର ପାଲ ପରି, ଆଉ କିଛି ସମୟ ଗଲେ ତାହା ପୁଣି ଦେଖାଯାଉଛି ଛୋଟ ଦ୍ୱୀପଟିଏ ପରି – ହେଇ, ପୁଣି ସେ ଦ୍ୱୀପଟି ପରିଣତ ହେଲାଣି ଗୋଟିଏ ବିରାଟ ହାଙ୍ଗର ମାଛରେ । ପ୍ରତି ମୁହୂର୍ତ୍ତରେ ରୂପ ବଦଳାଉଛି ମେଘ – ଯେମିତି ନୂଆ ନୂଆ ଅବସ୍ଥାରେ ଚଳିବା ପାଇଁ ମଣିଷ ନିଜକୁ ବଦଳାଇଦିଏ । ପଲାସାରେ ବଢ଼ି ଆସିଥିବା ମଣିଷ ପୁରୀ ସମୁଦ୍ର କୂଳକୁ ବି ଘର କରି ନିଏ । ପାହାଡ଼ ଜଙ୍ଗଲର ମୋହ ଭୁଲି ଜଗନ୍ନାଥ ଦେଉଳକୁ ପ୍ରଣତି ଜଣାଏ–ସେ ହୁଏ ନୂଆ ମଣିଷ, ଏକ ନୂଆ ଦୁନିଆର ।

ଜହ୍ନରାତିରେ ଆକାଶଟା ହୋଇଯାଏ ଜହ୍ନ ଆଲୁଅରେ ଜୁଡୁବୁଡୁ । ସମୁଦ୍ର କୂଳର ଅଣୁ ପରମାଣୁ ସବୁଠି ଯେମିତି ଅଗଣିତ ଜହ୍ନ ଉଇଁଉଠେ । ସମୁଦ୍ରର ନେଳି ଦର୍ପଣରେ କେତେ ଜହ୍ନ – ପ୍ରତି ଲହଡ଼ି ଭିତରେ ଗୋଟିଏ ଗୋଟିଏ ଜହ୍ନ । ସମୁଦ୍ର କୂଳରେ ପ୍ରତି ବାଲିକଣା ଭିତରେ ଯେମିତି ଟୋପାଏ ଟୋପାଏ ଜହ୍ନ ଆଲୁଅ ଘନୀଭୂତ ହୋଇ ଯାଇଛି ! କୂଳର ସିପ ବା ଛୋଟ ଛୋଟ ମାଛ ସବୁ ଦେଖାଯାଉଛି ମୁକ୍ତା ପରି । ଏପରିକି ସମୁଦ୍ର କୂଳରେ ପଡ଼ିଥିବା କୁଟା, କାଠି, ନଡ଼ିଆ, ଛିଣ୍ଡା ଜାଲସବୁ ଯେମିତି ସୁନା ପାଲଟି ଯାଆନ୍ତି

ଏଇ ଜହ୍ନ ଆଲୁଅରେ । କଙ୍କଡ଼ାମାନେ ଏପଟ ସେପଟ ଟହଲ ମାରନ୍ତି । ଛୋଟ ଛୋଟ ଗାତଟିମାନ ଖୋଳି ତା ଭିତରେ ସେମାନେ ଲୁଚିଯାନ୍ତି । ମଣିଷ ନଥିବା ବେଳେ ବାହାରକୁ ଆସନ୍ତି – ଡେଙ୍ଗା ଡେଙ୍ଗା ସରୁ ସରୁ ଗୋଡ଼ରେ ଦଉଡ଼ିଯାନ୍ତି ଏଣେ ତେଣେ । ଜହ୍ନ ଆଲୁଅରେ ସେମାନେ ଯେମିତି ଗୋଟିଏ ଗୋଟିଏ ସୁନା କଣ୍ଢେଇ – ଚକ ଲାଗିଥିବାରୁ ଏଣେ ତେଣେ ଗଡ଼ିଯାଉଛନ୍ତି ।

ଆସିଛି ବଡ଼ଜାଲ ପରବ ।

ପ୍ରତିଦିନ ଚାରଣା ଲେଖାଏଁ ସାଇତି ସାଇତି ଗୁରାୟା ବାପ ପାଖରେ ଜମା କରିଥିଲା ଦଶଟଙ୍କା – ବହୁଦିନ ପେଟରୁ ଆହାର କାଟି ଏତକ ଜମାଇଥିଲା ସେ । ବଡ଼ଜାଲର ଦୁଇଦିନ ଆଗରୁ କିଣି ଆଣିଲା ଚାଉଳ, ତେନ୍ତୁଳି, ଲଙ୍କା, ଲୁଣ, ଭେଣ୍ଡି; ବାପ ଓ ଭାଇଭଉଣୀଙ୍କ ପାଇଁ ଗାମୁଛା ଖଣ୍ଡିଏ ଖଣ୍ଡିଏ, ତା ପାଇଁ ନୂଆ ଲୁଗା ଓ ଅନ୍ୟାନ୍ୟ କେତୋଟି ଦରକାରୀ ଜିନିଷ । ଭଉଣୀ ଦୁହେଁ ଜିନିଷପତ୍ର ସଜେଇ ରଖିଲେ ଘରେ- ଚାଉଳ ହାଣ୍ଡିରେ ଚାଉଳ, ଲୁଣ – କାଠୁଆରେ ଲୁଣ, ଏମିତି ଆଉ ସବୁ । ଗାମୁଛା ଦି'ଖଣ୍ଡି ସେମାନଙ୍କ ମନକୁ ପାଇଲା ନାହିଁ । ମାସକ ଆଗରୁ ପୁନ୍ନାମା କହିଥିଲା, "ଭାଇ, ମୋ ପାଇଁ ନାଲି ଗାମୁଛା ଖଣ୍ଡେ ଆଣିବୁ – ଯେମିତି ଆରେୟା ଆଣିଛି ତା ସ୍ତ୍ରୀ ଆପ୍‌ପା ପାଇଁ ।" ରାଜ୍‌ଜାମା ବି ଆଗରୁ କହିଥିଲା, ଖଣ୍ଡେ ନେଳି ଶାଢ଼ୀ ତାର ଦରକାର । ଶାଢ଼ୀ କିଣିବାର ଶକ୍ତି ନାହିଁ ଗୁରାୟାର । ହେଲେ, ସିମାଦ୍ରୀ ତା ଝିଅ ପାଇଁ ଆଣି ଦେଇଛି ଛୋଟିଆ ଶାଢ଼ୀ ଖଣ୍ଡେ । ରାଜ୍‌ଜାମାର ମନଟା ଭଲ ନାହିଁ ସେଥିପାଇଁ ।

ବଡ଼ଜାଲ ପଡ଼ିବ ବୋଲି ପାଞ୍ଚଟା ବଡ଼ ବଡ଼ ପୋଡୁଅ ତିଆରି ହୋଇଛି । ପୋଡୁଅ ସବୁ ଚିତ୍ରିତ ହୋଇଛି କେତେ ରଙ୍ଗରେ, କାଲି ସକାଳୁ ବସ୍ତିର ଭେଣ୍ଡା ଓ ଯୁବକମାନେ ବଡ଼ଜାଲ ନେଇଯିବେ । ଭେଙ୍କଟ୍ ବାଡ଼ିଟିରେ ଢେରା ଦେଇ ଆସିଲା ପୋଡୁଅ ପାଖକୁ । ପୋଡୁଅ ଗୁଡିକ ବେଶ୍ ହୋଇଛି । ତାର ମନେ ପଡ଼ିଲା, ଅତୀତ ଦିନର ସ୍ମୃତିସବୁ । ସେ ବି ଦିନେ ଏମିତି ପୋଡୁଅମାନଙ୍କରେ ମଝି ଦରିଆରେ ଆହୁଲା ମାରି ମାଛ ଧରୁଥିଲା; ସାଥୀମାନଙ୍କ ସଙ୍ଗେ ସ୍ୱର ମିଳାଇ ଗୀତ ଗାଉଥିଲା । ତା ସାଙ୍ଗସାଥୀମାନେ କିଏ କୁଆଡ଼େ ଗଲେଣି – ତାର ବି ଦୁନିଆର ମାୟାଜାଲ ଛିଣ୍ଡାଇ ଆରପୁରକୁ ଚାଲିଯିବାର ସମୟ ହୋଇଗଲାଣି । ସେ ଗୋଟାଏ ପୁରୁଣା ବୁଢ଼ା ଆମ୍ବଗଛ । ତା ତଳେ ଛୋଟିଆ ଛୋଟିଆ କେତେ ନୂଆଚାରା- ଛନ୍‌ଛନିଆ ସବୁଜ ଓ ନାଲିପତର । ସେ ମରିଗଲେ ନୂଆ ଗଛମାନେ ତାର ସ୍ଥାନ ଅଧିକାର କରିବେ । ତାର ଆଉ କୌଣସି ଲୋଡ଼ା ନାହିଁ ।

ଭେଙ୍କଟ୍ ବସ୍ତି ବୁଲିବାକୁ ବାହାରିଲା । ସମୁଦ୍ରରେ ଶାଗୁଆ ନେଳି ପାଣି ଉପରେ ନଇଁ ଆସୁଚି ଜହ୍ନ ଆଲୁଅରେ ଓଦା ଶରତ ଋତୁର ସଞ୍ଜ । କୁଡ଼ିଆ ଘରମାନଙ୍କରେ ଛୋଟ ଛୋଟ ଆଲୁଅ ବତୀସବୁ ଜଳି ଉଠିଲାଣି । ଆକାଶରେ ଜହ୍ନ, ଧାଡ଼ି ଧାଡ଼ି ତାରା ଓ ଘରେ

ଘରେ ଛୋଟ ଛୋଟ ଡିବିରି ଆଲୁଅ । ସମୁଦ୍ର ଦେଖାଯାଉଛି ଉଜ୍ଜ୍ୱଳ-ଅନ୍ଧାରର ବିସ୍ତୃତି ଭିତରୁ ଯେମିତି ଗଡ଼ିଆସୁଛି ଗୋଟା ଗୋଟା ଆଲୁଅର ଢେଉ । ଉଜ୍ଜ୍ୱଳ ବି ଦେଖାଯାଉଛି ସମୁଦ୍ରର କୂଳ । ଜହ୍ନ ଆଲୁଅ ବିଛାଡ଼ି ହୋଇ ପଡ଼ିଛି । ସବୁଠି ଖାଲି ଆଲୁଅ - ଆଲୁଅ । ତଥାପି ଏତେ ଆଲୁଅର ରୋଷଣୀ ଭିତରେ ବି ବୁଢ଼ା ଭେଙ୍କଟ୍‌କୁ ସବୁଆଡ଼ ଅନ୍ଧାରିଆ ଦେଖାଗଲା - ଆଗରେ କଳା ମିଚି ମିଚି ଗୁଡ଼ାଏ ଲମ୍ବା ଲମ୍ବା ଛାଇ । କାହାର ଛାଇ ଏ ସବୁ ? ଢେଗା ଢେଗା ଆଖି ଦୁଇଟିକୁ ମେଲାଇ ଭେଙ୍କଟ୍ ଏଣେ ତେଣେ ଚାହିଁଲା ଓ ଚିହ୍ନିଲା ଯେ, ଏ ଛାଇଗୁଡ଼ିକ ତାର ପରିଚିତ । କିଏ ତାର ବାପ, କିଏ ମାଆ, କିଏ ବଡ଼ଭାଇ, କିଏ ସ୍ତ୍ରୀ । ଭେଙ୍କଟ୍ ହସିଲା । ହସିଲା ବେଳେ ତାର ପାକୁଆ ପାଟିଟା କ୍ଷଣକ ଲାଗି ଚଉଡ଼ା ହୋଇଗଲା । ସେ ହସ ବି ଶୂନ୍ୟରେ ମିଳାଇଗଲା । ହସି ସାରି ବୁଢ଼ା ମନକୁ ମନ କ'ଣ ଗୁଣୁଗୁଣୁ ହେଲା । କହିଲା, ତାର ଆଉ ବେଶି ଦିନ ନୁହେଁ । ଖାଲି ଗୁରାୟା ଓ ପୁନ୍ନାମାର ବାହାଘର ଶେଷ କରି ସେ ଚାଲିଯାନ୍ତା । ତା' ନହେଲେ ଏଚାମା କ'ଣ କହିବ ?

ବୁଢ଼ାକୁ ସବୁ ଦେଖାଯାଉଥାଏ ଜାଲୁଜାଲୁଆ - ଆଗରେ ଏତେ ବଡ଼ ସମୁଦ୍ର ଗର୍ଜୁଛି, ଦୁଃଖରେ ନା ଆନନ୍ଦରେ, କିଏ ଜାଣେ ? ସମୁଦ୍ରର ଏତେ ଗର୍ଜନ ସତ୍ତ୍ୱେ ବୁଢ଼ାକୁ ଜଣାଗଲା, ଯେମିତି ଚାରିଆଡ଼େ କେବଳ ନିସ୍ତବ୍ଧତା । ସେ ଅବା ସେଇ ନିସ୍ତବ୍ଧତାର ସମୁଦ୍ର ଭିତରେ ଗୋଟିଏ ଅଣୁ । ବିରାଟ ଦୁନିଆଟାରେ ସେ କେଡ଼େ ନଗଣ୍ୟ - କେଡ଼େ କ୍ଷୁଦ୍ର !!

ବସ୍ତିରେ ସମସ୍ତଙ୍କ ଘରେ ଟିକିଏ ଟିକିଏ ମୁହଁ ମାରି ବୁଢ଼ା ଭେଙ୍କଟ୍ ଫେରିଲା ଘରକୁ । ରାତି ହେଲାଣି ଅନେକ । ପୁନ୍ନାମା ଭାତ ଦୋ'ଟି ରାନ୍ଧି ଅପେକ୍ଷା କରିଥିଲା । ଗୁରାୟା ଏବେ ବି ଘରକୁ ଫେରିନି । ବଡ଼ଜାଲ ପରବ ବିଷୟରେ କାହା ସଙ୍ଗେ ବସି ସେ ଆଲୋଚନା କରୁଥିବ । ରାଜ୍‌ଜାମା ଓ ସାନପୁଅ ଦି'ଟା ଗୋଟିଏ ଶେଯରେ ଶୋଇଛନ୍ତି ଜାକିଜୁକି ହୋଇ । ବୁଢ଼ା ବହୁ କଷ୍ଟରେ ତାର ଅବଶ ଦେହଟାକୁ ଭୂଇଁରେ ଗଡ଼ାଇ ଦେଲା । ଝିଅ ବାପର ଗୋଡ଼ ଆଉଁଷି ଦେଲା । ବୁଢ଼ା ସାରା ବସ୍ତିଟା ବୁଲି ଆସିଛି । ଦେହରେ ତାର ଧାର ଧାର ଝାଳ । ସମୁଦ୍ର ପବନ ପଙ୍ଖା କରି ତାର ଝାଳ ଶୁଖାଇଦେଲା । ବୁଢ଼ା ଖାଇ ବସିଲା । ଆଜି କାହିଁକି ତା ପେଟକୁ ଖାଦ୍ୟ ଗଲା ନାହିଁ । ଖାଇଲାବେଳେ ବାରମ୍ବାର ତଣ୍ଟିରେ ଲାଗିଲା । ବୁଢ଼ା ବେଳକୁ ବେଳ ଅବଶ ଅନୁଭବ କଲା ।

ଖାଇସାରି କାନ୍ଥ ଫାଙ୍କରେ ବାହାରକୁ ଅନାଇଲା ଭେଙ୍କଟ୍ । ସମୁଦ୍ରଟା ଆଜି ଏମିତି କ'ଣ ଦିଶୁଛି ! ବୁଢ଼ା ଜୀବନରେ ସତୁରିଟି ବଡ଼ଜାଲ ପରବ କଟାଇଛି ଏଇ ସମୁଦ୍ର କୂଳରେ; ହେଲେ ଆଜିର ସମୁଦ୍ର ତା ଆଖିକୁ ନୂଆ ଲାଗିଲା । ପୁନ୍ନାମାକୁ କହିଲା, "ମୋର ଟିକିଏ ସମୁଦ୍ର କୂଳେ ବସିବାକୁ ଇଚ୍ଛା ହେଉଚି ।" ଝିଅ ମନାକଲା - "ଏତେ ରାତିରେ କୁଆଡ଼େ ଯିବୁ, ବାପା ?"

କିନ୍ତୁ ଝିଅ କଥା ନମାନି ଭେଙ୍କଟ୍ ବାହାରିଲା ସମୁଦ୍ରକୂଳକୁ । ଗୁରାୟାଟା ଘରକୁ

ଫେରି ନଥିଲା ସେତେବେଳ ଯାଏଁ । ଟୋକାଟା ରାତି ଅଧଯାଏଁ କୁଆଡ଼େ ବୁଲୁଥିବ ! ସଙ୍ଗରେ ଗୋଟାଏ ଛନ୍ଦି ଦେଲେ ବଳେ ବାଗକୁ ଆସିବ ଯେ !

ନବମୀର ଜହ୍ନ ଆଲୁଅରେ କୁରୁଳି ଉଠୁଛି ସମୁଦ୍ର - ଝିଲ୍‌ମିଲ୍ ଚିକ୍‌ମିକ୍ ଅସରନ୍ତି ପାଣି । ସମୁଦ୍ରରେ ମେଘସବୁ ପାହାଚ ପାହାଚ ହୋଇ ଉପରକୁ ଉଠିଛନ୍ତି - ହୁଏତ ସେଇ ମେଘର ପାହାଚରେ ଗଲେ ଆଉ ଗୋଟିଏ ନୂଆ ଦୁନିଆରେ ପହଞ୍ଚିହେବ । ସେ ଦୁନିଆରେ ସବୁ ସୁନ୍ଦର, ଦୁଃଖ ନାହିଁ, ଶୋକ ନାହିଁ, ମୃତ୍ୟୁ ନାହିଁ । ଆଜି ଯେମିତି ସେଇ ଦୁନିଆରୁ ନିମନ୍ତ୍ରଣ ପାଇଛି ନୋଳିଆ ବସ୍ତିର ବୁଢ଼ା ଭେଙ୍କଟ୍ ।

ଆକାଶରେ ଭେଳା ଭେଳା ମେଘ ଭିତରେ ଠାଏ ଠାଏ ଚେନାଏ ଚେନାଏ ନେଳି ଆକାଶ । ବୁଢ଼ା ସେଠାକୁ ନିଘା କଲା । ସମୁଦ୍ରକୁ ଅନାଇ ରହିଲା ସେ ଏକ ଲୟରେ, ବହୁତ ବେ଼ଳ ଯାଏଁ । ଏଇ ସମୁଦ୍ର - କେଡେ ଆପଣାର, କେଡ଼େ ପରିଚିତ । ଜୀବନରେ ଅଜସ୍ର ଥର ଛୋଟ ହୁଲି ଡଙ୍ଗାଟି ନେଇ ଏ ସମୁଦ୍ର ଭିତରେ ସେ ଆପଣାକୁ ଭସାଇ ଦେଇଛି । ତଳେ ପାହାଡ଼ ଉଞ୍ଚା ସମୁଦ୍ର ଲହଡ଼ି ଓ ଉପରେ ନେଳି ଆକାଶ - ଏହାରି ଭିତରେ ନୋଳିଆର ଜୀବନ ପରିବ୍ୟାପ୍ତ । ଏଇ ସମୁଦ୍ର ଯେମିତି ତାର ପରିବାର । ଏହାର ଥଣ୍ଡା ପବନରେ ମାଆ ସ୍ନେହର କୋମଳତା, ଲହଡ଼ିର ଗର୍ଜନରେ ବାପାର କଡ଼ା ଶାସନର ତାଡ଼ନା । ଆଜି ସେଇ ସମୁଦ୍ରଠାରୁ ବିଦାୟ ନେବାକୁ ହେବ - ଭେଙ୍କଟ୍ ଭାବିଲା । ନା-ନା-ଯେଉଁଠି ଥାଉ ସେ, ଯେଉଁ ଅବସ୍ଥାରେ ହେଉ ନା କାହିଁକି, ସେ ନିଶ୍ଚୟ ଫେରିଆସିବ ଏଇ ସମୁଦ୍ର କୂଳକୁ । ଏ ସମୁଦ୍ର, ଏ ଆକାଶ, ଏ ବାଲି, ସବୁ ଯେମିତି ତା'ରି, ଆଉ କାହାରି ନୁହେଁ !

ସମୁଦ୍ର ଆଜି ଗର୍ଜୁଛି ଅତି ଜୋର୍‌ରେ । ଫୁଲି ଉଠୁଛି ତା'ର ଛାତି, କ'ଣ ସେ ଚାହେଁ ? ପୁନିଅଁ ରାତିର ଜୁଆରରେ ବି ସମୁଦ୍ର ଏମିତି ଅସ୍ଥିର ହୁଏ ନାହିଁ । ତେବେ ଆଜି କାହିଁକି ଏପରି ହେଉଛି ସେ ? ସେ କ'ଣ ଚାହେଁ ?

ଉଚ୍ଛୁଳା ସମୁଦ୍ରରେ ଉକୁଟି ଉଠୁଛି ଅଗଣିତ ପ୍ରକାର ରଙ୍ଗ - ନେଳି, ଧଳା, ବାଇଗଣୀ, ଖଇରିଆ - ଆକାଶ ଓ ସମୁଦ୍ର ମିଶି ଯାଇଥିଲା ସ୍ଥାନରେ ବୁଢ଼ାର ଆଖି ଲାଖି ରିହିଲା । ତା ମୁଣ୍ଡ ଭିତରେ କ'ଣ ଗୋଟାଏ ଯେମିତି ଘିରି ଘିରି ଘୂରିବାକୁ ଲାଗିଲା । ସାରା ଜୀବନର ସବୁ ଘଟନା ଚଳନ୍ତା ଛବି ପରି ବୁଢ଼ାର ଆଖି ସାମ୍ନାରେ ନାଚିଗଲା । ବୁଢ଼ାର ମନ ଅବଚେତନ ଅବସ୍ଥାରେ ପ୍ରବେଶ କଲା । ତାକୁ ସବୁ ଜଣାଗଲା ଫାଙ୍କା ଫାଙ୍କା - ନୀରବ, ନିଶୂନ୍ । ଆକାଶକୁ ଅନାଇଲା - ସବୁଠି ଯେମିତି 'ସବୁ ଅଛି, କିଛି ନାହିଁ'ର ଭାବ ! ଏଇଠି ଅଛି ସମୁଦ୍ର, ଆକାଶ, ବେଳାଭୂମି, ଅଳ୍ପ ଦୂରରେ ନୋଳିଆ ବସ୍ତି - ପୁଣି କେଉଁଠି ଯେମିତି କିଛି ନାହିଁ । ସବୁ ଯେମିତି ଶୂନ୍‌ଶାନ୍ !!

କିଏ ? ଚମକି ପଡ଼ି ବୁଢ଼ା ଦୂରକୁ ଅନାଇଲା । କିଏ ଏ ସ୍ତ୍ରୀ ଲୋକଟି ? ଆକାଶ ଓ ସମୁଦ୍ର ମିଶିଯାଇଥିବା ସ୍ଥାନରେ ଠିଆହୋଇ ସେ ହସୁଛି । ପିନ୍ଧିଛି ଖଣ୍ଡିଏ ଧଳାଲୁଗା । ଚିହ୍ନା

ଚିହ୍ନା ଲାଗୁଛି । ହାତଠାରି ଡାକୁଛି - "ଆରେ, ମୁଁ ଏଇଠି । ଭାବୁଛ କ'ଣ ? ଏଠାକୁ ଚାଲିଆସ ।" ବୁଢ଼ା ପାଟିକରି ଉଠିଲା, "ତୁ ଆସିଚୁ ? ଏଚାମା ?"

ଏତେ ଦିନ ପରେ ଏଚାମାର ମନେ ପଡ଼ିଲା ଭେଙ୍କଟ୍ କଥା ? ସେ ଫେରି ଆସିଚି !! ବୁଢ଼ାର ଆଖି ଆନନ୍ଦର ଲୁହରେ ଅନ୍ଧ ହୋଇଗଲା । ସେ ତରବର ହୋଇ ଧାଇଁଲା ସମୁଦ୍ର କୂଳକୁ । ଆଗରେ ଗୋଟା ଗୋଟା ଲହଡ଼ି ତା ବାଟ ଓଗାଳିଲେ । ନା- ସେ ଯିବ । ସମୁଦ୍ରହିଁ ତାର ଘର । ସେଇଠି ଅଛି ଏଚାମା, ସେଇଠି ଅଛନ୍ତି ତାର ପୂର୍ବପୁରୁଷମାନେ । ସେଠାକୁ ସେ ନିଶ୍ଚୟ ଯିବ - କୌଣସି ବାଧା ସେ ସ୍ୱୀକାର କରିବ ନାହିଁ ।

ବୁଢ଼ା ଦେହରେ କୁଆଡୁ ମାଡ଼ି ଆସିଲା ଗୋଟାଏ ଖଣ୍ଡିଆ ଭୂତର ବଳ । କୂଳଠାରୁ ଅଳ୍ପ କେତେ ହାତ ଦୂରରେ ଥୁଆ ହୋଇଥିଲା ହୁଲି ଡଙ୍ଗାଟିଏ । ବୁଢ଼ା ସେଟାକୁ ଠେଲି ଠେଲି କୂଳକୁ ଆଣିଲା । ନିଜ ଶକ୍ତିରେ ନିଜେ ଆଶ୍ଚର୍ଯ୍ୟ ହେଲା ସେ । ଅନୁଭବ କଲା, ସେ ଯବାନ୍ ହେଉଛି । ଫେରି ଆସୁଛି ତାର ଆଖିର ଜ୍ୟୋତି, ପାକୁଆ ପାଟିରେ ଦାନ୍ତ ଉଠୁଛି - ସେ ପୁଣି ଫେରି ଯାଉଛି ଗୁରାୟାର ବୟସକୁ ।

ବୁଢ଼ା ହୁଲିଡଙ୍ଗାଟିକୁ ସମୁଦ୍ର ଭିତରେ ଭସାଇ ଦେଇ ଆହୁଲା ମାରିଲା । ତାର ତ କାହିଁ ମନେ ପଡ଼ିଲେନି ଗୁରାୟା, ପୁନ୍ନାମା, ରାଜ୍‌ଜାମା ଓ ଛୋଟ ଛୋଟ ପୁଅ ଦୁଇଟି । ସବୁ ଜଣାଗଲା ମିଥ୍ୟା - ପ୍ରହେଳିକା । ସେ ଯେମିତି ଦୁନିଆରେ କାହାକୁ ଚିହ୍ନି ନାହିଁ । ତାର ଯେମିତି ଦୁନିଆ ସହିତ ସମ୍ପର୍କ ନଥିଲା କେବେ । ସେ କେବଳ ଜଣକୁ ଦେଖୁଛି - ହେଇ, ଦୂରରେ ଯେଉଁ ସ୍ତ୍ରୀ ଲୋକଟି ତାକୁ ହାତଠାରି ଡାକୁଛି, ତାକୁ । ସେ ଏଚାମା । ତା'ରି ପାଖକୁ ଫେରି ଯାଉଛି ଭେଙ୍କଟ୍ ।

ଛୋଟ ନୋଳିଆ ବସ୍ତିଟିରେ ସବୁରି ଆଖିରେ ଘୋଟିଗଲାଣି ନିଦର ନିଶା । ସମସ୍ତେ ସ୍ୱପ୍ନ ଦେଖୁଛନ୍ତି ଆସନ୍ତାକାଲିର ସୂର୍ଯ୍ୟକୁ । ରାତି ପାହିଲେ ବଡ଼ଜାଲ ପରବ । ନିଦଭୋଳରେ ବି କେତେ ଓଠ ହସରେ ଚଉଡ଼ା ହେଉଛି, କେତେ ଛାତି ଫୁଲିଉଠୁଛି ଅଜଣା ପୁଲକରେ । କାଲି ଧନୀ ଗରିବର ଭେଦଭାବ ନାହିଁ - ସମସ୍ତଙ୍କର ସମାନ ଆନନ୍ଦ । ସମୁଦ୍ର କୂଳେ କୂଳେ ସେମାନଙ୍କ ସଂସାର, - ଉପରେ ଆକାଶ, ତଳେ ସମୁଦ୍ର ଓ ତାର ସୀମାହୀନ ବେଳାଭୂମି, - ତା'ରି ଭିତରେ ଆଶ୍ରୟ ନେଇଛନ୍ତି ସେମାନେ । ସମୁଦ୍ର କୂଳରେ ବାଲିର ଦେଉଳ ପରି ସେମାନଙ୍କ ସୁଖ ଦୁଃଖର ହସକାନ୍ଦର ଦୁନିଆ - ଆଜି ଅଛି, କାଲି ନଥିବ । ଆଜିର ବାଲିଦେଉଳ କାଲି ସମୁଦ୍ର ଢେଉରେ ହେବ ସମତଳ । ଜଣାପଡ଼ିବ, ସତେ ଅବା ସମୁଦ୍ରର ସମତଳ ବେଳାଭୂମିରେ କେବେ ଦେଉଳ ତୋଳା ହୋଇ ନଥିଲା !

ଢେଉଢେଉକା ପାହାଡ଼ ପରି ସମୁଦ୍ର । ସେ ପାହାଡ଼ ଗର୍ଜନ କରୁଛି, ମାଂସପେଶୀର କ୍ରୀଡ଼ା ଦେଖାଉଛି, ଜାଲରେ ଆବଦ୍ଧ ଅଜଗର ସାପ ପରି ଛାଟିପିଟି ହେଉଛି । ସେଇ ପାହାଡ଼ ଉପରେ ଭାସିଗଲା ଭେଙ୍କଟ୍‌ର ଛୋଟିଆ ଡଙ୍ଗାଟି - ଦୂରକୁ, ଦୂରକୁ, ବିନ୍ଦୁଟିଏ

ହୋଇ ମିଶିଗଲା ଦିଗ୍‌ବଳୟରେ । ବସ୍ତିରେ ଜଳୁଥିବା ଆଲୁଅ ସବୁ ଦେଖାଗଲେ ନିଷ୍ପ୍ରଭ; ସମୁଦ୍ର କୂଳରେ ଲହରେଇ ଲହରେଇ ଚିତ୍କାର କରି ଉଠିଲେ ଦୁଇ ତିନୋଟି କୁକୁର; - ବେଶ୍, ଏତିକି । ତା'ପରେ ସବୁ ଶୁନ୍‌ଶାନ୍ । କିଛି ପରିବର୍ତ୍ତନ ନାହିଁ କେଉଁଠି । ସେଇ ଆକାଶ, ସେଇ ଜହ୍ନ, ସେଇ ସମୁଦ୍ର - ସମସ୍ତେ ଯେମିତି ଥିଲେ, ସେମିତି । ଦୁନିଆଟାରେ କେଉଁଠି କିଛି ବଦଳିଗଲା ନାହିଁ । କେବଳ ଗୁରାୟାର କୁଡ଼ିଆ ଘରେ ମଇଳା ହେଂସଟାଏ ଖାଲି ପଡ଼ି ରହିଲା - ସେଥିରେ ଯେ ଶୁଏ, ସେ ନାହିଁ !!

ନୁଆଁଣିଆ କୁଡ଼ିଆ ଘରେ ଏକୁଟିଆ ବସି ରହିଥିଲା ଗୁରାୟା ଦୁଇ ଆଣ୍ଠୁ ସନ୍ଧିରେ ମୁଣ୍ଡଟା ରଖି ।

ଶରତର ସଞ୍ଜ - ମଲ୍ଲୀ ଫୁଲ ପରି, ହେନା ଫୁଲ ପରି ତାର ସୌନ୍ଦର୍ଯ୍ୟ । ଚିକ୍ ଚିକ୍ ଜହ୍ନଧୁଆ ନେଳି ଆକାଶ ଓ ସମୁଦ୍ର । ଦୁଇଦିନ ହେଲା ଆରମ୍ଭ ହୋଇଛି ବଡ଼ଜାଲ ପରବ । ଗାଁ ମଝିରେ ଏଡ଼େ ବଡ଼ ଛାମୁଣ୍ଡିଆ । ଛାମୁଣ୍ଡିଆରେ ନଡ଼ିଆ କେତୋଟା ଓହଳିଛି; ନାଲି କନାର ପତାକାସବୁ ବନ୍ଧା ହୋଇଛି । ସେଇ ଛାମୁଣ୍ଡିଆ ତଳେ ନାଲି ପିମ୍ପୁଡ଼ି ମନ୍ଦା ପରି ମେଞ୍ଚା ମେଞ୍ଚା ମଣିଷ - ବଣ ଦେଶର ଫୁଲର ଜଙ୍ଗଲ ପରି ଜାତିଜାତିକା ରଙ୍ଗ ବେରଙ୍ଗର ଶାଢ଼ୀ ପିନ୍ଧିଛନ୍ତି । ହାଉହାଉ ରାଉରାଉ ପାଟି ଶୁଭୁଚି । ସଞ୍ଜବେଳେ ନାଚର ଆରମ୍ଭ । ଟୋକା ଟୋକୀମାନେ ସଞ୍ଜ ବୁଡୁ ବୁଡୁ ଛାମୁଣ୍ଡିଆ ତଳେ ପହଞ୍ଚିଲେଣି । ସେମାନଙ୍କ ମନ ଆଜି ଘର ଧରୁନାହିଁ । କେତେ ଥଟ୍ଟା ନକଲ, କେତେ ଆଖି ଠରାଠରି, ହାତ ଧରାଧରି ହୋଇ ଗୋପନ ସ୍ଥାନକୁ ପଳାୟନ । ଆଜି ସବୁ ଛାଡ଼ । ବଡ଼ଜାଲ ପରବ କ'ଣ ସବୁଦିନେ ରହିଥିବ ? ବର୍ଷାରେ ପୃଥିବୀର ସବୁ ମଇଳା ଧୋଇ ହୋଇଗଲା ପରି ବଡ଼ଜାଲ ପରବରେ ସମୁଦ୍ର କୂଳର ମଣିଷର ସବୁ ଦୁଃଖ ଅଭାବ ସବୁ ଚିନ୍ତାଶୋକ ଧୋଇ ହୋଇଯାଏ । ବଡ଼ଜାଲ ପରବ ପରେ ମନରେ ରହେ ନାହିଁ ଭେଦଭାବ ବା ହିଂସା, ଛଳ ବା କପଟତା । କ'ଣ ପାଇଁ ବା ଏତେ ବାଦ ଛିଦ୍ର ? ଏଇ ସମୁଦ୍ର କୂଳେ ତ ଝଡ଼ବତାସର ଦାଉ ସହି ସମୁଦ୍ରର ଲହଡ଼ି ଭାଙ୍ଗି ଭାଙ୍ଗି ସେମାନଙ୍କ ପୂର୍ବପୁରୁଷ ଗଲେଣି - ହେଲେ ହୋଇଥିବେ ଏଇ ସମୁଦ୍ରବାଲିରୁ ଅରାଏ ଅରାଏ; ନହେଲେ ସମୁଦ୍ର ନେଳି ପାଣିରୁ ଟୋପାଲ ଟୋପାଏ । ଆଜି ଏତେ କଳିତକରାଳ, ଏତେ ଛଳ କପଟତା କରି କି ଲାଭ ? ଏଥିରେ ଅନିଷ୍ଟ ଛଡ଼ା ଇଷ୍ଟ ନାହିଁ ।

ଏଇ କଥା ଭେଙ୍କଟ୍ କହୁଥିଲା । ଭେଙ୍କଟ୍‌କୁ ସମସ୍ତେ ମନେ ପକାଉଛନ୍ତି । ଆହା, ବଡ଼ଜାଲ ପୂର୍ବଦିନ ବୁଢ଼ା ଘରେ ଘରେ ବୁଲି ସମସ୍ତଙ୍କ ସୁଖ ଦୁଃଖ ବୁଝି ଆସିଥିଲା; କିନ୍ତୁ

କିଏ ଜାଣିଥିଲା ଯେ ସେତେବେଳେ ବୁଢ଼ା ପଛେ ପଛେ ଗୋଡ଼ାଉଥିଲା ଗୋଟାଏ କଳାଛାଇ – ସେ ଛାଇ ମରଣର, ସେ ଛାଇ ବିଭୀଷିକାର । ରାତିରେ ସମସ୍ତେ ଖାଇପିଇ ଶୋଇଲେ । ରାତି ସକାଳ ହେଲେ ବଡ଼ଜାଲ ପରବ । ସକାଳୁ ସକାଳୁ ପରବ୍ ପାଇଁ ସଜ ହେଲା ବେଳକୁ ଅଶୁଭ ସମ୍ବାଦ ଆସି ପହଞ୍ଚିଲା – ଭେଙ୍କଟ୍ କୁଆଡ଼େ ଚାଲିଯାଇଛି । ଜଳ ଉଚ୍ଚ ଉଚ୍ଚ ଜାଗାରୁ ନିମ୍ନ ଜାଗାକୁ ଗଡ଼ି ଆସି ଜଳାଶୟ ସୃଷ୍ଟି କଲାଭଳି ବସ୍ତିର ଛୋଟ ବଡ଼ ମଣିଶସବୁ ଗୁରାୟାର କୁଡ଼ିଆ ଘରକୁ ଆସି ଏକ ଜନ-ସମୁଦ୍ର ସୃଷ୍ଟି କଲେ । ସମୁଦ୍ରର ଗର୍ଜନକୁ ବଳି ସେମାନଙ୍କ ପାଟିତୁଣ୍ଡ । ପୁନ୍ନାମା, ରାଜ୍‌ଜାମା ଓ ଛୋଟ ପୁଅ ଦି'ଟା ରଡ଼ି ପକାଉଥାନ୍ତି – "ହେ ବାପ, ତୁ କୁଆଡ଼େ ଗଲୁ, ଫେରି ଆ' – ଫେରି ଆ ।" ଗୁରାୟା ବି ପିଲାଙ୍କ ପରି ଗଡ଼ି ଯାଉଥାଏ ସମୁଦ୍ରର ବାଲି ଉପରେ । କାଲି ରାତିରେ ବାପ ଖାଇ ପିଇ ଶୋଇଲା । ସକାଳୁ ନାହିଁ । ଏଠିତ ବାଘ ଭାଲୁ ନାହାନ୍ତି ମଣିଷକୁ ଟେକି ନେବାକୁ; – ଏ ତ ପଲାସା ନୁହେଁ – ପୁରୀ ସମୁଦ୍ର କୂଳ । କୁଆଡ଼େ ଗଲା ଭେଙ୍କଟ୍ ?

ଠାସୁକୁ ମାରି କିଏ କେତେ ପ୍ରକାର କହିଲେ । ସମସ୍ତଙ୍କ ମୁହଁରେ ଗୋଟାଏ ଗୋଟାଏ ପ୍ରକାର କଥା । କିଏ କାହିଁକି କାହା କଥା ଶୁଣିବ ? କେତେବେଳକେ ପୁନ୍ନାମା ଓ ରାଜ୍‌ଜାମାଙ୍କ କାନ୍ଦର ରୋଳ ଟିକିଏ କମି ଆସିଲା । ଜଣକ ଉପରେ ବଜ୍ର ପଡ଼ିଲା ବୋଲି ତ ବସ୍ତିର ପୁରୁଣା ଉତ୍ସବଟା ବନ୍ଦ ହେବ ନାହିଁ ? ସମୁଦ୍ର ମାତାର ଉତ୍ସବଟା ବନ୍ଦ ହେଲେ ନୋଳିଆର ଅମଙ୍ଗଳ ହେବ ନାହିଁକି ? ଜଣେ ଜଣେ ଘରକୁ ଖସିଲେ । ଭଙ୍ଗା କୁଡ଼ିଆ ଘରେ ପରସ୍ପରକୁ କୁଣ୍ଢାଇ ଦିନ ସାରା ବାପ ପାଇଁ ସକ ସକ ହେଲେ ଭେଙ୍କଟ୍‌ର ପୁଅ ଝିଅ କେତୋଟି ।

ତା'ପରେ ସବୁ ଶାନ୍ତ ପଡ଼ିଆସିଲା । ସମୁଦ୍ର କୂଳରେ ଛେଚିକୁଟି ଅସରାଏ ବର୍ଷା ହୋଇଗଲା ପରେ ସମୁଦ୍ରଟା ଯେମିତି ନରମିଯାଏ, ସେମିତି ଥଣ୍ଡା ପଡ଼ିଆସିଲା ଗୁରାୟା, ପୁନ୍ନାମା ଓ ରାଜ୍‌ଜାମାଙ୍କ କାନ୍ଦର ସ୍ୱର । ବାପ ଏମିତି ସେମାନଙ୍କୁ ହତାଶ କରିଦେବ ବୋଲି ସେମାନେ କେବେ ହେଲେ ଭାବି ନଥିଲେ । ସେମାନଙ୍କ ଛୋଟ ସଂସାରଟିରେ ପ୍ରଳୟ ବହିଗଲା । ଘରର ମାଲିକ ନାହିଁ । ହାଡୁଆ ହାତର ଉଷୁମ୍ ପରଶ ଦେଇ ଯେ ସେମାନଙ୍କୁ ମଣିଷ କରିଥିଲା, ସେ ଚାଲିଗଲା । ଗୁରାୟା ଉପରେ ହଠାତ୍ ଅଜାଡ଼ି ହୋଇ ପଡ଼ିଲା ସମୁଦାୟ ଘରର ଦାୟିତ୍ୱ । ଏଣିକି ଭେଙ୍କଟ୍‌ର ନାମ କୁଆଡ଼େ ପୋଛି ହୋଇଯିବ । ସମସ୍ତେ କହିବେ, ଏ ଗୁରାୟାର ଘର । ବସ୍ତିର ଭଲମନ୍ଦରେ ହାନିଲାଭରେ ଗୁରାୟା ଭଲଲୋକ ହେବ । ଲୋକେ କହିବେ, ବାପ ପରି ପୁଅ । ମଞ୍ଜି ଗୁଣେ ଗଛ ।

ନାଚ ଆରମ୍ଭ ହେବ ବୋଲି ବସ୍ତିଟାଯାକର ସ୍ତ୍ରୀ ପୁରୁଷ ଛାମୁଣ୍ଡିଆ ତଳେ ଜମା ହୋଇଛନ୍ତି । କରଲା ଅଛି, ମାତ୍ର ଗୁରାୟା ନାହିଁ । ଯାନି ଅଛି, ନାହିଁ ପୁନ୍ନାମା । ଗୁରାୟା ଏକୁଟିଆ ଉଦାସ ଚାହାଣୀରେ ସମୁଦ୍ରକୁ ଅନାଉଛି; ଆକାଶକୁ ଅନାଉଛି, ଅନାଉଛି ବାପର ପକେଇ ଶୋଇଲା ପୁରୁଣା ହେଂସଟାକୁ । ରାଜ୍‌ଜାମା ଓ ସାନଭାଇ ଦୁଇଟି ନାଚ ଦେଖିବାକୁ

ଯାଇଛନ୍ତି । ବେଳେ ବେଳେ ଟାପରା କଲା ପରି,ଖଣ୍ଡିଆ ଘା'ରେ ଲୁଣ ଦେଲା ପରି, ଭାସିଆସୁଛି ଯୁବତୀମାନଙ୍କ ଖଳ ଖଳ ହସ ଆଉ ଗୀତ । ଏତେବେଳେ ଯାଏଁ ନାଚ ଆରମ୍ଭ ହୋଇ ନାହିଁ । ବସ୍ତିର ଝିଅମାନେ ଗୀତ ଗାଉଛନ୍ତି –

ଆକାଶର ଚଢ଼େଇ ପରି ତୁମେ କେବେ ଧରା ଦିଅ ନାହିଁ ।
ତୁମକୁ ଆମେ ଯୁଗେ ଯୁଗେ ଚାହିଁ ରହୁ –
ଦିଗ୍‌ବଳୟର ଡଙ୍ଗାପରି ତୁମେ ଦେଖା ଦେଇ ପୁଣି ଲୁଚିଯାଅ ।
ଜହ୍ନରାତିରେ ତୁମେ ଆମକୁ ସହର ବୁଲାଇ ନେବ କି –
ବଡ଼ଜାଲ ହେଲେ ତୁମେ ଆମ ପାଇଁ –
ନୂଆ ଲୁଗା ନୂଆ ପାନିଆ ଆଣି ଦେବକି –
ତୁମେ ସବୁ ଏଡ଼େ ମିଛୁଆ ।
ଆମେ ତୁମକୁ କଥା କହିବୁ ନାହିଁ ।"

ଯୁବକମାନେ ବି କମ୍ ନୁହନ୍ତି । ସେମାନଙ୍କ ମିଳିତ କଣ୍ଠରୁ ଉତ୍ତର ଆସୁଛି –
ତୁମକୁ ଆମେ ଜାଣୁ ।
ଜହ୍ନରାତିରେ ତୁମେ ଜହ୍ନ ଭିତରେ ଥାଇ ହସ –
ଆମ ପାଖକୁ ଆସନା – ।
ତୁମେ ଦିଗ୍‌ବଳୟର ତାରା –
ଯେତେ ଦୂର ଗଲେ ବି ଆମଠାରୁ ଦୂରେଇ ଦୂରେଇ ରହ ।
ତୁମକୁ ଆମେ ଜାଣୁ ।

ଗୁରାୟା ଭାବିଲା, ସେ ବି ଏଇଲେ ସେମାନଙ୍କ ସଙ୍ଗେ ମିଶି ଗୀତ ଗାଉଥାନ୍ତା, ଆଖି ମାରୁଥାନ୍ତା କର୍‌ଲାକୁ ଦେଖି । ଟୋକାମାନଙ୍କ ଭିତରେ ନେତା ହୋଇ ସେ ଝିଅମାନଙ୍କୁ ଉତ୍ତର ଦେଉଥାନ୍ତା । ଗୀତରେ; – ଗୀତରେ ଭାଙ୍ଗିଦିଅନ୍ତା ସେମାନଙ୍କ ମୁହଁର ଟାଣପଣ । ବଡ଼ ଫରଫରୀ ସତେ ଏଇ ଝିଅଗୁଡ଼ାକ । ବଡ଼ଜାଲ ପରବଟା ଖାଲି ଯେମିତି ସେଇମାନଙ୍କ ପାଇଁ । ସେମାନଙ୍କୁ ଚାରିଖୁଣ ମାଫ୍ । ମନଇଚ୍ଛା ଡେଇଁବେ, ବୁଲିବେ, ଖେଳିବେ, ପୁଣି ଟୋକାମାନଙ୍କୁ ଆଖିର ଛଟକରେ ନଚାଇବେ, ଚାଲିର ଛନ୍ଦରେ ମତାଇବେ, କଥାରେ କଥାରେ ଇସାରା ଦେବେ ପାଖକୁ ଆସିବା ଲାଗି; କିନ୍ତୁ ଧରାଛୁଆଁ ଦେବେ ନାହିଁ, ପଳାଇବେ ଦୂରକୁ ଦୂରକୁ ।

ସବୁ ଆଶା ସବୁ କଳ୍ପନା ଭାଙ୍ଗିଯାଇଛି ଗୁରାୟାର । ଆଜି ସକାଳେ ବଡ଼ଜାଲ ନେଇ ଟୋକାମାନେ ଯାଇଥିଲେ । ପାଞ୍ଚଟା ବଡ଼ ବଡ଼ ପୋତୁଅ ସମୁଦ୍ରକୁ ଗଲା । ବସ୍ତିଟାଯାକର ମଣିଷ ସମୁଦ୍ର କୂଳେ ଜମା ହୋଇଥାନ୍ତି । ମାସାନି ବୋଲୁଥାଏ ଶ୍ଳୋକ ମନକୁ ମନ । ପୁରୁଷମାନେ

ହରିବୋଲ ପକାଉଥାନ୍ତି; ହୁଳହୁଳି ଦେଉଥାନ୍ତି ସ୍ତ୍ରୀଲୋକମାନେ । ସେମାନଙ୍କ ମେଳରେ କର୍ଲାକୁ ସେ ଦେଖିପାରୁଥାଏ । ଏଇ କୁଡ଼ିଆରେ ବସି ସେ ଜୁଳୁଜୁଳୁ ହୋଇ ଲୋକଗହଳିକୁ ଅନାଉଥାଏ – ପ୍ରାଣ ହେଉଥାଏ ଛଟପଟ । ମାସାନିର ଆଦେଶରେ ଭଣ୍ଡାରି ନରସିଂ କଟୁରିରେ କାଟି ଦେଉଥାଏ କୁକୁଡ଼ାମାନଙ୍କର ବେକ, – ମୁଣ୍ଡହୀନ ଶରୀରଟା କେତେ କ୍ଷଣ ଯାଏଁ ବାଟକଣା ଲହଡ଼ି ପରି ଏଣେ ତେଣେ ମାଡ଼ି ଯାଉଥାଏ – ତେଲ ସରିଗଲେ କଳ ଅଚଳ ହୋଇ ପଡ଼ିବା ପରି ପଡ଼ିରହୁଥାଏ ନିଶ୍ଚଳ ହୋଇ – ସବୁ ଶୂନ୍‌ଶାନ୍ । ଗୋଟାଏ ଦି'ଟା ଛେଳି ବି ବଳି ପଡ଼ିଲେ । ପ୍ରବଳ ଆନନ୍ଦ କୋଳାହଳ ଭିତରେ ସମୁଦ୍ରକୁ ବଡ଼ଜାଲ ବାହାରିଗଲା । ବଡେୟା, ଯାନି, ଆରେୟା, ସିମାଦ୍ରୀ, ଜୋଲ୍‌ଦେଲା – ସମସ୍ତେ ଥା'ନ୍ତି ପୋତୁଅରେ । ଖାଲି ନଥାଏ ଗୁରାୟା । କେହି ଯେମିତି ତା କଥା ମନେ ରଖି ନାହାନ୍ତି !

ଗୁରାୟା ଭାବିଲା, ଗତବର୍ଷ ବଡ଼ଜାଲ ପରବର କଥା । ସେ ଗୋଟିଏ ପୋତୁଅରେ ଦଳପତି ହୋଇ ଯାଇଥିଲା । ସବୁଠୁ ବେଶି ମାଛ ସେ ଧରିଥିଲା । ପୁରୁଷେ ଉଞ୍ଚା ପୋତୁଅଟା ଭର୍ତ୍ତି ହୋଇଗଲା ସମୁଦ୍ର ମାଛରେ । ମାଛର ଓଜନରେ ସତେ ବା ପୋତୁଅଟା ବୁଡିଯିବ ! ଫେରିଲା ସମୟରେ ଶେଷଥର ପାଇଁ ଜାଲ ଟାଣିବାରୁ କ'ଣ ଗୋଟାଏ ଭାରି ଲାଗିଲା । ସମସ୍ତଙ୍କ ମନକୁ ପାପ ଛୁଇଁଲା । କଥା ବାହାରିଲା ନାହିଁ ପେଟରୁ । କ'ଣ ପଡ଼ିଛି ଜାଲରେ – ତିମି କି ହାଙ୍ଗର, ମଗର କି ଶିଶୁମାର, ଖାଲି କଚାଡ଼ି ହେଉଛି । ଜାଲରୁ ତାକୁ ଖସାଇ ଦେବାର ଉପାୟ କାହିଁ ? କ'ଣ କରାଯିବ ତେବେ ? ମାଛପୂର୍ଣ୍ଣ ପୋତୁଅଟିକୁ ସେ ଯେମିତି ଓଲଟାଇ ଦେବ ! ସମସ୍ତେ କହିଲେ, ଜାଲଟି ଫିଙ୍ଗିଦେବା ସମୁଦ୍ରକୁ । ଯାଉ ପଛେ ଜାଲଟା, କିନ୍ତୁ ଜୀବନ ରହୁ । ସେତେବେଳକୁ ବେଳ ବୁଡ଼ିଗଲାଣି; କୂଳ ଦେଖାଗଲାଣି ଅନ୍ଧାରୁଆ; ଚାରିଦିଗରୁ ଖସି ପଡୁଛି ପରସ୍ତକୁ ପରସ୍ତ ଅନ୍ଧାର । ହେଲେ, କାହାରି କଥା ଶୁଣିଲା ନାହିଁ ଗୁରାୟା । ଛାତିକୁ ପଥର କରି ସେ ହୁକୁମ୍ ଦେଲା, ଜାଲଟା ଟାଣିବା ପାଇଁ । ଜାଲଟା ଟାଣିବା ବେଳକୁ ଏଡ଼େ ବଡ଼ ମଗର । ପାଟିରେ ତାର ଦୁଇଟା ମଣିଷ ଗଳିଯିବେ ଗୁରାୟା ପରି । ତେଣ୍ଟାରେ ମଗର ଛାତିକୁ ଭୁସିଦେଲା ଗୁରାୟା – ନେଳି ପାଣିରେ ରକ୍ତ ଜୁଡୁବୁଡୁ ମଗରଟା ବୁଡ଼ିଗଲା ଗୋଟାଏ ବିରାଟ ଲାଲ୍ ପଦ୍ମଫୁଲ ପରି । ସମୁଦ୍ର ପାଣିରେ ମେଞ୍ଚା ମେଞ୍ଚା ଭାସିଲା ମଗରର ରକ୍ତ । ସମସ୍ତେ କହିଲେ, ଏତେ ବଡ଼ ମଗର ସେମାନେ ଦେଖି ନଥିଲେ କେବେ । ଜାଲଟା ହୁଗୁଳାଇ ଦିଆଗଲା କିଛି ସମୟ ପାଇଁ । ରକ୍ତାକ୍ତ ମଗରଟା ପାଣି ଭିତରେ ହାଲିଆ ହୋଇ ପଡ଼ିଲା । ତାର ସବୁ ଶକ୍ତି ବହି ଯାଇଥିଲା ରକ୍ତର ସ୍ରୋତରେ । ପ୍ରାୟ ଘଣ୍ଟାକ ପରେ ସେ ପୁଣି ମୁଣ୍ଡ ଟେକିଲା ବେଳକୁ ତା ଆଖି ଓ ନାକର ଠିକ୍ ମଝି ସ୍ଥାନକୁ ଲକ୍ଷ୍ୟ କରି ତେଣ୍ଟାଟା ଭୁଷିଦେଲା ଗୁରାୟା । ଶେଷଥର ପାଇଁ ଛାଟିପିଟି ହୋଇ ଜାଲ ଛିଣ୍ଡାଇ ଦେବାକୁ ଚେଷ୍ଟାକଲା ସେ ବିରାଟ ଜଳଚର ପ୍ରାଣୀଟା । ତା'ପରେ ଆଖି ଦି'ଟା ମେଲାକରି ପଡ଼ିରହିଲା ଜାଲ ଭିତରେ । ପୋତୁଅ ଉପରକୁ ତାକୁ ଭିଡ଼ି ଆଣିଲେ ଗୁରାୟା ଓ

ତାର ବନ୍ଧୁମାନେ । ସମୁଦ୍ରର ଅସୁର ଆଜି ଯେମିତି ସେମାନଙ୍କ ଅଧୀନତା ସ୍ୱୀକାର କରିଛି । ସମୁଦ୍ର ଭିତରେ କେଉଁ ମଣିମାଣିକ ଗଢ଼ା ରାଜଉଆସରେ ବନ୍ଦୀ ସୁନ୍ଦରୀ ରାଜକନ୍ୟାକୁ ଜଗିରହିଥିବା ଅସୁରଟାକୁ ସତେ ବା ଗୁରାୟା ହତ୍ୟା କରିଛି ଓ କୂଳକୁ ନେଇ ଯାଉଛି ତାର ମୃତ ଦେହ – ରାଜକନ୍ୟାଙ୍କ ପିତାଙ୍କୁ ଦେଖାଇ ପୁରସ୍କାର ସ୍ୱରୂପ ରାଜକନ୍ୟାଙ୍କୁ ପାଇବାଲାଗି ।

କୂଳରେ ପହଞ୍ଚିଲା ବେଳକୁ ରାତି ହୋଇ ଯାଇଥିଲା ଦୁଇଘଡ଼ି । ଆଉ ସବୁ ପୋତୁଅ ସଞ୍ଜବେଳୁ କୂଳକୁ ଆସି ଯାଇଥାଏ । ତେଣୁ ପବନରେ ଆତଙ୍କ ଖେଳାଇ ସମୁଦ୍ରର ନେଳି ପାଣିକୁ ଅନାଇ ରହିଥାନ୍ତି ସାରା ବସ୍ତିଟାର ଶହ ଶହ ନିରୀହ ସରଳ ଆଖି, ପ୍ରତି କୁଡ଼ିଆଘରେ ମିଞ୍ଜି ମିଞ୍ଜି ଛୋଟ ଛୋଟ ଡିବିରି ଆଲୁଅ ।

ଗୁରାୟା ଯେତେବେଳେ ବିପୁଳ ଆନନ୍ଦ କୋଳାହଳ ଭିତରେ ଟଟ୍‌କା ରକ୍ତରେ ଲାଲ୍ ବିରାଟ ମଗର ମାଛଟାକୁ କୂଳରେ ଚିତ୍‌କରି ଶୁଆଇଦେଲା, ସେତେବେଳେ କି ଉଲ୍ଲାସ ! କି ହଲ୍‌ଲା !!

ଆଉ ଆଜି ?

ଆଉ ସେ ସବୁ ସ୍ୱପ୍ନ । ପଲାସା ଓ ପୁରୀ ମଧ୍ୟରେ ଯେତେ ଦୂରତ୍ୱ, ତା'ଠାରୁ ହଜାର ହଜାର ଗୁଣ ଦୂରତ୍ୱ ସେଦିନ ଓ ଆଜି ମଧ୍ୟରେ । ସେଦିନ ଗୁରାୟା ଥିଲା ସବୁଠାରୁ ବେଶି ପ୍ରଶଂସା ପାଇବାର ପାତ୍ର । ତା'ରି ଯୋଗେ ଯେମିତି ବଡ଼ଜାଲ ପରବର ସବୁ ମାଦକତା, ସବୁ ଆନନ୍ଦ ।

ମାତ୍ର ଆଜି କେହି ତାକୁ ମନେ ରଖି ନାହାନ୍ତି । ଗୁରାୟା ମନଟା ଦୁଃଖରେ ଓଦା ହୋଇଗଲା । ସେ ଯେମିତି ହଠାତ୍ ଚିତ୍‌କାର କରି ଡାକ ପକାଇବ । ପାଟି କରି କହିବ, "କିରେ, ମୁଁ ଏଇଠି ଅଛି । ମୋ କଥା ମନେ ନାହିଁ କିରେ ? ମତେ ସବୁ ଭୂଲି ଯାଇଚ ? ଆଚ୍ଛା, ମନେ ପକାଇଲ ଗତ ବର୍ଷ ବଡ଼ଜାଲ ପରବର କଥା । ମନେ ପକାଇଲ – ସେଇ ବଡ଼ ମଗର ମାଛକୁ, ଯାହାକୁ ଘେନି ତମେମାନେ ଏକ ବଡ଼ ଶୋଭାଯାତ୍ରା କରିଥିଲ । ଯେଉଁ ମଗର ମାଛକୁ ତମେମାନେ ଭାବିଥିଲ ସମୁଦ୍ର ମାତାର ତୁମମାନଙ୍କୁ ଅସୀମ ଦୟାର ଦାନ ବୋଲି, ସେ ମଗରକୁ ମାରିଥିଲା କିଏ ? ହେଇ, ମୁଁ ଗୁରାୟା । ଏଠି ବସିଛି ଅନ୍ଧାରି କୁଡ଼ିଆ ଭିତରେ । ମତେ ଡାକ – ମତେ ଡାକ ।"

ମାତ୍ର କେହି ଗୁରାୟାକୁ ଡାକିଲେ ନାହିଁ । କେହି ମନେ ପକାଇଲା ନାହିଁ ଗୁରାୟାକୁ । କେହି କହିଲା ନାହିଁ, "ଗୁରାୟା ନାହିଁ, ଏ କାମଟା ଅଟକି ଯିବ ।"

ସକାଳେ ବଡ଼ଜାଲ ନେଇ ପାଞ୍ଚଟା ପୋତୁଅ ଆଗ ପଛ ହୋଇ ସମୁଦ୍ରକୁ ଚାଲିଗଲା । ନୋଳିଆମାନଙ୍କର ସେଇ ପୁରୁଣା ଗୀତସବୁ ଫୁଲର ବାସ୍ନାପରି ସମୁଦ୍ରର ନେଳିର ଢେଉଏ ଢେଉଏ ଖେଳେଇ ହୋଇଗଲା । ଗୀତ ଶୁଣି ନିରୀହ ସରଳ ଶିଶୁ ପରି ପୋତୁଅଗୁଡ଼ିକ ନାଚି ନାଚି ଫୁଲନ୍ତା ସମୁଦ୍ର ପାଣିରେ ଭିତରକୁ ଭିତରକୁ ଭାସିଗଲେ । କ୍ରମେ ପୋତୁଅସବୁ ଅଦୃଶ୍ୟ

ହୋଇଗଲେ । ଦେଖାଗଲେ କେବଳ ଟୋପାଏ ଟୋପାଏ କଳା କଳା ମଣିଷ – ସେମାନେ ବି ଅଦୃଶ୍ୟ ହୋଇଗଲେ ଶେଷରେ ।

ହାତ ପାପୁଲିରେ ମୁହଁଟା ଘୋଡ଼ାଇ କଇଁ କଇଁ ହୋଇ କାନ୍ଦି ଉଠିଲା ଗୁରାୟା । ସକାଳୁ ନଖାଇ ନପିଇ ସେମିତି ଗୋଟିଏ ଜାଗାରେ ସେ ବସିଛି । ଏଡ଼େ ବଡ଼ ପାଣ୍ଡୁ (ପରବ) ରେ ତାର ଏଇ ଯୋଗ ଥିଲା !

ଛାମୁଣ୍ଡିଆ ତଳେ ଚାଲିଛି ନାଚଗୀତ, ମଦପିଆ, ଶ୍ଳୋକଆବୃତ୍ତି । ସେଠୁ ଟିକିଏ ଦୂରରେ ରୋଷେଇ ହେଉଛି ବଡ଼ ବଡ଼ ହାଣ୍ଡିରେ – ଆକାଶକୁ ଉଠୁଛି ନେଳି ନେଳି ଧୂଆଁ । ସେଇ ଧୂଆଁ ପରି ହାଲୁକା ହେବାକୁ, ସୁଖ ଦୁଃଖ ଭୁଲି ଉପରକୁ ଉଠିବାକୁ ଗୁରାୟା ଇଚ୍ଛାକଲା ।

ବଡ଼ଜାଲ ପରବର ଚତୁର୍ଥ ଦିନ ସକାଳ । କୁହୁଡ଼ିଆ ଦିଶୁଥାଏ ଆକାଶ । ଖୁବ୍ ଶୀଘ୍ର ଭାଙ୍ଗିଗଲା ଗୁରାୟାର ନିଦ । ଘର ଭିତରୁ ପଦାକୁ ଆସି ଅନାଇଲା ସେ । ଜଣେ ହେଲେ କେହି ଉଠି ନାହାନ୍ତି । କାଲି ନାଚ ସରୁ ସରୁ ଅନେକ ରାତି ହୋଇଥିଲା । ପୁନ୍ନାମା, ରାଜ୍‌ଜାମା ଓ ସାନଭାଇ ଦୁଇଟି ଯାଇଥିଲେ ନାଚ ଦେଖି । ଗୁରାୟା ଯାଇ ନଥିଲା । ଆଜି ସକାଳୁ ମନଟା ତାର ହାଲୁକା ଲାଗୁଛି । ବାପର ବୟସ ହୋଇଥିଲା, ତାକୁ ସେପାରିରୁ ଡାକରା ଆସିଲା । ସେ ଚାଲିଗଲା କୁଆଡ଼େ - ରାତିରେ ଭଲ ମଣିଷ ପରି ଶୋଇଲା; ସକାଳୁ ଦେଖିଲା ବେଳକୁ ନାହିଁ ! ଦିନେ ବୁଢ଼ା ରୋଗରେ ପଡ଼ିଲା ନାହିଁ, ଦିନେ ତା ପାଇଁ ଔଷଧ ଆଣିଲା ନାହିଁ ଗୁରାୟା । ମଲାଯାଏଁ ବୁଢ଼ାର ହାତଗୋଡ଼ ଚଳୁଛି; ବୁଢ଼ା ବସ୍ତିର ସମସ୍ତଙ୍କ ସୁଖ ଦୁଃଖ ବୁଝୁଛି - ଏହାଠାରୁ ବଳି ଭଲ ମରଣ ଆଉ କ'ଣ ହୋଇପାରେ ?

ପୁଣି ମନେ ହେଲା, କାଳେ ବୁଢ଼ା ମରି ନଥିବ । କୁଆଡ଼େ ଯଦି ଚାଲି ଯାଇଥିବ ରାତିରେ, ହୁଏତ ଫେରି ଆସିବ । ତେଣୁ ବୁଢ଼ାର ଶୁଦ୍ଧିକ୍ରିୟା କରିବାକୁ ମାସାନି ମନା କଲା । କେହି କେହି ଗୁରାୟାକୁ କହିଲେ, ପୋଲିସରେ ଖବର ଦେବାକୁ । କାଳେ ବୁଢ଼ାର ମୁଣ୍ଡ କ'ଣ ବିଗିଡ଼ି ଯାଇଥିବ - ବୁଢ଼ା ପଳାଇଥିବ କୁଆଡ଼େ । ପୋଲିସକୁ ଖବର ଦେଲେ ସେମାନେ ବୁଢ଼ାକୁ ଖୋଜିଦେବେ ।

ମାତ୍ର ଗୁରାୟା ପୋଲିସରେ ଖବର ଦେଲା ନାହିଁ । ଭାବିଲା, ପୋଲିସକୁ ଖବର ଦେଲେ କେତେ ଧରପଗଡ଼ ହେବ । ତାକୁ କେତେଥର ଡାକରା ଆସିବ ଥାନାରୁ । ଦଉଡ଼ାଦଉଡ଼ି କରିବାକୁ ପଡ଼ିବ ବଡ଼ ହାକିମ ପାଖକୁ । ଘରେ ଏଣେ ଦୁଇ ଦୁଇଟା ଭଉଣୀ ବାହା ହେବାକୁ, ଛୋଟ ଭାଇ ଦୁଇଟି । ସେମାନଙ୍କ କଥା ତ ବୁଝିବାକୁ ହେବ ।

ଆଲୁଅ ନଇଁ ଆସୁଚି ଧୀରେ ଧୀରେ । ସମୁଦ୍ରର ଝାପ୍‌ସା ପାଣି କ୍ରମେ ସଫା ଦିଶୁଛି । ଦୂରରେ ଯେଉଁଠି ଧୂସର ଆକାଶ ଓ କଳା ଝାଉଁବଣ ମିଶିଛି, ସେଠି ଆଙ୍କି ହୋଇଗଲାଣି ଆଙ୍ଗୁଠି

ଘରି ନାଲି ନାଲି ଗାର କେତୋଟି । ସୂର୍ଯୋଦୟର ଆୟୋଜନ ଆରମ୍ଭ ହୋଇଛି ।

ଗୁରାୟା ଦେଖିଲା, ସମୁଦ୍ରର ଅନ୍ଧାରୁଆ ଅନ୍ଧାରୁଆ ଆକାଶରେ ଗୋଟିଏ ସ୍ଥାନରେ କାହିଁକି ପଲେ ଚିଲ ଚକର୍ ମାରୁଛନ୍ତି । କେତୋଟି କୁଆ ବି ଉଡୁଛନ୍ତି ଏଣେ ତେଣେ । ଗୁରାୟା ବୁଝିପାରିଲା ନାହିଁ ଏହାର କାରଣ । ଛାତି ଧଡ଼ ଧଡ଼ ଲାଗିଲା, ଦେହ ଦୁର୍ବଳ ଲାଗିଲା । ଥରିଲା ଛାତି ନେଇ ଗୁରାୟା ଚିଲ ଉଡୁଥିବା ସ୍ଥାନ ଆଡ଼େ ଆଗେଇ ଗଲା । ଦୂରରୁ ଦେଖାଗଲେ କେତୋଟି କୁକୁର - କ'ଣ ଗୋଟାଏ ମଲାଜନ୍ତୁକୁ ବେଢ଼ି ରହି ସେମାନେ ଭୋଜୀ କରୁଛନ୍ତି । ବେଳେ ବେଳେ ଦୁଇଟା କୁକୁର ଭୋ ଭୋ ରଡ଼ି କରି ଉଠୁଛନ୍ତି - କାମୁଡ଼ାକାମୁଡ଼ି ହୋଇ ବାଲିରେ ଗଡ଼ି ଯାଉଛନ୍ତି ପରସ୍ପେ । କ'ଣ ପଡ଼ିଛି ସେଠି ? ମଗର ନା ଆଉ କେଉଁ ମଲାଜନ୍ତୁ ?-

ପାଖକୁ ଆସି ଯାହା ଦେଖିଲା ଗୁରାୟା, ନିଜ ଆଖିକୁ ବିଶ୍ୱାସ ହେଲା ନାହିଁ । କାନମୁଣ୍ଡା ଭାଁ ଭାଁ ହୋଇଗଲା । ଆଖି ଦି'ଟା ତାଳୁରେ ଖୋସି ସେ ସେଇଠି ବସି ପଡ଼ିଲା । - ସବୁ ଯେମିତି ଘିରି ଘିରି ଘୁରୁଛି ତା' ଚାରିପାଖେ, ଝାଉଁବଣ, ସମୁଦ୍ର, ସକାଳର କଳା ମିଶ୍ ମିଶ୍ ଆକାଶ ।

କେତେବେଳକୁ କୁକୁର ପଲ୍‌ହ ଆଡ଼େଇ ଗୁରାୟା କୁଣ୍ଢେଇ ଧରିଲା ନିଶ୍ଚଳ ହୋଇ ପଡ଼ି ରହିଥିବା ତା ବାପର ମଲା ଦେହଟାକୁ । ତାର ଆଖି ଦୁଇଟିରୁ ଝର ଝର ଝରିଆସିଲା ଲୁହ । ଥରେ ଭୂଇଁ ଭିତରୁ ଆଲୁଅକୁ ଆସିଲେ ଝରଣା ଯେମିତି ଅନର୍ଗଳ କଳ କଳ ହୋଇ ଉପରକୁ ଉଠିଆସେ, ସେମିତି ବହି ଆସିଲା ତା ଆଖିରୁ ଲୁହ । ବାହୁଣିଆ ବେଙ୍ଗ ପରି ବୁଢ଼ା ଦେହ ଧଳା ହୋଇ ଯାଇଛି, ଦେହ ହାତ ଫୁଲି ଯାଇ ଭଲ କରି ଚିହ୍ନି ହେଉନାହିଁ । ଦେହର ସ୍ଥାନେ ସ୍ଥାନେ ଗାତ ହୋଇଛି - ମାଛମାନେ ଓଟାରି ଖାଇଛନ୍ତି ମାଉଁସ । କୁକୁରମାନେ ଦେହ ହାତରୁ ଖଣ୍ଡେ ଖଣ୍ଡେ ଭିଡ଼ି ନେଇଛନ୍ତି । ଏଠି ସେଠି ଛିଟ୍‌କି ପଡ଼ିଛି ମେଞ୍ଚାଏ ଲେଖାଏଁ ମାଂସ କି ଖଣ୍ଡିଏ ଖଣ୍ଡିଏ ହାଡ଼ ।

ତା ବାପର ଏଇ ଅବସ୍ଥା ହେଲା !!

ଗୁରାୟା ପାଟିକରି କାନ୍ଦିଲା । ତା ହୃଦୟର ବ୍ୟଥା ବୁଝିବା କାହାରି ପକ୍ଷରେ ସମ୍ଭବ ନୁହେଁ । କାନ୍ଦିବାଟା ଖାଲି ଯେମିତି ଗୋଟାଏ ବାହ୍ୟ ଆଡ଼ମ୍ବର-ସମାଜର ଆଉ ପାଞ୍ଚଜଣଙ୍କ ସହାନୁଭୂତି ଆକର୍ଷଣ କରିବାଲାଗି ଗୋଟାଏ ଉପାୟ ।

ସେଇ ସକାଳର ଫିକା ଆଲୁଅରେ ଗୋଲ ଗୋଲ କୁଡ଼ିଆ ଘରୁ ବାହାରି ଆସିଲେ ଗୋଟା ଗୋଟା କଳାଛାଇ । ବୁଢ଼ା, ବୁଢ଼ୀ, ଟୋକା, ଟୋକୀ-ଯେଉଁମାନେ ଶୋଇ ଶୋଇ ସ୍ୱପ୍ନ ଦେଖୁଥିଲେ, ନିଦ ମଳ ମଳ ଆଖିରେ ଆସି ଠିଆ ହେଲେ ଭେଙ୍କଟ୍‌ର ମଲା ଦେହ ପାଖେ । ଚାରିଦିନ ତଳେ ଯେ ବସ୍ତିଟାରେ ବୁଲି ବୁଲି ସବୁରି ସୁଖ ଦୁଃଖ ବୁଝୁଥିଲା, ଆଜି ତାର ଏ ଅବସ୍ଥା ! ବେଶ୍, ଏଇ ତ ଜୀବନ । ଆଜି ଯାହା ସତ, କାଲିକି ମିଛ । ଜୀବନଟା ଅନ୍ଧାର ରାତିର ବିସ୍ମୟ ପରି ଝୁଲି ରହିଥାଏ - ମୃତ୍ୟୁର ଆଲୁଅରେ କୁଆଡ଼େ ଉଭେଇଯାଏ-ଏତେବଡ଼ ଗୋଟାଏ କର୍ମମୟ ଜୀବନ । କୁଆଡ଼େ ଯାଏ ଏତେ ଛଳ କପଟ, ଏତେ ହସ ଲୁହ, ଏତେ

ସୌଭାଗ୍ୟ ଓ ଦୁର୍ଭାଗ୍ୟ ? କାହାର ଇଚ୍ଛାରେ ଏ ଦୁନିଆକୁ ଆସେ ମଣିଷ; ପୁଣି କାହାର ଇଚ୍ଛାରେ ସେ ଉଭାନ୍ ହୋଇଯାଏ କ୍ଷଣକେ,-ସମୁଦ୍ର ବାଲି ଉପରେ ଖାଲି ପଡ଼ିରହେ ଗୋଟାଏ ନିଶ୍ଚଳ ଦେହ ।

ମାସାନି ସମୁଦ୍ରମାତାକୁ ଚାହିଁ ସ୍ତୁତି କଲା । ଭେଙ୍କଟ୍‌ର ସୌଭାଗ୍ୟର ଦିନ ଆସିଲାରୁ ସେ ମୁକ୍ତି ପାଇଲା । ପୃଥିବୀର ସଂକୀର୍ଣ୍ଣ ଗଣ୍ଡି ଭିତରେ ସେ ଆଉ କେତେଦିନ ଛଟପଟ ହୋଇଥାନ୍ତା ? ସେ ଏଣିକି ଏ ଆକାଶ ପରି, ସମୁଦ୍ର ଉପର ଦେଇ ବହି ଆସୁଥିବା ପବନ ପରି ମୁକ୍ତ, ସ୍ୱାଧୀନ । ପୂର୍ବପୁରୁଷମାନଙ୍କ ସହିତ ସେ ଏବେ ଏକ ହୋଇଯିବଣି । କେଡ଼େ ଆନନ୍ଦର କଥା !

ଗୁରାୟା ଓ ତାର ଭାଇ ଭଉଣୀଙ୍କ କାନ୍ଦ ଭିତରେ ବି ମାସାନି ସମୁଦ୍ରମାତାକୁ ସ୍ତୁତି କଲା । କାଠରେ ତିଆରି ହେଲା ଗୋଟାଏ ଶବାଧାର । ସେଇଥିରେ ଭେଙ୍କଟ୍‌ର ଦେହଟାକୁ ଶୁଆଇ ବସ୍ତିକୁ ବୋହିନେଲେ ବଡେୟା, ଜୋଲ୍‌ଦେଲା, ଯାନି, ଆରେୟା । କିଏ ନୂଆଲୁଗା କିଣିବାକୁ ବଜାରକୁ ଧାଇଁଲା; କିଏ ମାଠିଆ ମାଠିଆ ପାଣି ଢାଳି ଭଲକରି ସ୍ନାନ କରାଇଦେଲା ଭେଙ୍କଟ୍‌କୁ । ଆପଲ୍ ସ୍ୱାମୀ ଭେଙ୍କଟ୍‌ର ଦେହ ମୁଣ୍ଡରେ ଲେଖିଦେଲା ଚିତା । କୁଆଡୁ ପୁଣି ଯୋଗାଡ଼ ହୋଇ ଆସିଲା ଦୁଇ ତିନୋଟି ଛୋଟ କଦଳୀଗଛ । ଭେଙ୍କଟ୍‌ର ଶବାଧାରରେ ବନ୍ଧା ହେଲା ସେସବୁ । ନାଲିକାଗଜରେ ତିଆରି ପତାକାମାନ ମାଳହୋଇ ଝୁଲାଇ ଦିଆଗଲା ଶବାଧାରରେ । ଭାତ ତରକାରି ରନ୍ଧା ହୋଇ ଭୋଗ ହେଲା ଭେଙ୍କଟ୍‌କୁ । ଆଜିଠାରୁ ଭେଙ୍କଟ୍ ଦେବତାର ଆସନ ପାଇବାକୁ ଯୋଗ୍ୟ । ଏଣିକି ସେ ସମୁଦ୍ରମାତା କୋଳରେ ନେବ ଆଶ୍ରୟ-ସମୁଦ୍ରର ଥଣ୍ଡା ନେଳି ପାଣିର ଶେଯରେ ଶୋଇ ପଡ଼ିବ ନିଘୋଡ଼ ନିଦରେ । ବସ୍ତିର ଉତ୍ସବ ବେଳେ ତାର ଆତ୍ମା ପାଖ ଝାଉଁଗଛର ଜଙ୍ଗଲ ଭିତରୁ କିମ୍ବା ବାଲିବନ୍ତ ସେକରୁ ଉଙ୍କିମାରି ଅନାଇ ଦେଖିବ ନାଚ - ଦେଖିବ, ତାର ନାତି ନାତୁଣୀ, ଅଣନାତୁଣୀ ପଣନାତିମାନଙ୍କୁ । ଦେଖିବ, ସେମାନେ ଭଲରେ ଅଛନ୍ତି କି ନାହିଁ ।

ଜାତିଭାଇ ସମସ୍ତେ ମନଇଚ୍ଛା ମଦ ପିଇଲେ । ହୋ-ହୋ ଗହଳ ଚହଳ ଭିତରେ ଭେଙ୍କଟ୍‌ର ଶବାଧାରଟା ମଣିଷ କାନ୍ଧରେ ବୁହା ହୋଇଗଲା ସ୍ୱର୍ଗଦ୍ୱାର । ଶବାଧାର ପଛେ ପଛେ "ରାମନାମ୍ ସତ୍ୟ ହୈ" ହଲ୍ଲାକରି ଚାଲିଲେ ଗୋଟିଏ ମଣିଷ ପଲ । ସେମାନଙ୍କ ଗୋଷ୍ଠୀରୁ ଜଣକୁ ଆଜି ତଲବ ଆସିଛି ଯମ ରାଜାର-ସେମିତି ପ୍ରତ୍ୟେକଙ୍କ ପାଇଁ ତଲବ ଆସିବ ଦିନେ । ପ୍ରତିବାଦ କରିବାକୁ ସମୟ ନଥିବ, ଭାବିବାକୁ ବେଳ ନଥିବ, ତଲବ ପାଇବା ମାତ୍ରକେ ସେ ପାରିକୁ ଟିକେଟ୍ କାଟିବାକୁ ପଡ଼ିବ ।

ହାତରେ ଶିକାଟିଏ ଝୁଲାଇ ଆଗେ ଆଗେ ଚାଲିଛି ଗୁରାୟା । ସେ ବଡ଼ପୁଅ-ବାପ ମୁହଁରେ ନିଆଁ ଦେବ । ଶବାଧାରକୁ ଘେରାଉ କରି ଚାଲିଛନ୍ତି ପଲ୍‌ହେ ଅଧାଲଙ୍ଗଳା କୌପୁନୀପିନ୍ଧା ମଣିଷ । କିଏ ମୁଣ୍ଡରେ ଠେକା ଭିଡ଼ିଛି; କିଏ ବେତଟୋପି ଲଗେଇଛି; କିଏ କାନରେ ପିକାଟାଏ ଖୋସିଛି । ପଛରେ କାନ୍ଦି କାନ୍ଦି ଆସୁଛନ୍ତି ପୁନ୍ନାମା, ରାଜ୍‌ଜାମା ଓ ବଡେୟାର ସ୍ତ୍ରୀ

ଏଲାମା–

ହାୟ ହାୟ ମରିଗଲା – ମରିଗଲା ।

ବଡ଼ଙ୍କାଲ ପରବକୁ ସେ ଆଉ ବସ୍ତିରେ ନଥିବ–

ଆମ ସୁଖ ଦୁଃଖ ବୁଝିବାକୁ ସେ ଆଉ ଆସିବ କି–

ସେ ଏଇ ସମୁଦ୍ରରେ, ଆକାଶରେ, ଅପନ୍ତରା ବାଲିରେ,

ଦେବତା ହୋଇ ବଞ୍ଚି ରହିବ ।

ହାୟ ହାୟ–

ମରିଗଲା–ମରିଗଲା ।

ଶେଷରେ ମୃତ୍ୟୁର ଏଇ ପଟୁଆର ପହଞ୍ଚିଲା ସ୍ୱର୍ଗଦ୍ୱାରରେ । ଚିତା ନିଆଁରେ ଭେଙ୍କଟ୍‌ର ମଲା ଦେହଟାକୁ ମୁହଁମାଡ଼ି ଶୁଆଇ ଦେଇ ଫେରି ଆସିଲେ ସମସ୍ତେ । ହୁ ହୁ ରଡ଼ିକରି ନିଆଁ ଜଳୁଛି; ମସ୍ ମସ୍ ଜଳି ଯାଉଛି ଭେଙ୍କଟ୍‌ର ଆଖି, କାନ, ନାକ, ଫୁସ୍‌ଫୁସ୍ । ମଡ୍ ମଡ୍ ଫୁଟୁଚି ମୁଣ୍ଡର ଖପୁରୀ, ଦେହର ଅନ୍ୟାନ୍ୟ ଅଂଶର ହାଡ଼ । ସିଁ ସିଁ ପାଣି ବାହାରୁଚି କାଠରୁ । ନରକର କଳା ନଈପାଣି ପରି ଆକାଶକୁ ଉଠୁଛି ଧୂଆଁ–ଏଇ ତ ଜୀବନର ଶେଷ ପରିଣତି !! କେତେ କ୍ଷଣ ପରେ ସମୁଦ୍ର କୂଳରେ ପଡ଼ି ରହିବ ଆଣ୍ଠୁଏ ଉଞ୍ଚରେ ପାଉଁଶ; ସମୁଦ୍ର ପବନ ସେ ପାଉଁଶକୁ ଉଡ଼ାଇ ନେବ ଏଣେ ତେଣେ । ଚକା ଭଉଁରୀ ପରି ସେ ପାଉଁଶ ଉଡ଼ି ଉଡ଼ି ସମୁଦ୍ର କୂଳରେ ବୁଲୁଥିବା କେଉଁ ବାବୁଙ୍କ ନିଃଶ୍ୱାସ ବାଟେ ଦେହ ଭିତରକୁ ଯିବ । ଜହ୍ନ ରାତିର ଜୁଆର ପାଣିରେ କୂଳ ଧୋଇ ହୋଇଗଲେ ସବୁ ହୋଇଯିବ ସାଫ୍–ଖାଲି ଯାହା ଚିତା ଜଳା ହୋଇଥିବା ସ୍ଥାନଟାରେ ବାଲି କେତେଦିନ ଯାଏଁ ଦେଖାଯିବ କଳା–ତାହା ବି ଦିନେ ସ୍ୱାଭାବିକ ଅବସ୍ଥାକୁ ଫେରି ଆସିବ ।

ନୋଳିଆ ସମାଜର ରୀତି ଅନୁସାରେ ଗୁରାୟା ବସ୍ତିର ସମସ୍ତଙ୍କୁ ଖାଇବାକୁ ଦେଲା । ପରଦେଶୀର ସାହୁକାରଠାରୁ ତାକୁ କରଜ ଆଣିବାକୁ ହେଲା ତିନିକୋଡ଼ି ଟଙ୍କା । ଯାହାହେଉ, ଭଲରେ ଭଲରେ ଶୁଦ୍ଧିକ୍ରିୟା ସରିଲା । ବାପର ଆତ୍ମା ନିଶ୍ଚୟ ଶାନ୍ତି ପାଇବ । ଗୁରାୟାକୁ କେହି ଖୁଣି ନାହାନ୍ତି । ସମସ୍ତେ କହିଛନ୍ତି–ଗୁରାୟା ବିଚରା ତା ବାପ ପାଇଁ ଖୁବ୍ ଖରଚ କଲା ।

ସେଦିନ ପ୍ରଥମେ ଆପଲ୍ ସ୍ୱାମୀ ବସ୍ତିରେ ଆସି ଖବର ଦେଲା ଯେ ମାଟିଆ ପୋଷାକପିନ୍ଧା ଜଣେ ସୈନ୍ୟ କାନ୍ଧରେ ବନ୍ଧୁକ ପକାଇ ସେମାନଙ୍କ ବସ୍ତିଠାରୁ ଅଳ୍ପ ଦୂରରେ ଠିଆ ହୋଇଛି ! ଆପଲ୍ ସ୍ୱାମୀ ତାକୁ ଦେଖି ଛାନିଆ ହୋଇ ପଳାଇ ଆସୁଥିଲା । ସୈନ୍ୟଟି କୁଆଡ଼େ ତାକୁ ହାତ ଠାରି ଡାକିଲା । ଆପଲ୍ ସ୍ୱାମୀ ଧାଇଁ ଧାଇଁ ବସ୍ତିକୁ ପଳାଇ ଆସିବାକୁ ଇଚ୍ଛା କଲା । ପୁଣି ଭାବିଲା, ସୈନ୍ୟମାନେ ତ ସହଜରେ କାହାକୁ ଛାଡ଼ନ୍ତି ନାହିଁ । ତାକୁ ଯେତେବେଳେ ଦେଖିଲେଣି, ସେ ଆଉ ଯିବ କୁଆଡ଼େ ? ଏପରି ଭାବି ମନେ ମନେ ସ୍ତୁତି କରି କରି ସେ ସୈନ୍ୟ ପାଖକୁ ଗଲା । ସୈନ୍ୟଟି ଟିକିଏ କଡ଼ା ଗଳାରେ କହିଲା "ଦେଖ୍, ଏ ଆଡ଼େ ଆଜି କେହି ଆସିବ ନାହିଁ । ଏଠି ବନ୍ଧୁକ ଫୁଟୁଛି ।"

ମୁଣ୍ଡ ଟୁଙ୍ଗାରି ଆପଲ୍ ସ୍ୱାମୀ ଫେରି ଆସିଲା ବସ୍ତିକୁ । ଦୁଇ ତିନିଥର ମିଟି ମିଟି ଆଖି କରି ସେ ଫେରି ଅନାଇଲା ପଛକୁ - ସୈନ୍ୟଟି ଆଡ଼କୁ । ଆରେ ବାପ୍‌ରେ; ତା ହାତରେ କେଡ଼େ ବନ୍ଧୁକ । ଖାଲି ଘୋଡ଼ା ଉପରେ ଆଙ୍ଗୁଠି ପକାଇଲେ ଆପଲ୍ ଭଳି ଶହ ଶହ ଭେଣ୍ଡା କୁଆଡ଼େ ଧୂଳି ହୋଇଯିବେ । କାଳେ କେହି ଭୁଲ୍‌ରେ ବନ୍ଧୁକ ଫୁଟୁଥିବା ସ୍ଥାନକୁ ଯିବ, ସେଥିପାଇଁ ସେ ଘରେ ଘରେ ବୁଲି ଜଣାଇ ଦେଲା, "ଦେଖ ଭାଇମାନେ, ସେଠି ସୈନ୍ୟ ଓହ୍ଲାଇଛନ୍ତି । ଯୁଦ୍ଧ ଲାଗିଲାଣି ନା କ'ଣ । - ମୁଁ ଜଣେ ସୈନ୍ୟଠାରୁ ପଚାରି ବୁଝିଲି ଯେ ସୈନ୍ୟମାନେ ସେଠି ବନ୍ଧୁକ ଫୁଟାଉଛନ୍ତି । ତମେମାନେ ସେଠାକୁ ଗଲେ ବିପଦ ଅଛି ।"

ଆପଲ୍ ସ୍ୱାମୀ ମୁହଁକୁ ବଲବଲ କରି ଅନାଇ ନୋଳିଆ ନୋଳିଆଣୀମାନେ ଭୁଟ୍‌ଭାଟ୍ ଫୁସ୍‌ଫାସ୍ ହେଲେ । ସତକୁ ସତ ଦୂରରୁ ବନ୍ଧୁକ ଫୁଟିବାର ଢୋ-ଢା ଶବ୍ଦ ଶୁଣାଯାଉଥାଏ । ଆପଲ୍ ସ୍ୱାମୀ ଚାରିପଟେ ଘେରି ଯାଇ ତାକୁ ସମସ୍ତେ ବ୍ୟତିବ୍ୟସ୍ତ କରି ପକାଇଲେ । "ତୁ ସତ କହ, ସେ ସୈନ୍ୟ ଆଉ କ'ଣ କହିଲା । ଏଠି କ'ଣ ଯୁଦ୍ଧ ଲାଗିଚି କି-"

"ଯୁଦ୍ଧ ନୁହେଁ ତ ଆଉ କ'ଣ ।"

ହଁ-ସତେ ତ । ଯୁଦ୍ଧ ନ ହେଲେ ଏତେ ସୈନ୍ୟ ବନ୍ଧୁକ ଫୁଟାନ୍ତେ କାହିଁକି ? ନୋଳିଆ ବସ୍ତିଠାରୁ ଦେଢ଼ ମାଇଲ ଦୂରରେ ଜମା ହୋଇଥାନ୍ତି ମାଟିଆ ପୋଷାକପିନ୍ଧା ଦଳ ଦଳ ସୈନ୍ୟ । ବେଳେ ବେଳେ ବନ୍ଧୁକ ଫୁଟୁଥାଏ-ଦୁଇଦଳ ସୈନ୍ୟ କୋଳାହଳ କରି ପରସ୍ପରକୁ ଆକ୍ରମଣ କରୁଥାନ୍ତି । ଢାଇ ଢାଇ ଗୁଳି ଫୁଟି ଆକାଶକୁ ଧୂଆଁ ଉଠୁଥାଏ ।

ବଡେୟା କହିଲା, "ଦୁଇ ଦଳ ଭିତରେ ଯୁଦ୍ଧ ଲାଗିଚି ଯେ ସେମାନେ ଏଇ ନିଛାଟିଆ ଜାଗାରେ ଯୁଦ୍ଧ କରିବାକୁ ଆସିଛନ୍ତି । ଏଠି ଯୁଦ୍ଧ ହେଲେ ସାଧାରଣ ଲୋକ ଦେହରେ ଗୁଳି ବାଜିବ ନାହିଁ ।"

ସିମାଦ୍ରୀ ବସ୍ତିର ସବୁଠାରୁ ବଡ଼ ମାମଲତ୍‌କାର । ସେ କାନରେ ଖୋସିଥିବା ପିଙ୍କାରେ ନିଆଁ ଧରାଇ ସୈନ୍ୟମାନେ ଜମା ହୋଇଥିବା ସ୍ଥାନକୁ ଅନାଇଥାଏ । ତା ଆଖି ଦୁଇଟା ଅନ୍ଧାରରେ ବିଲେଇ ଆଖିପରି ଦପ୍ ଦପ୍ ଜଳୁଥାଏ । ସେ ଭାବୁଥାଏ, ସୈନ୍ୟମାନେ ବଡ଼ ଭୟଙ୍କର । ସେମାନଙ୍କର ଟିକିଏ ହେଲେ ଦୟା ନାହିଁ । ପିଲା ମାଇପଙ୍କ କଥା ସେମାନେ କୁଆଡ଼େ ଆଦୌ ଭାବନ୍ତି ନାହିଁ । ଖାଲି ରକ୍ତରେ ସେମାନଙ୍କ ଆନନ୍ଦ । ସେମାନେ ଯୁଆଡ଼େ ଯା'ନ୍ତି, ବୁହାଇ ଦିଅନ୍ତି ରକ୍ତର ନଦୀ । କାଳେ ଯଦି ସେମାନେ ନୋଳିଆ ବସ୍ତିକୁ ମାଡ଼ି ଆସନ୍ତି, ତେବେ କ'ଣ ହେବ ସେମାନଙ୍କ ଅବସ୍ଥା ? ଏତେ ନିକଟକୁ ଆସିଲେଣି ଯେତେବେଳେ, ବସ୍ତି ଭିତରେ ପ୍ରବେଶ କରିବା କିଛି ଆଶ୍ଚର୍ଯ୍ୟ କଥା ନୁହେଁ ।

ଗୁରାୟା ତା କୁଡ଼ିଆ ପିଣ୍ଡାରେ ବସିଥାଏ ଓ ତାକୁ କେନ୍ଦ୍ର କରି ଘେରି ବସିଥାନ୍ତି ଯାନି, ଜୋଲ୍‌ଦେଲା, ଆରେୟା । ଯାନି ଏମାନଙ୍କ ଭିତରେ ସବୁଠାରୁ ବଡ଼ । ସେ ଗପ ଯୋଡ଼ିଥାଏ, "ଯଦି ଗୋଟିଏ ଗୁଳି ଆମ ବସ୍ତିକୁ ଆସିଯାଏ ନା, ତେବେ ଯାହା ଦେହରେ ବାଜିବ, ସେ ଖତମ୍ । ସୈନ୍ୟମାନେ ଆଉ ଟିକିଏ ଗଲେ ନିଶ୍ଚୟ ଏଇ ବସ୍ତିଆଡ଼କୁ ଆସିବେ । ଏତିକିବେଳୁ ଆସିଲେ ସେମାନେ ଯିବେ କୁଆଡ଼େ ?

ସମସ୍ତଙ୍କ ମୁହଁରେ ଆତଙ୍କ । ସକାଳର ଲାଲ୍ ସୂର୍ଯ୍ୟଟା ବି ଯେମିତି ରକ୍ତରେ ଜୁଡୁବୁଡୁ । ବେଳେବେଳେ ଭାସି ଆସୁଛି ସୈନ୍ୟମାନଙ୍କର କୋଳାହଳ, ବନ୍ଧୁକ ଫୁଟିବାର ଶବ୍ଦ । ଆଜି ସବୁରି କାମଦାମ ବନ୍ଦ । ସମୁଦ୍ର କୂଳେ ସେମିତି ଧାଡ଼ି ଧାଡ଼ି ହୋଇ ଥୁଆ ହୋଇଛି ଡଙ୍ଗାସବୁ, କେହି ମାଛ ମାରିବାକୁ ଯାଇ ନାହାନ୍ତି । ସ୍ତ୍ରୀମାନେ ଜାଲ ଗୋଟାଇବାକୁ ନଯାଇ ଏଠି ସେଠି ଦଳ ଦଳ ହୋଇ ସଭା କରୁଛନ୍ତି । ପୁରୁଷମାନେ ତ ଡରି ଛାନିଆ, ଆଉ ସେମାନଙ୍କ ଅବସ୍ଥା ପଚାରେ କିଏ ? ଛୋଟ ପିଲାମାନେ ମୁହଁ ଶୁଖାଇ ଏଣେ ତେଣେ ବୁଲୁଛନ୍ତି । ଶୁଣୁଛନ୍ତି-ସୈନ୍ୟ-ସୈନ୍ୟ, -ବନ୍ଧୁକ-ବନ୍ଧୁକ, ଯୁଦ୍ଧ-ଯୁଦ୍ଧ !! ବେଳେବେଳେ ଢୁ-ଢା ଶବ୍ଦରେ ଚମକି ପଡୁଛନ୍ତି ସେମାନେ । ଲୁଚି ଯାଉଛନ୍ତି ଘରେ, ମାଆ କୋଳରେ କି ଭଉଣୀ ପାଖରେ ଗୁଞ୍ଜି ହୋଇ ବସୁଛନ୍ତି । ଆଜି କେଉଁଠି ଆନନ୍ଦ

ନାହିଁ । ପବନରେ ଲାଖି ରହିଛି ଖାଲି ଭୟ ଓ ଆତଙ୍କର ଭାବ ।

ମାସାନି ସବୁ ଶୁଣିଛି । ହେଲେ, କାହାରି ସଙ୍ଗେ ତାର କଥାବାର୍ତ୍ତା ନାହିଁ । ପିଲାଦିନୁ ସେ ଦେଖି ଆସିଛି, ବେଳେବେଳେ ଏମିତି ଯୁଦ୍ଧ ଲାଗେ । ପଲାସାରେ ଥିବା ବେଳେ ଦୁଇଟା ବଡ଼ ଯୁଦ୍ଧ ହୋଇଥିଲା-ସେ ଜାଣେ । କୁଆଡ଼େ ଇଂରେଜମାନେ ଶତ୍ରୁମାନଙ୍କ ସଙ୍ଗେ ଯୁଦ୍ଧ କରୁଥାନ୍ତି । ପାଣି, ପବନ, ଆକାଶ-ସବୁଠି ସେତେବେଳେ ଖାଲି ଲାଗିଥାଏ ଯୁଦ୍ଧ । ଉଡ଼ାଜାହାଜସବୁ ରଡ଼ି କରି ବେଳେବେଳେ ଆକାଶରେ ଚକର୍ ମାରୁଥାନ୍ତି । ଡେଙ୍ଗୁରା ପିଟା ହୋଇଥାଏ ଯେ କେହି ରାତି ହେଲେ ଆଲୁଅ ଜାଳି ପାରିବେ ନାହିଁ । ଯଦି ବୋମା ପଡ଼େ, ତେବେ ଲୁଚିଯିବା ପାଇଁ ଭୂଇଁରେ ଗାତସବୁ ଖୋଳା ହୋଇଥାଏ । ସେଇ ଗାତରେ କେମିତି ଲୁଚିବାକୁ ହୁଏ, ତାହା ଦେଖାଇବାକୁ ଜଣେ ପେଣ୍ଟ୍ ପିନ୍ଧା ବାବୁ ପଲାସାରେ ତାଙ୍କ ବସ୍ତିକୁ ଆସିଥିଲେ । କହୁଥିଲେ, "ଭୟ କରନାହିଁ । ଇଂରେଜ ସରକାର ବଡ଼ ଭଲ ସରକାର । ସେ ତୁମମାନଙ୍କୁ ନିରାପଦରେ ରଖିବ ।"

ସବୁ ମାସାନିର ମନେ ଅଛି । ସେତେବେଳେ ସେ ନିଶଦାଢ଼ି ରଖି ନଥିଲା । ତାର ଭାରିଯାଟା ଗର୍ଭବତୀ ହୋଇଥିଲା । ଶେଷକୁ ଦିନେ ଯୁଦ୍ଧ ସରିଲା, ମାତ୍ର ଯୁଦ୍ଧ ସରିବା ପରେ ପରେ ତା ଭାରିଯା ତାକୁ ଛାଡ଼ି ଆଉ ଗୋଟିଏ ନୋଳିଆ ଯୁବକ ସଙ୍ଗେ ପଳାଇଲା କେଉଁ ବିଦେଶ ଜାଗାକୁ । ଅସାମ କି କାଳିମାଟି କେଉଁଆଡ଼େ ଗଲା ସେ, ଆଉ ପତ୍ତା ମିଳିଲା ନାହିଁ । ଭାରିଯାକୁ ଖୁବ୍ ଭଲ ପାଉଥିଲା ମାସାନି । ନୋଳିଆ ସମାଜରେ ଯେତେଟା ବାହା ହେଲେ ବି କାହାରି କିଛି ଆପତ୍ତି ନାହିଁ; ଖାଲି ପୋଷି ପାରିଲେ ହେଲା । ମାସାନିକୁ ଜୋଇଁ କରିବାକୁ କେତେଠୁ ପ୍ରସ୍ତାବ ଆସିଥିଲା । ହେଲେ, ମାସାନି ଆଉ ବାହା ହେବାକୁ ମନ କଲାନି । ସୀମାଚଳମ୍ ଠାକୁରଙ୍କ ପାଖେ ମାନସିକ କରି ସେ ନିଶଦାଢ଼ି ରଖିଲା । ସେଇଦିନୁ ସେ ମୁଣ୍ଡରେ ସିନ୍ଦୂରଚିତା ମାରେ; ସବୁବେଳେ ଦିଅଁ ଦେବତାଙ୍କୁ ସ୍ତୁତି କରେ । ଭାରିଯା ଫେରି ଆସିଲେ ନିଶଦାଢ଼ି କାଟିବ, ଏଇ ପଣ ସେ କରିଛି ।

କାହାରି ସଙ୍ଗେ କଥାଭାଷା ନହୋଇ କାହାରିକୁ କିଛି ନକହି ମାସାନି ଠାକୁରାଣୀଙ୍କ ପାଖେ ବସି ସ୍ତୁତିକଲା । ଦୁଇ ଦୁଇଟା ବଡ଼ ବଡ଼ ଯୁଦ୍ଧରୁ ନୋଳିଆମାନେ ବଞ୍ଚି ଆସିଛନ୍ତି । ଏଥର ପୁଣି ଆଉ ଗୋଟାଏ ଯୁଦ୍ଧ ଲାଗିଲାଣି । କେତେବେଳେ କେଉଁ କଥା ଥାଏ । ଭୂଇଁରେ ମୁଣ୍ଡ ଲଗାଇ, ବାଁ ହାତ ଆଙ୍ଗୁଠିରେ ଡାହାଣ ନାକପୁଡ଼ା ବନ୍ଦକରି, ଆଖି ବୁଜି, ପାଟି ପାକୁ ପାକୁ କରି ସେ ସ୍ତୁତି କରୁଛି । ଗାଁଲୋକେ କିଏ କ'ଣ କହୁଛନ୍ତି, ସେଥିପ୍ରତି ତାର ନିଘା ନାହିଁ । ଯେତେବେଳେ ବସ୍ତିକୁ କୌଣସି ବିପଦ ପଡ଼େ, ସେ ଠାକୁରାଣୀଙ୍କୁ ସ୍ତୁତି କରେ । ସେ ଭାବେ, ଭାଗ୍ୟଦେବୀ କୋପ କଲେ ମଣିଷ ଉପରେ ବିପଦ ପଡ଼େ । ଯାହା ଉପରେ ଭାଗ୍ୟଦେବୀ ପ୍ରସନ୍ନ, ତାକୁ ବେଶି ମାଛ ମିଳେ; ତା ପିଲାଛୁଆ ରୋଗରେ ପଡ଼ନ୍ତି ନାହିଁ; ସେ ଭଲରେ ରହେ । ବସ୍ତିର ସମସ୍ତଙ୍କ ଉପରେ ବେଳେବେଳେ ଭାଗ୍ୟଦେବୀ

ଚିଡ଼ିଯାନ୍ତି । ତାର କାରଣ ଠାକୁରାଣୀଙ୍କର ବିଧି ଅନୁସାରେ ପୂଜା ହୋଇପାରେ ନାହିଁ । ତେଣୁ କୂଳକୁ ସମୁଦ୍ର ମାଡ଼ିଆସେ, ଘୁ-ଘୁ ସୁ-ସୁ ଗର୍ଜନ କରି ତୋଫାନ ବହେ, ଜାଲରେ ପଡ଼ନ୍ତି ନାହିଁ ଗୋଟେ ହେଲେ ମାଛ-ଏମିତି କେତେ ବିପଦ ପଡ଼େ । ଆଜି ଗୋଟାଏ ନୂଆ ବିପଦ ପଡ଼ିଛି । ବିପଦ ପଡ଼ିଲେ ନୋଳିଆ ପୁଅର ଲୁହାଗଢ଼ା ଟାଣୁଆ କଳାଛାତି ଭିତରେ କିଏ କୁରହାଡ଼ୀ ପାହାର ପକାଏ । - ପାଟିରୁ କଥା ବାହାରେ ନାହିଁ । ସେ ଖାଲି ବୋକାଙ୍କ ଭଳି ଏଣେ ତେଣେ ଚାହେଁ । ମନେ ମନେ ଠାକୁରାଣୀଙ୍କୁ ଡାକେ । ସମୁଦ୍ର ସଙ୍ଗେ ସେ ନିତିଦିନ ଏତେ ଲଢ଼େଇ କରୁଛି-ସମୁଦ୍ରର ଲହଡ଼ି ଭାଙ୍ଗି ଭାଙ୍ଗି ତାର ଅଙ୍ଗ ପ୍ରତ୍ୟଙ୍ଗ ହୋଇଛି ପଥର ପରି ଟାଣ,-ତଥାପି ସେ ବେଳେବେଳେ ସମୁଦ୍ରକୁ ଡରେ । ଯେତେବେଳେ ଖାଇବାକୁ ମିଳେ ପ୍ରଚୁର, ମନ ଇଚ୍ଛା ହସି ଡେଇଁ ମଦପିଇ ସେ ମଉଜ୍ କରେ; ସମୁଦ୍ର ମାତାର ସ୍ତୁତି କରେ । ସୁଖ ବେଳେ ଦୁଃଖ କି ଦୁଃଖ ବେଳେ ସୁଖ କଥା ତାର ମନେ ରହେ ନାହିଁ । ତାର ଅତୀତ ଥିଲା ବୋଲି ସେ କେବେ ଭାବେ ନାହିଁ । ଯଦି ଭାବେ, ଅତୀତଟା ତା ଆଖି ଆଗରେ ଝୁଲିରହେ ଦୂର ଝାଉଁବଣର ଫିକା କୁହୁଡ଼ି ପରି । ଭବିଷ୍ୟତ ପାଇଁ ସେ ସ୍ୱପ୍ନ ଦେଖେ-ସମୁଦ୍ର ଉପରେ ସୂର୍ଯ୍ୟ କିରଣରେ ଉକୁଟି ଉଠୁଥିବା ରଙ୍ଗ ଦେଇ ସେ ତାର ଭବିଷ୍ୟତକୁ ରଙ୍ଗାଏ; ମାତ୍ର ରଙ୍ଗୀନ୍ ଭବିଷ୍ୟତଟା କେବଳ ଗୋଟାଏ ସ୍ୱପ୍ନ-ସ୍ୱପ୍ନରେ ହିଁ ସେ ରହେ ସବୁଦିନେ । କେବେ ଧରାଛୁଆଁ ଦିଏ ନାହିଁ ।

ତେଣୁ ଆଜିର ବିପଦରେ ଏକାବେଳକେ ଭାଙ୍ଗି ପଡ଼ିଲା ନୋଳିଆ ପୁଅ । ବୁଢ଼ା ଓଡ଼ିଆ ଭଣ୍ଡାରି ନରସିଂ ସମସ୍ତଙ୍କୁ ହିମ୍ମତ ଦେଉଥାଏ, "ଆରେ, ଯୁଦ୍ଧ ଲାଗିଲେ ଆମର କ'ଣ ହେବରେ । ଆମ ସରକାର ଆମକୁ ରକ୍ଷା କରିବ । ଏ ସୈନ୍ୟମାନେ ନିଶ୍ଚୟ ଆମରି ଲୋକ । ତା' ନହେଲେ ଯୁଦ୍ଧ ସ୍ଥାନକୁ ଗଲେ ବିପଦ ଅଛି ବୋଲି ସେ ସୈନ୍ୟଟି ଆମକୁ କହନ୍ତା କାହିଁକି ?"

"ଆରେ ଯୁଦ୍ଧ କ'ଣ ଏମିତି ହୁଏ ? ଯୁଦ୍ଧ ପଡ଼ିଆରେ ଦୁଇ ଦଳର ସୈନ୍ୟ ଏକାଠି ହୁଅନ୍ତି । ହାତୀ, ଘୋଡ଼ା, ରଥ, ଖଣ୍ଡା, ତଲୁଆର୍, ବନ୍ଧୁକ ସବୁ ଜମା ହୋଇଥାଏ । ତା'ପରେ ଯୁଦ୍ଧ ହୁଏ । ସେମିତି ଯୁଦ୍ଧ ଲାଗିଥିଲା ଆମେ ପଲାସାରେ ଥିବାବେଳେ । ଯୁଦ୍ଧ ଲାଗିଲେ ସବୁ ଜିନିଷପତ୍ରର ଦରଦାମ ବଢ଼ିଯାଏ । ମନେ ନାହିଁ, କେମିତି ଗଲା ଯୁଦ୍ଧ ବେଳେ କିରାସିନୀ ଟୋପାଏ ମିଳୁ ନଥିଲା ଯେ ଆମେ ଝାଉଁକାଠ ଜାଳି ଆଲୁଅ ପାଉଥିଲେ ?" ଶବ୍‌ରା ତା ମୁଣ୍ଡର ଲମ୍ବା ଲମ୍ବା ଅଡୁଆ ବାଳକୁ ନଖରେ ରାମ୍ପୁ ରାମ୍ପୁ କହିଲା । ଅନ୍ୟମାନଙ୍କୁ ହିମ୍ମତ ଦେବାକୁ ଚେଷ୍ଟା କଲାବେଳେ ବି ତା ମନ ଭିତରେ ଯେ ଆଦୌ ଭୟ ନଥିଲା, ତା ନୁହେଁ ।

ଉଦୁଉଦିଆ ଖରାବେଳେ ସୈନ୍ୟମାନେ କାନ୍ଧରେ ବନ୍ଧୁକ ପକାଇ ନୋଳିଆ ବସ୍ତିଆଡ଼କୁ ମାଡ଼ି ଆସିବାର ଦେଖାଗଲା । ନୋଳିଆମାନେ ଭୟରେ ବସ୍ତି ମୁଣ୍ଡରେ ରୁଣ୍ଡ

ହେଲେ । ଏତେବେଳ ଯାଏଁ ଯେଉଁ ବିପଦକୁ ଡରୁଥିଲେ, ସେଇ ବିପଦ ମାଡ଼ି ଆସୁଚି । ଟାଇଁ ଟାଇଁଆ ଖରାରେ ଲେଫ୍‌ଟ୍ ରାଇଟ୍ କରି ସୈନ୍ୟମାନେ ମାଡ଼ି ଆସୁଥାନ୍ତି । ସେମାନଙ୍କ ସଙ୍ଗେ ସଙ୍ଗେ ଚାଲିଥାନ୍ତି ଆଉ ଦୁଇଜଣ ବଡ଼ ସେନାପତି । କାନ୍ଧରେ ଚମଡ଼ା ବେଲ୍‌ଟ୍ ପକାଇ ସେମାନେ ବେଳେବେଳେ ହୁଇସିଲ୍ ମାରୁଥାନ୍ତି । ଦୂରରୁ ନୋଳିଆମାନଙ୍କର ହଳ ହଳ ଆଖି ସେମାନଙ୍କୁ ଅନାଇ ରହିଛି ଭୟ ଓ ସନ୍ଦେହମିଶା ଚାହାଣୀରେ, ତାହା ସେମାନଙ୍କୁ ମାଲୁମ୍ ନାହିଁ । ସେମାନେ ନୋଳିଆବସ୍ତି ଆଡ଼େ ନଆସି ଷ୍ଟେସନକୁ ଚାଲିଗଲେ । ବାଲି ଉପରେ ବୁଟ୍ ଜୋତାର ଖସ୍ ଖସ୍ ଶବ୍ଦ କ୍ରମେ ହଜିଗଲା ସମୁଦ୍ରର ଘୁ ଘୁ ଗର୍ଜନ ଭିତରେ । ଶେଷକୁ ସେମାନେ ଦେଖାଗଲେ ଗୋଟିଏ ମାଟିଆ ଲମ୍ବା ସରଳରେଖା ପରି– ତା'ପରେ ସେମାନେ ଆଖି ଆଗରୁ ପୁରାପୁରି ଅନ୍ତର୍ଦ୍ଧାନ ହୋଇଗଲେ ।

ନୋଳିଆ ନୋଳିଆଣୀମାନେ ଓଠ ନେଫଡ଼େଇ ହସିଲେ । ଓଃ–ମୁଣ୍ଡରୁ କେଡ଼େବଡ଼ ବୋଝଟାଏ ତଳେ ଖସି ପଡ଼ିଲା । ପବନରୁ ଆତଙ୍କ ଯାଇଛି । ସବୁ ଲାଗୁଛି ହାଲୁକା ହାଲୁକା । ଏତେବେଳକୁ ଗୁରାୟାର ମନେ ପଡ଼ିଲା ଯେ କାଲି ରାତିରେ ସେ ଉପାସ ଶୋଇଥିଲା । ଆଜି ଏତେବେଳ ଯାଏଁ ତା ପେଟରେ ଆହାର ପଡ଼ିନାହିଁ । ପେଟରେ ନିଆଁ ଜଳୁଛି । ସିମାଦ୍ରୀ କାନ ଅଣ୍ଡାଳିଲା–କେତେବେଳୁ ସେ ପିକା ଟାଣି ନାହିଁ । ପାଟିଟା ପିତା ପିତା ଲାଗୁଛି । ପିକା କିଣିବାକୁ ସେ ଅଣ୍ଟା ଦରାଣ୍ଡିଲା । ପିଲାମାନେ ହୋ–ହୋ ରଡ଼ିକରି ସମୁଦ୍ରକୂଳ ଆଡ଼େ ଧାଇଁଲେ । ଏଲାମା, ରାଜୁଲୁଆମା, କାମୁଡୁ, ଏର୍‌ରାପା, ପୁନ୍ନାମା, ରାଜ୍‌ଜାମା, କର୍‌ଲା–ସମସ୍ତେ ଘରକୁ ଫେରିଲେ । ଏତେବେଳ ଯାଏଁ କାହାରି ଘରେ ଚୁଲି ଜଳିନି । କିଏ କହୁଛି– "ଆଜି ତ ଚାଉଳ ନଥିବ ।" କିଏ ପାଳି ଧରୁଛି– "କାଲି ତ ମାଣ୍ଡିଆ ପେଜ ଟିକିଏ ହୋଇଥିଲା । ଆଜି ଏମିତି ବିପଦ ପଡ଼ିଲା । ସମୁଦ୍ରକୁ ଜାଲ ଗଲାନାହିଁ । ଗଲେ କ'ଣ ରାନ୍ଧିବି ?" ଆଉ କିଏ କହୁଛି, "ପିଲାଟିକୁ କ'ଣ ରୋଗ ହୋଇଛି ଯେ ଆଖି ଦି'ଟା ହଳଦିଆ ଦିଶୁଛି । ବେଳକୁବେଳ ଦେହ ହାତ ଶୁଖିଯାଉଛି ନଳିତା ଡାଙ୍ଗ ପରି ।"

ସଞ୍ଜବେଳକୁ ସିମାଦ୍ରୀ ବାଣୀଗୁପ୍ତକୁ ପଚାରି ବୁଝିଲା ଯେ, ଯେଉଁମାନେ ଖରାବେଳେ ସମୁଦ୍ର କୂଳେ ବନ୍ଧୁକ ଫୁଟାଉଥିଲେ, ସେମାନେ ସୈନ୍ୟ ନୁହନ୍ତି – ଯୁଦ୍ଧ କରିବାକୁ ଆସି ନଥିଲେ । ସେମାନେ କଲେଜର ଏନ୍.ସି.ସି. ଛାତ୍ର । ନିଛାଟିଆ ଜାଗାକୁ ଆସି ବନ୍ଧୁକ କେମିତି ଫୁଟାଇବାକୁ ହୁଏ, ଅଭ୍ୟାସ କରୁଥିଲେ ।

ବାଣୀଗୁପ୍ତର କଥା ସମସ୍ତେ ବୁଝି ପାରିଲେ ନାହିଁ । ତେବେ ଏତିକି ବୁଝିଲେ ଯେ ଯେଉଁମାନେ ଖରାବେଳେ ବନ୍ଧୁକ ଫୁଟାଉଥିଲେ, ସେମାନେ ସୈନ୍ୟ ନୁହନ୍ତି କି କେଉଁଠି ଯୁଦ୍ଧ ଲାଗିନି । ତେଣୁ ବିପଦ ପଡ଼ିବାର ଭୟ ନାହିଁ ।

ବାପ ମଲାଦିନୁ ଗୁରାୟା କେମିତି ଟିକିଏ ବଦଳି ଯାଇଛି । ଏଡ଼େ ବଡ଼ ଘରର ସେ ମାଲିକ । ଦୁଇଟା ଭଉଣୀ ଓ ଦୁଇଟା ଭାଇଙ୍କର ସୁଖଦୁଃଖ ତା'ରି ଉପରେ । ବାପଟା ବସି ବସି ଖାଉଥିଲା ସତ, ହେଲେ ସେ ଥିବାବେଳେ ଗୁରାୟା ଟିକିଏ ଲଗାମ୍‌ଛଡ଼ା ଥିଲା । ଦିନେ ଦିନେ ବଜାରରେ ମାଛ ବିକି ସେ ଘରକୁ ଫେରୁଥିଲା ରାତି ବାରଟା ଗୋଟାଏ ବେଳକୁ । ଚାଉଳି ମଦଖାଇ ଆଖି ଲାଲ୍ କରି ସେ ଥରିଲା ପାଦରେ ଘରେ ଗୋଡ଼ ଦେଇ ପୁନ୍ନାମାକୁ ଖାଇବାକୁ ମାଗୁଥିଲା । ବୁଢ଼ା ଛିଣ୍ଡା ହେଂସ ଉପରେ ବସି କାଶି କାଶି ପୁଅକୁ ଗାଳି ଦେଉଥିଲା, "କି'ରେ, ଏତେବେଳ ଯାଏଁ ବୁଲୁଥିଲୁ କି, ଦେହ ତ ଡାଙ୍ଗ ପରି ହେଲାଣି ।"

ବାପ କଥା ନଶୁଣି ଗୁରାୟା ରାତିର ମାଣ୍ଡିଆପେଜ କି ଭାତ ମାଛ ପୋଡ଼ା ଖାଇ ଶୋଇ ପଡୁଥିଲା ଆରାମରେ । ସାରା ଦିନର ଖଟଣୀ ପରେ ଟିକିଏ ଚାଉଳି ମଦ ହିଁ ତାକୁ ଦେଉଥିଲା ଶାନ୍ତି – ଯେଉଁ ଶାନ୍ତି ଖୋଲା ଆକାଶରେ ଓ ଖୋଲା ସମୁଦ୍ର ଉପରେ ଲାଖି ରହିଛି ।

ବାପ ବୁଢ଼ା ହୋଇଥିଲା ମଲା । ତଥାପି ବୁଢ଼ାଟା ଖାଲି ବାପ ହୋଇ ଶାସନ କରୁନଥିଲା, ମାଆ ହୋଇ ସ୍ନେହ ସହାନୁଭୂତି ଢାଳି ଦେଉଥିଲା । ସେ ଗଲାଦିନୁ ଗୁରାୟାର ଘରଟା ଯେମିତି ମୁରବ୍‌ବୀହୀନ ହୋଇ ପଡ଼ିଛି ।

ପୁନିଅଁ ଯିବାର ଦି'ଦିନ ହୋଇଛି । ଆକାଶର ପଣତ ଧରି ସମୁଦ୍ର ଉପରେ ଝୁଲି ପଡ଼ିଚି ଜହ୍ନଟା । ସବୁଠି ଝିଲ୍‌ମିଲ୍ ଆଲୁଅ । ଆଜି ଦିନ ସାରା ବର୍ଷା ଲାଗି ରହିଥିଲା । ସଞ୍ଜକୁ ବର୍ଷା ଛାଡ଼ି ଜହ୍ନ ଉଇଁ ଆସୁଚି । ବସ୍ତିର ଲୋକେ ଦିନ୍‌ସାରା ଘରୁ କୁଆଡ଼େ ବାହାରି ପାରି ନଥିଲେ । ସଞ୍ଜବେଳକୁ ପଦାକୁ ବାହାରିଛନ୍ତି । ଜହ୍ନ ଆଲୁଅରେ ଏଠି ସେଠି ପୁଞ୍ଜା ପୁଞ୍ଜା ପୁରୁଷ ସ୍ତ୍ରୀ ବୁଲୁଥିବାର ଦେଖାଯାଉଛି ।

ଗୁରାୟା ସମୁଦ୍ରର ଓଦାବାଲି ଉପରେ ଠିଆହୋଇ ପୋଢୁଅ ମରାମତି କରୁଥାଏ;

ଆଉ ଭାବୁଥାଏ ଏଣୁତେଣୁ କେତେ କଥା । ସଞ୍ଜବେଳକୁ ସାହୁକାର ଘରୁ କିଛି ଚାଉଳ ଧାର ଆଣିଛି । ପୁନ୍ନାମା ଭାତ ରାନ୍ଧୁଛି । କୁଡ଼ିଆ ଘରୁ ମଠେଇ ମଠେଇ ବାହାରି ଆସୁଛି ଧୂଆଁ-ଲମ୍ବା ନେଳି ଧୂଆଁ । ସାନଭାଇ ଦୁଇଟି କୁଡ଼ିଆ ସାମ୍ନାରେ ବସି ଖୁସିଗପ କରୁଛନ୍ତି । ରାଜ୍‌ଜାମାଟା କାହା ଘରେ ପଶିଥିବ । ଝିଅଟା ଏଡ଼େ ବଡ଼ ହେଲାଣି, ଟିକିଏ ହେଲେ ଘରକଥା ଭାବନା ନାହିଁ । ସବୁବେଳେ ଯାଇ ଯା ଘରେ ତା ଘରେ ପଶି ଖେଳୁଥିବ । ବାପ ମାଆ ସମସ୍ତେ ମଲେ-ତାର ଟିକିଏ କେଉଁଥିପାଇଁ ଚିନ୍ତା ନାହିଁ । ଘରର ସବୁକାମ କରିବାକୁ ପୁନ୍ନାମା । ରାଜ୍‌ଜାମା ଖାଲି ଖେଳିବ ଆଉ ବେଳ ସଅଳରେ ଭୋଜନ ମାରିବ ।

ଗୁରାୟାର ସାନ ଭଉଣୀ ପାଇଁ ରାଗ ହେଲା ନାହିଁ-ଦୟା ହେଲା । ଝିଅଟା-ଆଜି ଅଛି, କାଲି କାହା ହାତ ଧରି ପର ଘରକୁ ଯିବ । ବାପ କଥା ମନେ ପଡ଼ିଲା । ବାପ ପୁଅ ତିନିଟାଙ୍କ ପାଇଁ ଯେତେ ଭାବୁଥିଲା, ଝିଅ ଦି'ଟାଙ୍କ ପାଇଁ ଭାବୁଥିଲା ତା'ଠାରୁ ବେଶି । ଝିଅ ଟକିଏ ଭଲ ଖାଇବାକୁ ଖୋଜିବ, ଖଣ୍ଡେ ଭଲ ପିନ୍ଧିବାକୁ, ଅଳସରେ ସାଥୀ ଝିଅମାନଙ୍କ ସଙ୍ଗେ ବସି ଘଡ଼ି ଘଡ଼ି ଧରି ଗପ ଜମାଇବାକୁ ଇଚ୍ଛା କରିବ- ଏ ତ ସାଧାରଣ କଥା । ବାପ ମଲାଯାଏଁ ଝିଅ ଦୁଇଟାଙ୍କୁ ଆଖିରେ ଆଖିରେ ରଖିଥିଲା । ଗୁରାୟା ରାତି ବାରଟାକୁ ଫେରିଲେ ତାର ଦକ ନାହିଁ, କିନ୍ତୁ ରାଜ୍‌ଜାମା ସଞ୍ଜ ଦି'ଘଡ଼ିକୁ ଘରକୁ ନ ଲେଉଟିଲେ ବୁଢ଼ା ହାତରେ ଲମ୍ବା ବାଡ଼ିଟି ଧରି ଡିପେଇ ଡିପେଇ ରାଜ୍‌ଜାମା ରାଜ୍‌ଜାମା ଡାକି ବସ୍ତିଟା ଖୋଜିଯିବ ।

ମନ ଲଗାଇ ପୋତୁଅଟା ମରାମତି କରୁଥାଏ ଗୁରାୟା । କାହାର ଛାଇଟାଏ ହଠାତ୍ ତା'ରି ଛାଇ ପାଖକୁ ଆସି ସ୍ଥିର ହୋଇ ରହିଗଲା । ମୁହଁ ବୁଲାଇ ଚାହିଁଲା ଗୁରାୟା- ଆରେ, କର୍‌ଲାଟା । ତା କଥା କେତେଦିନ ହେଲା ଭାବିନଥିଲା ସେ । ତଥାପି ମନେ ହେଲା, ଆଜିର ଏ ଜହ୍ନରାତିରେ ବସ୍ତିଠାରୁ ଅଳ୍ପ ଦୂରରେ, ଟିକିଏ ନିଛାଟିଆ ସ୍ଥାନରେ, ସେ ଯେମିତି ମନର ଏକ ଅବଚେତନ ଅବସ୍ଥାରେ କର୍‌ଲାର ହିଁ ସ୍ୱପ୍ନ ଦେଖୁଥିଲା ।

ବର୍ଷାଧୂଆ ସମୁଦ୍ରବାଲିର ସୁଗନ୍ଧ ଓ ଜହ୍ନର ମନମତାଣିଆ ଆଲୁଅ ଭିତରେ ପରସ୍ପରକୁ ଅନାଇ ମୁହୂର୍ତ୍ତକ ଲାଗି ଠିଆ ହୋଇ ରହିଲେ ଦୁଇଟି ମୂର୍ତ୍ତି – କେତେ ଉତ୍ତେଜନା, ଆଶା, ନିରାଶା ମାନ ଅଭିମାନ ଦୁହିଁଙ୍କର ଶିରାରେ ଶିରାରେ ରକ୍ତ ସଙ୍ଗେ ମିଶି ପ୍ରବାହିତ ହେଉଥିଲା ବହୁଦିନ ହେଲା । ଏବେ ଗୁରାୟାକୁ ସମୟ ହୁଏନା କର୍‌ଲା କଥା ଭାବିବାକୁ । କର୍‌ଲା ବି ଗୁରାୟା ଘରକୁ ବେଶି ଆସିବାକୁ ସୁବିଧା ପାଏନା । ତା ଭାଇ ଏବେ କୁଆଡ଼େ ତିନି ଚାରିଥର କହିଲାଣି, ଗୁରାୟା ଯଦି ଶୀଘ୍ର ଝୋଲା ଟଙ୍କା ଦେଇ କର୍‌ଲାକୁ ବାହା ନହୁଏ, ତେବେ ସେ ଆଉ କୁଆଡ଼େ ଦେଖିବ ।

ବହୁଦିନ ପରେ ହଠାତ୍ ଏମିତି ଦୁହିଁଙ୍କ ଭିତରେ ସାକ୍ଷାତ୍- ନିଛାଟିଆ ଜହ୍ନ ଆଲୁଅରେ । କାହାରି ମୁହଁରେ କଥା ନାହିଁ – ଦୁହେଁ ଯେମିତି ଅପାରାଧୀ । ସମୁଦ୍ର ଉପରେ ଚକା ଭଉଁରୀ ଖେଳି ଖେଳି ସମୁଦ୍ର ପବନ ସେମାନଙ୍କ ଦେହକୁ ଏକ ସମୟରେ ଛୁଇଁଗଲା ଓ ଆକାଶରେ

ଭାସୁଥିବା ଛୋଟ ମେଘର ଡଙ୍ଗାଟି ହଠାତ୍ ଏକ ଚଲା ବାଦଲର ହ୍ରଦ ଭିତରେ ବୁଡିଗଲା । ପାଖକୁ ପାଖ ଲାଗି ଠିଆ ହୋଇଥିବା ଦୁଇଟି ଦେହ ଲାଗି ଆସିଲା ଅଧିକ ପାଖକୁ ଏବଂ ଗୁରାୟା ଅନୁଭବ କଲା-ତା ଗାଲରେ ବାଜୁଚି କରଲାର ଉଷ୍ଣମ୍ ନିଃଶ୍ୱାସ । କରଲା ବି ଅନୁଭବ କଲା, ସେ ତାର ସମସ୍ତ ଦେହଟାକୁ ଲଟାଇ ଦେଇଛି ଆଉ ଗୋଟାଏ ବଳିଷ୍ଠ ଦେହରେ ଏବଂ ତାର ଦୁଇଟା ମାଂସଳ ହାତକୁ ବନ୍ଦୀ କରିଚି ଆଉ ଦୁଇଟା ଲୁହାର ହାତ... ।

କେତେ କ୍ଷଣ ବିତିଗଲା ଏମିତି ... ।

ତା'ପରେ ଜହ୍ନର ଡଙ୍ଗାଟା ମେଘର ହ୍ରଦ ଭିତରୁ ଭାସିଉଠିଲା ଏବଂ ସମୁଦ୍ର ପବନ ହଠାତ୍ ସ୍ଥିର ହୋଇଗଲା । ଅଙ୍କ ଛାଡ଼ି ପାଖକୁ ପାଖ ଠିଆହେଲେ ଗୁରାୟା ଓ କରଲା । କରଲା ଜୋର୍‌ରେ ନିଃଶ୍ୱାସ ନେଉଥାଏ । ଛାତି ଭିତରେ ତାର ବହୁ ଅଜଣା କାରଣରୁ ଭୟ ଓ ଆଶଙ୍କାର କମ୍ପନ । ଦୁଇ ହାତରେ କରଲାର ହାତ ପାପୁଲିକୁ ଚାପିଧରି ସେ ପଚାରିଲା, "ରାଗିଲୁ କି ?"

ମେଘ ନିଜବାଟେ ମନକୁ ମନ ଜହ୍ନ ସଙ୍ଗେ ଲୁଚକାଳି ଖେଳି ଭାସି ଯାଉଥାଏ । ତା ସୁଖ ଦୁଃଖରେ ସେ ଯେମିତି କାହାକୁ ଭାଗୀଦାର୍ କରାଇବାକୁ ଚାହେଁନା । ମାତ୍ର କେଉଁଠି ଥାଏ ଥଣ୍ଡା ପବନ, ଶିର୍ ଶିର୍ ହୋଇ ମେଘର ଦେହକୁ ଯେତେବେଳେ ଛୁଇଁଥାଏ, ମେଘର ମନେ ପଡ଼େ ପୃଥିବୀ କଥା । ମନେ ପଡ଼େ ଯେ ଧୂସର ପ୍ରକୃତିକୁ ସବୁଜ କରିବାର ସମୟ ଆସିଲାଣି । ପାହାଡ଼ ଉପରେ ଯୋଡ଼ି ଯୋଡ଼ି ମୟୂରଙ୍କୁ ନଚାଇବାକୁ ହେବ-ଜଙ୍ଗଲର ଅନ୍ଧିକନ୍ଧିରେ ନିଆଁ ବୁନ୍ଦାପରି ଖଞ୍ଜି ଦେବାକୁ ହେବ ଅସଂଖ୍ୟ ଫୁଲ- ।

ସେମିତି ଗୁରାୟା ଦେହରେ ଅଧଆଉଜା ହୋଇ ପଥରଗଢ଼ା ଏକ ନାରୀ ମୂର୍ତ୍ତିପରି ଚୁପ୍‌ଚାପ୍ ଠିଆ ହୋଇଥିଲା କରଲା । ଗୁରାୟାର ପଦିଏ କଥାରେ ତାର ଦିନ ଦିନର ଅଭିମାନ ଓ ହତାଶା ହଠାତ୍ ଯେମିତି ପଦାକୁ ବାହାରି ଆସିବାକୁ ଚାହିଁଲା । ଛାତି ଭିତରେ କେଉଁଠି ନିଆଁ ଲାଗି ସର୍ବାଙ୍ଗ ପୋଡ଼ିଯିବା ପରି ଲାଗିଲା । ତଥାପି ସେ ନୀରବରେ ଠିଆ ହୋଇ ରହିଲା-ସେ ଯେମିତି ପରୀ ରାଇଜର ମଉନାବତୀ-କେଉଁ ରଜାପୁଅର ସ୍ପର୍ଶ ପାଇବା ପର୍ଯ୍ୟନ୍ତ ତାର ବୀଣାଜିଣା କଣ୍ଠ ରୁଦ୍ଧ ହୋଇଯାଇଛି । ଗୁରାୟା ବୁଝିଲା, କରଲା ଅଭିମାନ କରିଛି । ଆଉରି ଆଦରରେ ତାକୁ ନିଜ ଦେହରେ ଭିଡ଼ିଧରି ପଚାରିଲା, "କିରେ ଟୋକୀ, ରାଗିଲୁ କି ?"

ଏତକ ପଚାରି ଚମକି ପଡ଼ିଲା ଗୁରାୟା, ଯେତେବେଳେ ତା ହାତରେ ଲାଗିଲା ଦୁଇ ଟୋପା ତତଲା ଲୁହ । କରଲା କାନ୍ଦୁଚି । ଗୁରାୟା କରଲା ଆଖିରୁ ଲୁହ ପୋଛି ଦେଲା । ସେଇ ପୋଢୁଅ ପାଖରେ ଦୁହେଁ ବସି ପଡ଼ିଲେ ପାଖକୁ ପାଖ । ଗୁରାୟା ଛାତିରେ ମୁହଁ ଗୁଞ୍ଜି କଇଁ କଇଁ ହୋଇ କାନ୍ଦି ଉଠିଲା କରଲା ।...

ସମୁଦ୍ର କୂଳର ମଣିଷ ସମୁଦ୍ର ଜନ୍ତୁପରି । ସେ ଅନୁଭବ କରେ, କିନ୍ତୁ କହିଲାବେଳକୁ

ତୁଣ୍ଡ ଅଟକି ଯାଏ, ଭାଷା ପଇଟେ ନାହିଁ । ଗୁରାୟା ବୁଝିଲା, କର୍‌ଲା କାହିଁକି କାନ୍ଦୁଛି । ଆଶ୍ୱାସନା ଦେବାକୁ ତାକୁ ଭାଷା ମିଳିଲା ନାହିଁ । ସେ ଖାଲି ଅନୁଭବ କଲା- ସେ ବଡ଼ ଅପରାଧ କରିଛି । ତା ଯୋଗେ କର୍‌ଲା ଘରେ ତା ଭାଇଠୁ ଗାଳି ଶୁଣୁଛି । ବସ୍ତିରେ ସମସ୍ତେ ଜାଣନ୍ତି-କର୍‌ଲା ଗୁରାୟାକୁ ବାହା ହେବ; କିନ୍ତୁ ଗୁରାୟା ଦିନ ଗଡ଼ାଉଛି । କେତେଦିନ ଆଉ ଅପେକ୍ଷା କରିବ କର୍‌ଲା ? ଭାଇ ଧମକ ଦେଉଛି, "ଗୁରାୟା ନହେଲେ ବସ୍ତିଟାରେ ଟୋକାର ଅଭାବ ହେବନାହିଁ ।"

ଗୁରାୟା ଆଶ୍ୱାସନା ଦେଲା, "ତୁ ଏମିତି ହେଉଚୁ କାହିଁକି ? କାଲି ମୁଁ ବଡେୟାକୁ ନେଇ ତୋ ଭାଇ ପାଖକୁ ଯିବି । ସାହୁକାର କହିଚି, ତିନିକୋଡ଼ି ଟଙ୍କା କାଲି ଦେବ । ତୋ ଭାଇ ସଙ୍ଗେ ଆମର ଝୋଲାଟଙ୍କା ଛିଣ୍ଡିଗଲେ ଆଉ ଭୟ କେଉଁଥିପାଇଁ ? ଖରା ମାସଟା ଆଉ କେତେ ଦିନ କି ?"...

"ଦେଖ୍ ଗୁରାୟା, କାଲି ଯଦି ଆମ ଘରକୁ ଆସି ଦିନ ପକ୍‌କା ନକରୁ, ତେବେ ଭାଇ ଆଉ କେଉଁଠି ବୁଝିଦେବ । ତୋର ମୋ ପାଇଁ ସତରେ ସ୍ନେହ ନାହିଁ -"

ଗୁରାୟା ହସିଲା । ସବୁବେଳେ ଝିଅମାନଙ୍କର ଏମିତି କଥା । କର୍‌ଲାକୁ ଦୃଢ଼ ଭାବରେ କହିଲା, "କାଲି ଯିବି, କାଲି ଯିବି -"

ଧୀରେ ଧୀରେ କର୍‌ଲା ଉଠି ଚାଲିଗଲା । ପୋଡୁଅରେ ଭରା ଦେଇ ଠିଆ ହୋଇ ରହିଲା ଗୁରାୟା । ଧୀରେ ଧୀରେ ଚାଲି ଯାଉଛି କର୍‌ଲା – ସ୍ୱପ୍ନରେ ଆସି ଯେମିତି ସ୍ୱପ୍ନରେ ସେ ମିଳେଇ ଯାଉଛି । ତାର ଅଭିମାନଭରା କଥା କେତେ ପଦ ସମୁଦ୍ରର ଘୁ-ଘୁ ଶବ୍ଦକୁ ଟପି ଗୁରାୟାର କର୍ଣ୍ଣ ଗହ୍ୱରରେ ପ୍ରତିଧ୍ୱନିତ ହେଲା ବାରମ୍ବାର । ଯେମିତି ହେଲେ ଆସନ୍ତା କାଲି ସେ କର୍‌ଲାର ଭାଇ ପାଖକୁ ଯିବ । ଝୋଲାଟଙ୍କା ଛିଣ୍ଡେଇ ଦେବ । ଆଉ ପାଞ୍ଚଜଣ ମୁଖିଆ ବସି କଥାଟା ବିଚାର କରିବେ । ବେଶି ଟଙ୍କାକୁ ମୁଣ୍ଡ ନୁହେଁ, ସେ ଖୁବ୍ ହେଲେ ଦି'କୋଡ଼ି ଦେବ । ମୁଖିଆମାନଙ୍କ ଆଗେ ହାତଯୋଡ଼ି ସେ କହିବ, ଦି'କୋଡ଼ିରୁ ବେଶି ଦେଇ ପାରିବ ନାହିଁ । ଗରିବ ଲୋକ । ଏତକ ସେ ସାହୁକାରଠାରୁ ଋଣ କରି ଆଣିଛି । ଘରେ ପୁଣି ଦୁଇ ଦୁଇଟା ଭଉଣୀ ଅଛନ୍ତି । ସେମାନଙ୍କର ବାହାଘର ହେଲେ ତାକୁ ପୁଣି ଭୋଜି ଦେବାକୁ ପଡ଼ିବ । କେତେ ଖର୍ଚ୍ଚ ଅଛି । ନା-ନା-ଦି' କୋଡ଼ି ଟଙ୍କାରୁ ସେ ଅଧିକ ଦେଇ ପାରିବ ନାହିଁ ।

କେତେବେଳୁ କର୍‌ଲା ବସ୍ତି ଭିତରେ କୁଆଡ଼େ ଛପି ଗଲାଣି । ଗୁରାୟା ସେମିତି ପୋଡୁଅକୁ ଆଉଜି ଠିଆ ହୋଇ କର୍‌ଲାର ଯିବା ବାଟକୁ ଅନାଇଥାଏ । ତା ଆଖି ସେଠି ନଥାଏ- ।

ତା'ପର ଦିନ ସକାଳୁ ସମୁଦ୍ରକୁ ଜାଲ ଯିବାର ବହୁତ ଆଗରୁ ଗୁରାୟାର ନିଦ ଭାଙ୍ଗିଗଲା । ରାତିଟା ସ୍ୱପ୍ନରେ ସ୍ୱପ୍ନରେ କଟିଛି । କୌପୁନୀ ଉପରେ ମଇଳା ଗଞ୍ଜିଟାଏ ପିନ୍ଧି ଓ କାନରେ ଧୁଙ୍ଗିଆଟାଏ ଖୋସି ସେ ଜୋଲ୍‌ଦେଲା ଘରେ ହାଜର ହେଲା । ଜୋଲ୍‌ଦେଲା କର୍‌ଲାର ଭାଇ । ମୁହଁ ମାଡ଼ି ଶେଯ ଉପରେ ସେ ମଲା ମଣିଷ ପରି ପଡ଼ିଥିଲା । ଗୁରାୟାର ଗୋଟିଏ ଡାକରେ ଚମକି ଉଠିପଡ଼ି କହିଲା, "କେତେବେଳ ହୋଇଗଲାଣି କି ? କାଲି ଶୋଉ ଶୋଉ ଅଧରାତି ହୋଇଥିଲା ।"

ଗୁରାୟା ଜୋଲ୍‌ଦେଲାର ମଇଳା ହେଂସ ଖଣ୍ଡିକ ଉପରେ ବସି ସିଧା ସିଧା ଆସିବାର କାରଣ କହିଗଲା । ସମୁଦ୍ର କୂଳର ମଣିଷ ସହରୀ ଲୋକଙ୍କ ପରି ପଦେ କଥାକୁ ବାଗେଇ ସତର ପଦ କରି କହିବା ଶିଖିନାହିଁ । ମୁହେଁ ମୁହେଁ ସାଫ୍ ସାଫ୍ କଥା । ମିଛ କହିବାକୁ ସେ ଡରେ । "ଦେଖ୍ ଜୋଲ୍‌ଦେଲା, ତୁ ଆଜି ଝୋଲାଟଙ୍କା ଛିଣ୍ଡାଇ ଦେ । ଆସନ୍ତା ବଇଶାଖକୁ ମୁଁ କର୍‌ଲାକୁ ଘରକୁ ନେଇଯିବି ।"

ଜୋଲ୍‌ଦେଲାଟା ଟିକିଏ ହିସାବୀ । ତାର ଭଉଣୀ ଯେତେବେଳେ ବାହା ହେବ, ଭଲକରି ଟିକିଏ ଟଙ୍କା ହାଙ୍କିବା ଦରକାର । କାରଣ, କର୍‌ଲା ପାଇଁ ଖାଲି ଗୁରାୟା ନୁହେଁ, ବସ୍ତିର ଆଉ ଆଉ ଟୋକାମାନେ ବି ଅପେକ୍ଷା କରିଛନ୍ତି । ଧୁଙ୍ଗିଆରେ ନିଆଁ ଧରାଇ ଦେହରୁ ଅଳସ ଭାଙ୍ଗିବା ଭଙ୍ଗିରେ ଜୋଲ୍‌ଦେଲା କହିଲା, "ଯେମିତି ହେଲେ ଆସନ୍ତା ଖରାମାସରେ କର୍‌ଲାର ବାହାଘରଟା କରିଦେବି ବୋଲି ଭାବିଥିଲି । ତୁ ତ ଜାଣୁ, କର୍‌ଲା ପାଇଁ ତୋ ଛଡ଼ା ଆଉ କେତେ ଟୋକା ବି ଅଛନ୍ତି । ଝୋଲାଟଙ୍କା କଥା ପଚାରୁଛୁ ଯେ, ତତେ ଆଉ ଅଧିକ କ'ଣ କହିବି । ତୋ ଭାଇ ବଡେୟା ତିନି କୋଡ଼ି ଟଙ୍କା ଝୋଲା ବାବତ୍ ଦେଇଥିଲା । ତତେ ବି ସେତିକି ଦେବାକୁ ହେବ ।"

"ଏତେ ଟଙ୍କା ବୋଲୁଚୁ ଯେ କାହୁଁ ପାଇବି ? ସେଇ ଟଙ୍କା ଯୋଗେ ତ ଏତେ

ଡେରି ହୋଇଗଲା । ନହେଲେ ଗଲା ଖରାମାସରେ କ'ଣ ବାହା ହୋଇ ନଥାନ୍ତି କି-"

"ହଁ, ଜାଣେ ତା ।"

"ସେଥିପାଇଁ କହୁଚି, ସାହୁକାରଠାରୁ ଦୁଇକୋଡ଼ି ଟଙ୍କା ଆଣି ଦେବି । ବାପ ମଲାବେଳକୁ ଯେଉଁ ଟଙ୍କା ଆଣିଥିଲି, ଶୁଝା ହୋଇନି । ଏତେ ଟଙ୍କା କାହୁଁ ଦେବି । ତୁ କ'ଣ ଜାଣୁନି, ଘରେ ଦୁଇ ଦୁଇଟା ମାଇପି ପିଲା । ସେମାନେ ମୋ ଉପରେ ବୋଝ ସିନା ! ପୁଣି ସାନଭାଇ ଦୁଇଟା ।"

ବହୁ ସମୟ ଯାଏଁ ଚାଲିଲା ଏମିତି ଯୁକ୍ତିତର୍କ । କର୍‌ଲା ବି କେତେବେଳୁ ବାଂଫିରେ ଗାଧୋଇ ଆସି କେହି ନଦେଖିବା ପରି କୁଡ଼ିଆ ଦୁଆରେ ଆଉଜି ସବୁ ଶୁଣୁଥାଏ । ତା'ରି ବାହାଘର ବିଷୟରେ ତର୍କ ହେଉଛି - ଗୁରାୟା ଓ ଜୋଲ୍‌ଦେଲା ମଧ୍ୟରେ । ତାକୁ ଲାଜ ଲାଗିଲା । ଗତ ସଞ୍ଜବେଳର ସ୍ମୃତିସବୁ ପବନରେ ଶିର୍ ଶିର୍ ହୋଇ କାନ ପାଖର ଓଦା ବାଳରେ ଘଷି ହେଲା । ସମୁଦ୍ରର କଳା ନେଳି ଢେଉ ଉପରେ ନାଲି ଖରା ଚିକ୍ ଚିକ୍ କରୁଛି । ସମୁଦ୍ର ଯେମିତି ହସୁଛି କର୍‌ଲାର ବାହାଘର ଦେଖିବ ବୋଲି !

ବହୁତ ବେଳ ଯୁକ୍ତିତର୍କ ହେଲା । କିଛି ଛିଣ୍ଡି ପାରିଲା ନାହିଁ । ଗୁରାୟା ବହୁତ ଅନୁନୟ କରି କହୁଥାଏ, "ଦେଖ୍ ଜୋଲ୍‌ଦେଲା, ତୁ ତ ମୋ ଅବସ୍ଥା ଜାଣୁ ! ପୁନ୍ନାମା ବାହା ହୋଇ ଘରକୁ ହେଲେ ଝୋଲାଟଙ୍କା ଆଣିଥାନ୍ତା, ତତେ ଦେଇ ଦିଅନ୍ତି । ବୁଢ଼ା ବାପ ମରିବାର ବେଶି ଦିନ ହୋଇନି । ଦି'କୋଡ଼ି ଟଙ୍କା ନେ-ଆଉ ଦେଇ ପାରିବି ନି ।"

ଜୋଲ୍‌ଦେଲାର ସେଇ ଗୋଟିଏ କଥା, "ଆଚ୍ଛା, ତିନି କୋଡ଼ି ନହେଲେ ନାହିଁ । ସେଥିରୁ ଆଉ ପାଞ୍ଚଟଙ୍କା କମ୍ କରି ଦେ ।"

ବସ୍ତିର ଆଉ କେତେଜଣ ଲୋକ ଆସି ଜମା ହେଲେ । ଜୋଲ୍‌ଦେଲା ହେଂସ ପକାଇ ମୁଖିଆମାନଙ୍କୁ ଅଭ୍ୟର୍ଥନା କଲା । ଝୋଲାଟଙ୍କା ଛିଣ୍ଡିବାଟା ସହଜ କଥାନୁହେଁ । ସବୁବେଳେ ଏଥିପାଇଁ ଟିକିଏ ଟଣାଓଟରା ଲାଗେ । ଏଇ ଝୋଲାଟଙ୍କା ଉପରେ ହିଁ ବର ଓ କନ୍ୟା ଉଭୟ ପକ୍ଷର ସମ୍ମାନ ନିର୍ଭର କରେ । ତେଣୁ କେହି ସହଜରେ ନିଜ କଥାରୁ ହଟନ୍ତି ନାହିଁ । ଏହି କାରଣରୁ କେତେ ବାହାଘର ଭାଙ୍ଗିଯାଏ । କେତେ ଟୋକା ଟୋକୀଙ୍କ ଆଖିରେ ଲୁହ ଖୁନ୍ଦି ହୋଇଯାଏ । ନୋଳିଆ ସମାଜରେ ଏହା ଏକ ଅତି ସାଧାରଣ କଥା ।

ସେଦିନ ସକାଳେ କଥାଟା କୌଣସି ପ୍ରକାରେ ଛିଣ୍ଡିଲା ନାହିଁ । ସଞ୍ଜବେଳକୁ ପୁଣି ବସ୍ତିରେ ମୁଖିଆ ଲୋକଙ୍କ ପଞ୍ଚାତି ବସିଲା, ଠାକୁରାଣୀଙ୍କ କୁଦ ଉପରେ । ବଡେୟା ଓ ସିମାଦ୍ରୀ ଗୁରାୟା ପାଇଁ ଓକିଲାତି କରୁଥାନ୍ତି । ଯାନିଟା ଜୋଲ୍‌ଦେଲାକୁ ଆଗରୁ ଶିଖାଇଛି; ସେ ତିନି କୋଡ଼ି ଛାଡ଼ି ଚାରି କୋଡ଼ି ଦେବାକୁ ରାଜି ଅଛି । ତେଣୁ ଜୋଲ୍‌ଦେଲା ଟିକିଏ ବେଶି ଜିଦ୍ ଧରିଛି- ଗୁରାୟା ନହେଲେ କର୍‌ଲାର ବାହା ଅଟକି ଯିବ ନାହିଁ । ତିନି କୋଡ଼ିଠାରୁ ବେଶି ଦେବାକୁ କେତେ ଜଣ ରାଜି ହେବେ ।

ବହୁତ କଷ୍ଟରେ ଠିକ୍ ହେଲା, ଗୁରାୟା ଦୁଇକୋଡ଼ି ଦଶଟଙ୍କା ଦେବ । କଥାଟା ଛିଣ୍ଡାଇ ଯେ ଯୁଆଡ଼େ ଉଠିଗଲେ । ଯାନିଟା କେତେ ଦିନ ହେଲା 'କରଲା', 'କରଲା' ବୋଲି ରାତିରେ ଶୋଉ ନାହିଁ । ପୁନ୍ନାମାକୁ ଛାଡ଼ି କିଛିଦିନ ସେ ଆମୁଜିକୁ ବାହା ହେବ ବୋଲି ତା' ପଛେ ପଛେ ଗୋଡ଼ାଇଥିଲା । ଏବେ ପୁଣି କେତେ ଦିନ ହେଲା ତାର ଝୁଙ୍କ ଉଠିଛି, କରଲାଟା ଖାସା ଟୋକୀ-ତା'ରି ନାଖି ହେବ ଏକା ।

ତେଣୁ ଗୁରାୟାର ଝୋଲାଟଙ୍କା ବିବାଦ ଛିଣ୍ଡିବାରୁ ତା ମନଟା ତେନ୍ତୁଳି ଖାଇଲା ପରି ହୋଇଗଲା । ଗୁରାୟା ବି ଠଉରାଇ ନେଲା, ଯାନିର ମନକଥା । ଯାନି ଅନେକ ଦିନ ହେଲା ପୁନ୍ନାମା ପାଖକୁ ଆସୁ ନାହିଁ-ଏକଥା ଅଜଣା ନଥିଲା ଗୁରାୟାକୁ । ଯାନି ଉପରେ ତାର ରାଗ ହେଲା । ସୁବିଧା ହେଲେ ତାକୁ ଭଲକରି ପାନେ ଦେବ ଭାବି, ହାତ ମୁଠା କରି, ତମ୍ୟାତାର ପରି ଟାଆଁସା ବାଳକୁ ଓଟାରି ଓଟାରି ସେ ଘରକୁ ଫେରିଲା ।

ଦିନେ ସକାଳୁ ସମୁଦ୍ର କୂଳରୁ ନୋଳିଆ ବସ୍ତି ଆଡ଼କୁ ଦୁଇଟି ଧୋବଧଉଳିଆ ଲୋକ ଆସିବାର ଦେଖାଗଲା । ସେମାନେ ସଭ୍ୟ ମଣିଷ-ସହରର ହାକିମ କି ଅଫିସର ହେବେ । ହାତରେ କଳା କଳା ମୋଟା ମୋଟା ବହି ଧରି ପକେଟରେ ଝରକଲମ ଖୋସି ସେମାନେ ଆସିଥିଲେ । ସେମାନଙ୍କ ଭିତରୁ ଜଣେ ଗୋଟିଏ ସାଇକେଲ ଗଡ଼ାଇ ଗଡ଼ାଇ ଆଣିଲା । ସାଇକେଲ୍‌ଟିକୁ ବସ୍ତିର ଓଡ଼ିଆ ରିକ୍‌ସାବାଲା ରଘୁର ଚାଳିଆ ଘର ସାମ୍‌ନାରେ ଆଉଜେଇ ଦେଇ ସେମାନେ ବସ୍ତି ଭିତରକୁ ପଶିଲେ ।

ସେତେବେଳକୁ ସକାଳର ଆଲୁଅ କେରି କେରି ହୋଇ ଆକାଶ ଓ ସମୁଦ୍ର ଭିତରୁ ଫିଟି ପଡୁଛି;-ସୂର୍ଯ୍ୟ ଆଲୁଅର କଅଁଳ ପାତଳ ପରଦାଟିଏ ବିଛେଇ ହୋଇ ପଡ଼ିଛି ବାଲି ଉପରେ । ଲୋକେ ନିଜ ନିଜ କାମରେ ଲାଗି ପଡ଼ିଥିଲେ । ସକାଳୁ ଏମିତି ଦୁଇଟି ବାବୁଙ୍କୁ ଦେଖି ସେମାନଙ୍କ କପାଳର ରେଖାସବୁ କୁଞ୍ଚିତ ହୋଇ ଆସିଲା, ଆଖିର ଚାହାଣୀ ବଦଳିଗଲା । ସ୍ତ୍ରୀ ଓ ଝିଅମାନେ କୁଡ଼ିଆଟିମାନଙ୍କରେ ତର ତର ହୋଇ ପଶିଯାଇ ଜୁଳୁଜୁଳୁ ଆଖିରେ ଏଇ ନୂଆ ମଣିଷମାନଙ୍କୁ ଅନାଇଲେ । ଏମାନେ ବାବୁ-ସହରର ସଡ଼କରେ ବୁଲିବା ଲୋକ । ସଞ୍ଜବେଳେ ଏମାନେ ହାୱା ଖାଇବାକୁ ଆସନ୍ତି-ସମୁଦ୍ର କୂଳେ କୂଳେ ଧଳା ପିଙ୍କା ଖାଇ ଇଂରେଜୀରେ କଥା କହି ଚାଲିଯାନ୍ତି । ହେଇ-ସେଠି ଯେଉଁ ବଡ଼ ହଳଦିଆ ହୋଟେଲ୍‌ଟା-ଏସ୍.ଇ.ଆର୍.-ତା ଭିତରେ ବି ରହନ୍ତି ବଡ଼ ବଡ଼ ବାବୁମାନେ । ହୋଟେଲ୍ ଭିତରେ ମାଳ ମାଳ ଆଲୁଅ ଜଳୁଥାଏ, ଗେଟ୍ ପାଖରେ ଭେଁ ଭେଁ ରଡ଼ି କରି ନାନା ରଙ୍ଗର ମଟର ଗାଡ଼ିସବୁ ସାଇଁ କରି ଉଡ଼ିଯାଏ । ସେତେବେଳେ ନୋଳିଆ ପୁଅ କାଚମାଳି, ସମୁଦ୍ର ଶଙ୍ଖ ପ୍ରଭୃତି ଧରି ରାସ୍ତାର ଗୋଟିଏ କରକୁ ବସି ମିଟି ମିଟି ଆଖିରେ ବାବୁମାନଙ୍କୁ ଅନାଏ । ବାବୁମାନେ ଜଙ୍ଘିଆ ପିନ୍ଧିଥାନ୍ତି । ଦେହରେ କୋଟ୍ ଲଗାଇଥାନ୍ତି । ସେମାନଙ୍କ ମୁଣ୍ଡବାଳ ଫୁରୁ ଫୁରୁ ଉଡ଼େ ନାହିଁ- ବାସନା ତେଲରେ ଚିକି ଚିକି ଦିଶୁଥାଏ । ଜାତି ଜାତିକା ଭାଷାରେ କଥା

କହି କହି ସେମାନେ ଟହଲ ମାରୁଥାନ୍ତି । ବେଳେ ବେଳେ ଜଣେ ଦି'ଜଣ ନୋଳିଆ ପୁଅର ପସରା ଉପରେ ଝୁଲିପଡ଼ି ଜିନିଷ ପତ୍ରର ଦରଦାମ୍ ବୁଝନ୍ତି;-କେବେ କେବେ ଗୋଟିଏ ଦୁଇଟି ଶଙ୍ଖ ବା କାଚମାଳି ବିକ୍ରୀ ହୋଇଯାଏ । ସେଦିନ ନୋଳିଆ ପୁଅ ଛାତି ଉଞ୍ଚ କରି, ନିଜ ଆନନ୍ଦରେ ନିଜେ ଫୁଲି ଫୁଲି ଘରକୁ ଫେରେ ।

ଏଇ ବାବୁମାନେ ବଡ଼ ବଡ଼ କୋଠାଘରେ କାମ କରନ୍ତି । ନୋଳିଆ ପୁଅ ସଞ୍ଜବେଳେ ମାଛ ନେଇ ଗଲାବେଳେ କିମ୍ବା ନୋଳିଆ ଝିଅ ସହରକୁ ଝାଉଁକାଠ ନେଇ ଗଲାବେଳେ ଏମାନଙ୍କୁ ଦେଖେ । ସହରର ରାସ୍ତା କେଡ଼େ ଲମ୍ବା-କେଡ଼େ ଓସାର-କେଡ଼େ ଚିକ୍କଣ । ଚାଲିବାକୁ ବେଶ୍ ଲାଗେ । ଡେଙ୍ଗା ଡେଙ୍ଗା କୋଠାଘର ସବୁ ଆକାଶକୁ ମୁଣ୍ଡ ଲଗାଇ ଠିଆ ହୋଇଥାନ୍ତି । ସତେ ଯେମିତି ସହରର ଆକାଶଟି ଏଇ କୋଠାମାନଙ୍କୁ ଖମ୍ବ କରି ଥୁଆ ହୋଇଛି । ସହରରେ ସବୁବେଳେ ହାଉଚାଉ-କୋଳାହଳ । ଘୋଡ଼ାଗାଡ଼ି କ'ଣ ଦେଖିବ, ମୋଟର କ'ଣ ଦେଖିବ, ରିକ୍ସା କ'ଣ ଦେଖିବ । ନୋଳିଆ ଝିଅ ମୁଣ୍ଡରେ ଝାଉଁ କାଠର ଗୋଛା ନେଇ ଯାଉଥାଏ;-ତା' ଏପାଖେ ସେପାଖେ କିଲ୍‌କିଲା ରଡ଼ି ଛାଡ଼ି ଦି'ପୁଞ୍ଜା ମଟର ଚାଲିଯାନ୍ତି । ସେ ଚମକିପଡ଼େ-ଥରି ଥରି ଶଙ୍କି ଶଙ୍କି ବାଟ ଚାଲେ । କାଠ ବିକିବାକୁ କେଉଁ ଛୋଟ ଗଳିରେ ପଶେ - ଯେଉଁଠି ଝରକା ବାଟେ ଆସୁଥିବା ଆଲୁଅରେ ସଂକୀର୍ଣ୍ଣ ଗଳିଟା ଠାଏ ଆଲୁଅ ହେଲେ ଠାଏ ଅନ୍ଧାର । ବେଳେ ବେଳେ ଜଣେ ଦି'ଜଣ ଟୋକାବାବୁ ନୋଳିଆ ଯୁବତୀକୁ ଦୁଆରେ ବସାଇ ତାକୁ ଏଣୁ ତେଣୁ ପଚାରନ୍ତି । ସେଦିନ କାମୁଜି କହୁଥିଲା-ଜଣେ ବାବୁ କୁଆଡ଼େ ଦୁଇ ଟଙ୍କିଆ ନୋଟ୍‌ଟିଏ ତା ହାତରେ ଗୁଞ୍ଜି ଦେଇ ତାକୁ କହିଲେ, "ରାତିରେ ଆସିବୁ ।" କାମୁଜି ଛାଟିପିଟି ହୋଇ ପଳାଇ ଆସିଲା । ତାକୁ ଅନାଇ ରହିଥାନ୍ତି ବାବୁ ଜଣକ । କାମନାରେ ତାଙ୍କର ଆଖି ଦୁଇଟି ଜିକ୍ ଜିକ୍ କରି ଉଠୁଥାଏ ।

ଏ ବାବୁମାନେ ସମସ୍ତେ ଭଲ ମଣିଷ ନୁହନ୍ତି । ସେମାନେ କୁଆଡ଼େ କଥାରେ କଥାରେ ମାଲିମୋକଦ୍ଦମା କରନ୍ତି । ଗରିବ ଲୋକ ଦେଖି ଭଣ୍ଡାଇ ଦିଅନ୍ତି । କ'ଣ ପାଇଁ ଆଜି ଏ ଦୁହେଁ ଆସିଛନ୍ତି-କିଏ ଜାଣେ !

ବାବୁ ଦୁଇଟି ବସ୍ତିରେ ବୁଲି ବୁଲି ଦେଖିଲେ । ସେମାନଙ୍କ ପଛେ ପଛେ ପଲେ ପିଲା ଓ କୁଡ଼ିଆ ଘର ଭିତରୁ ଅସଂଖ୍ୟ ଶଙ୍କିଲା ଆଖିର ଚାହାଣୀ । ଭେଣ୍ଡିଆମାନେ ଆସି ସେମାନଙ୍କୁ ଘେରି ଗଲେ । କୌପୁନୀପିନ୍ଧା କଳା କଳା ଡେଙ୍ଗା ଡେଙ୍ଗା ମଣିଷ । ଦେହରେ ଖୁନ୍ଦା ହୋଇଛି ହାଙ୍ଗର ମାଛର ବଳ; ହେଲେ ଛାତି ଧୁଡୁ ଧୁଡୁ, ଓଠ ଅଠା ଅଠା । ଏ ବାବୁମାନେ କାଗଜରେ କ'ଣ ଗାର ପକେଇ ଦେବେ ଯେ ସେମାନଙ୍କର ସର୍ବନାଶ ହୋଇଯିବ । କାଗଜ କଲମକୁ ନୋଳିଆର ଭାରି ଡର । ସେମାନେ ନିଜ ନିଜ ଭିତରେ ତେଲୁଗୁରେ କଥାବାର୍ତ୍ତା ହେଲେ,-ଏମାନେ କ'ଣ ସରକାରୀ ଲୋକ କି ? ବାଣୀଗୁପ୍ତ କହୁଥିଲା, ସେମାନେ ବେଆଇନ୍ ଭାବେ ସମୁଦ୍ର କୂଳେ ରହିଛନ୍ତି;-ଏମାନେ କ'ଣ ସେୟା

ବୁଝିବାକୁ ଆସିଛନ୍ତି କି ? କାଗଜରେ ଧାଡ଼ିଏ ଲେଖିଦେଲେ ସେମାନଙ୍କୁ ତ ଏଠୁ ନିକାଲି ଦିଆଯିବ । ହେଲେ, ସେମାନେ ତ କାହାରି କିଛି ଦୋଷ କରି ନାହାନ୍ତି । ସମୁଦ୍ର କୂଳର ଖୋଲା ଜାଗାଟା କାହାର କିଛି ଦରକାରରେ ଆସୁ ନଥିଲା । ସେମାନେ ଆସି ବସ୍ତି କଲେ । ସେମାନଙ୍କୁ ଉଠାଇଦେଲେ କାହାର କି ଲାଭ ?

ଆଉ ଦିନେ ବାଣୀଗୁପ୍ତ କହୁଥିଲା, ନୋଳିଆମାନେ ସମୁଦ୍ର କୂଳେ ରହିବାରୁ ସମୁଦ୍ରକୂଳ ମଇଳା ହେଉଛି, ଦୁର୍ଗନ୍ଧ ବାହାରୁଛି । ନୋଳିଆମାନେ ଯେଉଁଠି ଇଚ୍ଛା ଝାଡା ଫେରୁଛନ୍ତି, ବାଲି ଉପରେ ମାଛ ଶୁଖାଇ ଶୁଖୁଆ କରୁଛନ୍ତି । ତେଣୁ ଭଦ୍ରଲୋକମାନେ ମୁନିସିପାଲିଟିରେ ଆପତ୍ତି କରିଛନ୍ତି-ନୋଳିଆମାନଙ୍କୁ ଉଠାଇ ଦିଆଯାଉ । ଏ ବାବୁ ଦୁଇଟି କ'ଣ ସେଥିପାଇଁ ଆସିଛନ୍ତି କି ?

ବାବୁ ଦୁଇଟି ଅନେକ କଥା ପଚାରି ବୁଝିଲେ । ଏତେ କଥା ଜାଣିଲେ ସେମାନଙ୍କର କ'ଣ ଲାଭ, ତାହା ନୋଳିଆର ବାଲିଆ ମସ୍ତିଷ୍କରେ ପଶିଲା ନାହିଁ । ଜଣେ ବାବୁ କଥା କହୁଥାନ୍ତି, ଆଉ ଜଣେ ବାବୁ କଲମରେ ଡଗ ଡଗ କରି ବଙ୍କା ବଙ୍କା ଅକ୍ଷରରେ କ'ଣ ଲେଖି ପକାଉଥାନ୍ତି । ସିମାଦ୍ରୀ ତିନିଥର ହାତ ଯୋଡ଼ି କହିଲା, "ବାବୁ, ତମେ ତ ଯାହା ପଚାରୁଚ, ସତ୍ ବୋଲୁଚୁ । ମିଛ ବୋଲିବୁ ନାଇଁ । କାଗଜରେ ଲେଖି ନେଉଚ କାହିଁକି ? ନ ଲେଖିଲେ କ'ଣ ହୁଅନ୍ତା ନାହିଁ କି ।"

ଗୋରା ଓ ଡେଙ୍ଗା ହୋଇ ଯେଉଁ ବାବୁ ଜଣକ, ସେ ଚଟାପଟ୍ ଚଟାପଟ୍ କ'ଣ ଲେଖି ଯାଉଥାନ୍ତି, ଆଉ ନୋଳିଆମାନଙ୍କୁ ହସି ହସି କହୁଥାନ୍ତି- "ତମେମାନେ ଭୟ କରନାହିଁ । ଆମେ ତୁମର କ୍ଷତି କରିବାକୁ ଆସିନୁ । ତମେ ସବୁ କେମିତି ଅଛ, କ'ଣ ଖାଉଛ, କେମିତି ଚଳୁଛ, ସେଇଆ ବୁଝିବାକୁ ଆମେ ଆସିଚୁ ।"

ହଠାତ୍ ଗୋଟିଏ ନୁଆଁଣିଆ କୁଡ଼ିଆ ଘରୁ ତେଲୁଗୁ ଭାଷାରେ ଅନର୍ଗଳ କ'ଣ କହି କହି ସ୍ତ୍ରୀ ଲୋକଟିଏ ବାବୁ ଦୁହିଁଙ୍କ ଆଗରେ ଆସି ଠିଆ ହୋଇଗଲା । ମୁଣ୍ଡବାଳ ଫୁରୁ ଫୁରୁ, ଦେହରେ ମସିଆ ଚିରାଲୁଗା । ଦେହ ହାତ ହଲେଇ, କେତେ ଅଭିନୟ କରି ସେ ଅନର୍ଗଳ ତେଲୁଗୁରେ କ'ଣ କହି ଯାଉଥାଏ । ଓଡ଼ିଆ ରିକ୍ସାବାଲା ରଘୁ ଓଡ଼ିଆରେ ବୁଝାଇ ଦେଲା, "ସେ କହୁଚି, ଆମେ ଗରିବ ଲୋକ । ଖାଇବାକୁ ମାଣ୍ଡିଆ ପେଜ ପାଉନୁ । ଯାହା ପିନ୍ଧୁଚୁ, ତମେ ତ ନିଜେ ଦେଖୁଚ । ଆମର ଜର କି ଛାତି ଦୁଃଖ ହେଲେ ଡାକ୍ତରଖାନାରେ ଆମେ ଜାଗା ପାଉନୁ । ତମେ ଆମର ଦୁଃଖ ବୁଝିବାକୁ ଆସିଚ କି ? ଆମର ଯେମିତି ଭଲ ହେବ, ସେୟା କରିବ କି ?"

ବାବୁ ଦୁଇଟି ହାତ ହଲାଇ ସେମାନଙ୍କୁ ଓଡ଼ିଆରେ କେତେ କ'ଣ ବୁଝାଇଲେ । ସିମାଦ୍ରୀ, ଗୁରାୟା, ଆରେୟା, ବଡେୟା, ଜୋଲ୍‌ଦେଲା, ଯାନି-ସମସ୍ତେ ଡବ ଡବ ଆଖିରେ ଅନାଇ ବାବୁ ଦୁହିଁଙ୍କ କଥାକୁ ଯେମିତି ବୁଝି ନେଉଥାନ୍ତି । ସିମାଦ୍ରୀ ବସ୍ତିର ମୁଖିଆ । କିଛି

ନବୁଝି ବି ସେ ବେଳେ ବେଳେ ମୁଣ୍ଡ ଟୁଙ୍ଗାରୁଥାଏ । ଯେଉଁ ବାବୁ ଜଣକ ଆଖିରେ ନେଳି ଚଷମା ଲଗାଇଥାନ୍ତି, ହାତରେ ଘଣ୍ଟା, ମୁଣ୍ଡବାଳ କୁଞ୍ଚୁ କୁଞ୍ଚୁ ସେ ବୁଝାଉଥାନ୍ତି- "ଦେଖ, ଏବେ ଯେଉଁ ସରକାର ଅଛି, ସେ ତୁମରିମାନଙ୍କ ସରକାର । ତୁମେମାନେ ସରକାରକୁ ନିଜ ଦୁଃଖ ଜଣାଇଲେ, ତାର ପ୍ରତିକାର କରାଯିବ । ତୁମର ଏ ଛୋଟ ଛୋଟ ପିଲାମାନଙ୍କୁ ପାଠ ପଢ଼ାଉ ନାହଁ କାହିଁକି ? ଏତେ ଅପରିଷ୍କାର ହେଉଛ କାହିଁକି ?"

ସୀମାଦ୍ରୀ ବାବୁମାନଙ୍କୁ ବସ୍ତିର ଘର ଘର ବୁଲାଇ ଦେଖାଇଦେଲା । "ଏ ଘରଟା ନରସିଂର,-ଏଇଟା ଯାନିର, ଏଇଟା ଜୋଲ୍‌ଦେଲାର । ଏଠି ମାଣ୍ଡିଆ ଶୁଖୁଚି ବାବୁ । -ସେ ମାଇକିନିଆଟାକୁ କିଛି କହନି, ବାବୁ । ତା ମୁଣ୍ଡ ଖରାପ । - ଜହ୍ନପକ୍ଷ ହେଲେ ସେ ଖାଲି ବକିବ - ଏଣେ ତେଣେ ଧାଇଁବ । ସେଥିପାଇଁ ତା ହାତଗୋଡ଼ ବାନ୍ଧି ତାକୁ ଏଠି ପକେଇ ଦିଆ ହୋଇଛି । ତାର କେହି ନାହାନ୍ତି । ତା ପୁଅର କୁଷ୍ଠରୋଗ । ବସ୍ତିର ଲୋକେ ତାକୁ ଘୃଣା କରିବାରୁ ସେ ସହରରେ ଭିକ ମାଗୁଛି । ମାଆଟା ଏମିତି ପଡ଼ିଛି । ବସ୍ତିଲୋକେ ତାକୁ ପେଜ ଟିକିଏ ଟିକିଏ ଖାଇବାକୁ ଦିଅନ୍ତି ।

"ଆଉ ସେକରେ ଚାଞ୍ଚ ଘରଟାରେ ରହୁଚି ଗୋଟାଏ ଖ୍ରୀଷ୍ଟାନ୍ । ତାର ନୂଆ ନାଁ ଦାଉଦ । ତାକୁ ସେମିତି କ'ଣ ଗୋଟାଏ ରୋଗ ହୋଇଥିଲା ଯେ କେହି ଚିହ୍ନି ପାରିଲେ ନାହିଁ । ତା ପାଇଁ ଠାକୁରାଣୀଙ୍କୁ ଭୋଗ ହେଲା, କୀର୍ତ୍ତନ ହେଲା, ସହରର ଡାକ୍ତରଖାନାରୁ ସେ କେତେ ଓଷଦ ଆଣି ଖାଇଲା; କାହିଁରେ ରୋଗ ଭଲ ହେଲା ନାହିଁ । ଶେଷକୁ ଜଣେ ପାଦ୍ରୀ ତାକୁ ଭଲକରି ଦେଲେ । ଏବେ ସେ ଖ୍ରୀଷ୍ଟାନ ହୋଇଚି ।

"ବାବୁ, ଏବେ କେତେ ଦିନ ହେଲା ଆମର ଏଠି ଅଭାବ ପଡ଼ିଛି । ଆମେ ତ ଗରିବ ଲୋକ, ସମୁଦ୍ର ସଙ୍ଗେ ଲଢ଼ିଲେ ପେଟ ପୋଷୁ । ବହୁତ କଷ୍ଟରେ ଏଇ ଘରସବୁ କରିଛୁ । ସରକାର ଆମକୁ ଉଠାଇ ଦେବ କି ? ଓଡ଼ିଶାରେ ଆମେ ଗଣ୍ଡେ ହେଲେ ଖାଇବାକୁ ପାଉଛୁ । ଓଡ଼ିଶାକୁ ତ ନିନ୍ଦା ଦବୁ ନାଇଁ, ଜଗନ୍ନାଥଙ୍କୁ ତ ନିନ୍ଦା ଦବୁ ନାଇଁ । ଆମକୁ ଉଠାଇ ଦେଲେ ଆମେ କ'ଣ ମନା କରି ପାରିବୁ କି ?

"ଏବେ କେତେ ଦିନ ହେଲା ଦୁଇଜଣ ପାଦ୍ରୀ ଆମ ବସ୍ତିକୁ ଆସୁଛନ୍ତି । ସେମାନେ କେଡ଼େ ସଫାସୁତୁରା, ଧଳା ଧଳା ଲୁଗା ପିନ୍ଧୁଛନ୍ତି । ଆମ ପିଲାଙ୍କୁ ସେମାନେ ଆଦର କରୁଛନ୍ତି; ମିଠେଇ ଓ ଫଳ ଦେଉଛନ୍ତି; କାହାର ରୋଗ ହେଲେ ଯାଚି ଯାଚି ଓଷଦ ଦେଉଛନ୍ତି । ଆମକୁ ଖ୍ରୀଷ୍ଟଧର୍ମ କଥା କହୁଛନ୍ତି । ଖ୍ରୀଷ୍ଟଧର୍ମ ଗ୍ରହଣ କଲେ କୁଆଡ଼େ ଆମେ ଆଉ ଗରିବ ରହିବୁ ନାହିଁ । ସେମାନେ ଭଲ ଲୋକ କି ଖରାପ ଲୋକ, ଆମେ ଜାଣୁନା । ସେମାନେ ଓଷଦ ଦେଲେ ଆମେ ଲୁଚାଇ ଲୁଚାଇ ଫିଙ୍ଗି ଦେଉଛୁ । କାଳେ କ'ଣ ଅନିଷ୍ଟ ହେବ ।"

ଏମିତି ଅନେକ କଥା ବାବୁ ଦି'ଜଣ ଶୁଣିଲେ । ବସ୍ତିମୁଣ୍ଡରେ ଛୋଟିଆ ଚାଳଘରଟିରେ

ଇସ୍କୁଲ ହୋଇଥିବାର ବି ଦେଖିଲେ । ଇସ୍କୁଲରେ ପନ୍ଦରଟି ପିଲା ପଢ଼ନ୍ତି । ଦକ୍ଷିଣ ଦେଶରୁ ନୂଆ ଆସିଚି କ୍ରିଷ୍ଣା ଦୋରା । ସେ ଆଠ କିଲାସ୍ ଯାଏଁ ପାଠ ପଢ଼ିଚି ବୋଲି କହିବାରୁ ବସ୍ତିଲୋକେ ତାକୁ ଘର କରି ରଖାଇ ଦେଇଛନ୍ତି । ଚୁକ୍ତି ହୋଇଛି, ସେ ପିଲାମାନଙ୍କୁ ପାଠ ପଢ଼ାଇବ । ତାର ଚଳିବାକୁ ଯାହା ଦରକାର, ବସ୍ତିଲୋକେ ଚାନ୍ଦାକରି ସେତକ ଦେବେ ।

ବସ୍ତିରେ ବୁଲି ବୁଲି ବହୁତ ବେଳ ପରେ ବାବୁ ଦୁଇଟି ଫେରିଗଲେ । ବଡ଼ ଭଲ ବାବୁ ଦୁଇଟି ଏକା-ହସ ହସ କଥା-ନୋଳିଆଙ୍କୁ ଘୃଣା ନାହିଁ । ସେମାନେ ଗଲାପରେ ସେମାନଙ୍କ ବିଷୟରେ କେତେ ଆଲୋଚନା ଘରେ ଘରେ ।

ବାବୁ ଦୁଇଟି ଚାଲିଗଲେ-ଆଉ ଆସିଲେ ନାହିଁ; କିନ୍ତୁ ତାର ଆଠଦିନ ପରେ ମାଟିଆ ପୋଷାକପିନ୍ଧା ଦୁଇଜଣ ପୋଲିସ ଆସି ବସ୍ତି ଦେଖିଗଲେ । ଦିନେ ଢେଙ୍ଗୁରାବାଲା ଢେଙ୍ଗୁରା ପିଟି ଦେଲା, "ଦେଖ, ତମେମାନେ ଏଠି ମୁନିସିପାଲିଟିର ଜମି ବେଆଇନ୍ ଭାବେ ଦଖଲ କରି ରହିଛ । ତେଣୁ ଆସନ୍ତା ଦୁଇମାସ ମଧ୍ୟରେ ତୁମମାନଙ୍କୁ ଏ ସ୍ଥାନ ଛାଡ଼ି ଉଠିଯିବାକୁ ହେବ । ହୁକୁମ୍-ଚେୟାରମ୍ୟାନ୍ ସାହେବ ।"

ଢେଙ୍ଗୁରାବାଲା ଡଂ ଡଂ ଡଂ କରି ଢେଙ୍ଗୁରା ବାଡ଼େଇଲା; ଆଉ ନୋଳିଆ ନୋଳିଆଣୀଙ୍କ ଛାତି ଭିତରେ ବି କିଏ ଲଦି ଦେଲା କୁରହାଡ଼ି ପାହାର । ବାହାରକୁ ସବୁ ସେମିତି ଅଛି-ହେଲେ, ସବୁରି ଦେହ ଭିତରେ କ'ଣ ଯେମିତି ଘଟିଗଲା ସୂକ୍ଷ୍ମ ପରିବର୍ତ୍ତନ । ବସ୍ତିଛାଡ଼ି ଚାଲିଯିବା ଆଦେଶଟା ଦେହରୁ ମାଉଁସ ଛିଣ୍ଡାଇ ଦେଲା ପରି, ଛାତିରୁ ରକ୍ତ ଶୋଷି ନେଲାପରି ଲାଗିଲା । ସେମାନେ ତ କାହାର କିଛି କ୍ଷତି କରି ନଥିଲେ । ସମୁଦ୍ର କୂଳେ ଖୋଲା ପଡ଼ିଆ ପଡ଼ିଥିଲା । ସେମାନେ ଟିକିଏ ମୁଣ୍ଡ ଗୁଞ୍ଜିଥିଲେ ଟିକି ଟିକି କୁଡ଼ିଆ ଘର ଖଣ୍ଡିଏ ଖଣ୍ଡିଏ ତୋଳି । ହେଲେ, କୁଆଡୁ ପଡ଼ିଲା ଏଇ ଅକାଳ ବଜ୍ର-ଢେଙ୍ଗୁରାବାଲା ଢେଙ୍ଗୁରା ଡଂ ଡଂ କରି, କାଗଜରେ ଲେଖା ହୋଇଥିବା ଶବ୍ଦ କେତୋଟି ପଢ଼ି, କିଛି ନ ଜାଣିବା ପରି ଚାଲିଗଲା । -ବେଶ୍, ସେତିକିରେ କୌପୁନିପିନ୍ଧା ନିରୀହ କେତୋଟି ମଣିଷଙ୍କର କୁଡ଼ିଆ ଘରଗୁଡ଼ିକ ଯେମିତି ପବନରେ ଖଣ୍ଡ ଖଣ୍ଡ ହୋଇ କୁଆଡ଼େ ଉଡ଼ିଗଲା !

ତା' ପରଦିନ ସକାଳୁ ସମୁଦ୍ରକୂଳେ ଏଠି ସେଠି ଜମା ହୋଇ ପୁଞ୍ଜା ପୁଞ୍ଜା ମଣିଷ ଗପ ଜମାଇ ଦେଲେ । ଏତେ ଦିନର ସ୍ନେହମମତା, ଆଶା ଆଶଙ୍କାରେ ଗଢ଼ା ଛୋଟ ଏଇ ବସ୍ତି ଖଣ୍ଡି । କେତେବେଳେ ସିନା ଏ ସ୍ଥାନଟି ସମୁଦ୍ର କୂଳର ନିଛାଟିଆ ଅପନ୍ତରା ଭୂଇଁ ହୋଇ ପଡ଼ିଥିଲା- ବୋକା ଭଳି କେତୋଟି ଅନାବନା ଆଇଁଷିକାତି ଗଛ ସମୁଦ୍ର ପବନରେ ମୁଣ୍ଡ ହଲାଉଥିଲେ- କିନ୍ତୁ ବର୍ତ୍ତମାନ ଗଢ଼ି ଉଠିଛି ଦୁଇଧାଡ଼ି ଘର । ସେ ଘରକୁ କେନ୍ଦ୍ରକରି ଏଇ ସମୁଦ୍ର ଓ ଆକାଶର ପବନରେ କେତେ ଜୀବନର ହସ କାନ୍ଦ ବ୍ୟାପିଗଲାଣି । ଆଉ ଏ ସ୍ଥାନ ମଣିଷଗଢ଼ା ଦୁନିଆରୁ ବାହାର ନୁହେଁ । ଏଠି କେତେ ମଲେଣି, ପୁଣି ଜନ୍ମ ହେଲେଣି କେତେ କଅଁଳା ଛୁଆ । କେତେ ଉଦୟ ଅସ୍ତର କାହାଣୀ ଅଭିନୀତ ହୋଇଗଲାଣି । ମୃତ୍ୟୁର କ୍ରନ୍ଦନ, ନାଚଗୀତର ଧୁମ୍‌ଧାମ୍, ବଡ଼ଜାଲ ପରବର ମଦ ଆଉ ନାରୀ-ସବୁ ମିଶି କେମିତି ଗୋଟାଏ ମାୟା ମମତାର କୁହୁଡ଼ି ସୃଷ୍ଟି ହୋଇ ଏ ବସ୍ତିଟିକୁ ଘୋଡ଼ାଇ ରଖିଛି । ଯେତେ କଳିତକରାଳ ହିଂସାଦ୍ୱେଷ ଥିଲେ ବି ସରକାରୀ ଲୋକ ଢେଙ୍ଗୁରା ପିଟି ସେମାନଙ୍କୁ ଅନ୍ୟ କୁଆଡ଼େ ଚାଲିଯିବାକୁ ଆଦେଶ ଦେଲା ବେଳଠାରୁ ସମସ୍ତେ ହୋଇଛନ୍ତି ଏକ୍ -ସବୁରି ପ୍ରାଣ ଗୋଟିଏ ହୋଇଚି; ସମସ୍ତେ ବୁଝିଛନ୍ତି- ସେମାନଙ୍କ ଅଭାବ ଅସୁବିଧା ସୁଖ ଦୁଃଖ ଜଣଙ୍କର ନୁହେଁ, ଗୋଷ୍ଠୀର ।

ଆଜି ପାଗଟା ମେଘୁଆ- ପବନଟା ଜୋର୍‌ରେ ପିଟୁଚି । କେତୋଟି ନୋଳିଆ ସେମାନଙ୍କ ଡଙ୍ଗା ନେଇ ମାଛ ମାରି ଗଲେ,-କାରଣ ସେମାନଙ୍କର ସବୁବେଳେ ଅଭାବ । ରୋଜ ସମୁଦ୍ରରୁ ମାଛ ମାରିଲେ ସେମାନଙ୍କ ହାଣ୍ଡିରେ ଚାଉଳ ପଡ଼େ । ଆଉ କେତେଜଣ ମାଛ ମାରି ନଯାଇ ଗାଁ ଠାକୁରାଣୀଙ୍କ ପାଖରେ ଆଡ୍‌ଡ଼ା ଜମାଇ ଦେଲେ । ଗୁରାୟା, ଯାନି, ବଡେୟା, ସିମାଦ୍ରୀ, ଢୋଲ୍‌ଦେଲା-ଏମାନେ ସବୁ ମୁଖିଆ ଲୋକ- ସରକାରୀ ହୁକୁମ୍ ଆସିଚି ଯେତେବେଳେ, ସେଥିପାଇଁ କିଛି କରିବାକୁ ହେବ । ସରକାରୀ କଥାରେ ଚୁପ୍‌ଚାପ୍ ରହିଲେ ବିପଦ ଅଛି ।

କାନରେ ଖୋସିଥିବା ଅଧପୋଡ଼ା ପିଙ୍କାଟାରେ ନିଆଁ ଧରାଇ, ସିମାଦ୍ରୀ ସେଇ ଗୋଟିଏ

କଥାକୁ ମୁଖସ୍ଥ କଲାପରି ବାରମ୍ବାର କହୁଥାଏ, "ସେଦିନ ସେଇ ଯେଉଁ ବାବୁ ଦି'ଜଣ ଆସିଥିଲେ, ପେଣ୍ଟ୍ ପିନ୍ଧିଥିଲେ, ଇଂରେଜୀ କହୁଥିଲେ-ସେଇମାନେ କ'ଣ ଲେଖିଦେଲେ ଯେ ଆମକୁ ଉଠିଯିବାକୁ ହୁକୁମ୍ ଆସିଚି- ।"

ମାସାନି ସମସ୍ତଙ୍କ ପଛରେ ତଳକୁ ମୁହଁ ପୋତି ବସିଥାଏ । ବସ୍ତିକୁ କିଛି ବିପଦ ପଡ଼ିଲେ ମାସାନି ଭାବେ, ବିପଦଟା ଯେମିତି କେବଳ ତା'ରି । ସିମାଦ୍ରୀ କ'ଣ କହୁଚି, ସେଥିରେ ତାର ମନ ନଥାଏ । ସେ ଭାବୁଥାଏ, ଠାକୁରାଣୀ ପାଖେ ବୋଦା ପକାଇ ପୂଜା କରିବାକୁ ହେବ । ତିନିଦିନ ଧରି ଏଇ ପୂଜା ଲାଗିବ । ବଡ଼ ବଡ଼ ବିପଦ ପଡ଼ିଲେ ତିନିଦିନ ପୂଜା କରିବା ବିଧି ଅଛି । ପୂର୍ବପୁରୁଷମାନେ ଏଇ ନିୟମ କରିଛନ୍ତି । ସେମାନେ ପଲାସାରେ ଥିବାବେଳେ ଇଂରେଜମାନଙ୍କର ଯେଉଁ ବଡ଼ ଯୁଦ୍ଧ ହୋଇଥିଲା, ସେତିକିବେଳେ ମାସାନୀ ତିନିଦିନ ଲେଖାଏଁ ପୂଜା କରୁଥିଲା । ତିନିଦିନ ପୂଜା ହେଲେ ମାସାନି ଜଳ ଗ୍ରହଣ କରିବ ନାହିଁ । ବସ୍ତିର ଯେ ମୁଖିଆ, ସେ ଭାତ ଖାଇବ ନାହିଁ, ଆଇଁଷ ଖାଇବ ନାହିଁ-ତିନିଦିନ ଯାକ ଗାଧୋଇ, ଚିତା କରି, ବେକରେ ଗାମୁଛା ପକାଇ ସେ ଠାକୁରାଣୀଙ୍କ ପାଖରେ ଅଧିଆ ପଡ଼ିବ । ତିନିଦିନ ପରେ ବସ୍ତିରେ ଯନ୍ତାଳ ହେବ- ସବୁ ଲୋକ ଭୋଜି ଖାଇ ନାଚଗୀତ କରିବେ । ତା' ପରେ ଠାକୁରାଣୀ ସନ୍ତୁଷ୍ଟ ହେବେ । ବସ୍ତିର ରିଷ୍ଟ କଟିବ ।

ଜୋଲ୍‌ଦେଲା ଓ ଯାନି ପାଖକୁ ପାଖ ବସିଥାନ୍ତି । ଗୁରାୟା ଯାନି ମୁହଁକୁ ଚାହୁଁ ନଥାଏ । ଯାନି ଓ ଜୋଲ୍‌ଦେଲାଙ୍କୁ ଏକାଠି ଦେଖିଲେ ତା ଦେହରେ ଛୁରୀ ଚାଲି ଯାଉଥାଏ । କିନ୍ତୁ କର୍‌ଲା ସଙ୍ଗେ ବାହାଘରଟା ହେବାଯାଏଁ କିଛି କହିବାଟା ଭଲ ନୁହେଁ ବୋଲି ସେ ଭାବିଲା ।

ସକାଳଟା ସେମିତି ଠାକୁରାଣୀଙ୍କ ପାଖରେ ଗପ କରି କରି କଟିଲା । କେତେବେଳେ କିଏ ନୂଆ ଲୋକଟିଏ ଆସି ଗପରେ ଭାଗ ନେଉଥାଏ, ମୁଣ୍ଡ ଟୁଙ୍ଗାରି ଅନ୍ୟମାନଙ୍କ କଥାକୁ ସମର୍ଥନ କରୁଥାଏ । ଆଉ କିଏ ଉଠି ଚାଲିଯାଏ-କିଛି ସମୟ ଗଲେ ପୁଣି ଆସି ଜୁଟେ ।

ଯାହା ମନକୁ ଯାହା ଆସିଲା, ସେ ତାହା କହିଲା । ସମୁଦ୍ର କୂଳର ମଣିଷକୁ ଛଳ କପଟତା ଭଲ ଲାଗେ ନାହିଁ । ମିଛ କହିବାକୁ ସେ ତିମି ଓ ହାଙ୍ଗରମାଛଠାରୁ ବେଶି ଭୟ କରେ । ସମସ୍ତଙ୍କ କଳା ମୁହଁରେ ଭାବନାର କଳାରେଖା । ଏତେ ଦିନ ଧରି ଯେଉଁଠି ସେମାନେ ଆଶ୍ରୟ ନେଇଛନ୍ତି, ଯେଉଁ ଆକାଶ ଓ ସମୁଦ୍ରକୁ ନିଜର ପୃଥିବୀ ବୋଲି ଭାବି ଆସିଛନ୍ତି, ତାହା ଛାଡ଼ି ଅନ୍ୟ କୁଆଡ଼େ ଚାଲିଯିବା କଥା ଭାବିଲେ ଦେହ ଅବଶ ଲାଗୁଛି । ପଲାସାକୁ ପୁଣି ଫେରିଯିବା ଭଲ ନୁହେଁ । ସେଠିତ ଖାଇବାକୁ ମିଳିଲା ନାହିଁ ବୋଲି ଏଠାକୁ ପଳାଇ ଆସିଲେ । ପୁଣି ଫେରିଗଲେ କି ଲାଭ ?

କେତେବେଳ ଏମିତି ଆଲୋଚନା ଚାଲିଲା-କେତେ ପିଙ୍କା ଧୂଆଁ ହୋଇ ପବନରେ ମିଳାଇଗଲା । ଶେଷକୁ ସ୍କୁଲ ମାଷ୍ଟର୍ କ୍ରିଷ୍ଣା ମୁଣ୍ଡକୁ ଗୋଟିଏ ନୂଆ କଥା ଜୁଟିଲା । ଯେତେହେଲେ ସେ ବରହମପୁରରୁ ଆସିଛି । ସହରୀ ଲୋକଙ୍କ ସହିତ କେମିତି ଚଳିବାକୁ ହେବ, ତାକୁ ଜଣା

ଅଛି । ସେ କହିଲା, "ଚାଲ, ସମସ୍ତେ ଜିଲ୍ଲା ମେଜେଷ୍ଟର ପାଖରେ ଅଧିଆ ପଡ଼ିବା । କହିବା, ଆମେ ନୋଳିଆ ଲୋକ । ସମୁଦ୍ରରେ ମାଛ ମାରିଲେ ପେଟ ପୋଷୁ । ଦିନେ ଖାଇଲେ ଦି'ଦିନ ଉପାସ ଶୋଉ । ପଲାସାରେ ଖାଇବାକୁ ନ ପାଇ ଓଡ଼ିଶା ପଳାଇ ଆସିଚୁ । ସମୁଦ୍ର କୂଳ ପଡ଼ିଆ ପଡ଼ିଥିଲା; ସେଇଠି କୁଡ଼ିଆ ଖଣ୍ଡେ ଖଣ୍ଡେ ତିଆରି କରି ମୁଣ୍ଡ ଗୁଞ୍ଜିଚୁ । ସେ ଜାଗା ତ ସରକାରର ନୁହେଁ । ଆମେ କାହାର କିଛି କ୍ଷତି କରୁନାହୁଁ । ଆମକୁ କାହିଁକି ଉଠାଇ ଦେଉଚ- ।"

ଠିକ୍ କଥା । ସମସ୍ତଙ୍କ ମନକୁ କଥାଟା ପାଇଲା । ଯେତେ ହେଲେ କ୍ରିଷ୍ଣା ଚାଲାକ୍ ଲୋକ-ସେଥିପାଇଁ ସେମାନେ ତାକୁ ବସ୍ତିରେ ରଖାଇ ଦେଇଛନ୍ତି । ସେ ପିଲାମାନଙ୍କୁ ପାଠ ପଢ଼ାଉଛି । ଗୁରାୟା କ୍ରିଷ୍ଣା କଥାରେ ଆଉ ଦି'ପଦ ଯୋଡ଼ିଦେଲା, "ଏ ଜାଗାଟା ସରକାରର ନୁହେଁ ବୋଲି ବୋଲୁଚୁ କୋଉ ସାହସରେ ? ଯାହା ଦେଖୁଚୁ, ସବୁ ସରକାରର । ବଣରେ ଯେତେ ପ୍ରାଣୀ, ସବୁ ତା'ରି । ସେ ସବୁର ମାଲିକ । ଆମେ ଯାଇ ମେଜେଷ୍ଟର ଗୋଡ଼ ତଳେ ପଡ଼ିଯିବା । ତାକୁ କହିବା, ତୁ ବାପ, ତୁ ମା' । ତୁ ନ ରଖିଲେ ଆମେ ମରିଯିବୁ ନାହିଁକି ? ତୋର ବଢ଼ତି ହେଉ । ତୋ ପାଦୁକା ଶୀତଳ ଥାଉ ।"

ସତକୁ ସତ ବସ୍ତିର ସବୁ ନୋଳିଆ ମେଜେଷ୍ଟର ପାଖକୁ ବାହାରିଲେ । କିଏ କହିଲା, ମାଇପି ଲୋକ ପିଲା କାଖେଇ ଆମ ସାଥିରେ ଆସନ୍ତୁ । ବାବୁ ଦେଖିଲେ ଦୟା ହେବ ।

ମାଇପି ଲୋକେ ବାହାରୁ ବାହାରୁ ଟିକିଏ ଉଛୁର ହେଲା । ବସ୍ତିଟା ଯାକରେ ଚାଞ୍ଚଲ୍ୟ- ଆଜି ଗୋଟାଏ ନୂଆ କଥା । ସେମାନେ ମେଜେଷ୍ଟରଙ୍କୁ ଦୁଃଖ ଜଣାଇବାକୁ ଯାଉଛନ୍ତି । ପଲାସାରୁ ପୁରୀ ଆସିଲା ବେଳେ ସେମାନେ ଏମିତି ଏକାଠି ହୋଇ ପୁରୁଷ ସ୍ତ୍ରୀ ଗୀତ ଗାଇ କୋଶ କୋଶ ବାଟ ଚାଲି ଆସିଥିଲେ । ସେତେବେଳେ ନୂଆ ପୃଥିବୀକୁ ଯିବାକୁ ନୂଆ ପବନରେ ନିଃଶ୍ୱାସ ନେବାକୁ ସେମାନଙ୍କ ପ୍ରାଣ ବ୍ୟାକୁଳ ହେଉଥିଲା । ଆଜି କିନ୍ତୁ ସେଦିନର ସେଇ ନୂଆ ପୃଥିବୀ ପୁରୁଣା ହୋଇ ଯାଇଛି ଓ ସେଇ ପୁରୁଣା ପୃଥିବୀକୁ ଛାଡ଼ି ନ ଯିବା ପାଇଁ ସେମାନେ ସରକାରକୁ ନିବେଦନ କରିବାକୁ ଯାଉଛନ୍ତି ।

କ୍ରିଷ୍ଣା ନେତା ପରି ବସ୍ତିର ଏ ମୁଣ୍ଡରୁ ସେ ମୁଣ୍ଡ ଏକରରୁ ସେକର ବୁଲି ଡକା ପକାଉଥାଏ, "ବେଗି, ବେଗି ଖାଇ ଦେଇ ବାହାରି ପଡ଼ । ଚାରିଟା ବେଳକୁ ମେଜେଷ୍ଟର ଅଫିସି ବନ୍ଦ ହୋଇଗଲେ ଆଉ ଦେଖା ପାଇବ ନାହିଁ ।

ଯିଏ ଯାହା ପାଇଲା, ତରବରରେ ଗଣ୍ଡାଏ କ'ଣ ଖାଇଦେଲା । କୌପୁନୀ ଉପରେ ପୁରୁଣା ଚିରା ଗଞ୍ଜି, ଚିରା କୋଟ ପିନ୍ଧି ପୁରୁଷ ଲୋକେ ଆଗେ ପ୍ରସ୍ତୁତ ହୋଇ ପଡ଼ିଲେ । - ସତେ ଯେମିତି ସେମାନେ ଆଜି ଯୁଦ୍ଧକୁ ବାହାରିଛନ୍ତି । ଯୁଦ୍ଧ ପାଇଁ ସେମାନଙ୍କ ମାଂସପେଶୀରେ ଖୁନ୍ଦା ହୋଇଚି ବଳ; କିନ୍ତୁ ସେମାନେ ଆଖିରୁ ଲୁହ ଗଡ଼ାଇ, ନିଜ ପିଲା ମାଇପଙ୍କୁ ସାଥିରେ ନେଇ ହାକିମ ସାଥିରେ ଯୁଦ୍ଧ କରିବେ । ହାକିମ ମନ ଯଦି ତରଳିଯାଏ, ସେ ଯଦି ଧଳା ଧଳା ସମୁଦ୍ର ଫେଣ ପରି ଦାନ୍ତ ଦେଖାଇ ଟିକିଏ ହସି ଦେଇ କହେ-ଆଚ୍ଛା, ଯାଅ, ତମକୁ ସେଠୁ

ଉଠାଇ ଦିଆଯିବ ନାହିଁ - ତେବେ ସେତିକିରେ ନୋଳିଆ ପୁଅର ଯୁଦ୍ଧରେ ଜୟ ହୋଇଯିବ ।

ପୁରୁଷ ଲୋକେ ଜମା ହେଲେଣି-ସ୍ତ୍ରୀଲୋକେ ବାହାରିବାକୁ ଡେରି କରୁଛନ୍ତି । ହାକିମ ପାଖକୁ ଯିବେ ବୋଲି ଝିଅ ବୋହୂମାନେ ମୁଣ୍ଡରେ ନଡ଼ିଆତେଲ ମାରି ପଇସିକିଆ କାଠ ପାନିଆରେ ତର ତର ହୋଇ ମୁଣ୍ଡ କୁଣ୍ଡାଇଲେ । ମୁଣ୍ଡରେ ପେନ୍ଥି ପେନ୍ଥି ଫୁଲ ପତ୍ର ଖୋସିଲେ । ମଠେଇ ମଠେଇ ଗପ କରି କରି ଛୁଆଗୁଡ଼ିକୁ କାଖେଇ ସେମାନେ ବାହାରି ପଡ଼ିଲେ । ନାରୀ ଆଉ ପୁରୁଷ-ଜୀବନର ପ୍ରତି ଛକରେ ସେମାନେ ପାଖକୁ ପାଖ ଲାଗି ଆଗେଇ ଗଲେ ବାଟ କଷ୍ଟ ଜଣାପଡ଼େ ନାହିଁ ।

ସମୁଦ୍ର କୂଳରେ ମେଜେଷ୍ଟରଙ୍କ ଅଫିସ । ଅଫିସ୍ ଛୁଟୀ ହେବାକୁ ଆଉ ଅଳ୍ପ ବେଳ ଅଛି;-ପ୍ରାୟ ପଚାଶ ଜଣ ସରିକି ନୋଳିଆ ପୁରୁଷ ଓ ସ୍ତ୍ରୀ ଅଫିସ୍ ସାମ୍ନାରେ ପହଞ୍ଚିଲେ । ସହରର ଲୋକେ ନୋଳିଆମାନଙ୍କର ଏ ଶୋଭାଯାତ୍ରା ଦେଖି ଅବାକ୍ ଆଖିରେ ଅନାଇଲେ । ମୁଣ୍ଡରେ ଧଳା ଟୋପି, ଦେହରେ ଚିରା କାମିଜି ଓ କୌପୁନୀ ପିନ୍ଧି ପାଞ୍ଚ ଛଅ ଜଣ ମୁଖିଆ ମେଜେଷ୍ଟର ସାହେବଙ୍କ ଅଫିସ୍‌ର ଗେଟ୍ ଖୋଲି ଭିତରକୁ ଗଲେ । ସେମାନଙ୍କୁ ଏମିତି ଦେଖି ଦୁଇ ତିନି ଜଣ ପିଅନ ଏକ ସଙ୍ଗେ ଧାଇଁ ଆସିଲେ । ପିଅନମାନଙ୍କ ଆଗରେ ସବୁକଥା କହିଗଲା ସିମାଦ୍ରୀ-ବଙ୍କା ବଙ୍କା ଓଡ଼ିଆରେ ସବୁ ଦୁଃଖ ସେ ଜଣାଇଲା । ବେଳେ ବେଳେ ଗେଟ୍ ବାହାରେ ରାସ୍ତା ଉପରେ ଜମା ହୋଇଥିବା ମାଇପି ଲୋକମାନଙ୍କୁ ସେ ଆଙ୍ଗୁଠି ଦେଖାଇ କହୁଥାଏ - "ବାବୁ, ଆପଣ ଦୟା ନକଲେ ଏ ମାଇପି ଲୋକ ଏ ପିଲାଗୁଡ଼ିକ ମରିଯିବେ । ଆପଣଙ୍କର ବଢ଼ତି ହେଉ । ଆପଣ ବଡ଼ବାବୁଙ୍କୁ ବୁଝାଇ କରି କହନ୍ତୁ - ସେ ଆମର ବାପ ମାଆ ।"

ପିଅନ ତିନିହେଁ ନୋଳିଆମାନଙ୍କ ଦାବୀ ଶୁଣି ନୀରବରେ ମୁଣ୍ଡ ହଲାଇଲେ ଓ କ'ଣ ଭାବି ଅଫିସ୍ ଭିତରକୁ ଚାଲିଗଲେ । କେତେବେଳଯାଏଁ ଅଫିସ୍ ଭିତରୁ କୌଣସି ଉତ୍ତର ଆସିଲା ନାହିଁ । ପାଞ୍ଚୋଟି ନୋଳିଆ ଅଫିସ୍ ଗେଟ୍ ପାଖେ ତଳେ ଭୂଇଁ ଉପରେ ବସିଥାନ୍ତି-କାହାରି ମୁହଁରେ କଥା ନାହିଁ । ଗେଟ୍ ବାହାରେ ଜମା ହୋଇଥିବା ଲୋକଗୁଡ଼ିକ ଜୁଳୁଜୁଳୁ ହୋଇ ସେମାନଙ୍କ ନେତାମାନଙ୍କୁ ଅନାଇଥାନ୍ତି ଚୁପ୍‌ଚାପ୍ କଥାବାର୍ତ୍ତା ହେଉଥାନ୍ତି । ବଡ଼ହାକିମକୁ ସିମାଦ୍ରୀ ଦୁଃଖ ଜଣାଇଛି । ବଡ଼ ହାକିମ ଅଫିସ୍ ଭିତରେ ବସି ସେମାନଙ୍କ କଥା ବିଚାର କରୁଛି । ଠାକୁରାଣୀ ତାକୁ ଭଲ ବୁଦ୍ଧି ଦେଉ । ଜଗନ୍ନାଥଙ୍କ ଦେଶରେ ଜଗନ୍ନାଥ ସେମାନଙ୍କ ଭରସା । ଜଗନ୍ନାଥ ହିଁ ସେମାନଙ୍କୁ ରକ୍ଷା କରିବେ ।

ଅଫିସ୍ ଭିତରୁ ବେଳେ ବେଳେ ଜଣେ କୋଟ୍‌ପିନ୍ଧା ବାବୁ ବାହାରକୁ ଆସୁଥାନ୍ତି । ନୋଳିଆ ନୋଳିଆଣୀମାନେ ପ୍ରଶ୍ନବାଚକ ଆଖିରେ, ଥରିଲା ଛାତିରେ, ଦଣ୍ଡକ ଲାଗି ତାଙ୍କୁ ଅନାଇ ରହନ୍ତି - ତା'ପରେ ବାବୁ ଜଣକ ସେମାନଙ୍କୁ ନ ଦେଖିଲା ପରି ସାଇକେଲ୍ କି ମୋଟର୍‌ରେ ଚାଲିଯାନ୍ତି । ସେମାନେ କୌଣସି ଆଶା ବା ସାନ୍ତ୍ୱନା ଦେଖନ୍ତି ନାହିଁ- ଦେଖନ୍ତି,

ବାବୁଙ୍କ ମୋଟରର ଧୂଳି ।

କେହି ପିଅନ ବାହାରକୁ ଆସିଲେ ସିମାଦ୍ରୀ ତାକୁ ହାତଠାରି ଡାକେ; କିନ୍ତୁ ଚୁପ୍ ରହିବାକୁ ଠାରି ଦେଇ ପିଅନଟି ପୁଣି ଅଫିସ୍ ଭିତରେ ପଶିଯାଏ । ନୋଳିଆ ପାଞ୍ଚୋଟି ଚୁପ୍ ହୋଇ ଅଫିସ୍ କୋଠାକୁ ଅନାଇ ରହିଥାନ୍ତି । କ'ଣ ସେମାନଙ୍କ ଭାଗ୍ୟରେ ଅଛି-ବଡ଼ ବାବୁ କ'ଣ ଭାବୁଚି, କେଜାଣି !

ସଞ୍ଜ ହେଲା । ତଥାପି ଅଫିସ୍ ଭିତରୁ ବଡ଼ ବାବୁ ବାହାରିଲେ ନାହିଁ । ଅଫିସ୍ ଭିତରେ ପୁଞ୍ଜା ପୁଞ୍ଜା ବିଜୁଳି ଆଲୁଅ ଜଳି ଉଠିଲା । ଅଳ୍ପ ଦୂରରେ ଲାଟ୍ ସାହେବଙ୍କ କୋଠିରେ ବି ପୁଞ୍ଜା ପୁଞ୍ଜା ରଙ୍ଗ ବେରଙ୍ଗ ଆଲୁଅ ହସି ଉଠିଲା । ଝାଉଁଗଛ ସନ୍ଧିରେ ମେଞ୍ଚା ମେଞ୍ଚା ଅନ୍ଧାର ବୋଳି ହୋଇଗଲା । ସେଇ ଅଧା ଛାଇ ଅଧା ଆଲୁଅ ରାସ୍ତାରେ ଗୋଟିଏ କରକୁ ଆଉଜି ଠିଆ ହୋଇଥାନ୍ତି ଗୁଡ଼ିଏ ନୋଳିଆ ନୋଳିଆଣୀ; ଆଉ ଭିତରେ ଅଫିସ୍ ସାମ୍ନାରେ ବିଛେଇ ପଡ଼ିଥିବା ଆଲୁଅରେ ବସିଥାନ୍ତି ସିମାଦ୍ରୀ, କ୍ରିଷ୍ଣା, ବଡ଼େୟା, ଗ୍ଗୁରାୟା ଓ ଯାନି । ବସ୍ତିର ସମସ୍ତଙ୍କର ସୁଖ ଦୁଃଖର ସେମାନେ ପ୍ରତିନିଧି ।

ହଠାତ୍ ଅଫିସ୍ ଭିତରେ ଟିକିଏ କୋଳାହଳ ଶୁଭିଲା । ବଡ଼ବାବୁ ବାହାରକୁ ଆସିବା ବେଳ ହେଲା । ଦୁଇ ତିନିଟା ମୋଟର ସାଇଁ କରି ଆସି ଗେଟ୍ ଦୁଆରେ ଠିଆ ହୋଇଗଲା । ପିଅନ କେତୋଟା ଏଣେ ତେଣେ ଧାଇଁ ବ୍ୟସ୍ତ ହୋଇ ପଡ଼ିଲେ । ନୋଳିଆ ପାଞ୍ଚୋଟି ଚମକି ପଡ଼ି ଠିଆ ହୋଇଗଲେ-ନମସ୍କାର କରିବା ପାଇଁ ହାତ ଦୁଇଟି ଯୋଡ଼ି ଦେଇ । କିନ୍ତୁ ସେମାନଙ୍କ ନମସ୍କାର ନେବାକୁ ଅପେକ୍ଷା ନକରି ବାବୁମାନେ ମୋଟରରେ ବସିଲେ-ସେମାନଙ୍କ ମୁହଁରେ ସିଗାରେଟ୍ ଧୂଆଁ ଓ ଇଂରେଜୀ କଥା । ନୋଳିଆ ପାଞ୍ଚୋଟି ଖମ୍ବ ପରି ଠିଆ ହୋଇଥାନ୍ତି- ଶଙ୍କି ଶଙ୍କି ମୋଟରକୁ ଅନାଇ ଥାନ୍ତି-ବାବୁ କ'ଣ କହିବେ । କିନ୍ତୁ ଆଗ ପଛ ହୋଇ ମୋଟର ଦୁଇଟି ଚାଲିଗଲା-କେହି କିଛି କହିଲେ ନାହିଁ । ନୋଳିଆ ନୋଳିଆଣୀମାନେ ଚାରିଘଣ୍ଟା ଅପେକ୍ଷା କଲା ପରେ ବାବୁ ମୋଟରରେ ଚାଲିଗଲେ । ସେମାନଙ୍କୁ ଉପହାର ଦେଇଗଲେ ମୋଟରର ଧୂଳି ଓ ପେଟ୍ରୋଲର ପୋଡ଼ାଗନ୍ଧ ।

ପରିଚିତ ପିଅନମାନଙ୍କୁ ଘେରିଗଲେ ନୋଳିଆମାନେ । କ୍ରିଷ୍ଣା ପଚାରିଲା, "ବାବୁଙ୍କୁ ଆମ ଦୁଃଖ ଜଣାଇଲ ନାହିଁ କି ?

ବୁଢ଼ା ପିଅନଟା ମୁରବ୍ବୀ ପରି କହିଲା, "ଏମିତି କହି ଦେଲେ କ'ଣ କାମ ହୋଇଯାଏ ? ତମର ଯାହା ଅଭାବ ଅସୁବିଧା, କାଗଜରେ ଲେଖିଆଣ ।"

ସୁନାପିଲା ପରି ସମସ୍ତେ ଫେରି ଆସିଲେ । ରାସ୍ତାରେ ଅଂଧାର, କଣ୍ଟା, ଭୟ ଓ ଆଶଙ୍କା । ସମସ୍ତଙ୍କ ମୁଣ୍ଡ ଭାରି ଭାରି, ପାଦ ଅବଶ । ବସ୍ତିଟା ଅନେକ ଗୁଡ଼ାଏ ଦୂର ।

ବୁଢ଼ା ପିଅନର କଥା ମାନି କ୍ରିଷ୍ଣା ସହରର ଜଣେ ବାବୁଙ୍କ ହାତରେ ଦରଖାସ୍ତ ଲେଖି ମେଜେଷ୍ଟରଙ୍କ ଅଫିସ୍‌ରେ ଦେଇ ଆସିବାର ଛଅଦିନ ପରେ ସତକୁ ସତ ଆଦେଶ ଆସିଲା- "ବର୍ତ୍ତମାନ ପାଇଁ ନୋଳିଆମାନେ ସମୁଦ୍ରକୂଳେ ରହି ପାରନ୍ତି ।"

ପ୍ରଥମେ କିଏ ଏତେ ବଡ଼ ସୁସମ୍ବାଦଟା ବସ୍ତିକୁ ଆଣିଲା, ଜଣା ନାହିଁ । କିନ୍ତୁ ଦେଖୁ ଦେଖୁ ଦଳ ଦଳ ପୁରୁଷ ସ୍ତ୍ରୀ ଠାକୁରାଣୀଙ୍କ ଦେଉଳ ପାଖରେ ଜମାହୋଇ ପଡ଼ିଲେ । ମାସାନି ତିନିଦିନ ଧରି ଯେଉଁ ପୂଜା କରୁଥିଲା, ସେଇଦିନ ତାର ଶେଷ ହେଲା । ଏ ଖବର ପାଇ ସେ ଆଉରି ଜୋର୍‌ରେ ଶ୍ଳୋକ ବୋଲି, ଠାକୁରାଣୀଙ୍କ ଆଗରେ ହାତଗୋଡ଼ ହଲାଇ, ବସ୍ତିର ଦୁଃଖ ଜଣାଇବାକୁ ଲାଗିଲା । ତା ସଙ୍ଗେ ସଙ୍ଗେ ଠାକୁରାଣୀଙ୍କୁ ଦୁଇପଦ ପ୍ରଶଂସା ବି-

ତୁ ଆଜି ନୁହେଁ, କାଲି ନୁହେଁ, ଯୁଗେ ଯୁଗେ ଆମକୁ ରକ୍ଷା କରୁଚୁ ।
ଆମେ ତୋ'ରି ପିଲା କବିଲା ।
ଆମେ ଏଇ ସମୁଦ୍ରରେ ମାଛ ମାରିଲେ ପେଟ ପୋଷୁ ।
ତୁ ଆମକୁ ମାଛ ଦେଉ ।
ତୁ ଆମର ଡଙ୍ଗାକୁ ନିରାପଦରେ କୂଳରେ ଲଗାଉ ।
ତୁ ଇଚ୍ଛା କଲେ ଆମ ବସ୍ତିରେ ମାଛର ଅଭାବ ହେବନାହିଁ ।
ଆମ ବସ୍ତି ମଣିଷ ପିଲାର କୋଳାହଳରେ ଫାଟି ପଡ଼ିବ ।

କେହି କାହାକୁ ଡାକି ନାହିଁ – ଚାହୁଁ ଚାହୁଁ ଗୋଟାଏ ଯନ୍ତାଳର ଆୟୋଜନ ହୋଇଗଲା । କ୍ରିଷ୍ଣା ଏଣେ ତେଣେ ବୁଲି ସମସ୍ତଙ୍କୁ ହିମ୍ମତ ଦେଉଥାଏ । କହୁଥାଏ-ସେ କେମିତି ବରହମପୁରରେ ଥିବାବେଳେ କାହାର କିଛି ଅସୁବିଧା ହେଲେ ବଡ଼ ହାକିମ ପାଖକୁ ଯାଏ । ସେ ଯେଉଁ ସାହୀରେ ରହୁଥିଲା, ସେଠି କେତେ ଶିକ୍ଷିତ ଲୋକ, କେତେ କିରାଣୀ, ସରକାରୀ ଚାକିରିଆ ଥା'ନ୍ତି । କିନ୍ତୁ ବଡ଼ ହାକିମ ପାଖକୁ ଯିବାକୁ ହେଲେ ସମସ୍ତେ କହନ୍ତି-କ୍ରିଷ୍ଣା ଯାଉ ।

ସିମାଦ୍ରୀ ବସ୍ତି ଲୋକଙ୍କୁ ବୁଝାଉଥାଏ, "କ୍ରିଷ୍ଟା ଏକ ଆମ ଇଜ୍ଜତ୍ ରଖିଲା । ଯେତେ ହେଲେ ସେ ସହରରୁ ଆସିଛି-ଆମ ପିଲାଙ୍କୁ ପାଠ ପଢ଼ାଉଚି । ତା' ବୁଦ୍ଧି କ'ଣ ଆମଠାରୁ ସରସ ହେବ ନାହିଁ !"

ପାନ ଖିଲି ଖିଆ ହଳଦିଆ ଦାନ୍ତ ଦେଖାଇ କ୍ରିଷ୍ଟା କହୁଥାଏ, "ମେଜେଷ୍ଟରଟା କଡ଼ା ଲୋକ । ତାର ଯୋଉ ନିଶ-ଆରେ ବାପ୍‌ରେ-ଦେଖିଲେ ଲୋକ ଡରିଯିବ । ଆଖି ଦି'ଟା ତାର ସବୁବେଳେ ବାଘ ଆଖି ପରି । କିନ୍ତୁ ମୁଁ ତାକୁ ହାତଯୋଡ଼ି ସାଫ୍ ସାଫ୍ ଜଣାଇଦେଲା,- ଦେଖ୍ ସାହେବ, ତୁ ବଡ଼ମଣିଷ । ଆମେ ତୋ ରାଜ୍ୟରେ ରହିଚୁ । ତୁ ଯଦି ଆମ ଦୁଃଖ ନ ବୁଝିବୁ, ଆମ ପିଲାମାଇପ ଯଦି ରାସ୍ତାରେ ଭିକ ମାଗି ଗଛତଳେ ମୁଣ୍ଡ ଗୁଞ୍ଜିବେ, ତେବେ ସେଥିକି ତୁ ଦାୟୀ ହେବୁ ନାହିଁ କି ?"

"ସତ୍ ସତ୍"-ସବୁ ମାଇପେ ଏକାଠି କହି ଉଠନ୍ତି । ସେମାନଙ୍କ ଆଖିରେ ମୁହଁରେ ଆନନ୍ଦ-କ୍ରିଷ୍ଟା ପାଇଁ ପ୍ରଶଂସା ।

ମାସାନି ତିନି ଦିନ ହେଲା ନଖାଇ ନପିଇ ଠାକୁରାଣୀଙ୍କ ପାଖରେ ଅଧିଆ ପଡ଼ିଥିଲା । ତିନିଦିନ ହେଲା ସେ କିଛି ଖାଇନାହିଁ । ତା' ନିଶଦାଢ଼ିରୁ ମଦର ବିକଟ ଗନ୍ଧ ବାହାରୁଚି । ଅଧିଆ ପଡ଼ିଥିବା ବେଳେ ସବୁ ଖାଇବାକୁ ମନା-ଖାଲି ଟିକିଏ ମଦ ଛଡ଼ା । ମାସାନି ପୁଞ୍ଜା ପୁଞ୍ଜା କୁକୁଡ଼ା ବଳି ଦେଇଛି ଠାକୁରାଣୀଙ୍କ ଆଗରେ । ଭଣ୍ଡାରି ନରସିଂ କୁକୁଡ଼ା ସବୁକୁ ବନେଇବାରେ ଲାଗିଲା । ଜୋଲ୍‌ଦେଲା କୁଆଡୁ ଯାଇ ଦୁଇଟା ବଡ଼ ବଡ଼ ହାଣ୍ଡି ନେଇ ଆସିଲା । ଗୁରାୟା ଓ ବସ୍ତିଟା ଯାକର ଅଭିଆଡ଼ି ପୁଅ ଝିଅ ଶାଙ୍କୁଚ ମାଛର ବଡ଼ ବଡ଼ ଖୋଳପା ଦୁଇ ତିନିଟା ଧରି ଦୁଆରେ ଦୁଆରେ ବୁଲୁଛନ୍ତି-ଚାଉଳ, ତେନ୍ତୁଳି, ଶୁଖୁଆ, ଲଙ୍କା, ପଇସା-ଯିଏ ଯାହା ଦେଲା । କେହି କାହାକୁ ବାଧ କରୁନାହିଁ । କେହି କାହାକୁ କହୁନାହିଁ ଯେ ତତେ ଏଇଟା ଦେବାକୁ ହେବ । ତଥାପି ସଞ୍ଜ ପହରକୁ ଗାଁ ମୁଣ୍ଡରେ ଛୋଟ ଛାମୁଣ୍ଡିଆ ତଳେ ଜମା ହୋଇଗଲା ଶହେ ଲୋକଙ୍କ ଭୋଜି ହେଲା ଭଳି ଚାଉଳ, ମାଛ ଓ ଅନ୍ୟାନ୍ୟ ଜିନିଷସବୁ । ପଇସା ଚାନ୍ଦା କରି ସହରର ପଠାଣ ସାହୀରୁ କିଣା ହୋଇ ଆସିଲା ଗୋଟାଏ ମସ୍ତବଡ଼ ଖାସି । ଆଜି ଠାକୁରାଣୀଙ୍କୁ ସେମାନେ ମନବୋଧ କରି ଖାଇବାକୁ ଦେବେ । ସରା ସରା ରକ୍ତ ଠାକୁରାଣୀଙ୍କ ଆଗରେ ଥୁଆ ହେବ । ତା'ରି ଦୟାରୁ ମେଜେଷ୍ଟର୍ ସେମାନଙ୍କୁ ରହିବାକୁ ଜାଗା ଦେଇଛି । ସେମାନେ ଏତେ ବଡ଼ ଦୁନିଆରେ ଅନାଥ ହୋଇ ନାହାନ୍ତି । ଠାକୁରାଣୀଙ୍କୁ ସନ୍ତୁଷ୍ଟ ନକଲେ ସେ ଯେବେ ପୁଣି ବିଗିଡ଼ି ଯିଏ, ତେବେ କ'ଣ ହେବ ସେମାନଙ୍କ ଅବସ୍ଥା ? ଯେଉଁ ସାହେବ ଆଜି ଖୁସି ହୋଇ ସେମାନଙ୍କ ଭଲ କରୁଛି, ସେଇ ପୁଣି ନାଲି ଆଖି ଦେଖାଇ କଲମରେ କ'ଣ ଗୋଟାଏ ଗାର ପକେଇ ଦେବ ଯେ ସେତିକିରେ ବସ୍ତିଟା ଓଲଟା ପାଲଟ ହୋଇଯିବ । ଏତେ ଘର କୁଆଡ଼େ ପବନରେ ଉଡ଼ିଯାଇ ସମୁଦ୍ରରେ ଭାସିଯିବ । ପିମ୍ପୁଡ଼ି ମନ୍ଦାପରି ଭେଳା ଭେଳା ମଣିଷ-ବୁଢ଼ା, ବୁଢ଼ୀ, ଟୋକା, ଟୋକୀ, ପିଲା-ଆହା, କ'ଣ ହେବ ସେମାନଙ୍କ ଅବସ୍ଥା !

ବଡେୟା ରୋଷାଇ ଦାୟିତ୍ୱରେ ଥାଏ । ବସ୍ତିରେ କେତେ ଯନ୍ତାଳ ହୋଇଚି ସତ, କିନ୍ତୁ ଆଜିପରି ଯନ୍ତାଳ କେବେ ହୋଇଥିବା କାହାର ମନେ ପଡୁନାହିଁ । ଘର ଦୁଆର ପକେଇ ବସ୍ତି ମୁଣ୍ଡରେ ସଞ୍ଜବେଳକୁ ଜମା ହେଲେ ବସ୍ତିଟା ଯାକର ଲୋକ । ଆଜି ପଞ୍ଚମୀ । ଫାଳିକିଆ ଜହ୍ନଟା ସମୁଦ୍ର ପାଣିରେ ଭରାଦେଇ ସେମାନଙ୍କୁ ଚାହିଁଚି । ସମୁଦ୍ରରେ ଛାଇ ଆଲୁଅ, ପାଣି ଓ ଜହ୍ନର ଲୁଚକାଳି ଖେଳ । ସମୁଦ୍ର କୂଳର ମଣିଷ ମନରେ ବି ସେମିତି କେତେ ଆଶା ନିରାଶା-କେତେ ସୁଖ ଦୁଃଖ । କେଉଁଠି ଛୋଟ ପିଲାମାନେ ଗୋଲ ହୋଇ ବସି କ'ଣ ଖେଳରେ ମାତିଛନ୍ତି-ଅଣ୍ଟା ତଳକୁ ଛୋଟ ଛୋଟ କୌପୁନି ଖଣ୍ଡିଏ ଖଣ୍ଡିଏ-କାହାର ବା କାନ୍ଧରେ ଛିଣ୍ଡା ମଇଳା ଗଞ୍ଜିଟାଏ । କେଉଁଠି ପଲ୍‌ହେ ଟୋକୀ ବସି ହେଁ ହେଁ ଫେଁ ଫେଁ ହେଉଛନ୍ତି-ସେମାନଙ୍କ କଥାରେ ସଂଯମ ନାହିଁ, କଳ୍ପନାରେ ବାଧା ବନ୍ଧନ ନାହିଁ । ଅଦୂରରେ ବାପ ଭାଇମାନେ ରୋଷେଇରେ ଲାଗିଛନ୍ତି-ମାଆମାନେ ବି ସେମାନଙ୍କୁ ସାହାଯ୍ୟ କରୁଛନ୍ତି । ବାପ ଭାଇ ଥିବାଯାଏଁ ସେମାନଙ୍କର ଚିନ୍ତା ନାହିଁ-ଦକ ନାହିଁ ।

କେଉଁଠୁ ବୁହା ହୋଇ ଆସିଲା ଘଡ଼ା ଘଡ଼ା ମଦ – କିଏ ଲୁଚାଇ ରଖିଥିଲା ଘରର କେଉଁ ସନ୍ଧିରେ; କିଏ କିଣି ଆଣିଲା ମେହେନ୍ତର ସାହୀରୁ, ଠାକୁରାଣୀଙ୍କ ଆଗରେ ଖାସି ହଣା ହେଲା, ସରା ସରା ରକ୍ତ ପୂଜା ହେଲା, ମାସାନି ବଡ଼ ପାଟିକରି ନାକ ଆଖି ଛୁଇଁ ମନ୍ତ ବୋଲିଲା, ମଦ ବି ପିଆ ହେଲା । ଦଳେ ଟୋକା ଦଳେ ଟୋକୀଙ୍କୁ ନେଇ ନାଚ ଆରମ୍ଭ କରିଦେଲେ । ହାତରେ ଧରିଥିବା ଛୋଟ ଛୋଟ ବାଡ଼ିକୁ ନାନା ଭଙ୍ଗିରେ ନାନା ଠାଣିରେ ହଲାଇ ସେମାନେ ଗୀତ ଗାଉଥାନ୍ତି, ଆଉ ଗୀତର ତାଳ ବି ଦେଉଥାନ୍ତି । ସେ ଗୀତର ଅର୍ଥ ବା ସେ ତାଳର ଲୟ ସହରୀ ମଣିଷ ବୁଝି ପାରେନା; କିନ୍ତୁ ନୋଳିଆ ପୁଅ ନୋଳିଆ ଝିଅର ଆନନ୍ଦ ଉଲ୍ଲାସ ଏଇ ଗୀତ ଏଇ ତାଳରେ ରୂପ ପାଏ । ହାତରେ ହାତ ଛନ୍ଦି, ମୁହଁ ପାଖେ ମୁହଁ ଲଗାଇ, ସାଥୀ ଅଣ୍ଟାରେ ଆପଣା ହାତ ବେଢ଼ାଇ, ସେମାନେ ନାଚୁଥାନ୍ତି, ଆଉ ମନଇଚ୍ଛା ଗାଉଥାନ୍ତି ଗୀତ-

ଆମର ଏଇ ଦେଶ ଜହ୍ନ ଓ ସୂର୍ଯ୍ୟର,
ସମୁଦ୍ର ଓ ଆକାଶର ।
ଆମର ଏଇ ଦେଶ ହସ ଓ ଖୁସିର,
ପ୍ରେମ ଓ ସ୍ୱାଧୀନତାର ।
ଆମେ ନାଚିବୁ, ଗାଇବୁ,
ଆମେ କୌଣସି ଶୃଙ୍ଖଳା ମାନିବୁ ନାହିଁ-
ଆମେ ହସିବୁ, ହସାଇବୁ-
ଆମର ଏଇ ଦେଶ
ମଦ ଓ ଯୌବନର ।

ସେଇ ନାଚ ଭିତରେ କେଉଁ ପୁଅ କେଉଁ ଝିଅ ଉପରେ ପଡ଼ିଯାଉଥାଏ ତାଳରେ ଭୁଲ୍ କରି,-ଉଠୁଥାଏ ହସର କୋଳାହଳ- ମୃଦୁ ଗାଳି-ତା'ପରେ ଚାଲେ ନାଚ । ମଦ ନିଶାରେ ଢୁଲୁ ଢୁଲୁ ଆଖିରେ କେଉଁ ଯୁବକ ଚାହିଁ ରହୁଥାଏ କେଉଁ ଯୁବତୀ ଆଡ଼େ-ଧରାପଡ଼ି ଲଜ୍ଜିତ ହେଉଥାଏ । ସମୁଦ୍ରର ଥଣ୍ଡା ପବନ-ଦେହରେ ଘଷି ହେଉଥିଲେ ବି ଦେହରୁ ବହୁଥାଏ ଝାଳ-ତଥାପି ନାଚର ଶେଷ ନାହିଁ-ଶେଷ ନାହିଁ ମଣିଷର ଆଶା ନିରାଶାର କିମ୍ବା ଅଳ୍ପ ଦୂରରେ ସମୁଦ୍ର କୂଳରେ ଅସରନ୍ତି ଲହଡ଼ିର ।

ସେଦିନ ଗୁରାୟା ଖୁବ୍ ମନଇଚ୍ଛା କର୍‌ଲା ସଙ୍ଗେ ନାଚିଥିଲା ଆଉ ଭାବିଥିଲା ଭବିଷ୍ୟତ କଥା । ବାହାଘର ହେବାର କଥା ତ ପକ୍‌କା ହୋଇ ଯାଇଛି । ବସ୍ତିର ପୁରୁଖା ପୁରୁଖା ଲୋକଙ୍କ ଆଗରେ ଜୋଲ୍‌ଦେଲା ଜବାବ୍ ଦେଇଛି-ଆସନ୍ତା ମାସରେ ଭଉଣୀକୁ ଗୁରାୟା ସଙ୍ଗେ ବାହା କରିବ । ଦେବାକୁ ପଡୁ ପଛେ ଟିକିଏ ବେଶି ଟଙ୍କା, କିନ୍ତୁ ଗୁରାୟା ଟଙ୍କାକୁ ଡରିଗଲେ ଚଳିବ ନାହିଁ । ତା ବାହାଘର ପଛେ ପଛେ ପୁନ୍ନାମା ବାହା ହେବ-ତା ପଛକୁ ରାଜ୍‌ଜାମା-ବହୁତ ଝୋଲା ଟଙ୍କା ମିଳିବ ଗୁରାୟାକୁ । ଭଉଣୀ ଯୋଡ଼ାକ ବାହା ହୋଇଗଲେ ଖର୍ଚ୍ଚ ବି କମିଯିବ । କର୍‌ଲାଟା କାମିକା ଟୋକୀ । ସେ କିଛି ଘରେ ଗୋଡ଼ ଉପରେ ଗୋଡ଼ ପକାଇ ବସି ଖାଇବ ନାହିଁ । ସେ ବି ସ୍ୱାମୀକୁ ସାହାଯ୍ୟ କରିବ । ଝାଉଁବଣରୁ ଜାଳ ଗୋଟାଇ ଆଣିବ । ମାଛ ଶୁଖୁଆ କରି ଘରେ ହାଣ୍ଡିରେ ସାଇତି ରଖିବ । କଇଁଆ କିଣି ତେନ୍ତୁଳି କରିବ । ସେ ଆସିଲେ ଘର ତାର ହସି ଉଠିବ । ଜୋଲ୍‌ଦେଲାକୁ ଛାର୍ କେତୋଟା ଟଙ୍କା ଶୁଝିଦେବାକୁ ବେଶି ବେଳ ଲାଗିବ ନାହିଁ ।

ବହୁଦିନ ପରେ ମନଖୋଲି ହସି ହସି ଆଜି କର୍‌ଲା ଗୁରାୟା ସଙ୍ଗେ କଥା କହିଥିଲା । ଆଗେ ଯେତେବେଳେ ଦେଖିବ, ମୁହଁ ଫୁଲାଇ ନାକ ଛିଞ୍ଚାଡ଼ି ପଳାଇ ଯାଉଥିଲା କର୍‌ଲା । ତାର କାରଣ ଅଜଣା ନଥିଲା ଗୁରାୟାକୁ । ସେ ରାଗ ସେ ଅଭିମାନର ଅର୍ଥ ଥିଲା-ଗୁରାୟା କାହିଁକି ବାହାଘରର ଦିନ ପକ୍‌କା ନ କରୁଚି ! ଏଇଥିପାଇଁ ଏତେ ଛଳ ଦେଖାଉଥିଲା କର୍‌ଲା; କିନ୍ତୁ ଯେଉଁଦିନ ତା ଭାଇ ସଙ୍ଗେ ଝୋଲାଟଙ୍କା ଛିଣ୍ଡାଇ ଦେଲା, ସେଇଦିନୁ ଗୁରାୟାକୁ ଦେଖିଲେ କର୍‌ଲା ପାଖକୁ ଆସେ । ଦୁଷ୍ଟାମି ହସ ହସି ପଚାରେ, "ତୁ କାହିଁକି ଏମିତି ଝଡ଼ି ଯାଉଛୁ ? ଝୋଲାଟଙ୍କା ଯୋଗାଡ଼ କରି ପାରୁ ନାହୁଁ କି ?"

ଗୁରାୟା କର୍‌ଲାକୁ ପାଖକୁ ଟାଣି ଆଣିବାକୁ ହାତ ବଢ଼ାଇଲେ ସେ ଦୂରକୁ ଚାଲିଯାଏ । ମୁହଁ ବୁଲାଇ ଚାହେଁ-ଆଖିରେ ଦୁଷ୍ଟାମି ହସ । ଗୁରାୟା କହେ- "ମୁଁ ମରଦ୍ ପୁଅ । ଛାର୍ କେତୋଟା ଟଙ୍କା ଯୋଗାଡ଼ କରି ପାରିବି ନାହିଁ ?"

"କୋଉଠୁ ଆଣିବୁ ?" ଫାଜିଲାମି କରି ପଚାରେ କର୍‌ଲା ।

"ସମୁଦ୍ରରୁ ।"

"ଦେଖିବା, କେମିତି ଆଣିବୁ ।"

"ଦେଖିବୁ ।"

ତେଣେ ଯନ୍ତାଳର ନାଚଗୀତର ଧୁମ୍‌ଧାମ୍ ଚାଲିଥିଲା ବେଳେ ଗୁରାୟା ଓ କର୍‌ଲା ଗୋଟିଏ ବଡ଼ ପୋଚୁଅ ପାଖରେ ବସି, ଅଧାଛାଇ ଅଧା ଆଲୁଅରେ ଛଟପଟ ହେଉଥିବା ସମୁଦ୍ରକୁ ଅନାଇ, ସେମାନଙ୍କ ଜୀବନର ନୂଆ ଅନୁଭୂତି ବିଷୟରେ ଗପ ଯୋଡ଼ିଦେଲେ । ଆଉ ଅଳ୍ପ କେତୋଟା ଦିନ ପରେ ସେମାନଙ୍କ ବାହାଘର । ଏଇ ପଞ୍ଚମୀ ଜହ୍ନଟା ବଢ଼ି ବଢ଼ି ଯେଉଁଦିନ ଗୋଲାକାର ହେବ, ସେଇଦିନଠାରୁ ପନ୍ଦରଟି ଦିନ ପରେ ଆସିବ ସେମାନଙ୍କର ସବୁଠାରୁ ମଧୁରତମ ଦିନ । ସେଇ ଦିନଟି ପାଇଁ । ସେମାନେ କେତେ ସକାଳ ସଞ୍ଜ କେତେ ଖରାବର୍ଷାରେ ଆକାଶ ସମୁଦ୍ରକୁ ଚାହିଁ ସ୍ୱପ୍ନ ଦେଖିଛନ୍ତି । ସେମାନଙ୍କ ବାହାଘର ଦେଖିବ ଦେଖିବ ବୋଲି ଗୁରାୟାର ମାଆ ଏଚାମା କେତେ ଆଶା ଦରି ବଞ୍ଚିଥିଲା- ତାର ଆଶା ପୂରଣ ହୋଇ ପାରି ନାହିଁ । ସେମାନଙ୍କ ବାହାଘର ଦେଖିବ ବୋଲି କେତେ ବଡ଼ଜାଲ ପରବ ଆସିଛି, କିନ୍ତୁ ଚାଲି ଯାଇଛି ଫାଙ୍କା ଫାଙ୍କା । ଏତେ ଦିନ ପରେ ଆସିଛି ସେଇଦିନ-

ଠାକୁରାଣୀଙ୍କ ପାଖରେ ଜୋର୍‌ରେ କୋଳାହଳ ଶୁଭିବାରୁ ଗୁରାୟା କହିଲା, "ଏଥର ଯନ୍ତାଳ ହେବ । ଠାକୁରାଣୀଙ୍କ ଆଗରେ ଭୋଗ ଶେଷ ହେଲା ।"

କର୍‌ଲା କହିଲା, "ମୁଁ ଆଗେ ଆଗେ ଯାଉଛି । ତୁ ପଛେ ପଛେ ଆ' । ନାଇଁ ଯଦି କିଏ ଦେଖେ---"

ହସି ହସି ଚାଲିଗଲା କର୍‌ଲା । ଗୁରାୟା ତା'ରି ଆଡ଼କୁ ଅନାଇ ରହିଲା-ସେ ଲୋକଗହଳିରେ ଅଦୃଶ୍ୟ ହୋଇଯିବା ଯାଏଁ । ତା'ପରେ ଯେତେବେଳେ ସେ ବି ଯନ୍ତାଳ ଆଡ଼କୁ ବାହାରେ,ପଛରୁ ଶୁଭିଲା କାହାର ଖଣ୍ଡିକାଶ ।

ଚମକି ପଡ଼ି ମୁହଁ ବୁଲାଇ ଅନାଇଲା ବେଳକୁ ଯାନି ପୋଚୁଅ ଭିତରୁ ମୁଣ୍ଡ ଟେକି ଠିଆ ହେଲା । ଗୁରାୟା ଦେହରେ ନିଆଁ ଲାଗିଗଲା ଯେମିତି ! ନିଜକୁ ସମ୍ଭାଳି ନେଇ ସେ ପଚାରିଲା, "ତୁ ଏଠି ?"

"କ'ଣ ଦୋଷ ହେଲା କି ?" ଯାନି ବି ହସି ହସି ତାକୁ ଟାପରା କଲା ପରି କହିଲା ।

କିଛି ନକହି ଚଞ୍ଚଳ ଚଞ୍ଚଳ ପାଦ ପକାଇ ପଳାଇ ଆସୁଥିଲା ଗୁରାୟା । କିନ୍ତୁ ପଛରୁ ମୁରବ୍‌ବୀ ପରି ଯାନି କହିଲା, "ଦେଖ୍ ଗୁରାୟା, ଯଦି ଭଲ ଗତି ଅଛି, ତେବେ ପର ମାଇପି ପିଲାକୁ ଧରି ଏମିତି ସୋହାଗ କରିବା ଛାଡ଼ି ଦେ ।"

"ତୁ'ଟା କିଏ ରେ ? ଝୋଲାଟଙ୍କା ପକ୍‌କା ହୋଇ ସାରିଛି । ବାହାଘର ଆଉ ପନ୍ଦର ଦିନ ।"

ଯାନି ବସ୍ତିରେ କାଲେ ତାର ବଦ୍‌ନାମ କରିବ ଏବଂ ଅଭିଆଡ଼ି ଝିଅ ସଙ୍ଗେ ଏକୁଟିଆ ରାତିରେ ବସାଉଠା କରିଥିବାରୁ କାଲେ ତାକୁ କଇଫତ୍ ଦେବାକୁ ପଡ଼ିବ, ଏଇ ଭୟରେ

ଗୁରାୟା ଟିକିଏ ଦବିଗଲା ।

ପୁଣି ଚଢ଼ା ଗଳାରେ ଯାନି ଗର୍ଜି ଉଠିଲା, "ଆରେ, ରଖ୍ ତୋ ଝୋଲାଟଙ୍କା । ଏମିତି ଝୋଲାଟଙ୍କା ପକ୍‌କା ହୋଇ ବି କେତେ ବାହାଘର ଭାଙ୍ଗିଯାଇଛି । କାମ୍ହୁନ୍ତୁ ପାଇଁ ଗୋଟାଏ ଜାଗାରେ ଝୋଲାଟଙ୍କା ବୁଝା ହୋଇଥିଲା, ଅଲଗା ଜାଗାରେ ବାହାଘର ହେଲା ।"

ଏହା କହି ଗୁରାୟାକୁ ଚାହିଁ ଯାନି ଅକାରଣରେ ହସିବାକୁ ଲାଗିଲା । ଅନ୍ୟବେଳ ହୋଇଥିଲେ ଗୁରାୟା ସେଇଠି ଯାନି ହସର ଉତ୍ତର ଦେଇଥାନ୍ତା; କିନ୍ତୁ ଏକ ଦୁର୍ବଳ ମୁହୂର୍ତ୍ତରେ ଯାନି ତାକୁ ଧରିଛି । ଅଳ୍ପ ଦୂରରେ ବସ୍ତିଟାଯାକର ଲୋକ ଜମା ହୋଇଛନ୍ତି । ପୁଣି, ଯାନି ଯାହା କହୁଛି, ମିଛ ତ କହୁନାହିଁ । ଝୋଲାଟଙ୍କା ପକ୍‌କା ହୋଇ ବି ଝିଅର ମୁରବ୍‌ବୀ ମନ କଲେ ଝିଅକୁ ଅନ୍ୟ କେଉଁ ଟୋକା ସଙ୍ଗେ ବାହାକରି ପାରିବ । ସେ ଯେତେବେଳେ ଏତେ କଷ୍ଟ ସହି, ଏତେ ଟଙ୍କା ଖର୍ଚ୍ଚକରି ଝିଅକୁ ବଢ଼ାଇଛି, ଯେଉଁଠି ଅଧିକା ପାଇବ, ସେଠି ଝିଅକୁ ଦେବ । ଏଥିରେ କାହାର କିଛି କହିବାର ଅଧିକାର ନାହିଁ ।

ଯାନି ଓ ଜୋଲ୍‌ଦେଲା କେମିତି ସବୁବେଳେ ଏକା ପୋଢୁଅରେ ମାଛ ମାରି ଯାଉଛନ୍ତି; ଝୋଲାଟଙ୍କା ଛିଣ୍ଡିଲା ଦିନ ଯାନି କେମିତି ବେଶି ଟଙ୍କା ହାଙ୍କୁଥିଲା; ବେଳେ ବେଳେ ଜୋଲ୍‌ଦେଲା ଘରେ ଯାନି କେମିତି ସଞ୍ଜବେଳେ ବସି ପିଙ୍କା ଟାଣୁଛି; ଜୋଲ୍‌ଦେଲା କେମିତି ଗୁରାୟାକୁ ଭିଣୋଇ କରିବ କହି ବି ଟିକିଏ ଖାତିର୍ କରୁ ନାହିଁ-ସବୁ ଗୋଟି ଗୋଟି ହୋଇ ଗୁରାୟାର ମନେ ପଡ଼ିଲା । ଶୁଖିଲା ଘାଆସବୁ ଏକ ସଙ୍ଗେ ପୁଣି ଯେମିତି ଟଣ୍ ଟଣ୍ ହୋଇଉଠିଲେ !

ପଛକୁ ଅନାଇଲା ବେଳକୁ ଯାନି ନାହିଁ । ସେ ଯନ୍ତାଳକୁ ଗଲାଣି । ଦୂରରେ ବସ୍ତିଲୋକଙ୍କ ଆନନ୍ଦ କୋଳାହଳ ଶୁଭୁଛି । – ସମସ୍ତେ ଖାଇବାରେ ଲାଗିଲେଣି ।

ଗୁରାୟା ଯନ୍ତାଳକୁ ନଯାଇ ନିଜ ଘର ଆଡ଼କୁ ମୁହାଁଇଲା ।

ସକାଳୁ ସଞ୍ଜ ଯାଏଁ ସେମିତି ବସି ବସି ଗୁରାୟା କ'ଣ ଭାବୁଥିଲା କେଜାଣି ! ସମସ୍ତେ ଡଙ୍ଗାନେଇ ମାଛ ମାରିବାକୁ ଗଲେ, ଗୁରାୟା ଗଲାନି । କେହି ବି ତା ଦୁଆରକୁ ଆସିଲେନି- ସେ କାହିଁକି ନଗଲା ପଚାରିବାକୁ ।

ସମସ୍ତେ ନିଜ ନିଜ ସୁଖ ଦୁଃଖରେ ବ୍ୟସ୍ତ । ସମୁଦ୍ରକୁ ଗଲେ ପେଟ ପୋଷିବେ । ଅନ୍ୟର ଦୁଃଖ ବୁଝିବାକୁ ବେଳ କାହିଁ ?

ସମୁଦ୍ର ଉପରେ ସୂର୍ଯ୍ୟ ନଇଁ ଆସୁଛି । ସମୁଦ୍ରର ନେଳି ପାଣି ଉପରେ ସୂର୍ଯ୍ୟର ସାତ ରଙ୍ଗର ଆଲୁଅ-ଚମତ୍‌କାର ଦେଖିବାକୁ । ଗୁରାୟା କବି ନୁହେଁ; ତଥାପି ସମୁଦ୍ରକୁ ସେ ଚାହିଁଲା । ଦୂରରେ ଆକାଶ ଓ ପୃଥବୀ ଯେଉଁଠି ମିଶି ଯାଇଛି – କିଏ କହୁଥିଲା, ସେଠା ପାରି ହୋଇଗଲେ ବି ମଣିଷଙ୍କ ରାଇଜ ପଡ଼ିବ-ସେଇଠି ଦେଖାଗଲାଣି ଗୋଟିଏ ଗୋଟିଏ ଡଙ୍ଗା- ସମୁଦ୍ରର ପକ୍ଷୀମାନେ ଡେଣା ମେଲାଇ ପାଣି ଉପରେ ପହଁରୁଛନ୍ତି ଯେମିତି !!

ଗୋଟିଏ ଦୁଇଟି ଡଙ୍ଗା କୂଳକୁ ଲାଗି ଆସିଲାଣି । ସେଥିରେ ଯାନି କି ଜୋଲ୍‌ଦେଲା ଥିବା ବି ଅସମ୍ଭବ ନୁହେଁ ।

ପୁନ୍ନାମା ଘରେ ଆଲୁଅ ଜଳାଇଲା ।

କାନ୍ଦି କାନ୍ଦି ପୁନ୍ନାମାର ଆଖି ଦୁଇଟା ଫୁଲି ଯାଇଛି । ଗାଲ ଉପରେ ଲୁହର ଶୁଖିଲା ଚିହ୍ନ । ମୁଣ୍ଡବାଳ ଫୁରୁ ଫୁରୁ । କେଉଁଦିନର ମଇଳା ଚିରାଲୁଗାଟା ପିନ୍ଧିଛି ଯେ ପିନ୍ଧିଛି । କେଉଁଥିରେ ନିଘା ନାହିଁ ।-

ହଠାତ୍ ଗୁରାୟାର ମନଟା ଦୟାରେ ଆର୍ଦ୍ର ହୋଇ ଆସିଲା । ବାପ ଥିଲେ କ'ଣ ଝିଅ ଏମିତି କାନ୍ଦିବା ଦେଖି ସହି ପାରନ୍ତା !-ଗୁରାୟାର ବାପ କଥା ମନେ ପଡ଼ିଲା । ହାଡ଼ର ଛାଞ୍ଚ ଉପରେ ଚମର ବେଢ଼ଣ । ତା'ରି ଭିତରେ ସେମାନଙ୍କ ପାଇଁ ଥିଲା କେତେ ସ୍ନେହ, କେତେ ଅଭୟ !

ବାପ ମରିବାର ବର୍ଷେ ହୋଇଗଲା- ।

କାହିଁକି ଆଜି କାନ୍ଦୁଛି ପୁନ୍ନାମା ?

ଗୁରାୟାକୁ ଜଣାପଡ଼ିଲା, ଏଇ ଦିନ କେତୋଟା ଭିତରେ ସବୁ କିଛି ଯେମିତି ବଦଳି ଯାଇଛି ! ସବୁ ହୋଇ ଯାଇଛି ଓଲଟ୍ ପାଲଟ୍ । ସମୁଦ୍ରକୂଳର ଛୋଟ ଛୋଟ କୁଡ଼ିଆ ଘରଗୁଡ଼ିକ ସେମିତି ଅନେଇ ରହିଛନ୍ତି-ଯେମିତି ତା ବାପ ସେମାନଙ୍କୁ ଦେଖିଥିଲା । ସେଇ ଆକାଶ ଅଛି-ଜହ୍ନ ଉଇଁଛି, ଆସୁଛି ମେଘ, ଝଡ଼ି, ବର୍ଷା, ତୋଫାନ୍- । ଅଛି ବି ପୁରୁଣା ସମୁଦ୍ରଟା-ଦୁନିଆରେ କିଛି କେବେ ବଦଳି ଯାଉନି । ହେଲେ ମଣିଷ...!!! କେଡ଼େ ନଗଣ୍ୟ ଜୀବଟିଏ...!!! କିନ୍ତୁ ସେ ବଦଳିଯାଉଛି କ୍ଷଣକୁ କ୍ଷଣ । ଏଡ଼େ ପ୍ରକାଣ୍ଡ ସମୁଦ୍ରକୁ ବିଶ୍ୱାସ କରିହେବ, କିନ୍ତୁ ମଣିଷକୁ ? -ଅସମ୍ଭବ !! -ହଁ, ସମୁଦ୍ରରେ ବି ଝଡ଼ ଆସେ;- ଡଙ୍ଗା ଚୁର୍‌ମାର୍ ହୋଇ ଅଥଳ ପାଣି ଭିତରେ ହଜିଯାଏ, କେତେ ନୋଳିଆର ବୁକୁଫଟା ଆର୍ତ୍ତନାଦ; କିନ୍ତୁ ଝଡ଼ି ହେବା ଆଗରୁ ଆକାଶରେ ସମୁଦ୍ରରେ କେତେ ସୂଚନା ମିଳେ । କିଏ ଯେମିତି କହିଯାଏ-ସାବଧାନ ! ବିପଦ ଆସୁଛି । ନିରାପଦ ସ୍ଥାନକୁ ପଳା !-

କିନ୍ତୁ ମଣିଷ କିଛି କହେନି-କିଛି ସୂଚନା ଦିଏନି । ଯକ୍ଷ୍ମା ଜୀବାଣୁ ଫୁସ୍‌ଫୁସ୍‌କୁ ଖାଇଗଲା ପରି, ବଣର କୀଟ ମୋଟା ଗଛର ଗଣ୍ଡିକୁ ଖାଇ ପୋଲ କଲା ପରି, ମଣିଷ ମଣିଷର ସୁଖସ୍ୱପ୍ନକୁ ନିଃଶେଷ କରେ । ଆଗରୁ ଜାଣିବାର ଉପାୟ ନାହିଁ । ଜାଣିଲାବେଳକୁ ହାତର ଚଢ଼େଇ ଆକାଶକୁ ଉଡ଼ିଯାଇ ଥାଏ !

ଯାନି ବାହାହେବ କର୍‌ଲାକୁ । ଆଉ ଦୁଇ ଦିନ ରହିଲା । ସମୁଦ୍ର ଲହଡ଼ି ଉପରେ ସୂର୍ଯ୍ୟଦେବତା ଦୁଇଥର ଉଙ୍କିମାରି ଅନାଇବେ । ସମୁଦ୍ର କୂଳରୁ ଦୁଇଥର ଡଙ୍ଗା ଯିବ, ଆସିବ ।

ତା'ପରେ ?

ତା'ପରେ ବସ୍ତିଟାରେ ଉତ୍ସବ,-ଭୋଜି-ବାଜା । ଗୀତ, ନାଚ ଓ ମଦ । ଯାନିର ବାହାଘର, କର୍‌ଲାର ବାହାଘର । ଗୁରାୟା ଭାବିଲା, କେଡ଼େ ଅକୃତଜ୍ଞ ଏଇ ବସ୍ତିର ଲୋକେ । ସମସ୍ତେ ଜାଣିଥିଲେ, କର୍‌ଲା ଗୁରାୟାକୁ ବାହା ହେବ; କିନ୍ତୁ କିଏ ଯେମିତି ହଠାତ୍ ଦିନେ କୁହୁକ କରିଦେଲା ! ସବୁ ବଦଳିଗଲା ।-ରାତି ପାହିଲା ବେଳକୁ ସମସ୍ତେ କହିଲେ -କର୍‌ଲା ବାହାହେବ ଯାନିକୁ । -ଗୁରାୟା ? - ସେ ପୁଣି କିଏ ?

ଲୁହାପରି ବଳିଷ୍ଠ ବାହୁ ଦୁଇଟା ଉପରେ ମୁହଁଟା ରଖି କୁଡ଼ିଆ ଘରର ମିଞ୍ଜି ମିଞ୍ଜି ଆଲୁଅରେ ଗୁରାୟା- କଇଁ କଇଁ ହୋଇ କାନ୍ଦି ଉଠିଲା । ସକାଳୁ ସେ ବସି ରହିଥିଲା ଗୁମ୍ ହୋଇ । ତା ପଥର ଛାତି ଉପରେ ଝଡ଼ ବୋହି ଯାଇଛି । ଭଉଣୀ ଦି'ଟା ଦିନ ଭିତରେ ତିନିଥର ସକ ସକ ହୋଇ କାନ୍ଦିଲେଣି । ସବୁଥର ଗୁରାୟା ଚିଡ଼ି ଉଠିଛି – "କାନ୍ଦୁଚ କାହିଁକି ରେ ? କ'ଣଟା ହୋଇଗଲା ? ସେମାନେ ନିମକ୍‌ହାରାମ୍ । ଦେଖିବୁ – ତାଙ୍କର କେମିତି ଅନିଷ୍ଟ ହେବ ।"

କିନ୍ତୁ ପୁନ୍ନାମା ଭାଇ କଥା ବୁଝିନି । ମାଆକୁ ଡାକି ଡାକି ବାପ କଥା ମନେ ପକାଇ ପକାଇ ସେ ତୁହାକୁ ତୁହା କାନ୍ଦିଛି ।

ଭଉଣୀ କାନ୍ଦିଲେ ଯେ ଚିଡ଼ି ଉଠୁଥିଲା, ସେଇ ଗୁରାୟା ବି କାନ୍ଦି ପକେଇଲା । ପର ମୁହୂର୍ତ୍ତରେ ଲଜ୍ଜିତ ହୋଇ ମୁଣ୍ଡ ଟେକିଲା-ନା, ଘରେ କେହି ନାହାନ୍ତି । ଡିବିରି ଲଗାଇ ପୁନ୍ନାମା ରାଜ୍‌ଜାମା କୁଆଡ଼େ ଯାଇଛନ୍ତି । ବାମ୍ଫିରୁ ପାଣି ଆଣିବାକୁ ଯାଇଥିବେ । ଯାହା ହେଉ, ସେ କାନ୍ଦିବାଟା କେହି ଦେଖି ନାହାନ୍ତି ।

ଏତେ ଦୁଃଖରେ ବି ଗୁରାୟା ଟିକିଏ ସାନ୍ତ୍ୱନା ପାଇଲା ।

କ'ଣ ଭାବି ବାହାରକୁ ଆସିଲା ସେ । ଉପରେ କଳା କିଟିମିଟି ଅନ୍ଧାର ଓ ଆକାଶ । ସମୁଦ୍ରରେ ଗୋଟାକ ପରେ ଗୋଟାଏ କଳାଲହଡ଼ି । ଧଳା ଧଳା ଫେଣସବୁ ଦେଖିଲେ ଡର ଲାଗୁଛି ।

ଭୋକ ଲାଗିଲାଣି । ସକାଳୁ କିଛି ଖାଇନି ଗୁରାୟା । ଭଉଣୀ ଦି'ଥର ଖାଇବାକୁ ଯାଚିଲା । ଗୁରାୟା ମନା କଲା, "ଇଚ୍ଛା ନାହିଁ ।" କିନ୍ତୁ କାହିଁକି ? ଏଇ ସାମାନ୍ୟ କଥାଟାରେ ସେ ଯଦି ଦବିଯିବ, ମାଇପି ପିଲାଦୁଇଟି ଛୋଟ ଭାଇଦୁଇଟି କାହା ଉପରେ ନିର୍ଭର କରିବେ ? କିଏ ହେବ ସେମାନଙ୍କ ମୁରବ୍‌ବୀ ?

ହାତ ପାପୁଲିରେ ମୁହଁ ପୋଛିଲା ଗୁରାୟା । ନା-ସେ ପଥର ପରି ଟାଣ ହେବ । ଯାଉ କର୍‌ଲା-ସେ'ଟା ଖରାପ ଲୋକର ଆତ୍ମା । କର୍‌ଲାଠାରେ ତାର କି କାମ ? ଯାନି ? ହଁ-ତା ଛଡ଼ା ଆଉରି ବହୁତ ଟୋକା ଅଛନ୍ତି-ପୁନ୍ନାମା ଅଭିଆଡ଼ି ରହିବ ନାହିଁ । ତା ମାଆ ଝିଅକୁ ବାହା କରିବ ବୋଲି କେଡ଼େ ଆଶା କରିଥିଲା । ସେ ଆଶା ନିଶ୍ଚୟ ପୂରଣ ହେବ । ମାସାନି କହେ-ମଣିଷ ତାର ଅତୃପ୍ତ ଆଶା ପୂରଣ କରିବାକୁ ମଲା ପରେ ବି ପୃଥିବୀକୁ ଆସେ । ତା' ବାପ ତା' ମାଆ ସେ ପୁରରୁ ଆସି ସେମାନଙ୍କ ଝିଅର ବାହାଘର ଦେଖିବେ । ସେମାନଙ୍କ ଆଶା କେବେ ଅପୂର୍ଣ୍ଣ ରହିବ ନାହିଁ ।

ପୁନ୍ନାମା ଆସି ଘରେ ଚୁଲି ଲଗାଇଲା । ସଞ୍ଜର ଥଣ୍ଡା ପବନ, ଚାଳ ଉପରୁ ମୋଡ଼ି ମୋଡ଼ି ମଠେଇ ମଠେଇ ଉପରକୁ ଉଠୁଥିବା ଧୂଆଁ, ଅନ୍ଧାର ଓ ଠାଏ ଠାଏ ମିଞ୍ଜି ମିଞ୍ଜି ଆଲୁଅ-ସବୁ ମିଶି ମନରେ କେମିତି ଗୋଟାଏ ସାନ୍ତ୍ୱନା ଭାବ ବୋଳିଦେଲା ପରି ଲାଗିଲା । ଭାଇ ଭଉଣୀମାନେ ଜାକିଜୁକି ହୋଇ ବାପର ସ୍ମୃତିସମ୍ବଳିତ କୁଡ଼ିଆ ଘରେ ବସି ଗପ ଯୋଡ଼ି ଦେଲେ । ଗୁରାୟା ଓ ପୁନ୍ନାମା-ଦୁହେଁ ମିଶି ଗାଳିଦେଲେ ଯାନି ଓ କର୍‌ଲାକୁ, ଜୋଲ୍‌ଦେଲା ଓ ସିମାଦ୍ରୀକୁ । ଯାନି ଆଗେ ତା ବାପ ପାଖରୁ ଚାଉଳ ଧାର୍ ନେଇ ଚଳୁଥିଲା; ଏବେ ପଇସା ଜମେଇ ବଡ଼ଲୋକୀ ଦେଖାଉଛି । କର୍‌ଲା କୁଆଡ଼େ ଯାନି ସଙ୍ଗେ ବାହା ହେବନି ବୋଲି କାନ୍ଦୁଥିଲା-ପରେ ପୁଣି ଭାଇର ଜିଦ୍ ଦେଖି ରାଜି ହେଲା । ରାଜି ହେବା କଥା । ସେଇଟା ଅଳସୋଇ । ହାତରେ ଖଡ଼ା ସିଝିବ ନାହିଁ । ଜୋଲ୍‌ଦେଲାଟା ଚୁପ୍ ସଇତାନ୍ । ଭାରୀ ଲୋଭୀ ।

ଟଙ୍କା ଛଡ଼ା ସେ ଆଉ କିଛି ବୁଝେନା । ସକାଳୁ ତା ମୁହଁ ଚାହିଁଲେ ଦିନ ସାରା ଖାଇବାକୁ ମିଳିବ ନାହିଁ ।

ସିମାଦ୍ରୀ ? କେବେ ସେ ବସ୍ତିର ମୁଖିଆ ହୋଇଥିଲା ? ଜୋଲ୍‌ଦେଲାଠାରୁ ଲାଞ୍ଚ ଖାଇ ସେ ଯାନି କଥାରେ ମଙ୍ଗିଗଲା । ସେଦିନ ତା'ରି ଆଗରେ ଗୁରାୟା କର୍‌ଲାକୁ ବାହା ହେବ ବୋଲି ଝୋଲାଟଙ୍କା ଛିଣ୍ଡାଇଥିଲା । ସେଇ ସିମାଦ୍ରୀ ପୁଣି କଥା ବଦଳେଇ କିଛି ନ ଜାଣିଲା ପରି ଆଖି ମିଟି ମିଟି କରି କହିଲା, "ଭାଇ ସିନା ଭଉଣୀର ସ୍ୱାମୀ ଠିକ୍ କରିବ । ମତେ ବୋଲୁଚୁ ଯେ ମୁଁ କ'ଣ କରିବି ? ଜୋଲ୍‌ଦେଲା ତା ଭଉଣୀକୁ ପୋଷିଚି-ବାପ ମଲାଦିନରୁ ବଢ଼େଇଚି । ତା କଥା ଉପରେ ମୁଁ କ'ଣ କହିବି ?"

ବସ୍ତିର ସମସ୍ତଙ୍କୁ ମନଇଚ୍ଛା ଗାଳିଦେଲେ ଭାଇଭଉଣୀ ମିଶି । ବସ୍ତିରେ ସମସ୍ତେ ତାଙ୍କର ଶତ୍ରୁ । ବାପ ଥିଲାବେଳେ ଯେଉଁମାନେ ଦିନେ ଛଡ଼ା ସେମାନଙ୍କ ଘରକୁ ଆସୁଥିଲେ, ଏବେ ସେମାନେ ଦେଖିଲେ ମୁହଁ ବୁଲାଇ ପଳାଉଛନ୍ତି । କିଛି ନ ହେଲେ ସେମାନେ ରେଳରେ ଚଢ଼ି ଆଉ କୁଆଡେ ପଳାଇବେ । ଯୁଆଡ଼େ ଗଲେ ମୁଣ୍ଡଝାଳ ତୁଣ୍ଡରେ ମାରି ପେଟ ପୋଷିବେ । ଏଡ଼େ ବଡ଼ ଦୁନିଆ ପଡ଼ିଛି-ସବୁଠି ମଣିଷ ପାଇଁ ଖାଦ୍ୟ ଥୁଆ ହୋଇଛି । ଖାଲି ଝାଳ ନିଗାଡ଼ି ପାରିଲେ ହେଲା ।

ଜହ୍ନ ଯେଡ଼େ ତୋଫା ହୋଇ ଉଇଁଲେ ବି ସମୁଦ୍ରକୂଳର ଝାଉଁବଣ ଭିତରୁ ଯେମିତି ଅନ୍ଧାର ଦୂର ହୁଏ ନାହିଁ, ବସ୍ତିଲୋକଙ୍କୁ ଯେତେ ଗାଳିଦେଲେ, ନିଜର ସୁନେଲି ଭବିଷ୍ୟତ କଥା ଭାବି ନିଜକୁ ଯେତେ ବୁଝାଇଲେ ବି ଗୁରାୟା କି ପୁନ୍ନାମା କାହାରି ମନ ବୁଝିଲା ନାହିଁ । ଦୁହେଁ ଶୋଇବାକୁ ଗଲେ-ଦୁହିଁଙ୍କୁ ଲୁଚାଇ ଦୁହେଁ ରାତିସାରା ନୀରବରେ ଲୁହ ଢାଳିଲେ । ପ୍ରତ୍ୟେକେ ଭାବିଲେ- ଅନ୍ୟ ଜଣକ ଅତୀତର ଦୁଃଖ ଭୁଲି ଯାଇଥିବ; କିନ୍ତୁ କେହି ଭୁଲିଲେ ନାହିଁ । ମଣିଷର ସ୍ୱପ୍ନ ମିଥ୍ୟା ହେଲେ ବି ସେଇ ସ୍ୱପ୍ନକୁ ସେ ଜୀବନସାରା ଝୁରି ହୁଏ ।

ସମୁଦ୍ର କୂଳର ବାଲିକୁଦ ଉପରେ ଠିଆ ହୋଇ ଚାରିଆଡ଼କୁ ଅନାଇଲେ ବୁଝିହୁଏ-ଏ ପୃଥିବୀ କେତେ ବଡ଼ ଓ ତା ଭିତରେ କେଡ଼େ ଛୋଟ, ନିଃସହାୟ ଏଇ ମଣିଷ ! ମଣିଷ ଯେ କେଡ଼େ ଛୋଟ, ସେଇ କଥା ଯେମିତି ମନେ ପକାଇଦିଏ ସମୁଦ୍ରର ଅସରନ୍ତି ବିସ୍ତୃତି । ଦୂରରେ ସମୁଦ୍ରର ନେଳି ଓ ଆକାଶର ନେଳି ମିଶି ଯେଉଁଠି ଏକାକାର ହୋଇଛି, ସେଇ ଦିଗ୍‌ବଳୟର କୂଳେ କୂଳେ ଭାସି ବୁଲନ୍ତି ଅଗଣିତ ଗ୍ରହତାରା । ସେମାନଙ୍କ ଆକାର ଆମର ଏଇ ପୃଥିବୀ ପରି; କିମ୍ବା ତା'ଠାରୁ ଆଉରି କେତେଗୁଣ ଅଧିକ ।

ଏତେ ବଡ଼ ଏଇ ଦୁନିଆର କଥା ଭାବିଲେ ମଣିଷ ପ୍ରତି ଦୟା ଆସେ; ସେ ଏଡ଼େ ଛୋଟ ବୋଲି ନୁହେଁ, ନିଜକୁ ସେ ଏତେ ବଡ଼ ଭାବେ ବୋଲି ।

ଏ ସୃଷ୍ଟିରେ ମଣିଷକୁ କେହି ନପଚାରୁ ପଛେ; କିନ୍ତୁ ମଣିଷ ଭାବେ-ସବୁ ତା'ରି ପାଇଁ । ନିଜ ଗର୍ବରେ ଫୁଲି ଫୁଲି ସେ ଭାବେ-ତା ମୁଣ୍ଡ ଯେମିତି ଆକାଶରେ ବାଜୁଛି । ଆପଣା ଅହଙ୍କାରରେ ଭାରୀ ହୋଇ ସେ ମନେ କରେ-ଏ ପୃଥିବୀ ଯେମିତି ତା ଗୌରବ-ବୋଝ ସମ୍ଭାଳି ନପାରି ତଳକୁ ତଳକୁ ଖସି ଯାଉଛି !

ତାହା ହିଁ ଭାବୁଥିଲା ନୋଳିଆ ବସ୍ତିର ଯାନି ନାଇଡୁ । ନାଲିରଙ୍ଗବୁଡ଼ା ମୋଟା ଲୁଗା ପିନ୍ଧି, ତେଲରେ ଜିକି ଜିକି କରି ମୁଣ୍ଡ କୁଣ୍ଡାଇ, କପାଳରେ ସିନ୍ଦୂର, ବେକରେ ଫୁଲମାଳ ଲଗାଇ, ସେ ବରବେଶ ସାଜି ଠାକୁରାଣୀଙ୍କ ଦେଉଳ ସାମ୍ନା ଚାଞ୍ଚବରଡ଼ା ଉପରେ ବସିଥିଲା । ତା'ଚାରି ପାଖେ ଘେରି ବସିଥିଲେ କ୍ରିଷ୍ଣା, ଆପଲ୍ ସ୍ୱାମୀ, ସୀମାନା, ଆରେୟା ଓ ନୋଳିଆ ବସ୍ତିର ଅନ୍ୟ ଭେଣ୍ଡିଆମାନେ । ବର ଏଇ ଠାକୁରାଣୀଙ୍କ ପାଖେ ଜୁହାର ହୋଇ କନ୍ୟା ଘରକୁ ଯିବ । ଯିବାର ମାହେନ୍ଦ୍ର ବେଳା ଆସିଲେ ମାସାନି ଠାକୁରାଣୀଙ୍କ ପାଦତଳୁ ଉଠି ଠିଆ ହେବ । ସେତେବେଳେ ଯାଏଁ ସେ ତୁଣ୍ଡରେ କୁଟା ଦେଇ ମୁହଁମାଡ଼ି ଠାକୁରାଣୀଙ୍କ ପାଖେ ଅଧିଆ ପଡ଼ିଥିବ । ନୋଳିଆ ସମାଜରେ କିଛି ଆପଦ ବିପଦ ପଡ଼ିଲେ ମାସାନି ହିଁ ବସ୍ତିଟା

ଯାକର ସାହାଭରସା । ସୁଖ ସମ୍ପଦ ବେଳକୁ ବି ମାସାନି ନଥିଲେ ନଚଳେ । ଆଗେ ଠାକୁରାଣୀଙ୍କୁ ସନ୍ତୁଷ୍ଟ କଲେ ତା ପରେ ଯାହା ।

ବସ୍ତିଟାଯାକର ମରଦ ମାଇପେ ଠାକୁରାଣୀଙ୍କ ଦେଉଳ ପାଖେ ଛାମୁଣ୍ଡିଆ ତଳେ ଜମା ହୋଇଥାନ୍ତି । ଟୋକା ଟୋକୀଙ୍କ ମଉଜଟା ସବୁଠାରୁ ବେଶି । ଝିଅମାନେ ପେଡ଼ିରେ ସାଇତା ଲୁଗା ପିନ୍ଧି, ଜଡ଼ାତେଲରେ ଚିକି ଚିକି ମୁଣ୍ଡ କୁଣ୍ଡାଇ, ମୁଣ୍ଡରେ ସମୁଦ୍ର ଦେଶର ନାଲି ହଳଦିଆ ଫୁଲ ପିନ୍ଧି, କଉଡ଼ି ଖେଳୁଛନ୍ତି । ଭେଣ୍ଡିଆମାନେ ବସି ବସି ଆଲୋଚନା କରୁଛନ୍ତି-ସଞ୍ଜକୁ କେମିତି ଯନ୍ତାଳଟା ଜମିବ । ଯାନିର ବାପ ମାଆ ନାହାନ୍ତି-ଯେତେହେଲେ ସେ ପିଲାଟାଏ-ତେଣୁ ବସ୍ତିର ମୁଖିଆମାନେ ଆଗୁଆ ହୋଇ ଯାନିର ନିମିତଟା ଉଠାଇ ନେବାକୁ ବାହାରିଛନ୍ତି । ସିମାଦ୍ରୀ ନିଜେ ସବୁକଥା ବୁଝୁଛି । ଯନ୍ତାଳରେ କିଛି ଅସୁବିଧା ହେଲେ ସମସ୍ତେ କହିବେ - ସିମାଦ୍ରୀ ପରି ମୁଖିଆ ଥାଉ ଥାଉ ଏୟା ହେଲା !!

ଜୋଲ୍‌ଦେଲାର କୁଡ଼ିଆ ଘର ଦୁଆରେ ବି ଛୋଟ ଛାମୁଣ୍ଡିଆଟିଏ ହୋଇଛି । ଛାମୁଣ୍ଡିଆରୁ ଝୁଲୁଛି ନଡ଼ିଆ କଷି, କାଗଜର ନାଲି ପତାକା, ନୂଆ ଲୁଗା ଓ ଗାମୁଛା, କେଉଁ ସମୁଦ୍ରଜନ୍ତୁର ଧୋବ କଂକାଳ । ସେଠି ବି ଗୁଡ଼ାଏ ପିଲା ଜମି ପାଟିତୁଣ୍ଡ କରୁଛନ୍ତି ।

ବସ୍ତିରେ କେମିତି ଗୋଟାଏ ଶିହରଣ ଆସିଛି । ଆକାଶର ମେଘରୁ, ସମୁଦ୍ରର ଲହଡ଼ିରୁ ବସ୍ତିର ଲୋକଙ୍କ ପାଇଁ ଓହ୍ଲାଇ ଆସିଛି ଆନନ୍ଦ ଓ ଉତ୍ତେଜନା ।

କିନ୍ତୁ ଏ ଆନନ୍ଦରେ ଭାଗ ନଥିଲା ଗୁରାୟାର ।

ତଥାପି ଆଜି ସକାଳୁ ସେ ସତେଜ ଦେଖାଯାଉଛି । ରାତିର ଅନ୍ଧାର ସଙ୍ଗେ ତା ମନରୁ ଦୂରେଇ ଯାଇଛି ଦୁଃଖ ଓ ହତାଶଭାବ । ଭେଙ୍କଟ୍ ମଲା ପରେ ଘର ଗୋଟାକର ମୁରବୀ ସେ । ଦୁଇଟା ମାଇପି ପିଲା ଦୁଇଟା ଛୋଟ ଭାଇ ତା'ରି ବେକରେ ବନ୍ଧା । ସେ ଯଦି ସାମାନ୍ୟ ବିପଦକୁ ଡରିଯାଏ, ତେବେ ଘରଟା ଭାସିଯିବ । ଆଜି ସିନା ସେମାନେ ଏମିତି ଗରିବ ହୋଇଛନ୍ତି ବୋଲି ଯାନି ନାଇଡୁ ସେମାନଙ୍କୁ ଥଟ୍ଟା କଲା ପରି, ଟଙ୍କା ଦେଇ ବସ୍ତି ଲୋକଙ୍କୁ କିଣି ନେଇଛି, ତା' ନହେଲେ କୋଉ ଦୂର ଅତୀତରୁ ସେମାନଙ୍କ ପୂର୍ବପୁରୁଷମାନେ ହିଁ ନୋଳିଆ ଗୋଷ୍ଠୀର ମୁଖିଆ ହୋଇ ଆସିଛନ୍ତି ।

ଗୁରାୟା ଦେହରେ ପୂର୍ବପୁରୁଷଙ୍କ ରକ୍ତ ପ୍ରବାହିତ ହେଉଛି ।

ଛାତିକୁ ସେ ଲୁହାପରି ଟାଣ କରିବ । ଆଜି ବିପଦ ଆସିଛି; ଆସୁ । କାଲି ପୁଣି ସୁଖର ଦିନ ଆସିବ । ଘୁଞ୍ଚିଯିବ ଦୁଃଖର ଅନ୍ଧାର । ଏମିତି ଅନ୍ଧାର ଆଲୁଅର ଖେଳ ସମୁଦ୍ର ବକ୍ଷରେ ଲାଗି ରହିଛି । ଲାଗି ରହିଥିବ । ସମୟର ଛକେ ଛକେ ତାର ପୂର୍ବପୁରୁଷମାନେ ଏଇ ସମୁଦ୍ର କୂଳରେ ଠିଆ ହୋଇ, ଏଇ ଖୋଲା ଆକାଶ ତଳେ ଏମିତି କେତେ ଆଲୁଅ ଅନ୍ଧାରର ଅନୁଭୂତି ଅଙ୍ଗେ ଲିଭେଇଥିବେ ।

ଗୁରାୟା ବି ସେମିତି ଅଙ୍ଗେ ଲିଭେଇବ । ସୁଖ ଆସିଲେ ହସିବ । ଦୁଃଖ ଆସିଲେ

କାନ୍ଦିବ । କାରଣ ସେ ମଣିଷ । ସୁଖରେ ହସିବା ଓ ଦୁଃଖରେ କାନ୍ଦିବା ତାର ଧର୍ମ; କିନ୍ତୁ ସବୁଠୁ ବଡ଼ ଧର୍ମ ତାର ବଞ୍ଚି ରହିବା । ବଞ୍ଚି ରହିବାକୁ ହେଲେ ଲଢ଼ିବାକୁ ହେବ- ସମୁଦ୍ର ସଙ୍ଗେ, ମଣିଷ ସଙ୍ଗେ । ଗୁରାୟା ଆଜିଯାଏଁ ସମୁଦ୍ର ସଙ୍ଗେ ଲଢ଼ିବାକୁ ଶିଖିଥିଲା । ଏବେ ତାର ନୂଆ ଅନୁଭୂତି ହେଲା । ସେ ବୁଝିଲା ଯେ ସମୁଦ୍ର ପରି ମଣିଷ ବି ବେଳେ ବେଳେ ଭୟଙ୍କର ରୂପ ଧରେ-ଝଡ଼ ବେଳର ସମୁଦ୍ର ପରି ମଣିଷକୁ ମଧ୍ୟ ବିଶ୍ୱାସ କରିହୁଏ ନାହିଁ ।

ଗୁରାୟାର ଆଜି ବସ୍ତିର ପ୍ରତି ମଣିଷ ଉପରେ ଅଭିମାନ ହେଲା । ସମସ୍ତଙ୍କ ଉପରେ ତାର ରାଗ ଆସିଲା । ମନେ ମନେ ସେ ସମସ୍ତଙ୍କୁ ଘୃଣା କଲା ।

କିନ୍ତୁ ଯା ବୋଲି ସେଇ ମଣିଷମାନଙ୍କୁ ଛାଡ଼ି ସେ କୁଆଡ଼େ ଯିବ ? ଦିନର ଆଲୁଅରେ ସେ ସମୁଦ୍ରର ନେଳି ପାଣିରେ ନିଜକୁ ଲୁଚାଇ ରଖିପାରେ; ମାତ୍ର ସଞ୍ଜ ହେଲେ ବସ୍ତିର ଆଲୁଅ ସବୁ ତାକୁ ଆଖିଠାରି ଡାକିବେ-ଛି, ଅଭିମାନ କରିଛୁ ? ତୋରି ଜାତିଭାଇଙ୍କ ମେଳକୁ ଫେରି ଆ-ଫେରି ଆ- ।

ଗୁରାୟା ଖୁବ୍ ସକାଳୁ ପୋତୁଅ ନେଇ ସମୁଦ୍ର ଭିତରକୁ ବାହାରିଲା । ଉଆଁସ ଅନ୍ଧାର କଟି ଯାଇଛି । ମନରେ ଆଉ ଦୁଃଖ ନାହିଁ- ଅବସାଦ ନାହିଁ । ସକାଳର ଆଲୁଅ ପରି ମନରେ ଆଶାର ଲହଡ଼ି ଉଠୁଛି । ଗୁରାୟା ଭଉଣୀ ଦୁହିଙ୍କୁ ଶୁଣାଇଦେଲା, - "ଦେଖ ପୁନ୍ନାମା, ରାଜ୍‌ଜାମା- ମୁଁ ସମୁଦ୍ର ବାହାରିଲି । ତୁମେ ଠାକୁରାଣୀ ପାଖକୁ ଯିବ ନାହିଁ । ଯାନି ଘର ଆଡ଼େ ଯିବ ନାହିଁ ।"

ପୁନ୍ନାମା ମୁହଁ ମୋଡ଼ି ଦେଇ କହିଲା, "ମୋର ଗରଜ ପଡ଼ିଛି ସେଇ ଚୁପ୍-ସଇତାନ୍ ଘରକୁ ଯିବାକୁ ।"

ରାଜ୍‌ଜାମା ହାତ ହଲାଇ କଳି କରିବା ଭଙ୍ଗୀରେ ଆଉ ପଦେ ଯୋଡ଼ିଦେଲା, "ଯନ୍ତାଳକୁ ଯେତେ ଡାକିଲେ ବି ନୁହେଁ ।"

ଗୁରାୟା ମନେ ମନେ ଖୁସି ହେଲା । ଯେତେହେଲେ ଭଉଣୀ ଦୁହେଁ ସାହସ ହରାଇ ନାହାନ୍ତି । ପୁଣି ଭଲ ଦିନ ଆସିବ । ବସ୍ତିରେ ଏତେ ଟୋକା ଅଛନ୍ତି । ଯାନିଠାରୁ ବେଶି ଝୋଲାଟଙ୍କା ଦେଇ ପାରିଲା ଭଳି ଟୋକାର ଅଭାବ ହେବ ନାହିଁ । ପୁନ୍ନାମା ଭଲ ଘରେ ବାହା ହେବ । ଆଉ ସେ ବି- ।

ସୂର୍ଯ୍ୟ ଉଇଁ ଆସୁଚି । ସମୁଦ୍ରର ନେଳି ପାଣି ଥରି ଉଠୁଚି । ସୂର୍ଯ୍ୟ ଯେମିତି ସମୁଦ୍ର ପାଣିକୁ ଆଲୁଅରେ ରଂଗବେରଂଗ କରି ତା'ରି ଆଡ଼କୁ ଅନାଇଛି ଏକ ଲୟରେ ।

ଆଜି ବସ୍ତିରେ ଉତ୍ସବ ବୋଲି କେହି ପୋତୁଅ ନେଇ ମାଛ ମାରି ଯାଉନାହାନ୍ତି । ରାସ୍ତାର ଧାଡ଼ି ଧାଡ଼ି ଭିକମଗାଙ୍କ ପରି ପୋତୁଅସବୁ ନିଜ ନିଜ ସ୍ଥାନରେ ସେମିତି ପଡ଼ି ରହିଛନ୍ତି । ତେରଛା ସୂର୍ଯ୍ୟ ଆଲୁଅରେ ସେମାନଙ୍କର ଲମ୍ବା ଲମ୍ବା ଛାଇପଡ଼ିଛି ।

ଗୁରାୟା ନିଜ ପୋତୁଅକୁ ସମୁଦ୍ରରେ ଭସାଇଦେଲା । ପୋତୁଅ ଭିତରୁ ଅନାଇ

ଦେଖିଲା ବସ୍ତିଲୋକେ ଠାକୁରାଣୀଙ୍କ ଛାମୁଣ୍ଡିଆ ତଳେ ଜମା ହୋଇଛନ୍ତି । ଏତେ ଲୋକଙ୍କ ମେଳରେ ବି ଯାନିକୁ ଚିହ୍ନି ହେଉଛି । ସେ ବାଲିକୁଦ ଉପରେ ଚାଙ୍ଗବରଡ଼ାରେ ବସିଛି । ତା' ଚାରିପାଖେ ଘେରି ବସିଛନ୍ତି ଆଉ କେତେଜଣ ଟୋକା ।

ଗୁରାୟା ଖୁବ୍ ଜୋର୍‌ରେ ଆହୁଲା ମାରିଲା ।

ଦେହରେ ମୁହଁରେ ଜମି ଆସିଲା ଝାଳ । କାଲି ଦିନସାରା ସେ ଖାଇନି । ହାତ ଗୋଡ଼ ଅବଶ ଲାଗୁଛି; ତଥାପି ଆଜି ତାକୁ ଜାଲ ପକାଇ ମାଛ ଧରିବାକୁ ହେବ । ବସ୍ତିଲୋକଙ୍କୁ ସେ ଜଣାଇଦେବ ଯେ ବାହୁରେ ତାକତ୍ ଥିବା ଯାଏଁ ସେ କାହାରି ଦୟାରେ ପେଟ ପୋଷିବାକୁ ଚାହେଁନା । ତାକୁ ଭୋଜିଭାତ ନ ମିଳୁ ପଛେ-ନ ମିଳୁ ବଡ଼ଲୋକର ପ୍ରଶଂସା-କିନ୍ତୁ ସମୁଦ୍ରମାତାର ଦୟା ଥିଲେ ସେ ଉପାସ ରହିବ ନାହିଁ । ଉପାସ ରହିବେ ନାହିଁ ତାର ସାନ ସାନ ଭାଇ ଓ ଭଉଣୀମାନେ ।

ଗୁରାୟାର ନିଜ ଉପରେ ବିଶ୍ୱାସ ବଢ଼ିଲା । ନିଜକୁ ଯେମିତି ଆଜି ସେ ନୂଆକରି ଚିହ୍ନିଲା । ସେ ଅନୁଭବ କଲା, ତାର ଦେହର ଶକ୍ତି ଦେଖି ଆଜି ଯେମିତି ସମୁଦ୍ର ଡରି ଯାଉଛି । ବସ୍ତିରେ ଯେମିତି ତା'ରି କଥା ସମସ୍ତେ ଆଲୋଚନା କରୁଛନ୍ତି ଓ ତାର ସାହସ ଦେଖି ମନେ ମନେ ଶଙ୍କି ଯାଉଛନ୍ତି !

ଆଜି ଖୁବ୍ ମାଛ ପଡ଼ୁଛନ୍ତି । ଆଉ କେବେ ଏତେ ମାଛ ଏକ ସଙ୍ଗେ ଧରିଥିବାର ତାର ମନେ ପଡ଼ିଲା ନାହିଁ । ଭୁଲିଗଲା ବସ୍ତିର ସୁଖ ଦୁଃଖ ହସକାନ୍ଦର କାହାଣୀ । ଉପରେ ଆକାଶ-ତଳେ ସମୁଦ୍ର ଓ ତାର ଟିକି ପୋତୁଅଟି । ଅନ୍ୟ ଦିନରେ କେତେ ପୋତୁଅ ଭାସୁଥାଏ-ଦୂରରେ, ପାଖରେ । ଆଜି ଏତେ ବଡ଼ ସମୁଦ୍ରରେ କୁଆଡ଼େ ଗୋଟିଏ ହେଲେ ପୋତୁଅ ଦେଖାଯାଉ ନାହିଁ । ସାରା ସମୁଦ୍ରଟାରେ ଆଜି ସେ ଏକୁଟିଆ ମନ ଇଚ୍ଛା ମାଛ ମାରୁଛି ।

ଗୁରାୟା ଖୁସି ହେଲା । ନିର୍ଜନ ସମୁଦ୍ର ତା ମନରେ ଡର ଆଣିଲା ନାହିଁ । ତାକୁ ହିମ୍ମତ ଦେଲା । ଘୁ-ଘୁ ଶବ୍ଦ କରି କହିଲା, "ଗୁରାୟା, ତୋତେ ମୁଁ କେତେ ଭଲପାଏ, ଜାଣିଛୁ ?" ସମୁଦ୍ର ସହିତ ତାର ସମ୍ପର୍କ ଯେ କେତେ ବେଶି, ଆଜି ପରି ଆଉ କେବେ ସେ ଅନୁଭବ କରି ନଥିଲା । ଯାନି, କର୍‌ଲା, ପୁନ୍ନାମା, ସିମାଦ୍ରୀ-ସମସ୍ତେ ଯେମିତି ମିଛ । ସତ ଖାଲି ଏଇ ସମୁଦ୍ର ଓ ଆକାଶ, ସେ ଓ ତାର ପୋତୁଅ । ତାର ସବୁ ଦୁଃଖ ସବୁ ଅଭିମାନ ସମୁଦ୍ରର ଢେଉରେ ଢେଉରେ କୁଆଡ଼େ ମିଳାଇଗଲା । କୁଆଡ଼େ ହଜିଗଲା ତାର ଅହଂକାର । ସେ ଅଧିକାରୁ ଅଧିକ ମନଦେଇ ମାଛ ମାରିବାକୁ ଲାଗିଲା ଏବଂ ନିଜ ଦେହ ଓ ମନର ଚାରିପାଖେ ଅନୁଭବ କଲା ସମୁଦ୍ରକୁ-ଖୁବ୍ ନିବିଡ଼ ଭାବରେ । ଏଇ ବିରାଟ ଦୁନିଆରେ ଯେମିତି କାହାରି ଅସ୍ତିତ୍ୱ ନାହିଁ-କେବଳ ଅଛି ଗୁରାୟା ଓ ତା' ଚାରିପାଖେ ଘେରି ରହିଛି ସୀମାହୀନ ସମୁଦ୍ରର ଅସରନ୍ତି ଢେଉ... ।

(ରଚନାକାଳ: ୧୯୬୨-୬୩)

ଅବିନାଶ ପାହାଡ଼ ଚଢୁଚି । ନୂଆ ଜାଗା, ନୂଆ ଅନୁଭୂତି । ଲାଗୁଛି, ଏଠି ଯେମିତି ସବୁ ଭଲ, ସବୁ ସୁନ୍ଦର ।

ଫାମିଲି ପ୍ଲାନିଂ ଅଫିସର ଅବିନାଶ ମହାପାତ୍ର ପ୍ରଥମେ ଏଇଠି ଆରମ୍ଭ କରିଛି ତାର ଚାକିରୀ ଜୀବନ । ଏଠି ସମସ୍ତେ ତାକୁ ଡାକୁଛନ୍ତି ଅଫିସରବାବୁ । ଚା' ଦୋକାନରେ, ହୋଟେଲରେ, ପରିବା ଦୋକାନରେ ସବୁଠି ତାର ଖାତିର- । ନିଜକୁ ଅଫିସର କାଇଦାରେ ଚଳାଇବାକୁ ସେ ଚେଷ୍ଟା କରୁଛି । ଗମ୍ଭୀର ହୋଇ କଥା କହୁଚି । ଅନ୍ୟମାନେ ନମସ୍କାର କଲେ, ସାମାନ୍ୟ ହସି ମୁଣ୍ଡ ନୁଆଇଁ ଦେଉଛି । ଆଗରୁ କେବେ ଚା' ଖାଇବାର ଅଭ୍ୟାସ ନଥିଲେ ବି ଦିନକୁ ସାତ ଆଠ ଥର ଚା' ମଗାଉଚି । ସଞ୍ଜବେଳେ ଏକୁଟିଆ ସିଗାରେଟ୍ ଟାଣୁଛି; ମାତ୍ର ଅନ୍ୟ କେହି ସିଗାରେଟ୍ ଯାଚିଲେ ପୁରୁଣା ଅଭ୍ୟାସ ଦୋଷରୁ 'ସିଗାରେଟ୍ ଖାଏନାହିଁ' କହି କ୍ଷମା ମାଗୁଛି ।

ଅବିନାଶ ଜୀବନରେ ପରିବର୍ତ୍ତନ ଆସିଛି । ମଳିନ ଧୋତି ଓ ହାଫ୍‌ଶାର୍ଟ୍ ପିନ୍ଧି, ଦିନରେ ଦୁଇଟା ଟିଉସନ କରି, ଛାତ୍ର-ଜୀବନରେ ସେ ଯେତେ ସାଧନା କରିଥିଲା, ସବୁର ଫଳ ଏଇ ଫାମିଲି ପ୍ଲାନିଂ ଅଫିସର ଚାକିରୀ । ଛାତ୍ରଜୀବନର ମଳିନତା ଓ ସଂଗ୍ରାମ ପରେ ଅଫିସର ଜୀବନ- ବିରାଟ ପରିବର୍ତ୍ତନ ।

ବେଶ୍ ତ । ପରିବର୍ତ୍ତନ ହିଁ ଭଲ । ପରିବର୍ତ୍ତନରେ ହିଁ ବଞ୍ଚିରହିବାର ଆନନ୍ଦ । ସେ ଆନନ୍ଦ ଅନୁଭବ କରୁଛି ଅବିନାଶ । ଉଞ୍ଚା ଉଞ୍ଚା ପାହାଡ଼ମାନଙ୍କ ସନ୍ଧିରେ ଗଢ଼ିଉଠୁଥିବା ନୂଆ ସହରଟିରେ ନୂଆ ଅଫିସ୍ । ଅବିନାଶ ନୂଆ ଅଫିସର । ଏଠି କଟକ ସହରର ଧୂଳି ଓ ପେଟ୍ରୋଲ୍ ଗନ୍ଧ ନାହିଁ । ଉପରେ ଅଖଣ୍ଡ ପ୍ରଶାନ୍ତି ପରି ନେଳି ଆକାଶ ଓ ପାହାଡ଼ ସନ୍ଧିରେ ଜ୍ୟାମିତିକ କ୍ଷେତ୍ର ପରି ଧାନ ବିଲ । ଆଷାଢ଼ ବର୍ଷାର ସ୍ପର୍ଶରେ ଧାନକ୍ଷେତ ନେଳି ଧରି ଆସୁଚି । ଆଉ ପାହାଡ଼ ବି । ଅବିନାଶ ନୂଆ ଜାଗା ଦେଖୁଚି । ପାହାଡ଼ କଡ଼େ କଡ଼େ ଲମ୍ବି ଯାଇଚି ସଡ଼କ । ନିଛାଟିଆ ସଞ୍ଜବେଳେ ଅଫିସରୁ ଆସି ଚା' ଖାଇ ଏମିତି ସଡ଼କ ଉପରେ ବୁଲିବାକୁ ବେଶ୍ ଭଲ ଲାଗେ । ମନେ ପଡ଼େ ଗାଁ, ନକ୍ଷତ୍ରଠ, ଗାଁ ଝିଅର ଅଳସ ଚାଲି ଓ ଛାଲଛଲ ପାଣି ମାଠିଆ । ସହରର ଧୂଳି ଓ ମଶାମାଛିଙ୍କ ମେଳରେ ରହି ଅବିନାଶ ଭାବିଥିଲା-- ଦୁନିଆ ତାହା ହିଁ-ଇଟା ଓ ସିଗାରେଟ୍, ଲୁହାଛଡ଼ ଓ କଂକ୍ରିଟ୍ । ଏଠି ମନେ ହେଉଛି- ଏବେ ବି ସେଇ ପୁରୁଣା ଗାଁ ବଞ୍ଚିଛି । ବଞ୍ଚିଛନ୍ତି ସେଇ ପୁରୁଣା ଦୃଶ୍ୟ ସବୁ । ଗାଈପଲ, ପୋଖରୀ, ଶୀତଦିନ ସଞ୍ଜରେ ନାତିନାତୁଣୀଙ୍କ ଆଗରେ ଆଈବୁଢ଼ୀର କାହାଣୀ କୁହା ।

ସମସ୍ତେ ବଞ୍ଚିଛନ୍ତି । ସହର ବି, ଗାଁ ବି । ଅବିନାଶର ଗାଁ କଥା ମନେ ପଡୁଛି । ଏକୁଟିଆ ମୁହଁ ଅନ୍ଧାରେ ଅନ୍ଧାରେ ସେ ନିଛାଟିଆ ସଡ଼କେ ସଡ଼କେ ଚାଲିଛି । ଦୂରରେ ପାହାଡ଼ ଉହାଡ଼ରୁ କୋଉଠି ମିଞ୍ଜି ମିଞ୍ଜି ଆଲୁଅ ଦିଶୁଚି । ସଡ଼କ କଡ଼େ କଡ଼େ ଧାଡ଼ି ଧାଡ଼ି ଜାମୁକୋଳି ଗଛ । ଗାଈଜଗା ପିଲାଟିଏ କ'ଣ ଗୁଣୁ ଗୁଣୁ ଗାଇ ଦଉଡ଼ି ପଳାଉଛି ।

"ହେୟ୍ ପିଲା, ଏଆଡ଼େ ଆ ।"

ମୁହଁକୁ ତଳକୁ ପୋତି ଅପରାଧୀ ପରି ପିଲାଟି ପାଖକୁ ଆସୁଛି ।

ତତେ ଗଛଚଢ଼ା ଆସେ ?

ହଁ ବାବୁ ।

ଏଇ ଗଛ ଚଢ଼ି କୋଳି ତୋଳି ପାରିବୁ ?

ପିଲାଟି ମାଙ୍କଡ଼ପରି ଗଛରେ ଚଢ଼ି ପାଞ୍ଚଣରେ କୋଳି ଝଡ଼ାଉଛି । ଗଣ୍ଡା ଗଣ୍ଡା ପାଚିଲା ଜାମୁକୋଳି । ତଳେପଡ଼ି କୋଳିସବୁ ଫାଟିଯାଉଚି । ଅବିନାଶ କୁଆଡ଼େ ନ ଚାହିଁ କୋଳି ସବୁ ଆଣି ପାଟିରେ ପୂରାଉଚି । ଆଃ-କେବେ ଏମିତି କେଉଁ ଗାଁ ହିଡ଼ରେ ହିଡ଼ରେ ସାଙ୍ଗ ପିଲାଙ୍କ ମେଳରେ ସେ କୋଳି ଖାଇଥିଲା, ତାର ମନେ ପଡୁନାହିଁ । ସେ ଯେମିତି ନିଜକୁ ଆଜି ଯାଏଁ କେଉଁଠି ଛପାଇ ରଖିଥିଲା । ଏଠି ନୂଆ ଜାଗାରେ ଏଇ ଗାଈଜଗା ପିଲା ପାଖରେ ସେ ପୁଣି ପଦାକୁ ବାହାରିଛି । ପିଲାଟି ଏଡ଼େ ଏଡ଼େ ଆଖିରେ ବାବୁଙ୍କୁ ଅନାଇଛି ।

ଅବିନାଶ ପୁଣି ଆଗକୁ ଯାଉଛି । ପୋଖରୀ । ଏଠି ମାଛ ମାରିଲେ କେମିତି ହୁଅନ୍ତା ? ବନ୍‌ଶୀଖଡ଼ାଟିଏ କୁଆଡୁ ଯୋଗାଡ଼ କରିବାକୁ ହେବ ।

ସହର ଲୋକେ ଏଆଡ଼େ ବୁଲି ଆସନ୍ତି ନାହିଁ । ଅବିନାଶ ପାହାଡ଼ ଚଢୁଚି ।

ବଣଜନ୍ତୁପରି ମୁଣ୍ଡା ମୁଣ୍ଡା କଳା କଳା ପଥର । ଅନ୍ଧାରରେ ସେମାନେ ଯେମିତି ବଞ୍ଚି ଉଠନ୍ତି- ବଣ-ଜନ୍ତୁଙ୍କ ସଙ୍ଗେ ଚିତ୍‌କାର କରନ୍ତି । ସେମାନେ ଯେମିତି ହଠାତ୍ ଗୁରୁଣ୍ଡି ଗୁରୁଣ୍ଡି ଅବିନାଶ ଆଡ଼କୁ ଏକ ସଙ୍ଗେ ମାଡ଼ିଆସିବେ ।

ପାହାଡ଼ ଓ ପାହାଡ଼ । ପାହାଡ଼ର ଠାଏ ଠାଏ ଟାଙ୍ଗରା ଚିକ୍ ଚିକ୍ କଳା ପଥର, ଅନ୍ଧାର ରାତିପରି । କେଉଁଠି ସାବୁଜା- ମେଞ୍ଚା ମେଞ୍ଚା ଗଛ । ଆକାଶକୁ ପିଠି କରି ଠାଏଠାଏ ବଡ଼ ବଡ଼ ଗଛମାନ କେନା ମେଲି ଠିଆ ହୋଇଛନ୍ତି । ଧାନ ବିଲରେ, ପୋଖରୀକୂଳରେ ଝିଙ୍କାରୀର ଝିଂ ଝିଂ ।

ଅନ୍ଧାର ଖସି ପଡୁଛି ଆକାଶରୁ । ଘରକୁ ଫେରିବାକୁ ହେବ ।

ଘଡ଼ିରେ ଛଅଟା ପନ୍ଦର । ଅବିନାଶକୁ ନିଶା ଲାଗିଛି । ମନେ ପଡୁଚି ଭୂଗୋଳ ବହିରେ ପଢ଼ା ଆଡ଼୍‌ଭେଞ୍ଚାର୍ ଗପ । ସ୍କଟ୍, କଲମ୍ବସ୍, ଶେର୍ପା ତେନ୍‌ଜିଂ ।

ଅଳ୍ପ ଆଗରୁ ବର୍ଷା ହୋଇଥିଲା । ଆଃ-ବାଁ ପାଦଟା ଏଇଲେ ଖସି ଯାଇଥାନ୍ତା ! ରାସ୍ତାଟା ଅନେକ ଦୂରରେ ମଲା ସାପଟାଏ ପରି ପେଟ ଦେଖାଇ ଶୋଇଚି । ଦୂରରେ ଧଳା ଧଳା ବିନ୍ଦୁଗୁଡ଼ିଏ କ୍ରମେ ଅସ୍ପଷ୍ଟ ହୋଇ ଆସୁଛନ୍ତି । ଗାଈ ପଲ । ଖୁବ୍ ଦୂରରୁ ସ୍ୱପ୍ନଜଗତର ଶବ୍ଦପରି ସେଇ ଗାଈଜଗା ପିଲାଟିର ଚିତ୍‌କାର ପବନର ଢେଉରେ ଢେଉରେ ଭାସି ଆସୁଛି । ଅବିନାଶ ପାହାଡ଼ ଚଢୁଚି ।

ଫେରୁ ଫେରୁ ରାତି । ସଞ୍ଜବେଳଟା ଏମିତି ଖୋଲା ଧାନକ୍ଷେତର ପବନ ପରି ମନଇଛା ଏଣେ ତେଣେ ବୁଲି କଟିଗଲା । ସବୁ ଲାଗୁଚି ହାଲୁକା- ଦେହ ଓ ମନ ।

ନୂଆ ସହରଟିରେ କ୍ରମେ ମଣିଷ ଗହଳି ବଢୁଚି । ଆଗେ କୁଆଡ଼େ ଏଠି ଚାରିଆଡ଼େ ଜଙ୍ଗଲ ପୂରି ରହିଥିଲା । ଏବେ ପାହଡ଼ ଭଙ୍ଗାଯାଇ କୋଠାଘର ତିଆରି ହେଉଚି । ଜଙ୍ଗଲ କଟା ହୋଇ ଟ୍ରକ୍ ଟ୍ରକ୍ କାଠ ବୁହା ଚାଲିଚି ଅନ୍ୟ ସହରକୁ । ବଣଜଙ୍ଗଲରେ ବଢ଼ି ପିଲାଦିନୁ ବାଘଭାଲୁ କାହାଣୀ ଶୁଣିଥିବା ମଣିଷ ଦେଖୁଚି - ସିନେମାହଲ୍, ଥିଏଟର, କଲେଜ, ଡାକ୍ତରଖାନା । ସେ ତାଜୁବ୍ ହୋଇ ଅନାଉଚି ।

ଗଢ଼ି ଉଠୁଚି ନୂଆ ସହର । କାଠ, କଂକ୍ରିଟ୍, ଲୁହାଛଡ଼ ଜମା ହୋଇଚି । ମିସ୍ତ୍ରୀ ଲାଗି ମାଟି ତାଡୁଛନ୍ତି । ତଳେ ପାଇପ୍ ଯିବ । ବିଜୁଳି ଆଲୁଅ ଆସିଗଲାଣି । କଳପାଣି ଆସିବ । ତା'ପରେ ଯେ କୌଣସି ସହରଠାରୁ ଏ ସହର ହେବ ଅଧିକ ସୁନ୍ଦର ଓ ଲୋଭନୀୟ ।

ଗୋଟିଏ ଅନ୍ଧାରୁଆ ରେସ୍ତୋରାଁରେ କଫି ଖାଉ ଖାଉ ଅବିନାଶ ଚାରିଆଡ଼କୁ ଅନାଇଲା । ଆକାଶରେ ମେଘ ନଦି ହୋଇ ରହିଛି । ଜହ୍ନ ବି ତାରି ଭିତରେ ଭାସି ଚାଲିଚି, କେଉଁ କାଞ୍ଚନିକ ମାୟାପୁରୀର ସାଙ୍କେତିକ ପ୍ରତୀକ ପରି । କୁହୁଡ଼ିଆ ଜହ୍ନ ଆଲୁଅରେ ଦୂରର ରୁଖି ପାହାଡ଼ ଦେଖାଯାଉଚି ଅନ୍ଧାର କୁଢ଼ା ହେଲା ପରି । ଶାନ୍ତ ନିସ୍ତବ୍ଧ ବାତାବରଣ । ଅବିନାଶକୁ ନିହାତି ଏକାକୀ ଲାଗିଲା । ଭଡ଼ା ଘରଟା ବି ଶୂନ୍‌ଶାନ୍ । ଘରକୁ ଫେରିଲେ ସେ ଗୁଣୁ ଗୁଣୁ ହୋଇ ଗୀତାଞ୍ଜଳିର "ଆମାର ମାଥା ନତ କରେ ଦାଓ ହେ ତୋମାର୍ ଚରଣ ଧୂଲୀର ତଲେ-" ଗୀତଟି ଗାଇବ କିମ୍ବା ଝରକା ବାଟେ ପାହାଡ଼କୁ ଅନାଇ ପାହାଡ଼ କରେ କରେ ଚକର୍ ମାରୁଥିବା ମେଘମାନଙ୍କ ରଙ୍ଗରେ ନିଜ ଭବିଷ୍ୟତକୁ ରଙ୍ଗାଇବ । ତା' ନହେଲେ ସେଲ୍‌ଫରୁ ଖଣ୍ଡେ ଇଂରାଜୀ ଉପନ୍ୟାସ ଆଣି ସେଥିରୁ କେତେ ପୃଷ୍ଠା ପଢୁ ପଢୁ ଆଲୁଅ ନ ଲିଭାଇ ଶୋଇପଡ଼ିବ ।

ସହଜ ଜୀବନ । ଦିନକୁ ଚାରି ପାଞ୍ଚୋଟି ଫାଇଲ୍ ଡିସ୍‌ପୋଜ୍ କରି ଅନ୍ୟମାନଙ୍କ ସଙ୍ଗେ ଗପ ଯୋଡ଼ିବା, ବଡ଼ ଅଫିସର୍‌ଙ୍କୁ ପଛରେ ତୀବ୍ର ସମାଲୋଚନା କରି ସାମନାରେ ପୋଷା ବିଲେଇପରି ଘୁଡ଼ୁରୁ ଘୁଡ଼ୁରୁ ହେବା-ପିଅନ ହାତରେ ଦିନକୁ ସାତ ଆଠଥର ଥଣ୍ଡା ଚା' ମଗାଇବା ଓ ସଞ୍ଜରେ ପାହାଡ଼ଆଡ଼େ ବୁଲିଯିବା । ଏତିକି । ଗୋଟିଏ ଦିନ ବଞ୍ଚିବାପାଇଁ ଅବିନାଶ ମହାପାତ୍ରର ଏହା ହିଁ କାର୍ଯ୍ୟକ୍ରମ । ଚାକିରି କଲେ ସମସ୍ତେ କୁଆଡ଼େ ମୋଟା ହୋଇଯାନ୍ତି । ଦୂର ସହରରେ ରହି ପାଠ ପଢୁଥିଲାବେଳେ ସେ ଯେତେବେଳେ ଛୁଟିରେ ଘରକୁ ଆସେ, ତାର ଶୁଭାକାଂକ୍ଷୀ ଓ ଶୁଭାକାଂକ୍ଷିଣୀମାନେ ପ୍ରତିଥର ମନ୍ତବ୍ୟ ଦିଅନ୍ତି- ଗଲାଥର ଅପେକ୍ଷା ଏଥର ସେ ଆଉରି ଶୁଖିଲା ଦିଶୁଚି । ଦେହ ଭଲ ଥିଲା ତ ? ଓ ସେମାନେ ପୁଣି ସାନ୍ତ୍ୱନାବାଣୀ ଶୁଣାନ୍ତି ଯେ, ସେ ଚାକିରି କଲେ, ପଢ଼ାପଢ଼ିର ଚିନ୍ତା ଗଲେ ତା ଦେହରେ ମାଉଁସ ଲାଗିବ; କେତେଲୋକ ଅଛନ୍ତି, ଯେଉଁମାନଙ୍କ ଦେହରେ ବାଡୁଅ ପାଣି ନ ପଡ଼ିଲା ଯାଏଁ ସେମାନେ ଏମିତି ପତଳା ହୋଇଥାନ୍ତି; ଇତ୍ୟାଦି ।

ଚାକିରି କରିବା ଆଗରୁ ସେ ତାର କେତେଜଣ ବନ୍ଧୁଙ୍କୁ ସାକ୍ଷାତ କରିବାକୁ ଯାଇଥିଲା । ଜଣେ ବନ୍ଧୁ ତାର ହାତଟା ଧରି ହାତର ପରିଧି ମାପି ପ୍ରମାଣ କରିବାକୁ ଚେଷ୍ଟା କଲେ ଯେ, ଏମିତି ଦୁର୍ବଳ ଲୋକ ଆଉ କେବେ ଦେଖାଯାଇ ନଥିଲା । ଆଉ ଜଣେ ପ୍ରତିବାଦ କଲେ, "ଅପେକ୍ଷା କର, ଅବିନାଶକୁ ଚିହ୍ନି ପାରିବ ନାହିଁ ।"

ସେ ଦିନ ଅବିନାଶ ଜିଦ୍ ଧରିଲା- ଯେମିତି ହେଲେ ଗୁଖି ପାହାଡ଼ର ଚୂଡ଼ାରେ ପହଞ୍ଚିବ। ଅନ୍ୟ ବନ୍ଧୁମାନେ ରାଜି ହେଲେ ନାହିଁ। ସେମାନେ ଏ ନୂଆ ସହରର ପୁରୁଣା ଲୋକ। ପ୍ରତି ସକାଳ ସଞ୍ଜରେ ଗୁଖି ପାହାଡ଼କୁ ଦେଖି ଆସିଛନ୍ତି। ପାହାଡ଼ ଉପରକୁ ଯାଇଛନ୍ତି ଅନେକ ଥର-ବର୍ଷା ଦିନେ- ଯେତେବେଳେ ପାହାଡ଼ରେ ଚଟ୍‌କା ସ୍ଥାନମାନଙ୍କରେ ପଥରର ଫାଙ୍କ ଦେଇ ଝରଣା ଫିଟେ। ପାହାଡ଼ର ପଥୁରିଆ ଛାତି ଉପରେ ସେମାନଙ୍କ ଟ୍ରାଞ୍ଜିଷ୍ଟରର ଗୀତ ଶୁଣି ଜଙ୍ଗଲଭିତରୁ କୋଟ୍ରା କାନ ଟେକି ଅନାଇଚି। ହୁଏତ କୋଉ ବୁଦା ଉହାଡ଼ରୁ ନାଗସାପ ଫଣା ଟେକିଛି। ସେମାନଙ୍କ ପାଇଁ ପାହାଡ଼ ଚଢ଼ା ଆଉ ନୂଆ ଅନୁଭୂତି ନୁହେଁ।

କିନ୍ତୁ ଅବିନାଶ ପାଇଁ ପାହାଡ଼ ଏକ ତୀବ୍ର ଆକର୍ଷଣ। ଅଳ୍ପ କେତେଜଣ ବନ୍ଧୁଙ୍କୁ ନେଇ ସେ ପାହାଡ଼ ଚଢ଼ିଲା। ଯେଉଁଠି ନୂଆ ସହରର ଶେଷ, ସେଇଠୁ ଗୋଟିଏ ଅଙ୍କା ବଙ୍କା ରାସ୍ତା ଲମ୍ବି ଯାଇଛି କୁକୁର ଟସ୍ରା ଯାଏଁ। କୁକୁର ଟସ୍ରା ଗୁଖି ପାହାଡ଼ର ସବୁଠାରୁ ନିମ୍ନ ଅଂଶ। ସେଇଠି କୁଆଡ଼େ ଥରେ ଗୋଟିଏ କୁକୁର ମହାବଳ ବାଘକୁ ମାଡ଼ି ବସିଥିଲା। ରାଜା ନିଜେ ଏ ଦୃଶ୍ୟ ଦେଖିଲେ। ବହୁ ବିଚାର ପରେ ସ୍ଥିର ହେଲା, ଏହା ଏକ ଶୁଭ ଲକ୍ଷଣ। ରାଜା ଆଦେଶ ଦେଲେ ମନ୍ତ୍ରୀଙ୍କୁ-ଏଠି ଏକ ନଗର ଗଢ଼ାଯାଉ। ସଙ୍ଗେ ସଙ୍ଗେ ହାତରେ କୋଡ଼ି, କାଙ୍କ, କୋଦାଳ ଧରି, ଧୂଳିଆ ଜନ୍ଦାପରି, ଅସଂଖ୍ୟ ମଣିଷର ସ୍ରୋତ କୁଆଡୁ ଜମିଗଲେ। ପାହାଡ଼ ତଡ଼ା ହୋଇ ସହର ତିଆରି ହେଲା, ପୋଖରୀ ଖୋଳାହେଲା। ଠିକ୍ ଶ୍ରୀକ୍ଷେତ୍ରପରି ସବୁ ବ୍ୟବସ୍ଥା। ଜଗନ୍ନାଥ ମନ୍ଦିର, ବଡ଼ଦାଣ୍ଡ ଓ ରଥଯାତ୍ରା। ଦୂର ଅତୀତରୁ ଆଜିଯାଏଁ ସେମିତି ଗଡ଼ି ଆସିଚି ପରମ୍ପରା। ଲୋକେ ବିଶ୍ୱାସ କରୁଛନ୍ତି-କୁକୁର ଟସ୍ରା ପବିତ୍ରସ୍ଥାନ।

ଉପରକୁ ଉପର ପ୍ରସ୍ତ ପ୍ରସ୍ତ ଜଙ୍ଗଲ। କିଛି ଗୋଟାଏ ଖୋଜି ପାଇବାର ନିଶାରେ ଅବିନାଶ ଦୁଇ ହାତରେ ଜଙ୍ଗଲର କଣ୍ଟାଗଛମାନଙ୍କୁ ଆଡ଼େଇ ଆଡ଼େଇ ଉପରକୁ ଉଠୁଛି।

ତଳକୁ ଅନାଇଲେ ମୁଣ୍ଡ ବୁଲାଇ ଦେଉଛି । ସହରର ଘର ସବୁ ଛୋଟପିଲାଙ୍କ ଖେଳନା ପରି । ଡାହାଣ ଦିଗରେ ପଛକୁ ପଛ ଲାଗି ବାଦବୁଦିଆ ହେଲାପରି ଗୋଟାକ ପରେ ଗୋଟାଏ ପାହାଡ଼ । ପାଖ ପାହାଡ଼ ସବୁ ନେଳି, ଦୂରପାହାଡ଼ ଧୂସର । ପାଖ ପାହାଡ଼ମାନଙ୍କରେ ଝଙ୍କାଳିଆ ଗଛସବୁ ନେଳିରୁମ ମେଣ୍ଢା ଚରିଲା ପରି ଦେଖାଯାଉଛନ୍ତି । ଦୂର ପାହାଡ଼ ସବୁ ଆକାଶ ଓ ମେଘମାନଙ୍କ ରଙ୍ଗରେ ଅସ୍ତିତ୍ୱ ହରାଇଛନ୍ତି ।

ଏଇ ପାହାଡ଼ ଉପରୁ ଠିଆହୋଇ ତଳକୁ ଅନାଇଲେ ଜଣାପଡ଼େ ଏ ମଣିଷ କେଡ଼େ କ୍ଷୁଦ୍ର ! କେଡ଼େ ଛୋଟ ତାର ସହର, ଗାଁ, ଘର । ହେଇ ସବୁ ସଫା ଦେଖାଯାଉଛି- ସୁତ୍ଲାପରି ସରୁ ରାସ୍ତାଟିର ଦୁଇକଡ଼ରେ କେତୋଟି ଘର । କଲେଜ, ଡାକ୍ତରଖାନା ଓ ପୋଷ୍ଟ ଅଫିସ । ରାସ୍ତା କଡ଼େ କଡ଼େ ଗଛ ସବୁ । ଚଳମାନ ବିନ୍ଦୁପରି ବସ୍‌ଟିଏ ଚାଲିଛି । ମଣିଷମାନେ ବି । ତଳକୁ ଓହ୍ଲାଇଲେ ଯେଉଁ ଜୀବନଯାତ୍ରା ଜଣାପଡ଼େ ବିରାଟ, ଉପରୁ ତାହା ମେଘପରି ହାଲୁକା । ଏଣ୍ଡିପୋକର ଖୋଳପାପରି ଟିକିଏ ଟିକିଏ ବସା ତିଆରି କରି ତା ଭିତରେ ମଣିଷ କୁଣ୍ଡଳାକୃତି ହୋଇ ଜାକିଜୁକି ଦିନ କାଟୁଚି । କେତେ ହସ, ଲୁହ, ରକ୍ତ ଓ ସିନ୍ଦୂର ସେଇ ଖୋଳପାଟି ଭିତରେ !

ପାହାଡ଼ ଉପରେ ଠିଆ ହୋଇ ଅବିନାଶ ଭୁଲିଗଲା ଯେ ସେ ଜଣେ ସାମାନ୍ୟ ସରକାରୀ ଚାକର-ଅଳ୍ପ କେତେ ମାସ ପାଇଁ ହୁଏତ ଏଠିକି ସେ ଆସିଛି । ତା'ପରେ ହେବ ବଦଳି ଅନ୍ୟ କେଉଁ ସ୍ଥାନକୁ ! ସେଠି ବି ହୁଏତ ଏମିତି ପାହାଡ଼ ଥିବ । ଏମିତି ପାହାଡ଼ ଉପରେ ଠିଆହୋଇ ତଳକୁ ଅନାଇଲେ ଦେଖାଯିବ, ସେଠା ମଣିଷର ଜୀବନଯାତ୍ରା । ପଥର ସନ୍ଧିରୁ ପିମ୍ପୁଡ଼ି ବାହାରିଲା ପରି, କୋଉ ପାହାଡ଼ୀ ଗାଆଁରୁ ବାହାରି, କାନ୍ଧରେ ବୁଜୁଲି ଥୋଇ ଚାଲିଥିବେ ପଲକୁ ପଲ ମଣିଷ- ବୁଢ଼ା, ବୁଢ଼ୀ, ଟୋକା, ଟୋକୀ ।

ଜୀବନର ସୁଅ । ପାହାଡ଼ୀ ଝରଣା ପରି ଗଡ଼ି ଚାଲିଛି । କେଉଁଠି ତାର ଆରମ୍ଭ, କେଉଁଠି ଶେଷ ? କେତେ ମୁନିଋଷି ଏମିତି ପାହାଡ଼ ଗୁମ୍ଫାରେ ଲୁଚି ଚିନ୍ତା କରିଛନ୍ତି ବର୍ଷ ବର୍ଷ-ପୁରୁଷ ପୁରୁଷ ଧରି ଲାଗି ରହିଛି ସାଧନା, ପ୍ରାଣପାତ । ଯାହା ରହସ୍ୟ, ତାହା ସବୁଦିନେ ରହସ୍ୟହିଁ ରହିଛି । ଅବିନାଶ ଦୂରରୁ ଲକ୍ଷ୍ୟ କରି ଆସିଛି ଏଇ ଜୀବନର ସୁଅ- ଯାହା କୌଣସି ଶକ୍ତିର ପ୍ରତିରୋଧ ମାନେ ନାହିଁ । ଗଡ଼ି ଚାଲେ ।

ସୂର୍ଯ୍ୟ ନଇଁ ଆସୁଛନ୍ତି । ସେ କରେ ବଳରାମ ପାହାଡ଼- ତା'ରି ଉପରେ ସୂର୍ଯ୍ୟ ଢ଼ଳି ପଡୁଛନ୍ତି । ଶୂଳିଆ ପାହାଡ଼ର ଅଧେ ଛାଇ, ଅଧେ ଆଲୁଅ । ଆଉରି ଅନେକ ପାହାଡ଼-ଯେଉଁମାନଙ୍କ ନାମ ଅବିନାଶ ଜାଣେ ନାହିଁ । ପ୍ରତି ମଣିଷପରି ପ୍ରତି ପାହାଡ଼ର ବି ନାଁ ଅଛି, ପରିଚୟ ଅଛି । ପାଖ ଗାଁର ସୁଖ ଦୁଃଖ, ହସ କାନ୍ଦ ସବୁକୁ ବେଖାତିର କରି, ପଥୁରିଆ ଛାତି ଫୁଲାଇ, ପାହାଡ଼ ଠିଆ ହୋଇଛି । ଆଉ ପାହାଡ଼ର ପାଦତଳେ ପାହାଡ଼ର ଚୂଡ଼ାକୁ ଚାହିଁ ଠିଆହୋଇଚି ମଣିଷ । ଯେତେ ଝଡ଼ଝଞ୍ଜା ଆସିଲେ ବି ଏ ପାହାଡ଼

ଭାଙ୍ଗିଯାଇନି-ଭାଙ୍ଗିଯାଇନି ପାହାଡ଼ୀ ଦେଶର ମଣିଷର ମେରୁଦଣ୍ଡ । ସେ ବି ସେମିତି ଠିଆହୋଇ ରହିଚି । କେତେ ମଣିଷର ପାଦ ଘଷି ହୋଇଛି ଏଇ ପାହାଡ଼ର ପ୍ରତି ପଥରରେ, ପୁଣି ଆସିଛନ୍ତି ନୂଆ ମଣିଷ ଶିଶୁ । ପ୍ରତିବର୍ଷ ପାହାଡ଼ରେ ଗଛ କଅଁଳି ଖରାଦିନେ ପୋଡ଼ି ପାଉଁଶ ହେଲାପରି, ଥରକୁ ଥର ମଣିଷ ଶିଶୁ ଜନ୍ମ ହୋଇଛନ୍ତି-ବୁଢ଼ା ହେଲେ ଏଇ ପାହାଡ଼ ସନ୍ଧିରେ ସେମାନଙ୍କ ମଲା ଦେହକୁ ଶୁଆଇଦେଇ ଫେରି ଯାଇଛନ୍ତି ସେମାନଙ୍କ ବଂଶଧର । ଜୀବନ ସୁଅ ଗଡ଼ିଚାଲିଛି ।

ସେଇ ଜୀବନ ସୁଅରେ ସେ ଗୋଟାଏ ପାଣିଫୋଟକା- ଯାହାର ନାମ ଅବିନାଶ ମହାପାତ୍ର । ପରିଚୟ-ଫାମିଲି ପ୍ଲାନିଂ ଅଫିସର । ଦୁନିଆର ଅନ୍ୟସବୁ ମଣିଷପରି ତା'ର ବାପାମାଆ ଅଛନ୍ତି-ତାର ବଂଶପରମ୍ପରା ଅଛି । ସେ ବି କେବେ ରବର କଣ୍ଢେଇପରି ଛୋଟ ପିଲାଥିଲା, ନାଲିକଇଁ ପାଖୁଡ଼ା ପରି ହାତ ହଲାଇ ଆଈ କୋଳରେ ବସି ଜହ୍ନମାମୁଁକୁ ଖେଳିବାକୁ ଡ଼ାକୁଥିଲା । ଅନ୍ୟ ସବୁ ପିଲାଙ୍କପରି ସେ ଧୂଳିମାଟିକୁ ଆଦର କରିଥିଲା, ମାଷ୍ଟ୍ରଙ୍କୁ ଡରି ପାଠ ନ ପଢ଼ିବାକୁ ଲୁଚିଥିଲା; ଅଥଚ ସେ ପୁଣି ପାଠ ପଢ଼ିଲା ଓ ଚାକିରି କଲା । ତା'ପରେ ସେ ହୁଏତ ବିବାହ କରିବ । ହେବ ଛୁଆପିଲାଙ୍କ ବାପା । ତା'ପରେ ଚାକିରିରୁ ଅବସର ଓ ମୃତ୍ୟୁ ।

ଜୀବନ । କେଡ଼େ ଧରାବନ୍ଧା ତାର ନିୟମ ! ଅଥଚ ମଣିଷ ଭାବେ-ସେ ସ୍ୱାଧୀନ । ଅବିନାଶକୁ ଜଣାପଡ଼ିଲା- ସ୍ୱାଧୀନତାଟା ଖାଲି ଯେମିତି ଗୋଟାଏ କୁହୁଡ଼ି ପହଁରା । ଅବିନାଶ ପିଲାଦିନୁ ଥିଲା ଆଦର୍ଶବାଦୀ । ଭାବିଥିଲା, ତା ଜୀବନର ଲକ୍ଷ୍ୟ ଅନ୍ୟମାନଙ୍କଠାରୁ ଭିନ୍ନ । ଚାକିରି ? କେବେ ନୁହେଁ । ସରକାରୀ ସଂସ୍ଥାର ବିରାଟ କଳ ଭିତରେ ସାମାନ୍ୟ ଗୋଟିଏ ଅଂଶ ହୋଇ ମୂଲ୍ୟବାନ ଜୀବନକୁ ସେ ନଷ୍ଟ କରିବ ନାହିଁ । କୌଣସି ଏକ ମହତ୍ତର ଉଦ୍ଦେଶ୍ୟ ପାଇଁ ତାର ଜନ୍ମ ।

ପାହାଡ଼ର ଶୀର୍ଷମାନଙ୍କୁ ଛୁଇଁ ଛୁଇଁ ମଇଁଷି ପଲପରି ଭାସିଯାଉଥିବା ମେଘମାନଙ୍କୁ ଅନାଇଲା ଅବିନାଶ । କାହିଁ ସେମାନଙ୍କ ସ୍ୱାଧୀନତା ? ସାମାନ୍ୟ ଥଣ୍ଡା ପବନ ଲାଗିଲେ ସେମାନେ ବର୍ଷାରେ ପରିଣତ ହେବେ । ପୃଥିବୀରେ ବି ସେମାନଙ୍କ ପାଇଁ ସ୍ଥାନ ନାହିଁ । ସୂର୍ଯ୍ୟ କିରଣ ପଡ଼ିଲେ ପୁଣି ଉଠିବେ ଉପରକୁ । ସେମିତି ଅବିନାଶ । କେଉଁ ଅଦୃଶ୍ୟ ଶକ୍ତି ତାକୁ ମେଘପରି ଉଡ଼ାଇ ନେଉଛି । ସେ କୁଆଡ଼ୁ ଆସିଛି, ଜାଣେନା; କୁଆଡ଼େ ଯିବ, ଜାଣେନା । କେଉଁପରି ସେ ଭାସି ଭାସି ଚାଲିଛି, ତାହା ବି ତାକୁ ଅଜଣା ।

ପାହାଡ଼ ଉପରୁ ଅନାଇଲେ ନେଳି ଧାନକ୍ଷେତ ସବୁ ଦେଖାଯାଉଛି, ମୋଜାଇକ୍ ଚଟାଣ ପରି । ଗାର କାଟିଲା ପରି ହିଡ଼ । ଦେଖାଯାଉ ନାହାନ୍ତି ମଣିଷ ପଲ । କଳା କଳା ବିନ୍ଦୁପରି ତା'ରି ଭିତରେ କୋଉଠି ସେମାନେ ଛପି ରହିଥିବେ । ଆଣ୍ଠୁଏ କାଦୁଅରେ ମୁଣ୍ଡରେ ପଗଡ଼ି ଭିଡ଼ି ଅର୍ଦ୍ଧବୃତ୍ତ ପରି ବଙ୍କେଇ ସେମାନେ ଧରିତ୍ରୀରୁ ବଞ୍ଚିବାର ରସ

ଟାଣୁଥିବେ-କଅଁଳ ଶିଶୁ ଯେମିତି ମାଆଛଡ଼ା ଆଉ କାହାରିକି ଜାଣେ ନାହିଁ-ସେମିତି ଏଇ ମଣିଷମାନେ ଇତିହାସର କେଉଁ ପ୍ରାଚୀନ ପ୍ରସ୍ତର ଯୁଗରୁ ଏମିତି ମାଟିରୁ ରସ ଟାଣି ଲାଗିଛନ୍ତି । ଆଖିରେ ଭାବନାହିଁ-ମୁହଁରେ ଭାଷା ନାହିଁ । ମଣିଷ ଜାତିର ଇତିହାସରେ କୋଉଠି ସେମାନଙ୍କ କଥା ଲେଖାନାହିଁ; ଅଥଚ ପାହାଡ଼ କଡ଼େ କଡ଼େ ନଈ ଧାରେ ଧାରେ ସେମାନେ ଦଳଦଳ ହୋଇ ମାଟି ତାଡୁଛନ୍ତି- ମୁଣ୍ଡରେ ବୁଜୁଳି ଥୋଇ ଧାଡ଼ି ଧାଡ଼ି ଆଗପଛ ଚାଲିଛନ୍ତି । ଦକ୍ଷିଣ ଆମେରିକାର କାର୍ପାସ କ୍ଷେତରେ, ଚୀନର ହୋୟାଂହୋ ନଦୀକୂଳରେ, ମାଳୟର ରବର ଜଙ୍ଗଲରେ, ସବୁଠି ସେଇ ଗୋଟିଏ ପ୍ରାଣୀ- ଧନୁପରି ବଙ୍କେଇଯାଇ ମାଟିରୁ ରସଟାଣୁଚି ।

ମଣିଷକୁ ସବୁବେଳେ ନିରେଖି ନିରେଖି ଚାହିଁବାରେ ଅବିନାଶର ଅହେତୁକ ଆନନ୍ଦ । ପାଖରୁ ସବୁ ମଣିଷ ଭିନେ ଭିନେ; ଅଥଚ ଦୂରରୁ ଦେଖିଲେ ଜଣାପଡ଼େ-ସମସ୍ତେ ସମାନ, ତଫାତ୍ ମୋଟେ ନାହିଁ ।

ଏଇ ଯେଉଁ ଧାନକ୍ଷେତ ସବୁ ଲମ୍ବି ଯାଇଚି, ମାଇଲ ମାଇଲ ଦୂରର ଗଛ ସବୁ ଦେଖାଯାଉଚି ଛାଇପରି-ମେଘମାନେ ଛୋଟ ପିଲାଙ୍କ ପରି ହାତ ଧରାଧରି ହୋଇ ପାହାଡ଼ରୁ ପାହାଡ଼ ଡେଇଁ ଡେଇଁ ଭାସି ଯାଉଛନ୍ତି-ସେମାନଙ୍କଠାରୁ ବହୁ ଦୂରରେ, ଗୋଟିଏ ଛୋଟିଆ ସମୁଦ୍ରକୂଳିଆ ସହରରେ, ଅବିନାଶର ପିଲାଦିନ କଟିଥିଲା । ତାର ଜନ୍ମ ପଲ୍ଲୀଗାଁରେ; କିନ୍ତୁ ଗାଁର ସ୍ମୃତି ତାର ମନେନାହିଁ । ଗୋଟିଏ ଦୁଇଟି ସ୍ମୃତି, କରୁଣ ଓ ଅର୍ଥହୀନ-ଓଳିତଳେ ପଡ଼ି ଜିକ୍‌ଜିକ୍ ହେଉଥିବା ଅଦରକାରୀ ଦୁଇପଟି କାଚପରି-ତାର ମନକୁ ଆଚ୍ଛନ୍ନ କରି ରଖିଛି ।

ଝଡ଼ବର୍ଷା ରାତି । ବାହାରେ ରୂପକଥାର ଅସୁରମାନେ ଯେମିତି ଜୀଅନ୍ତା ହୋଇ ହାଉଁ ହାଉଁ ରଡ଼ିକରି ବୁଲୁଛନ୍ତି । ଶିଶୁ ଅବିନାଶ ମଇଳା ଶେଯରେ, ଦୀପରୁଖା ଉପରେ ମିଞ୍ଜି ମିଞ୍ଜି ଜଳୁଥିବା ଆଲୁଅକୁ ପିଠିକରି ଶୋଇଥିବା ତା ବୋଉର ଉଷୁମ୍ କାନି ଭିତରେ, ନିଜକୁ ଲୁଚାଇ ଦେଉଛି । ପୁଣି କେବେ ବୋଉକୁ 'ମରିଯା' ଗାଳିଦେଇ, ଭୁଜାଚାଙ୍ଗୁଡ଼ିକୁ ରାଗରେ ଅଗଣାକୁ ଫିଙ୍ଗି ଦେଉଛି । ଶୀତଦିନରେ ଆଇ କୋଳରେ ବସି ଝରକା ନଥିବା ଛୋଟିଆ ମାଟିଘରଟିରେ ଉହ୍ନେଇରୁ ନିଆଁ ପୋହୁଁଛି ।

ଅବିନାଶର ମନେ ପଡ଼ିଲା-ତାର ଗାଁ । ଯେଉଁଠି ସେ ଜନ୍ମ ହୋଇଥିଲା-ଏବେ ବି ମାଟିକାନ୍ଥ ଉପରେ କଉଡ଼ି ଖଞ୍ଜା ହୋଇଥିବା ତା ଷଠିଘର ସେମିତି ଅଛି । ସେଇ ପୁରୁଣା ଘର ଠିଆ ହୋଇଚି-ଯାହାର ମାଟିଚଟାଣ ଖାଲ ଢିପ-ଘର ଭିତରର ଶିକା ହାଣ୍ଡି ମାଠିଆରୁ ଗୋଟାଏ ଗମୁରା ଗନ୍ଧ ବାହାରେ । ଅବିନାଶର ପିଲାଦିନର ସ୍ମୃତି ସେଇ ଗନ୍ଧ ଭିତରେ ଯେମିତି ମିଶିରହିଛି । ଆଉ ସେଇ ପୁରୁଣା ଖଟଟା-କୋଉ ଯୁଗରୁ କେଜାଣି, ସେମିତି ପଡ଼ିରହିଥିବା ଅବିନାଶ ଦେଖିଆସୁଛି ତାର କେଉଁ ପୂର୍ବ-ପୁରୁଷଙ୍କ ଇତିହାସ, ସେଇ

ପରିତ୍ୟକ୍ତ ଖଟପରି, ରହିଯାଇଛି ଅବହେଳିତ ।

ଗାଁର ସ୍ମୃତି । ଝରଣାର ଗୀତ ପରି ମଧୁର ଓ କରୁଣ । ତା ମନରେ ସବୁବେଳେ ସେଇ ଗୀତର ଗୋଟିଏ ସରୁ ମୂର୍ଚ୍ଛନା ବାଜି ଯାଉଛି ।

ତାକୁ ତିନିବର୍ଷବେଳେ, ହଠାତ୍ ତା ବୋଉର ମୃତ୍ୟୁ । ତା ବାପା ତାକୁ ଘେନି ସହରକୁ ପଳାଇ ଆସିଲେ । ଅବିନାଶ ଆଉ ଗାଁକୁ ଫେରିନି ।

ସମୁଦ୍ର । ତା କୂଳରେ ସହର । ବୁଢ଼ିଆଣୀ ଜାଲ ଭଳି ସହରର ଗଳି କନ୍ଦି । ତା'ରି ଭିତରୁ କୌଣସି ଏକ ଗଳିରେ, ଏକ ମଳିନ ମାଟି ଘରେ, ଅବିନାଶର ପିଲାଦିନ କଟିଛି ।

ସମୁଦ୍ରଠାରୁ ବହୁ ଦୂରରେ, ଅଚିହ୍ନା ପାହାଡ଼ ଉପରେ ବସି, ଅବିନାଶ ଦୂର ଦିଗ୍‌ବଳୟକୁ ଅନାଇଲା । ସମୁଦ୍ର ବି ଏମିତି ଦୂରରୁ ଦେଖାଯାଏ । ତା'ରି ବାଲିରେ ଧାଇଁ ଧାଇଁ ବୁଡ଼ିଯାଉଥିବା ସୂର୍ଯ୍ୟ ଆଲୁଅରେ, କେତେବେଳେ ଝାଉଁଗଛ ପରି ଲମ୍ବା ଦିଶୁଥିବା ଓ କେତେବେଳେ ପାଦ ତଳେ ଚାପି ହୋଇ ଯାଉଥିବା, ନିଜ ଛାଇକୁ ଧରିବାକୁ ଚେଷ୍ଟା କରୁ କରୁ, ଅବିନାଶ ହାଫ୍ ପ୍ୟାଣ୍ଟ୍ ଛାଡ଼ି ଦିନେ ଫୁଲ୍ ପ୍ୟ୍ୟାଣ୍ଟ୍ ପିନ୍ଧିଥିଲା ।

ହାଫ୍ ପ୍ୟାଣ୍ଟ୍ ଛାଡ଼ି ଫୁଲ୍ ପ୍ୟାଣ୍ଟ୍ ପିନ୍ଧିବା ଭିତରେ ଅବିନାଶକୁ କେତେ ଯେ ଅଭାବ ଅସୁବିଧା ଭିତରେ ଗତି କରିବାକୁ ପଡ଼ିଛି, ସେ କଥା ଭାବି ଅବିନାଶର ଅଭିମାନ ହେଲା, ସେଇ ମଳିନ ଓ ନିଷ୍କରୁଣ ଦିନଗୁଡ଼ିକ ଉପରେ । ସେମାନେ ହୁଏତ କେବେ ହେଲେ କାମ୍ୟ ନଥିଲେ, ଆପେ ଆପେ ଆସିଥିଲେ । ଅବିନାଶ ତା ନିଜ ଚେଷ୍ଟାରେ ଆଜି ସେମାନଙ୍କୁ ତଡ଼ିଦେଇଛି । ତଥାପି ବେଳେ ବେଳେ ସେଇ ହଜିଲା ଦିନଗୁଡ଼ିକ କେଜାଣି କାହିଁକି ଅବିନାଶର ହୃଦୟ ଭିତରେ କୋଉ ଅନ୍ଧାରୁଆ କୋଣରେ ବିଳପି ଉଠନ୍ତି । ଅବିନାଶ ବୁଝିପାରେନା-ଦୁଃଖ ପାଇଁ ବି ମଣିଷ ହୃଦୟରେ ଏତେ ସହାନୁଭୂତି କେଉଁଠି ଥାଏ !- ହେଇ, ସେଠି ଯେଉଁଠି ପାହାଡ଼ ଫାଟିଲା ପରି ଦେଖାଯାଉଛି, ସେଠି କୁଆଡ଼େ ଥରେ ଚଡ଼କ ପଡ଼ିଥିଲା । ଲୋକେ କହନ୍ତି- ରାଜ୍ୟର ପାପ ବେଶି ହେଲେ, ଭଗବାନ ଏମିତି ସାବଧାନ କରାନ୍ତି ମଣିଷ ଜାତିକୁ । ସେ ସ୍ଥାନଟିକୁ ଏବେ ବି ସମସ୍ତେ ଡାକନ୍ତି ଚଡ଼କମରା । ଟେକାଟିଏ ଫିଙ୍ଗି ଦେଲେ ପାହାଡ଼ ଉପରେ ଗଡ଼ିଗଡ଼ି ଡେଇଁ ଡେଇଁ ସେ ତଳକୁ ଖସିଲାବେଳେ ସତକୁ ସତ ଚଡ଼କ ମାରିବା ପରି ଶବ୍ଦ ହୁଏ । ଟେକାଟିଏ ତଳକୁ ଖସିଲାବେଳେ ଏକ ରକମର ଶବ୍ଦ । ପାହାଡ଼ ତଳ କେଉଁଠି ନିଦା, କେଉଁଠି ପୋଲା ।

ନିଦା ସ୍ଥାନ ଉପରେ ଟେକାଟିଏ ପଡ଼ିଲେ ଗୋଟିଏ ପ୍ରକାର ଶବ୍ଦ, ପୋଲା ସ୍ଥାନ ଉପରେ ଆଉ ଗୋଟିଏ ଶବ୍ଦ । ଅବିନାଶ ତାର ସମସ୍ତ ଶକ୍ତି ପ୍ରୟୋଗ କରି ଟେକାଟିଏ ଫିଙ୍ଗିଲା । ଟେକାଟି ଡେଇଁ ଡେଇଁ ତଳକୁ ଖସୁଛି । ଅବିନାଶ, ଶିଶୁର ଅନନ୍ତ ବିସ୍ମୟଭରା ଆଖିରେ ଅନାଇଛି ।

ସଞ୍ଜ ନଇଁ ଆସୁଛି । ତଳେ, ମୋଜାଇକ୍ ଚଟାଣ ପରି ଦିଶୁଥିବା ଧାନକ୍ଷେତମାନଙ୍କ ଉପରେ, ବେଢ଼ାଇ ହୋଇ ଯାଉଛି ଅନ୍ଧାରର ଆସ୍ତରଣ । ଆକାଶର ବର୍ଣ୍ଣ କିପରି ନିହାତି କରୁଣ ଓ ଉଦାସ ଭାବ ସୃଷ୍ଟି କରୁଛି । ଅବିନାଶକୁ ଏକୁଟିଆ ଲାଗିଲା । ଅଳ୍ପ ଦୂରରେ ବନ୍ଧୁମାନେ ବସି କୌଣସି ନିରର୍ଥକ ବିଷୟରେ ଆଲୋଚନା କରୁଛନ୍ତି । ନା-ସେଥିରେ ଅବିନାଶର ଆଗ୍ରହ ନାହିଁ । ସେ ତ ସବୁ ଦିନେ ଏମିତି ଏକୁଟିଆ ହିଁ ରହି ଆସିଛି । କେବେ ସେ ଖୁବ୍ ଛୋଟ ପିଲା ଥିଲା, ତା କୁନି କୁନି ହାତରେ ବୋଉର ବେକକୁ ଚାପି ଧରୁଥିଲା, ସେ କଥା ତାର ହେତୁ ନାହିଁ । ତାର ହେତୁ ଆସିଲାବେଳକୁ ତା ବୋଉ ମରି ଯାଇଥିଲା । ସେଇଦିନୁ ସେ ଏକୁଟିଆ । ଅବଶ୍ୟ ବୁଢ଼ୀ ମା ଥିଲା କିଛି ଦିନ । ବାପାଙ୍କ ସଙ୍ଗେ ଅବିନାଶର ସମ୍ପର୍କ ଖୁବ କମ୍ । ବାପା ତାର ଅଦ୍ଭୁତ । ପୁଅ ଯାହା ଚାହୁଁଛି, କରୁ-ଖାଲି ବଞ୍ଚିରହୁ- ଏହା ହିଁ ବାପାଙ୍କର ମନୋଭାବ । ବୋଉ ମରିଯାଇଛି ବୋଲି ଗାଆଁର ସ୍ତ୍ରୀ ଲୋକମାନେ ଅବିନାଶକୁ ନିହାତି ଏକ ଦୟନୀୟ ଜୀବ ବୋଲି ଭାବୁଥିଲେ । କେବେ କେବେ ଅକସ୍ମାତ୍ ଗାଆଁକୁ ଗଲେ- ଅବିନାଶ ଉପରେ ଗାଆଁର ମାଇପିମାନଙ୍କ ବାତ୍ସଲ୍ୟ ଝରି ପଡୁଥିଲା । ବୋଉ ମଲା ପରେ ପିଲାଟି କେଡ଼େ ହଇରାଣ ହୋଇଥିବ ବୋଲି ଅବିନାଶକୁ ବହୁ ସାନ୍ତ୍ୱନା ମିଳୁଥିଲା । ପୁଣି ମାଟ୍ରିକ୍ୟୁଲେସନ୍ ପରୀକ୍ଷା ପରେ ସେ ଯେତେବେଳେ ଗାଆଁକୁ ଗଲା, ସେ ଏତେ ବଡୁଟିଏ ହୋଇ ଏତେ ପାଠ ପଢ଼ିଲାଣି ବୋଲି ଗାଆଁରେ ଚହଳ ପଡ଼ିଯାଇଥିଲା ।

ଉଦାସ ଓ କରୁଣ ସଞ୍ଜ । ଯେମିତି ତା ବୋଉର ଲୁହରେ ଓଦା । ଅବିନାଶର ବୋଉ କଥା ମନେନାହିଁ । କେମିତି ହୋଇଥିବ ତାର ମୁହଁ, ସ୍ନେହପ୍ରବଣ ଆଖି, କେମିତି ସେ ଅବିନାଶ ପାଇଁ ବସି ବସି ଭାଳୁଥିବ ! ଯେଉଁଠି ଥାଉନା ସେ । ଏଇ ଗାଁର ଶହ ଶହ ମାଇପିଙ୍କ ପରି ତା ବୋଉ, ସ୍ନେହ, କୁସଂସ୍କାର ଓ ଆଶ୍ୱାସନାର ପ୍ରତୀକ । ଅବିନାଶକୁ କୋଳରେ ଧରି ସେ କେତେ ସ୍ୱପ୍ନ ଦେଖିଥିବ । ସେଇ ମଳିନ ମାଟି ଘରେ, ମିଞ୍ଜି ମିଞ୍ଜି ଦୀପରୁଖା ପାଖରେ, ଅବିନାଶକୁ କୋଳରେ ଧରି, ସେ 'ଧୋ ରେ ବାୟା ଧୋ' ଗୀତ ଗାଇ ତାକୁ ଶୁଆଇ ଥିବ; କିନ୍ତୁ ସବୁ ସ୍ୱପ୍ନକୁ ପଛରେ ପକାଇ ତା ବୋଉ ଚାଲିଯାଇଛି । ଛାଡ଼ି ଯାଇଛି ଏଇ ବକଟେ ପିଲା ତା ରକ୍ତର ରକ୍ତ, ମାଂସର ମାଂସ- । ଅବିନାଶ ତା ବୋଉର ଛବି ମନେ ନ ରଖୁ ପଛେ, ନ ଦେଉ ପଛେ ତା ସ୍ନେହର ପ୍ରତିଦାନ- ତଥାପି ତା ବୋଉର ସବୁ ସ୍ୱପ୍ନ, ସବୁ କଳ୍ପନା ତା'ରି ଭିତରେ ବଞ୍ଚିରହିଛି ।

ସେମାନେ ଡାକୁଛନ୍ତି- ତାର ବନ୍ଧୁମାନେ । ଅନ୍ଧାର ହେବା ଆଗରୁ ପାହାଡ଼ରୁ ଓହ୍ଲାଇ ଯିବାକୁ ସେମାନେ କହୁଛନ୍ତି । ଦୁଇ ଜଣଙ୍କୁ ବାଦ୍ ଦେଲେ ଅନ୍ୟ ସମସ୍ତଙ୍କୁ ନୂଆ ଚିହ୍ନୁଛି ଅବିନାଶ । ଭବେନ୍ଦ୍ର ତାର ପୁରୁଣା ବନ୍ଧୁ-ସେମାନେ ସାଥିହୋଇ କାନ୍ଧରେ ହାତ ପକାପକି ହୋଇ ଭୁଜା ଚୋବାଇ ଚୋବାଇ ଚାହାଳୀକୁ ଯାଇଥିଲେ ଅକ୍ଷର ଶିଖିବାକୁ । ସାଥୀ ହୋଇ ପାଠ ପଢ଼ିଲେ-ସ୍କୁଲରେ, କଲେଜରେ ଏବଂ ଆଶ୍ଚର୍ଯ୍ୟ ଯେ, ଏଇଠି ଗୋଟିଏ ସ୍ଥାନରେ ଦୁହିଁଙ୍କୁ ଚାକିରି ମିଳିଛି । ଆଉ ସେପାଖେ ନିହାତି ବେପରୁଆ ଭାବରେ ବସି ଗୋଟାକ ପରେ ଗୋଟାଏ ସିଗାରେଟ୍ ଟାଣିବାରେ ଲାଗିଛନ୍ତି ଶିବପ୍ରସାଦ । ମୁଣ୍ଡବାଳ ଖୁବ୍ ଛୋଟ ଛୋଟ କାଟି କେମିତି ବିକୃତ ଦେଖା ଯାଉଛନ୍ତି । ସାମାନ୍ୟ କୁଜା । କଥାଗୁଡ଼ାକ ତୀକ୍ଷ୍ଣ । ସେ ଏଠି କଲେଜରେ ଅଧ୍ୟାପକ । ଖୁବ୍ ଭଲ ପଢ଼ାନ୍ତି ବୋଲି ଅବିନାଶ ଶୁଣିଛି; କିନ୍ତୁ ରୁକ୍ଷ ବ୍ୟବହାର ପାଇଁ ଛାତ୍ର ମହଲରେ ପ୍ରିୟ ନୁହନ୍ତି । ଆଉ ଅନ୍ୟ ତିନିଜଣ ବନ୍ଧୁଙ୍କୁ ନୂଆ ଜାଣିଛି ଅବିନାଶ । ପାଣିଗ୍ରାହୀବାବୁ ବସି କ'ଣ ଗୋଟାଏ ଦର୍ଶନ ବ୍ୟାଖ୍ୟା କରୁଛନ୍ତି । ଗୋରା ଦେହକୁ ତାଙ୍କ ଧୋତି ଓ ଟେରିଲିନ୍ ହାୱାଇନ୍ ବେଶ୍ ମାନୁଛି । ତାଙ୍କ ସଙ୍ଗେ ପରିଚୟଟା ଆକସ୍ମିକ ହେଲା । ଯେଉଁଦିନ ସେ ଓ ଭବେନ୍ଦ୍ର ଏଠି ଚାକିରି କରିବାପାଇଁ ଆସି ପହଞ୍ଚିଲେ ଓ ବସ୍ ଷ୍ଟାଣ୍ଡରେ ଓହ୍ଲାଇ ବେଡ଼ିଂ ପ୍ରଭୃତି ବୋହି ନେବାପାଇଁ କୁଲିର ଅନୁସନ୍ଧାନ କରୁଥିଲେ, ସେତିକିବେଳେ ପାଣିଗ୍ରାହୀବାବୁ ପ୍ରଥମେ ଆସି ସେମାନଙ୍କୁ ପଚାରିଥିଲେ, "କହନ୍ତୁ, ଆପଣଙ୍କର ମୁଁ କ'ଣ କରିପାରେ" ।

ଅବିନାଶ ଆଶ୍ଚର୍ଯ୍ୟ ହୋଇ ଅନାଇଥିଲା । ଏମିତି ଛୋଟିଆ ସହରରେ ଏପରି ପ୍ରଶ୍ନ ସେ ଆଶା କରିନଥିଲା । ସେ କେବେ ଭାରତ ବାହାରକୁ ଯାଇନାହିଁ । ଭ୍ରମଣ କାହାଣୀରେ ପଢ଼ିଛି, ପାଶ୍ଚାତ୍ୟ ଦେଶରେ ବିଦେଶୀମାନଙ୍କୁ କୁଆଡ଼େ ଏହିପରି ପ୍ରଶ୍ନମାନ ପଚରା ଯାଇଥାଏ । ପାଶ୍ଚାତ୍ୟ ଲୋକେ ଅତିଥିପରାୟଣତା ଜାଣନ୍ତି । ସେମାନଙ୍କ ଦେଶ ସମ୍ପର୍କରେ ଆଗନ୍ତୁକମାନେ ଯେପରି ଭଲ ଧାରଣା ନେଇ ଫେରିବେ, ସେଥିପାଇଁ ସେମାନେ ଯଥାସାଧ୍ୟ ଚେଷ୍ଟା କରନ୍ତି । ଅଥଚ ଆମ ଦେଶରେ ନୂଆ ଲୋକଟିଏ ରାସ୍ତା ପଚାରିଲେ ତାକୁ ଜାଣି ଜାଣି ଭୁଲ୍ ବାଟ ବତାଇ ଦେବା ପାଇଁ ଲୋକ ଅଛନ୍ତି ।

ସେ ଯାହାହେଉ, ସେଇ ବସ୍ ଷ୍ଟାଣ୍ଡରେ ପାଣିଗ୍ରାହୀବାବୁଙ୍କ ସଙ୍ଗେ ପରିଚୟ । ବନ୍ଧୁତା ବଢ଼ି ବଢ଼ି ଚାଲିଛି । ପାଣିଗ୍ରାହୀ ବାବୁଙ୍କ ଘରେ ଦୁଇଥର ଅତିଥି ହୋଇ ଫେରିଲାଣି ଅବିନାଶ । ଅଦ୍ଭୁତ ଭଦ୍ରବ୍ୟକ୍ତି । ଏୟାର୍ ଫୋର୍ସରେ କାମ କରୁଥିଲେ । ଚାକିରି ଛାଡ଼ି ଘରେ ବସିଛନ୍ତି । ଏଣୁ ତେଣୁ ସଂଗ୍ରହ କରି ଦର୍ଶନ ବହି ସବୁ ପଢ଼ିବାରେ ଲାଗିଛନ୍ତି । ଶିକ୍ଷିତ ଲୋକ ଦେଖିଲେ ହିଁ ଦର୍ଶନଶାସ୍ତ୍ର ବିଷୟ ଆଲୋଚନା କରିବାକୁ ଇଚ୍ଛା ପ୍ରକାଶ କରନ୍ତି । ଅନେକ ସମୟରେ ଗୋଟିଏ କଥାକୁ ଦୁଇଥର ପୁନରାବୃତ୍ତି କରନ୍ତି-ଥରେ ଇଂରାଜୀରେ ଗୋଟିଏ ବାକ୍ୟ ବା ଅର୍ଦ୍ଧବାକ୍ୟ କହି, ପୁଣି ତାହାକୁ ଓଡ଼ିଆରେ ଅନୁବାଦ

କରନ୍ତି । ଖୋଲା ହୃଦୟ-ଲୋକଟି ବେଶ୍ ମେଳାପି ଓ ଭଦ୍ର ।

ଆଉ ଜଣେ ପ୍ରକାଶ ଭାଇ । ଅନ୍ୟକୁ ଆପଣାର କରିନେବାର ଶକ୍ତି ଖୁବ୍ କମ୍ ଲୋକଙ୍କଠାରେ ଦେଖିଛି ଅବିନାଶ-ଯେମିତି ପ୍ରକାଶ ଭାଇଙ୍କଠାରେ । ଆପେ ଉପରେପଡ଼ି ଅନ୍ୟର ଅସୁବିଧା ବୁଝନ୍ତି । ଅନ୍ୟର ଅସୁବିଧା ଥିବାଯାଏଁ ତାଙ୍କର ବିଶ୍ରାମ ନାହିଁ । ଏଠି ଚାକିରି କରିବାକୁ ଯିଏ ଆସେ, ଅଫିସରଠାରୁ ଆରମ୍ଭ କରି ପିଅନଯାଏଁ, ସମସ୍ତଙ୍କୁ ସେ ଚିହ୍ନନ୍ତି । ସେ ଏଠାରେ ପୁରୁଣା ଲୋକ । ସେଦିନ କହୁଥିଲେ, ଜୀବନର ତିରିଶି ବର୍ଷ ଏଇଠି ତାଙ୍କର କଟିଲାଣି । କେବଳ ଚାରିବର୍ଷ ପାଇଁ ପଢ଼ିବାକୁ ସେ କଟକ ଯାଇଥିଲେ । ଆଉ ସବୁବେଳେ ଏଇଠି । ଏଇଠି ବାପା ଥିଲେ ସ୍କୁଲ୍ ମାଷ୍ଟର୍ । ଲୋକେ କୁଆଡ଼େ ତାଙ୍କ ଚେହେରାପାଇଁ ତାଙ୍କୁ ହାତୀବାବୁ ବୋଲି ଡାକୁଥିଲେ । ମଲାଯାଏଁ ତାଙ୍କର ହାତୀପରି ଦେହଥିଲା । ଶେଷ ଅବସ୍ଥାରେ ଗାଁ ଲୋକେ ଶଗଡ଼କରି ତାଙ୍କୁ କଟକ ଡାକ୍ତରଖାନା ନେଇଗଲେ । ଡାକ୍ତର କହିଲା, ରୋଗ ଖୁବ୍ ସାଂଘାତିକ । ଡାକ୍ତରଖାନାରେ ମାସେ ଖଣ୍ଡେ ରହିବାକୁ ପଡ଼ିବ । ଅତିଶୀଘ୍ର ଚିକିତ୍ସା ନ କଲେ ରୋଗୀ ବଞ୍ଚିବାର ଆଶା ନାହିଁ । ମାଷ୍ଟ୍ରେ ସବୁ ଶୁଣି ଟିକିଏ ହସିଲେ । ଡାକ୍ତରବାବୁଙ୍କ ପାଖରୁ ଆସି ସିଧା ଷ୍ଟେସନରେ ପହଞ୍ଚିଲେ । ପୁଅକୁ କହିଲେ, ମରିବି ତ ମରିବି, ଗାଆଁରେ ଭଲକରି ଖାଇ ପିଇ ନ ମରିବି କାହିଁକି ? ଗାଆଁରେ ସେ ଆସି ଆଉରି ଦୁଇବର୍ଷ ବଞ୍ଚିଲେ- ଚିକିତ୍ସାର ନାଁ ଗନ୍ଧ ନାହିଁ ।

ତାଙ୍କରି ପୁଅ ପ୍ରକାଶ । ଠିକ୍ ବାପାଙ୍କ ପରି ଚେହେରା । ବାହାରକୁ ଦେଖିଲେ ଜଣାଯାନ୍ତି ବେପରୱା- କିନ୍ତୁ ବେଶ୍ ହୁସିଆର ଲୋକ । ନିଜପାଇଁ ଯେତେ ନୁହନ୍ତି, ଅନ୍ୟପାଇଁ ତା'ଠାରୁ ବେଶି । ଏ ଅଞ୍ଚଳରେ ସବୁ କାମରେ ତାଙ୍କର ଅବଦାନ - ଯାତ୍ରାଠାରୁ ଆରମ୍ଭ କରି, ଜରୁରିକାଳୀନ ପରିସ୍ଥିତି ଘଟିଲେ ଦେଶରକ୍ଷା ପାଇଁ ଚାନ୍ଦା ଅସୁଲ ପର୍ଯ୍ୟନ୍ତ । ପିଲାଦିନୁ ଏମିତି ସେ ସବୁ କାମରେ ଆଗେଇ ଆସିଛନ୍ତି । ପ୍ରଶଂସା ବା ନିନ୍ଦା କ'ଣ ମିଳିଲା, ସେଥିପାଇଁ କେବେ ଖାତିର କରିନାହାନ୍ତି ।

ସେ କହୁଥିଲେ, ତାଙ୍କ ପିଲାଦିନ କଥା । ସେତେବେଳେ ରାଜାରାଜୁଡ଼ା ଯୁଗ । ଏ ଅଞ୍ଚଳ ବଣଜଙ୍ଗଲରେ ପୂର୍ଣ୍ଣ ଥିଲା । ଆଜି ଯେଉଁଠି ସିନେମା ହଲ୍ ହୋଇଛି, ସେଇବାଟେ ମହାବଳ ବାଘ ଏପାଖ ପାହାଡ଼ରୁ ଓହ୍ଲାଇ ସେପାଖ ପାହାଡ଼କୁ ବନ୍ଧୁ ସଂଖୋଳି ଯାଉଥିଲା । ଦିନେ ଗହ୍ଣା-ଡିଆଁ ପାଇଁ ସହରକୁ ପଇସା ମାଗିଗଲାବେଳେ ସେ ନିଜେ ଦେଖିଛନ୍ତି-ଏଇ ରାସ୍ତାରେ ତିନିଟା ମହାବଳ ବାଘ ଡେଇଁ ଡେଇଁ ଚାଲିଗଲେ ।

ସମୟ ବଦଳୁଛି ।

ଆଉ ସେ କାଳ ନାହିଁ-ଯେତେବେଳେ ରଜା ବେଠି ଲଗାଇ ପାହାଡ଼ ଉପରେ ଘର ତୋଳାଉଥିଲେ, ବିଳାସ କରିବାପାଇଁ । ରାଜାଙ୍କ ସଙ୍ଗେ ତାଙ୍କ ଖୋସାମତିଆ ଓ ପାଖଲୋକେ ବି ଦିନ ଦିନ ଧରି ପାହାଡ଼ ଉପରେ କଟାଉଥିଲେ । ଭୋଜି, ଯାତ୍ରା,

ସୁଆଙ୍ଗ । ପ୍ରକାଶ ଭାଇ କହନ୍ତି, ମଣିଷ କାନ୍ଧରେ ବସି ସେ ପିଲାଦିନେ କେତେଥର ପାହାଡ଼ ଉପରକୁ ଯାଇଛନ୍ତି । ଏବେ ରଜାଙ୍କ ରାଜୁତି ନାହିଁ, ପାହାଡ଼ ଉପରର ଘର ବି ଭାଙ୍ଗିଗଲାଣି ।

ପ୍ରକାଶ ଭାଇଙ୍କ ମନରେ କଷ୍ଟ ହୁଏ- ଆଉ ଜଙ୍ଗଲରେ ଜନ୍ତୁ ନାହାନ୍ତି ଶିକାର କରିବା ପାଇଁ । ବାଘ ତ ଦେଖିବା କଷ୍ଟ । ବହୁ କଷ୍ଟ କଲେ ଗୋଟିଏ ଦୁଇଟି କୁଟ୍ରା ବା ସମ୍ବର । ସରକାର ଏ ଜଙ୍ଗଲ ସବୁକୁ ସଂରକ୍ଷିତ ଘୋଷଣା କରିଛନ୍ତି । ଶିକାର କରିବାକୁ ଅନୁମତି ନାହିଁ । କେବଳ ଡକ୍ଟର ମହାନ୍ତି ବା ସାଧୁବାବୁ ଶିକାର କରିବାକୁ ଯାଆନ୍ତି । ସେମାନେ ପୁରୁଣା ଶିକାରୀ-ରଜା ଅମଳରୁ ଶିକାର କରି ଆସୁଛନ୍ତି । ସେମାନେ ଯାହା ଶିକାର ପାଆନ୍ତି, ସେମାନଙ୍କର ଅଧେ, ଫରେଷ୍ଟ ଅଫିସରଙ୍କ ଅଧେ । ଥରେ କୁଆଡେ ଜଣେ ନୂଆ ଫରେଷ୍ଟ ଅଫିସର ଆସିଥିଲେ । ଡକ୍ଟର ମହାନ୍ତିଙ୍କୁ ଶିକାର କରିବାକୁ ଅନୁମତି ଦେଲେ ନାହିଁ । ଡକ୍ଟର ମହାନ୍ତି ବଡ଼ ନମ୍ର ବ୍ୟକ୍ତି । ଅତି ଜନପ୍ରିୟ । ପାଖଆଖ ଗାଁମାନଙ୍କରେ ସେ ସମସ୍ତଙ୍କର ଜଣାଶୁଣା । ବିରାଟ ଅଞ୍ଚଳ ମଧ୍ୟରେ ସେ ଜଣେ ମାତ୍ର ଡାକ୍ତର । ତାଙ୍କ ମଧୁର ବ୍ୟବହାର ହେତୁ ଯାହାର ଯାହା ଅସୁବିଧା ହେଲେ, ସମସ୍ତେ ତାଙ୍କରି ପାଖକୁ ଆସନ୍ତି । କେବଳ ଫିସ୍‌ଟା ତାଙ୍କର ଚଢ଼ା-ଅନ୍ୟ ସବୁ ଭଲ ।

ଫରେଷ୍ଟ ଅଫିସର ଡକ୍ଟର ମହାନ୍ତିଙ୍କୁ ଶିକାର କରିବାକୁ ଅନୁମତି ଦେଲେ ନାହିଁ । ସେ ନୀରବରେ ଫେରି ଆସିଲେ । ତାର ଦୁଇ ସପ୍ତାହ ପରେ ନୂଆ ଫରେଷ୍ଟ ଅଫିସରଙ୍କର କଳାହାଣ୍ଡି ବଦଳି ଖବର ଆସିଲା । ପୁରୁଣା ଅଫିସରଙ୍କର ପୁଣି ସେଠି ପୋଷ୍ଟିଂ ହେଲା ।

ପ୍ରକାଶ ଭାଇ ଦୁଃଖ କରନ୍ତି, ଏ ଅଞ୍ଚଳର ରାସ୍ତା ଘାଟରେ ବାଘ, ଭାଲୁ ବୁଲୁଥିଲେ । ଶିକାର ଯାହାକୁ ଯେତେ । ଅଥଚ ଅବିକା ସାପଟିଏ ବି ଦେଖିବାକୁ ମିଳୁନାହାନ୍ତି ।

"ସାପଟାଏ ବି ମିଳୁନାହାନ୍ତି ?"ଶ୍ରୋତାମାନଙ୍କ ମଧ୍ୟରୁ କେହି ଜଣେ ପଚାରି ବସେ । ପ୍ରକାଶ ଭାଇ ନିଜ କଥା କହନ୍ତି, " ମୋ ନିଜ କଥା ଦେଖ । ସହରର ଶେଷ ମୁଣ୍ଡରେ ମୋ ଘର । ମୁଁ ଏଇ ଘରେ ଏତେ ବର୍ଷ ହେଲା ରହିଲିଣି । ଥରେ କି ଦୁଇଥର ଛାଡ଼ିଦେଲେ ସାପର ଦେଖାନାହିଁ ।"

ଅବିନାଶ ଭାବିଲା, କେଉଁଠି ଥିଲେ ତାର ଏଇ ବନ୍ଧୁମାନେ-ପାଣିଗ୍ରାହୀ ବାବୁ ଓ ପ୍ରକାଶ ଭାଇ । ସେ କେବେ କଳ୍ପନା କରିନଥିଲା ଯେ ସମୁଦ୍ର ଲହଡ଼ିର ଗର୍ଜନଠାରୁ ବହୁ ଦୂରରେ, ଏଠି ଏଇ ପାହାଡ଼ରେ ବସି, ସେ ଏଇ ନୂଆ ମଣିଷମାନଙ୍କ ସାଙ୍ଗେ ଗପ ଯୋଡ଼ିବ, ସତେ ଯେମିତି ସେମାନେ ତାର ଜ୍ଞାତିକୁଟୁମ୍ବ,-ସେ ଯେମିତି କୋଉ ବିଦେଶ ଭୂମିରେ କାମ କରୁଥିଲା, ନିଜ ଘରକୁ ଫେରିଛି କିମ୍ବା ସେ ଆସିଛି କୁଣିଆ ହୋଇ ଏଠିକି-ପୁଣି ଫେରିଯିବ । କୁଆଡ଼େ, ଜାଣେନା । ଏମିତି କେଉଁ ଅଜଣା ମୁଲକରେ ପହଞ୍ଚିବ । ବସ୍ ଉପରେ ବେଡିଂ ସୁଟ୍‌କେଶ୍ ରଖି କେଉଁ ଛୋଟିଆ ସହରରେ ପହଞ୍ଚିବ ।

ବାଟରେ ଛୋଟ ଛୋଟ ଗାଁ-ଯେଉଁମାନଙ୍କ ନାମ-ଫଳକମାନ ରାସ୍ତା କଡ଼େ କଡ଼େ ତାକୁ ସ୍ୱାଗତ ଜଣାଇବାକୁ ଠିଆ ହୋଇଥିବେ । ସେ ବସି ବସି ଅନାଉଥିବ ଆକାଶକୁ । ନିଛାଟିଆ ବାଟରେ ଠାଏଠାଏ ବାଟରେ କଣ୍ଡକ୍ଟର କଲିଂବେଲ୍ ଦେଲେ ବସ୍ ଅଟକିବ । କେତୋଟି ମିଞ୍ଜିମିଞ୍ଜି ଆଲୁଅ ବତୀ ଓ ଛୋଟିଆ ଦୋକାନ । ଦଳେ ଲୋକ ହାଉଜାଉ ପାଟି କରୁଥିବେ । ପ୍ରତି ଷ୍ଟେସନରେ ଓହ୍ଲାଇ ଯାଉଥିବେ ଦଳେ ଲୋକ, ଆଉ ଦଳେ ପଶି ଆସୁଥିବେ ଭିତରକୁ । ସବୁଠି ସେଇ ଅଧାଲଙ୍ଗଳା-ଭୋକିଲା ମଣିଷଙ୍କ ପଟୁଆର । ବସ୍ ଭିତରେ ସିଟ୍ ଥିଲେ ବି ସେମାନେ ଆସି ତଳେ ବସିବେ । ସେମାନଙ୍କ ଦେହରେ ମଇଳା ଓ ଝାଳ । ଅବିନାଶ ସେମାନଙ୍କୁ ଦେଖିଲେ ହିଁ ପକେଟରୁ ରୁମାଲ୍ ବାହାର କରେ । କାରଣ ସେ ସେମାନଙ୍କ ଅଫିସର । ସେମାନଙ୍କୁ ଜନ୍ମ ନିୟନ୍ତ୍ରଣ ଶିକ୍ଷା ଦେବା ପାଇଁ ସରକାର ତାକୁ ମୋଟା ଦରମାରେ ନିଯୁକ୍ତ କରିଛନ୍ତି ।

ଏବଂ ସେଇ ଅଧାଲଙ୍ଗଳା ଭୋକିଲା ମଣିଷମାନଙ୍କ ଭିତରେ ଯେଉଁମାନେ ସଫାସୁତରା, ପାଠ ପଢ଼ିଛନ୍ତି, ସେମାନଙ୍କ ସାଙ୍ଗେ ବନ୍ଧୁତା କରିବ ଅବିନାଶ । ଯେମିତି ପ୍ରକାଶ ଭାଇ ଓ ପାଣିଗ୍ରାହୀବାବୁଙ୍କ ସଙ୍ଗେ । ଅବିନାଶ ଭାବେ ଜୀବନଟା ପବନରେ ଭାସି ଯାଉଥିବା ଶିମୁଳି ତୂଳା ପରି । କେତେବେଳେ ପବନ କେଉଁ ଦିଗକୁ ବହିବ, କେହି ଜାଣେନା । କେଉଁଠା ମଣିଷ କେଉଁଠି ପହଞ୍ଚୁଛି, କାହାସଙ୍ଗେ ବନ୍ଧୁତା କରୁଛି, କାହା ସୁଖଦୁଃଖରେ ଜଣେ ହୋଇ ଠିଆ ହେଉଛି, ଭାବିଲେ - ଅଦ୍‌ଭୁତ ଲାଗେ । ବ୍ୟକ୍ତି ପକ୍ଷରେ ଯାହା, ଗୋଷ୍ଠୀ ପକ୍ଷରେ ସେଇଆ । ଇତିହାସରେ ତ ଲେଖା ଅଛି-ଏବ ପରି ଆଗେ ପୃଥିବୀର ସବୁଠି ମଣିଷଜାତି ନଥିଲେ । କେଉଁଠି କେଉଁ ହ୍ରଦ ବା ସମୁଦ୍ର କୂଳରେ, ସୃଷ୍ଟିର କେଉଁ ରହସ୍ୟମୟ ବିବର୍ତ୍ତନ ଫଳରେ, ଜନ୍ମ ହୋଇଥିଲେ ଜଣେ ପୁରୁଷ, ଜଣେ ନାରୀ, ସେମାନେ ସବୁ ମଣିଷଙ୍କ ବାପ ମାଆ । ସେମାନେ ସେମାନଙ୍କ ପିଲାଛୁଆଙ୍କୁ ଧରି ସଂସାର କରୁଥିଲେ । ବଂଶ ବଢ଼ିଲା । ତା'ପରେ କିଏ କୁଆଡ଼େ ଗଲା, ଖାଦ୍ୟ ସଂଗ୍ରହ କରିବାକୁ, ନୂଆ ଜମିର ସନ୍ଧାନ କରିବାକୁ । ସେମାନେ ଆଉ ଏକାଠି ହେଲେ ନାହିଁ । କିଏ କେଉଁଠି ନିଜପାଇଁ ଘର କରିନେଲେ,-ନିଜ ମାଟି ପାଇଁ, ନିଜ ଗୋଷ୍ଠୀପାଇଁ । ତା ପରେ କେତେ ଯୁଦ୍ଧ, କେତେ ପ୍ରାଣପାତ । ଭାଷା, ଧର୍ମ, ସଂସ୍କୃତି ନାମରେ କୃତ୍ରିମ ପାଚେରୀ ଗଢ଼ାଗଲା ମଣିଷ ମଣିଷ ଭିତରେ । ଯାହାର ଚମଡ଼ା ଗୋରା, ସେ କଳା ଲୋକଙ୍କୁ ଘୃଣା କଲା । ଯିଏ ବୁଦ୍ଧିଆ, ସେ ଅନ୍ୟମାନଙ୍କୁ ନିଜ କିଣା ଚାକର କରି କପାକ୍ଷେତରେ, ଧୂଆଁପତ୍ର କ୍ଷେତରେ ଦିନରାତି ଖଟାଇ ନିଜେ ବିଳାସ କଲା । ସେଥିପାଇଁ ପୁଣି ଭୋକିଲା ଲଙ୍ଗଳା ମଣିଷମାନଙ୍କର କେତେ ବିଦ୍ରୋହ, କେତେ ପ୍ରଳୟକାଣ୍ଡ ! ଯେଉଁ ଭୋକିଲା ମଣିଷମାନେ ନିଜ ରକ୍ତ ଢାଳି ନିଜ ମାଲିକ ପାଇଁ ଗଢ଼ିଥିଲେ ଆକାଶ ଉଚ୍ଚ ବିଳାସ ପ୍ରାସାଦ, ସେଇମାନେ ପୁଣି ପାଗଳପରି ସେଇ କୋଠାଘର ସବୁ ଭାଙ୍ଗି

ଚୁରମାର କରିଦେଲେ । ପୁଣି ଗଢ଼ାହେଲା ନୂଆ ଇତିହାସ । ମାଲିକକୁ ସିଂହାସନରୁ ଝିଙ୍କି ବାହାର କରି ଖଟିଖିଆ ଭୋକିଲା ମଣିଷ ସେଠି ବସିଲା; କିନ୍ତୁ ଆଶ୍ଚର୍ଯ୍ୟ ! ସେ ପୁଣି ବଦଳିଗଲା । ସେ ସିଂହାସନରେ ବସି ଭୁଲିଗଲା ତାର ଖଟିଖିଆ ଭାଇମାନଙ୍କୁ । ସେ ପୁଣି ତାର ମାଲିକମାନଙ୍କୁ ଅନୁକରଣ କଲା । ତାକୁ ଠେଲି ବାହାର କରିବାକୁ ପୁଣି ଆରମ୍ଭ ହେଲା ବିପ୍ଳବ ।

ଇତିହାସ ଏକ ବିରାଟ ଗୋଲକଧନ୍ଦା । ଅବିନାଶ ବହୁଥର ଚେଷ୍ଟା କରିଛି, ଖୋଜି ପାଇବାକୁ ସେଇ ବାଟ-ଯେଉଁ ବାଟେ ଗଲେ ମଣିଷ ତା ଲକ୍ଷ୍ୟ ସ୍ଥାନରେ ପହଞ୍ଚିବ । ହେଇ, ଲକ୍ଷ୍ୟ ସ୍ଥାନ ସଫା ଦେଖାଯାଉଛି, କିନ୍ତୁ ଯେଉଁ ରାସ୍ତାରେ ଗଲେ ବି ମଣିଷ ଯେଉଁଠୁ ଯାତ୍ରା ଆରମ୍ଭ କରିଥିଲା, ପୁଣି ସେଇଠି ପହଞ୍ଚି ଯାଉଛି । ଆଉ ଗୋଟିଏ ରାସ୍ତାରେ ସେ ଆରମ୍ଭ କରୁଛି ଯାତ୍ରା; କିନ୍ତୁ ପୁଣି ସେଇ ଅବସ୍ଥା । ଏହାହିଁ ମଣିଷ ଜାତିର ଇତିହାସ । ଏମିତି ଚକାଭଉଁରି ଖେଳିବା ହିଁ ମଣିଷ ସଭ୍ୟତାର ବିବର୍ତ୍ତନ ।

ତେଣୁ ବସ୍‌ରେ, ଟ୍ରେନ୍‌ରେ ଗଲାବେଳେ, ଅଫିସରେ କାମ କଲାବେଳେ, ଏଇ ମଣିଷମାନଙ୍କ କଥା ଭାବେ ଅବିନାଶ । ଭାବେ, ସବୁ ଯୁଗରେ କାହିଁକି ଏହିପରି ଦଳେ ମଣିଷ ଅନ୍ୟମାନଙ୍କ ବିଧା ଗୋଇଠା ଖାଇବା ପାଇଁ ପିଠି ପତାଉଛନ୍ତି ! ଏମାନଙ୍କ ପାଇଁ କେତେ ମନୀଷୀ ସ୍ୱର ଉଠାଇଛନ୍ତି- "ଶୃଣ୍ୱନ୍ତୁ ସର୍ବେ ଅମୃତସ୍ୟ ପୁତ୍ରାଃ"- ଦରିଦ୍ରମାନେ ହିଁ ଈଶ୍ୱରଙ୍କ ରାଜ୍ୟରେ ପ୍ରବେଶ କରିବେ-ଜାଗିଉଠ, ସାରା ପୃଥିବୀର ଶ୍ରମିକ ଭାଇମାନେ ! ଶୃଙ୍ଖଳ ଛିନ୍ନ କର । ଏକଜୁଟ୍ ହୁଅ ! !

ଏମିତି କେତେ ବାଣୀ ଇତିହାସର ପୃଷ୍ଠାରେ ପୃଷ୍ଠାରେ ଝଂକୃତ ହୋଇଉଠିଛି । ଏଇ ମଣିଷମାନଙ୍କ ପାଇଁ ଦାବୀ ଉଠାଇ କିଏ ନିଆଁରେ ସିଝି ମରିଛି, କ୍ରୁଶ୍ କାଠରେ ହସିହସି ଝୁଲିଛି, ବିଷ ପାତ୍ରରୁ ପିଇ ଯାଇଛି ହଳାହଳ । ଆଉ କିଏ, ଲୋକଲୋଚନ ଅନ୍ତରାଳରେ, ଅନ୍ଧାର କାରାଗାରରେ ସଢ଼ି ସଢ଼ି ମାଟିରେ ମିଶିଯାଇଛି । ତଥାପି ଏଇ ଭୋକିଲା ମଣିଷ ଭୋକିଲା ହିଁ ରହିଛି । ମୁଣ୍ଡରେ କଣ୍ଟାର ମୁକୁଟ ପିନ୍ଧି, ବଳି ପାଇଁ ଉଦ୍ଦିଷ୍ଟ ମେଷ ପରି, ସେ ନୀରବରେ ଚାଲିଛି-ବଧ ସ୍ଥାନକୁ ।

ଏଇ ତ ଇତିହାସ ଖଟିଖିଆ ମଣିଷର । ଅବିନାଶ ଅର୍ଥନୀତି ବା ରାଜନୀତି ପଢ଼ିନାହିଁ । ସେ ସବୁରେ ତାର ଭରସା ନାହିଁ । ବହୁ ଚେଷ୍ଟା କରି ବି ସମାଜବାଦର ଅର୍ଥ ସେ ଏଯାଏଁ ବୁଝି ପାରିଲା ନାହିଁ । ସେ ଦେଖୁଛି-ଯିଏ ଉପରେ ଅଛି, ସେ ତଳକୁ ଓହ୍ଲାଇ ନାହିଁ; ଉପରେ ଠିଆ ହୋଇ ତଳ ଲୋକକୁ ଡାକୁଛି- "ହେ ଭାଇ, ମୁଁ ଦଉଡ଼ି ପକାଉଛି । ତୁ ଏଇ ଦଉଡ଼ିକୁ ଧରି ଉପରକୁ ଉଠିଆ"; କିନ୍ତୁ ତଳଲୋକ ହାତ ବଢ଼ାଇ ଧରିପାରୁନାହିଁ । ଦଉଡ଼ିଟା ଛୋଟ । ସେ ତଳେ ଠିଆ ହୋଇ ଉପରକୁ ଅନାଉଛି ।

ସମାଜବାଦ କହିଲେ ଅବିନାଶ ଏହାହିଁ ବୁଝେ । ଏକ ସୁଖୀ ସମାଜ ଗଢ଼ିବା

ପାଇଁ ସରକାର ତାକୁ ନିଯୁକ୍ତ କରିଛନ୍ତି । ସେ ମୂର୍ଖ ଗାଁ ଲୋକଙ୍କୁ ଉପଦେଶ ଦେଉଛି- ଦେଖ ଭାଇମାନେ ! ନିକଟବର୍ତ୍ତୀ ଡାକ୍ତରଖାନାକୁ ଯାଇ ଡାକ୍ତରଙ୍କ ପରାମର୍ଶ ନିଅ । ଦୁଇଟି ସନ୍ତାନ ଯଥେଷ୍ଟ । ଅଳ୍ପ ସନ୍ତାନ ଜନ୍ମ ହେଲେ ବଞ୍ଚି ରହିବାର ମାନ ବଢ଼ିବ । ଦେଶର ଉତ୍ପାଦନ ସମାନ ଭାବରେ ସମସ୍ତଙ୍କ ମଧ୍ୟରେ ବାଣ୍ଟି ହୋଇଯିବ । ପ୍ରତିଷ୍ଠା ହେବ ସମାଜବାଦ ।

ଗାଁ ଲୋକେ ବୁଝନ୍ତୁ କି ନାହିଁ, ଅବିନାଶକୁ ବୁଝାଇବାକୁ ହିଁ ହେବ ! କାରଣ ସେ ଚାକିରୀ କରିଛି । ସେ ଯାହା ବୁଝାଉଛି, ସେଥିରେ ତାର ନିଜର ଭରସା ନାହିଁ । ତେଣୁ ଫାଇଲ୍ କାମ କଲାବେଳେ ସେ ଯାହା ଭାବୁଛି, ଫାଇଲ୍‌ରେ ତାହା କିନ୍ତୁ ଲେଖୁନାହିଁ । ନିଜ ଭିତରେ ନିଜେ ସେ ଯେମିତି ଦୁଇଫାଳ, ଜହ୍ନର ଦୁଇ ପାଖ ପରି । ଗୋଟିଏ ଫାଳ ସେ ସମସ୍ତଙ୍କୁ ଦେଖାଉଛି-ଆଉ ଅନ୍ୟ ଫାଳଟିକୁ ଅନ୍ୟମାନଙ୍କଠାରୁ ଛପାଇ ରଖିଛି । ତେଣୁ ସେ ଜଣେ ନୁହେଁ, ଦୁଇ ଜଣ ।

ଅବିନାଶ ପାହାଡ଼ରୁ ଓହ୍ଲାଇ ସହର ଅଭିମୁଖେ ଚାଲିଛି । ଅନ୍ୟ ବନ୍ଧୁମାନେ ଚାଲିଗଲେଣି । ପୁରୁଣା ସହରରେ ସେମାନଙ୍କର ଘର । ଅବିନାଶ ରହୁଛି ନୂଆ ସହରରେ । ପୁରୁଣା ସହରକୁ ସେ ବେଳେବେଳେ ବୁଲିଆସେ, କେତେବେଳେ ଏକା, କେତେବେଳେ ବନ୍ଧୁମାନଙ୍କ ମେଳରେ । କଚ୍ଚା ରାସ୍ତା ଦୁଇ ପାଖେ ଦୁଇ ଧାଡ଼ି ଚାଳଘର । ଚାଳଘରମାନଙ୍କ ଗହଣରେ, ଗୋଟିଏ ଗୋଟିଏ କୋଠାଘର-ଦରିଦ୍ରମାନଙ୍କ ମେଳରେ ସାମାନ୍ୟ ଧନ ଥିବା ଲୋକ ପରି । ଦୁଇ ପାଖେ ପାହାଡ଼-ପାହାଡ଼ର ପାଦ ଦେଶରେ ଉଞ୍ଚା ଉଞ୍ଚା ଦେବଦାରୁ ଗଛମାନେ ଠିଆ ହୋଇଛନ୍ତି ଅଶରୀରୀର ଛାଇ ପରି । ଏ ପୁରୁଣା ସହର କେତେ ରାଜାଙ୍କ ରାଜତ୍ୱ ଓ ଅତ୍ୟାଚାର କାହାଣୀ ଧରି ବଞ୍ଚିରହିଛି । ପାହାଡ଼ ଉପରୁ ବର୍ଷା ପାଣି ଗଡ଼ିଗଲା ପରି, ଏହାରି ଉପରେ ଗଡ଼ିଯାଇଛି କେତେ ସଂସ୍କୃତି ଓ ଇତିହାସର ସ୍ରୋତ ।

ଅବିନାଶ ଭାବିଲା, ତା ଜାତିର ଇତିହାସ ଲେଖକ ପାଇଁ ଏଇଭଳି ପୁରୁଣା ଜନପଦମାନ ହିଁ ଗବେଷଣାର ସାମଗ୍ରୀ । ହେଇ, ସେଠି ଯେଉଁ ଲୋକଟା ମିଞ୍ଜି ମିଞ୍ଜି ଆଲୁଅ ପାଖରେ ବସି ଚିନାବାଦାମ ବିକୁଚି-ଯାହା ଦେହ ଦେଖାଯାଉଚି ଚମଡ଼ାର କୋଥଳିରେ ସଞ୍ଚିତ ଗୁଡ଼ାଏ ହାଡ଼ ପରି-ସେଇ'ତ ଇତିହାସର ଶ୍ରେଷ୍ଠ ଉପାଦାନ । ତା'ଠାରୁ କିଏ ଅଧିକ ଜାଣେ ଏ ଦେଶର ଭୋକ, ରୋଗ ଓ ଦୁଃଖର କାହାଣୀ !

ଅବିନାଶର ସେମାନଙ୍କ ପ୍ରତି ଦୟା ହେଲା । ବତୀଖୁଣ୍ଟ ଆଲୁଅରେ ସେ ନିଜ ଦେହକୁ ଅନାଇଲା-ନୂଆ ଟେରିଲିନ୍ ସାର୍ଟ୍ ଓ ଟେରିକଟ୍ ପ୍ୟାଣ୍ଟ୍ । ପଏଣ୍ଟେଡ୍ ଶୁ । ବେଶ୍ ସ୍ମାର୍ଟ୍ ଦେଖାଯାଉଛି ସେ । ରୁମାଲ୍‌ରେ ବେକ ପୋଛିଲା । ରୁମାଲ୍‌ଟାକୁ ଚଉଡି କଲର୍ ତଳେ ବେକ ଉପରେ ରଖିଲା । ତାକୁ ଆଶ୍ୱସ୍ତ ଲାଗିଲା ଯେ, ସେ ସେମାନଙ୍କ ଭିତରୁ ଜଣେ ନୁହେଁ; କିନ୍ତୁ ପର ମୁହୂର୍ତ୍ତରେ ତାକୁ ଜଣାଗଲା, କ'ଣ ଗୋଟାଏ ଯେମିତି ତଣ୍ଟିରେ ଅଟକିଚି, ତାକୁ ଅସୁସ୍ଥ ଲାଗୁଛି । ରାସ୍ତା କଡ଼ର ଅନ୍ଧାରରେ ଧଳା ଧଳା ଦାନ୍ତ ଦେଖାଇ ତାକୁ

ଯେମିତି କିଏ ଥଟ୍ଟା କରୁଚି । କହୁଚି-ଅବିନାଶ ତୁ ଏଇ ଦୁନିଆକୁ ଫାଙ୍କି ଦେଇ ପାରିବୁ ? ଟେରିଲିନ୍ ଟେରିକଟ୍ ପିନ୍ଧି ଦୁନିଆରେ ନିଜକୁ ଆରିଷ୍ଟୋକ୍ରାଟ୍ ବୋଲି ପରିଚୟ ଦେଇ ପାରିବୁ ? କହିପାରିବୁ, ତୁ ଧନୀ ଘରେ ଜନ୍ମ ହୋଇଛୁ, ଜନ୍ମରୁ ତୋ ମୁହଁରେ ରୂପାର ଚାମୁଚ ଲାଗିଛି । କିନ୍ତୁ ତୁ କ'ଣ ମୋତେ ଫାଙ୍କିପାରିବୁ ଅବିନାଶ ? ମୁଁ ପରା ତୋର ଅତୀତ !!

ଅବିନାଶ ଜୋରରେ ପାଦ ପକେଇଲା । ପୁରୁଣା ସହର ଶେଷ ହେଲା । ମଝିରେ ଅଧ ମାଇଲିଏ ରାସ୍ତା । ତା ପରେ ନୂଆ ସହରର ହଳଦିଆ କୋଠାଘର ସବୁ । ଏଇ ଅଧ ମାଇଲ୍ ରାସ୍ତା ଅନ୍ଧାରୁଆ ଓ ସେଇ ଅନ୍ଧାରରେ ଦାନ୍ତ ଦେଖାଇ କିଏ ଗପି ଯାଉଚି-ମୋତେ ଭୁଲିପାରିବୁ ଅବିନାଶ ? ମୁଁ ସବୁବେଳେ ତୋ ପଛେ ପଛେ ଗୋଡ଼ାଇଥିବି । ତୁ ମତେ ଭୁଲିଗଲେ ବି ମୁଁ ତତେ ଛାଡ଼ି କୁଆଡ଼େ ଯାଇପାରିବି ନାହିଁ । ତୋର ନିଶ୍ଚୟ ମନେ ଥିବ, ତୁ ଯେତେବେଳେ ସେଇ ପୁରୁଣା ଅପରିଷ୍କାର ମଳିନ ମାଟି ଘରେ ଦୁଇ ଅଣାର ଜଳଖିଆ ଖାଇ ରାତି ପରେ ରାତି କଟାଉଥିଲୁ, ସେତେବେଳେ କବାଟ କଣରେ ମୁଇଁ ତୋ ପାଖରେ ବସି ରହୁଥିଲି । ଶୀତ ରାତିରେ ତୁ ସନ୍ତରା ମଶିଣା ଘୋଡ଼ି ହୋଇ ଶୋଇଚୁ, ମୁଁ ଦେଖିଚି । ବର୍ଷା ଦିନେ ଚାଳ ଉପରୁ ଗଳ ଗଳ ପାଣି ତୋ ଉପରେ ପଡ଼ିଚି, ମୁଁ ଦେଖିଚି । ତୋ ମେଲା ଘର ଭିତରୁ ସାପ ବାହାରିଚି, କୁକୁର ପଲ ପଶି ଆସିଛନ୍ତି ତୋ ଘର ଭିତରକୁ । ଭଙ୍ଗା ଦୁଆର ମରାମତି କରି ନପାରିବାରୁ ତୋ ଶେଯ ଉପରେ ଆସି କୁକୁର ଶୋଇଚି ନିଶ୍ଚିନ୍ତରେ,-ମୁଁ ଦେଖିଚି । ତୋର ସେଇ ଦୁଃସମୟରେ କିଏ ଥିଲା ତୋ ପାଖେ, ମୋ ଛଡ଼ା ? ତୋ ବାପା କେଉଁ ଦୋକାନ ଘରେ, କେଉଁ ଠାକୁରାଣୀ ଦେଉଳ ପିଣ୍ଡାରେ ଶୋଇ ରାତି କଟାଇଛନ୍ତି । ଆଜି ତୋର ଯେଉଁ ବନ୍ଧୁମାନେ ତୋତେ ପ୍ରଶଂସା କରୁଛନ୍ତି, ସେମାନେ ସେଦିନ ତୋତେ ପଚାରିନାହାନ୍ତି । ତୋର ସବୁ ଦୁଃଖରେ ସବୁ ଦୁର୍ଦ୍ଦିନରେ ମୁଁ ତୋ ପାଖେ ପାଖେ ରହିଆସିଚି । ତୁ ମତେ ଭୁଲିପାରିବୁ ?

ଅବିନାଶର କାନମୁଣ୍ଡା ଭାଁ ଭାଁ ଲାଗିଲା । ତାକୁ ଜଣାଗଲା, ସବୁବେଳେ ଯେମିତି କେହି ଜଣେ ତାର ପିଛା ଧରିଛି । କିନ୍ତୁ କାହିଁକି ? ଏମିତି ଅନ୍ଧାର ରାତିରେ ମଣିଷ ରୂପ ଧରି କାହିଁକି ତା ଅତୀତ ଆସି ତା ପାଖରେ ଠିଆ ହେଉଛି, ପେଟ ଖାଙ୍କି, ହାତ ପତାଇ ! କହୁଚି-ଅବିନାଶ, ମୁଁ ଭୋକିଲା । ଦୂରକରି ପାରିବୁ ମୋର ଭୋକ ?

ନା-ଅବିନାଶ ପାରିନାହିଁ, ପାରିବ ନାହିଁ । ସେ ଭୋକିଲା ଛାଇଟି ସବୁବେଳେ ତା ପଛେ ପଛେ ଗୋଡ଼ାଇଛି । ଆଲୁଅରେ ସେ ଲୁଚି ଯାଉଛି କୁଆଡ଼େ; କିନ୍ତୁ ଅନ୍ଧାର ଭିତରୁ ପୁଣି ଢାଇଁଉଠୁଚି ।

ଅବିନାଶର ଧାଇଁବାକୁ ଇଚ୍ଛା ହେଲା । ତାକୁ ଜଣା ପଡ଼ିଲା, ଯେମିତି ତା ପଛେ ପଛେ ଭୋକିଲା ମଣିଷଙ୍କର ଗୋଟିଏ ପଟୁଆର ଛୁଟିଛି ଓ ପଟୁଆରର ପ୍ରତ୍ୟେକେ ଅବିନାଶର

ପରିଚିତ । ପଟୁଆର ଆଗରେ ଗୋଟିଏ ବୁଢ଼ା ଛୋଟେଇ ଛୋଟେଇ ଟିଣ ଡବାଟିଏ ଧରି ଅବିନାଶ ଆଡ଼କୁ ଆସୁଚି । କ୍ରମେ ସେ ଦେହ ପାଖକୁ ଲାଗି ଆସିଲାଣି ଓ ତା ହାତ ପ୍ରସାରିତ ହୋଇ ଆସୁଚି ଅବିନାଶ ଆଡ଼େ । ହେଇ, ଟିଣ ଡବାଟି ପ୍ରାୟ ଅବିନାଶ ଆଖି ଆଗରେ ସେ ଧରି ରଖିଚି । ପଇସା-ସେ ପଇସା ଚାହେଁ ।

ଖୁବ୍ ପିଲାଦିନୁ ଅବିନାଶ ଚିହ୍ନିଚି ଏ ବୁଢ଼ାକୁ । ନିମ୍ନ ପ୍ରାଇମେରୀ ସ୍କୁଲ୍‌ରେ ପଢ଼ିଲାବେଳେ ଦିନେ ସେ ତାକୁ ଦେଖିଲା-ମ୍ୟୁନିସିପାଲିଟି ମାର୍କେଟର କାନ୍ଥକୁ ଆଉଜି ବସି ନଳାପାଣିରେ ଭାସି ଯାଉଥିବା ଗୋଟି ଗୋଟି ଭାତ ଖାଇବାରେ ବୁଢ଼ା ବ୍ୟସ୍ତ ଥିଲାବେଳେ ତା'ର ପିନ୍ଧିଥିବା ଛିଣ୍ଡାଲୁଗାର ଗନ୍ଧ ଓ ବର୍ଣ୍ଣ ଥିଲା ଠିକ୍ ନଳାପାଣି ପରି । ବୁଢ଼ା ଦେହକୁ ଘଷି ହୋଇ ଦୁଇ ତିନୋଟି ରୋଗଣା କୁକୁର-କାମୁଡ଼ା କାମୁଡ଼ି ହେଉଥିଲେ ।

ଶିଶୁ ଅବିନାଶ ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଲା । କିଛି ସମୟ ପରେ ବୁଢ଼ାର ଦୃଷ୍ଟି ପଡ଼ିଲା ଅବିନାଶ ଆଡ଼େ । ବୁଢ଼ା ତା'ର ଟିଣ ଡବାଟି ଉପରକୁ ଉଠାଇ ଧରିଲା ଓ ଅବିନାଶ ବାପାଙ୍କଠାରୁ ଏଇ ମାତ୍ର ପାଇଥିବା କେତୋଟି ମୁଦ୍ରା ଅବିଚଳିତ ଭାବରେ ସେଇ ଟିଣ ଡବାରେ ପକାଇଦେଲା ।

ସେଇ ଦିନଠାରୁ କ୍ରମାଗତ ଭାବରେ କେତେଦିନଯାଏଁ ଅବିନାଶ ସେ ବୁଢ଼ାକୁ ଏମିତି ପଇସା ଦେଇଥିଲା । ତା'ପରେ ଖରାଛୁଟିରେ ସେ ମାମୁଁ ଗାଁଆରୁ ଆସି ପକେଟରେ କେତୋଟି ପଇସା ନେଇ ମାର୍କେଟ ପାଖକୁ ଗଲାବେଳକୁ ଆଉ ସେ ବୁଢ଼ା ନଥିଲା । ଯୋଉଠି ସେ ବସୁଥିଲା, ସେ ସ୍ଥାନଟି ବେଶ୍ ସଫାସୁତୁରା ହୋଇ ସେଠି ଗୋଟିଏ ନୂଆ ଖିଲିପାନ ଦୋକାନ ଖୋଲା ଯାଇଥିଲା ।

ଆଉ ସେ କରେ ଧାଡ଼ି ଧାଡ଼ି ଦେବଦାରୁ ଗଛ ଉହାଡରେ ଚାଲିଛି ଗୋଟିଏ ଏକଗୋଡ଼ିଆ ମଣିଷ, ବାଡ଼ିରେ ଭରାଦେଇ । ଅବିନାଶ ତାକୁ ଏମିତି କେବେଠୁ ଦେଖି ଆସିଚି, ଜାଣେନା । ସମୁଦ୍ର କୂଳରେ ବହୁ ନୀରବ ସୂର୍ଯ୍ୟାସ୍ତକୁ କେମିତି କରୁଣ ଓ ହୃଦୟ ବିଦାରକ କରିଛି ଏଇ ଏକଗୋଡ଼ିଆ ମଣିଷଟି ! ସମୁଦ୍ର କୂଳରେ ଜମା ହୋଇଥିବା ବହୁ ଦେଶୀ-ବିଦେଶୀ ମଣିଷଙ୍କ ଭିଡ଼ରେ, ଗୋଟିଏ ଅଶୁଭ କଳାଛାଇ ପରି, ଏଇ ଏକ ଗୋଡ଼ିଆ ଲୋକଟି ଡେଇଁ ଡେଇଁ ଚାଲିଥାଏ-ତା'ର ବି ପଇସା ଦରକାର । ସେ ବି ବଞ୍ଚିବାକୁ ଚାହେଁ-ଯେମିତି ଚାହାନ୍ତି ସମୁଦ୍ରକୂଳକୁ ଜଳବାୟୁ ପରିବର୍ତ୍ତନରେ ଆସିଥିବା ବହୁ ବିଦେଶୀ ମଣିଷ । ସମୁଦ୍ର କୂଳରେ ଏତେ ହସ ଏତେ ଆନନ୍ଦର ହରିଲୁଟ୍ ହେଉଥିବାବେଳେ ସେଥିରୁ କାଣିଚାଏ ପାଇବା ପାଇଁ ନୀରବରେ ଡେଇଁ ଡେଇଁ ସେ ଚାଲିଥାଏ ।

ପୁରୁଣା ସହର ଓ ନୂଆ ସହର ମଝିରେ ସେଇ ଅଧ ମାଇଲିଏ ଅନ୍ଧାରୁଆ ରାସ୍ତା ଉପରେ ଚାଲିଥିଲାବେଳେ ଅବିନାଶ କେତେବେଳେ ପହଞ୍ଚି ସାରିଥିଲା "ସମୁଦ୍ର କୂଳେ-ସମୁଦ୍ର ଢେଉ କୋଳୁଛି ଅନ୍ଧାରରେ-କେଉଁ ଅବ୍ୟକ୍ତ ଦୁଃଖ ରୂପ ପାଉଛି ତା କାନ୍ଦଣାରେ- ।

ସମୁଦ୍ରକୂଳେ ବସି ବସି କେତେ ସୂର୍ଯ୍ୟୋଦୟ କେତେ ସୂର୍ଯ୍ୟାସ୍ତରେ ଅବିନାଶ ଅନୁଭବ କରୁଛି-ସମୁଦ୍ର ଯେମିତି ତା'ରି ନିଜ ହୃଦୟ-ନିଜକୁ ପ୍ରକାଶ କରିବାକୁ ଅକ୍ଷମ, ଖାଲି ଯାହା ବେଦନାରେ ଫୁଲି ଉଠି କୂଳରେ ଢେଉ କଚାଡୁଛି । ଆଗରେ, ନୂଆ ସହରର ଆଲୁଅ ରୋଷଣି ଭିତରେ, ଚାଲିଛନ୍ତି ବହୁ ମଣିଷ-ସେମାନେ ଯେମିତି ସମୁଦ୍ର କୂଳେ କୂଳେ ବୁଲୁଛନ୍ତି ହାୱା ଖାଇ । ଅବିନାଶ ସେମାନଙ୍କଠାରୁ ନିଜକୁ ଦୂରେଇ ନେଇଛି । ହେଇ, ସେ ସ୍ୱର୍ଗଦ୍ୱାରରେ ପହଞ୍ଚିଲା । ସେପାଖେ ହୁତ୍ ହୁତ୍ ହୋଇ ନିଆଁ ଜଳୁଛି । ନିଆଁକୁ ଅନାଇ ପାଞ୍ଚ ଛଅଟି ମଣିଷ ଚୁପ୍‌ଚାପ୍ ବସିଛନ୍ତି । ଦେଖୁଛନ୍ତି, କେମିତି ଜଳି ଯାଉଛି ମଲା ଦେହଟାଏ ଓ ତା ସଙ୍ଗେ ଗୋଟିଏ ଜୀବନର ହସ ଓ ଲୁହ, ରକ୍ତ ଓ ସିନ୍ଦୂର । ଅବିନାଶ ସ୍ୱର୍ଗଦ୍ୱାର ଡେଇଁଲା । ଦଳ ଦଳ ସ୍ତ୍ରୀ ଲୋକ ହାତରେ ନଡ଼ିଆ କଷି ଓ ଫୁଲ ଧରି ଆସୁଛନ୍ତି । ସମୁଦ୍ର ଦେବତାଙ୍କୁ ସେମାନେ ପୂଜା କରିବେ । ଅବିନାଶ ଆଉ ଆଗେଇ ପାରୁନାହିଁ-ନାକରେ ରୁମାଲ୍ ଦେଉଛି । କାହିଁକି ଏପଟେ ଆସିଲା ବୋଲି ଅନୁତାପ କରୁଛି । ରାସ୍ତାର ଦୁଇପାଖେ ସେ ଦେଖୁଛି, ମଇଳା କନା ଖଣ୍ଡିଏ ଖଣ୍ଡିଏ ଆଗରେ ପକାଇ ଧାଡ଼ି ଧାଡ଼ି ଭିକମଗା ବସିଛନ୍ତି । ସେମାନେ ସେମାନଙ୍କ ଆଙ୍ଗୁଠି ନଥିବା ହାତ ସବୁ ଉପରକୁ ଟେକି 'ହେ ମା' 'ହେ ମା' ଚିତ୍କାର କରୁଛନ୍ତି । କେହି ଯାତ୍ରୀ ସେମାନଙ୍କୁ ଲକ୍ଷ୍ୟ କରି ମୁଠାଏ ଚାଉଳ ବା ଗୋଟିଏ ପଇସା ଫିଙ୍ଗୁଛି । ସେମାନଙ୍କ ସ୍ୱର କମୁନାହିଁ । ସେମାନେ ତୁହାଇ ତୁହାଇ ସେମାନଙ୍କର ବ୍ୟାଧି ଓ ଦାରିଦ୍ର୍ୟର ଦୁହାଇ ଦେଇ ସାହାଯ୍ୟ ଭିକ୍ଷା କରୁଛନ୍ତି । ଅବିନାଶ ଖୁବ୍ ଜୋର୍‌ରେ ପାଦ ପକାଉଛି-ଦୁଇ କାନକୁ ହାତ ପାପୁଲିରେ ଚାପି ଧରୁଛି । ତଥାପି ରକ୍ଷା ନାହିଁ । ଯେଉଁ ଆଡ଼େ ଅନାଇଲେ ସେଇ ଭିକମଗା ଦଳ ଓ ସେମାନଙ୍କ ଆଗରେ ମଇଳା ଛିଣ୍ଡାକନା ସବୁ । ଲକ୍ଷ ଲକ୍ଷ ଆଙ୍ଗୁଠିହୀନ ହାତ ଅବିନାଶ ଆଡ଼କୁ ମାଡ଼ି ଆସୁଛି । ସେମାନେ ଯେମିତି ଅବିନାଶର ତଣ୍ଟି ଚିପି ଦେବେ-ସେମାନଙ୍କ ବ୍ୟାଧି ଓ ଦାରିଦ୍ର୍ୟ ପାଇଁ ଅବିନାଶ ହିଁ ଯେମିତି ଦାୟୀ ! ସେ ସେମାନଙ୍କଠାରୁ ନିଜକୁ ବଞ୍ଚାଇବାକୁ ଚାହେଁ । ତା' ବେକ ପାଖରୁ ଝାଳ ଫିଟି ପଡୁଛି-ତାକୁ ଅସୁସ୍ଥ ଲାଗୁଛି । ଲକ୍ଷ ଲକ୍ଷ ରୋଗ ଜୀବାଣୁ ଯେମିତି ତା ଦେହସାରା ଚରିଯାଉଛନ୍ତି-ତା ଫୁସ୍‌ଫୁସଟାକୁ ସେମାନେ ଯେମିତି ଖାଇ ନିଃଶେଷ କରି ଦେଉଛନ୍ତି । ଅବିନାଶକୁ ଶୋଷ ହେଉଛି । ପାଣି ଟୋପାଏ କୁଆଡ଼େ ମିଳୁନି । ଉଦୁଉଦିଆ ଖରାବେଳ । ସେ ଧାଇଁଛି-ଧାଇଁଛି-ତା ପଛରେ ଧାଇଁଛନ୍ତି ଲକ୍ଷ ଲକ୍ଷ ଭିକମଗା, ରୋଗଣା କୁକୁର-ତା ସାମ୍‌ନାରେ ହୁତ୍ ହୁତ୍ ନିଆଁ ଜଳୁଛି, ଶବ ପୋଡ଼ା ହେଉଛି-ଚିତା ନିଆଁକୁ ଅନାଇ ଚୁପ୍‌ଚାପ୍ ବସିଛନ୍ତି ପାଞ୍ଚ ଛଅଟି ମଣିଷ । କୁଆଡ଼େ ରାସ୍ତା ନାହିଁ-ସେପାଖୁ ନରକର କଳାପାଣି ପରି ମାଡ଼ି ଆସୁଛି ସମୁଦ୍ର-ଏ ପାଖୁ ଲକ୍ଷ ଲକ୍ଷ ଆଙ୍ଗୁଠିହୀନ ହାତ- ! ! ! ତା ପାଦ ତଳେ ଯେମିତି ଭୂଇଁ ନାହିଁ-ସେ ଖାଲି ଶୂନ୍ୟରେ ଝୁଲୁଚି !

ସୁନ୍ଦର ସକାଳ । ଧାଡ଼ି ଧାଡ଼ି ଶାଗୁଆ ପାହାଡ଼ର ସୀମାରେଖା କ୍ରମେ ସ୍ପଷ୍ଟ ହୋଇଆସୁଛି । ସୂର୍ଯ୍ୟ ଉଇଁନାହିଁ । ପାହାଡ଼-ଶ୍ରେଣୀର ଦେହରେ ଘଷିହୋଇ ଭାସି ଚାଲୁଛନ୍ତି ଅସୁମାରି ମେଘ । ଅବିନାଶ ପ୍ରାତଃ-ଭ୍ରମଣରେ ବାହାରିଛି ।

ଏଠି ଏତେ ମୁକ୍ତ ପବନ ଓ ଆଲୋକ-କୁଆଡ଼େ ଥିଲା ସେ ଆଜି ଯାଏଁ, କେଉଁଠି ପଡ଼ିରହିଥିଲା ଅନ୍ଧାରରେ ଗୋଡ଼ହାତ ଜାକିଜୁକି । ସେ ଯେମିତି ଏଇ ଆକାଶରେ ଉଡୁଥିବା ଚଢ଼େଇ ପଲ ସଙ୍ଗେ ମିଶି  ଉଡ଼ିଯିବ ସେଇ ଭାସମାନ ମେଘମାନଙ୍କ ମେଳରେ ଦୋଳି ଖେଳିବାକୁ, ହଜିଯିବ ଦୂରରେ ଧୂଆଁଳିଆ ଜଙ୍ଗଲ ସନ୍ଧିରେ କେଉଁଠି । ଆକାଶର ମେଘମାନେ ଶଙ୍ଖ ମଲ୍ ମଲ୍ ପାହାଚ ପରି-ସେଇ ସବୁ ପାହାଚ ଡେଇଁ ଡେଇଁ ଗଲେ କିଏ ଜାଣେ କେଉଁ ରାଇଜରେ ପହଞ୍ଚିବ ସେ-ସେଠି ଥିବ କି ନଥିବ ମଣିମୁକ୍ତାର ଦେଶ- । ଆଇ ବୁଢ଼ୀର କଳ୍ପନାର ରାଇଜ ସେ ସବୁ-ରଜାପୁଅ, ରଜାଝିଅ, ବୁଢ଼ୀ ଅସୁରୁଣୀର ଦେଶ । ବୟସର ଶୁଷ୍କ ଝାଞ୍ଜିରେ କଳ୍ପନାର ଫୁଲ ସବୁ ଶୁଖି ଝଡ଼ିଗଲାଣି-ଫୁଲ ଯେଉଁଠି ଥିଲା ସେଠି ଶୁଖିଲା ଡେମ୍ଫ ଲାଗି ରହିଛି ।

ପାହାଡ଼ ଦେଶର ସୂର୍ଯ୍ୟୋଦୟ ଅପୂର୍ବ । ଅନ୍ଧକାର ଗର୍ଭରୁ ଆଲୋକର ଅଭିସାର । 'ତମସୋ ମା ଜ୍ୟୋତିର୍ଗମୟ' – ଏହାହିଁ ଥିଲା ପ୍ରାର୍ଥନା ପୁରାଣଯୁଗର ମୁନିଋଷିମାନଙ୍କର । ବଣପାହାଡ଼ ଦେଶରେ ହିଁ ତ ଗଢ଼ିଥିଲା ଏ ଦେଶର ସଭ୍ୟତା । ଏ ଦେଶର ମୁନି ପ୍ରଥମେ ନମସ୍କାର କରିଥିଲା ସୂର୍ଯ୍ୟ ଦେବତାଙ୍କୁ । ସୂର୍ଯ୍ୟଦେବତା ହିଁ ପ୍ରତୀକ ଆଲୋକର, ଆନନ୍ଦର । ଜବାଫୁଲରେ ସେ ତାର ପୂଜା କରିଥିଲା । ତା ପାଇଁ ଗଢ଼ିଥିଲା ସୂର୍ଯ୍ୟମନ୍ଦିର-ସମୁଦ୍ରବେଳାରେ ପ୍ରଥମେ ସୂର୍ଯ୍ୟକିରଣ ସେଇଠି ପଡ଼ିବ । ଅଦୂରରେ ନୀଳ ସମୁଦ୍ର । ଅଦ୍ଭୁତ ପରିକଳ୍ପନା ମଣିଷର । କେତେ କିମ୍ବଦନ୍ତୀ ଦେଶେ ଦେଶେ ଏଇ ସୂର୍ଯ୍ୟଦେବତାଙ୍କୁ କେନ୍ଦ୍ରକରି । ସୂର୍ଯ୍ୟଙ୍କ ଉଜ୍ଜ୍ୱଳ ନାମରେ ମଣିଷ ଅପଯଶ ବୋଳିଚି, ଚନ୍ଦ୍ରରେ କଳଙ୍କ ଲଗାଇଛି । ତଥାପି ସୂର୍ଯ୍ୟ

ପବିତ୍ର । ଚନ୍ଦ୍ର ସୁନ୍ଦର । ପ୍ରତି ପ୍ରଭାତରେ ପୃଥିବୀର ଏ ଦିଗନ୍ତରୁ ଅନ୍ୟ ଦିଗନ୍ତ ଯାଏଁ, ଅସଂଖ୍ୟ ମଣିଷ, ତଥାପି ସୂର୍ଯ୍ୟଙ୍କୁ ପ୍ରଣିପାତ କରୁଛି । ତଥାପି ମଣିଷ ଚନ୍ଦ୍ରଙ୍କୁ ବନ୍ଧୁ ରୂପେ ସଂଖୋଳୁଛି, ସମ୍ବୋଧନ କରୁଛି 'ମାମୁଁ' ବୋଲି ।

ସୂର୍ଯ୍ୟ ଉଇଁ ଆସୁଚି । କୁଆଡ଼େ ଗଲା ଅନ୍ଧାର-ଅବିନାଶର ଅଶୁଭ ଅତୀତ ସେଇ ଅନ୍ଧାରରେ ହଜିଯାଇଛି । ରାତିସାରା ଯେଉଁମାନଙ୍କୁ ସେ ସ୍ୱପ୍ନରେ ଦେଖୁଥିଲା-ଟିଣ ଡବା ଧରିଥିବା ସେଇ ବୁଢ଼ା ମଣିଷଟି, ସମୁଦ୍ର କୂଳେ କୂଳେ ଡେଇଁ ବୁଲୁଥିବା ଏକଗୋଡ଼ିଆ ଭିକାରୀ, 'ହେ ମା' 'ହେ ମା' ଚିତ୍କାର କରୁଥିବା ଆଙ୍ଗୁଠିହୀନ ଅସଂଖ୍ୟ ମଣିଷ-ସେମାନେ ସମସ୍ତେ ରାତିର ଅନ୍ଧାରରେ ମିଳାଇ ଯାଇଛନ୍ତି । ବର୍ତ୍ତମାନ ସବୁ ଯେମିତି ଶୁଭ ଓ ସୁନ୍ଦର । ସବୁଠି ଯେମିତି ଆଲୋକ ଓ ଆନନ୍ଦ । ଅବିନାଶର ଜନ୍ମ ଆଲୋକରୁ, ଆନନ୍ଦରୁ । କାହିଁକି ତେବେ ସେ ନିଜକୁ ମଳିନ, ନିଷ୍ପ୍ରଭ ମନେ କରିବ-କାହିଁକି ସେ ଶୃଙ୍ଖଳାବଦ୍ଧ ବଣ୍ୟଜନ୍ତୁ ଭଳି ଚିତ୍କାର କରିବ ଅନ୍ଧାରରେ, ଆକାଶରେ ଅଙ୍କିତ ଥାଉ ଥାଉ ଏତେ ଉଜ୍ଜ୍ୱଳ ସୂର୍ଯ୍ୟୋଦୟ ! ଏଇ ଆଲୋକର ସଙ୍ଗୀତରେ କାହିଁକି ସେ ନିଜକୁ ମିଶାଇ ନଦେବ ?

ଅବିନାଶ ଚାଲିଛି-ସରୁ ପିଚୁ ରାସ୍ତା ଦୁଇ କଡ଼େ ଧାନ କ୍ଷେତ । ଏତେ ସକାଳୁ ବି ଧାନ କ୍ଷେତ ଜାଇଁ ଉଠିଲାଣି-ନିଦ ମଳ ମଳ ଆଖିରେ ଜୁଟି ଗଲେଣି ମଣିଷ ପଲ-ସେମାନଙ୍କ ଦିନର ତପସ୍ୟା, ରାତିର ସ୍ୱପ୍ନ ସବୁ ଏଇ ଚାଖଣ୍ଡେ ଲେଖାଏଁ ମାଟି ।

ଅବିନାଶ ଦୂରକୁ ଅନାଇଲା-ପାହାଡ଼ ଓ ପାହାଡ଼-ଶେଷରେ ସବୁ ଅସ୍ପଷ୍ଟ, ସବୁ ଧୂଆଁଳିଆ । ଏମିତି ଯେଉଁଠି ସୂର୍ଯ୍ୟୋଦୟ ହେଉଥିବ,ସେଠି ଖାଦ୍ୟ ସଂଗ୍ରହରେ ବାହାରୁଥିବେ ଅସଂଖ୍ୟ ପ୍ରାଣୀ । ଦିନର ଆଲୁଅରେ ଖାଦ୍ୟ ସଂଗ୍ରହରେ ଯିବେ, ରାତିର ଅନ୍ଧାରରେ ବାହୁଡ଼ି ଆସିବେ ନିଜ ନିଜ ଖୋପକୁ-ଏଇ ପ୍ରକ୍ରିୟା ଭିତରେ ସେମାନଙ୍କ ଜନ୍ମ ଓ ମରଣ । ଏଇ ଯେଉଁ ପାହାଡ଼ ଦେଖାଯାଉଛି, ତା ଆରପାଖେ ଏମିତି କେତେ ଜନପଦ-ଜାତି ଜାତିକା ମଣିଷ କଳା, ଗୋରା, ଡେଙ୍ଗା, ବାଙ୍ଗରା-ଜାତି ଜାତିକା ଭାଷା, ଆଚାର ପଦ୍ଧତି; କିନ୍ତୁ ଜୀବନ ସବୁଠି ସମାନ । କିଏ ସମୁଦ୍ରକୁ ଡଙ୍ଗାନେଇ ବାହାରୁଚି, ଆରବ ସାଗରରେ ମାଛ ମାରି ଜୀବନ ବଞ୍ଚାଇବାକୁ, ଭାରତ ଉପକୂଳରେ କେଉଁ ନଡ଼ିଆ ବଣ ଭିତରେ କିଏ ସେଥିପାଇଁ କାର୍ଯ୍ୟବ୍ୟସ୍ତ; ଆଉ କିଏ କାବୁଲ କାନ୍ଧାହାରର ମରୁଭୂମି ଡେଇଁ ଡେଇଁ ଓଟ ପିଠିରେ ବୁଲୁଚି ନୂଆ ନୂଆ ଘାସ ଜମିର ସନ୍ଧାନରେ । ସମସ୍ତେ ବଞ୍ଚିବାକୁ ଚାହାନ୍ତି । ବଞ୍ଚିରହିବାର ଇଚ୍ଛା ହିଁ ତ ଜୀବନ ।

ଏଇ ବଞ୍ଚିରହିବାର ଇଚ୍ଛା ନେଇ ଅବିନାଶ ଜୀବିକା ଖୋଜୁଚି ଓ ଖୋଜି ଖୋଜି ପହଞ୍ଚିଛି ଏଇ ପାହାଡ଼ ଦେଶରେ; କିନ୍ତୁ ଅଦ୍‌ଭୁତ ଯେ, ସେ ଆଉ ଭାବୁନାହିଁ ନିଜକୁ ଆଗନ୍ତୁକ ବୋଲି, -ଭାବୁନାହିଁ , ସେ ଏଠିକି ଆସିଛି ଅଳ୍ପ ଦିନ ପାଇଁ-ପୁଣି ଫେରିଯିବ ଅନ୍ୟ କେଉଁ ମୂଲକକୁ ଯେଉଁ ଦିନ ସେ ଇଚ୍ଛା କରିବ ସେ ଦିନ ନୁହେଁ; ଯେଉଁଦିନ ତା ଉପରିସ୍ଥ

ହାକିମଙ୍କର ଖିଆଲ ହେବ, ସେଇ ଦିନ । ଅବିନାଶ କ୍ରମେ ନିଜକୁ ଏଇ ଅଞ୍ଚଳର, ଏଠା ଜୀବନଯାତ୍ରାର, ଏକ ଅପରିହାର୍ଯ୍ୟ ଅଂଶ ବୋଲି ଭାବୁଛି । ସେ ଭୁଲିଗଲାଣି ଯେ, ସେ ଏଠାକୁ ଆସିବା ଆଗରୁ ଜୀବନ ଯାତ୍ରା ଠିକ୍ ଏମିତି ଥିଲା ଓ ଏଠୁ ଗଲାପରେ ବି ଜୀବନଯାତ୍ରା ଠିକ୍ ଏମିତି ରହିବ ।

ରାସ୍ତାରେ କ୍ରମେ ଜଣେ ଜଣେ ଚାଲିବାର ଦେଖାଗଲାଣି । ଦୂରରୁ ଆସୁଛନ୍ତି ସ୍ଥାନୀୟ ଷ୍ଟେଟ୍‌ବ୍ୟାଙ୍କ୍‌ର ଅଫିସର କେହି, ହାତରେ ଓ୍ୱାକିଂ ଷ୍ଟିକ୍ । ସେ ଚାଲିଲାବେଳେ ତାଙ୍କ ଦେହର ପ୍ରତି ଅଂଶ ଥରିବାପରି ଜଣାଯାଏ । ଚିହ୍ନାଲୋକ ଦେଖିଲେଇ ସେ 'ଗୁଡ୍‌ମର୍ଣ୍ଣିଂ' କରନ୍ତି । ଛୋଟ ଛୋଟ ଚା' ଦୋକାନରେ ଗରାଖମାନେ ଜୁଟିଗଲେଣି । ଦୋକାନୀମାନେ କୋଇଲା ଚୁଲି ଆଞ୍ଚ କରିବାରେ ବ୍ୟସ୍ତ । ଡକ୍ଟର୍ ମହାନ୍ତିଙ୍କ ଡାକ୍ତରଖାନା ସାମ୍‌ନାରେ ଏତେ ସକାଳୁ ବି ରୋଗୀମାନେ ଜମା ହେଲେଣି; ସକାଳ ଆଠଟା ଆଗରୁ ଡକ୍ଟର୍ ମହାନ୍ତି କେବେ ରୋଗୀ ଦେଖିବାକୁ ଆସନ୍ତି ନାହିଁ ବୋଲି ଯଦିଓ ସେମାନେ ଭଲ ଭାବରେ ଜାଣନ୍ତି ।

ଗୋଟିଏ ଦୁଇଟି ବସ୍ ଓ କାଠବାହୀ ଟ୍ରକ୍ ବିକଟାଳ ଗର୍ଜନ କରି ରାସ୍ତା ଉପରେ ଚାଲି ଗଲେଣି ।

ଏଇ ଛୋଟ ସହରଟିରେ ଜୀବନଯାତ୍ରା ଏହିପରି ଆରମ୍ଭ ହୁଏ ସବୁଦିନେ ।

ଅବିନାଶ ଏମିତି ଏକୁଟିଆ ବୁଲି ବୁଲି ପୁରୁଣା ସହରମାନଙ୍କରେ ସକାଳର ଚେହେରା ଦେଖିଛି । କଟକରେ ଯେଉଁଠି ସେ ରହୁଥିଲା, ସେଠି ସକାଳ ହେବାର ବହୁତ ଆଗରୁ ପଞ୍ଜାବୀ ଡ୍ରାଇଭରମାନେ ସେମାନଙ୍କ ଟ୍ରକ୍‌ସବୁରେ ଷ୍ଟାର୍ଟ୍ ଦିଅନ୍ତି । ଅବିନାଶର ହଷ୍ଟେଲ୍‌କୁ ଲାଗିଛି ମୋଟର ଗ୍ୟାରେଜ୍ । ସକାଳ ହେଲେ ହିଁ ଝରକା ଦେଇ ପେଟ୍ରୋଲର ପୋଡାଗନ୍ଧ ନାକରେ ବାଜେ । ଖୋଲା ପବନରେ ବୁଲି ଆସିବା ପାଇଁ ରାସ୍ତାକୁ ବାହାରିଲେ ନିଦ ମଳମଳ ଆଖିରେ ତେଲଙ୍ଗା ରିକ୍ସାବାଲା ପଚାରେ, "ବାବୁ ଷ୍ଟେସନ୍ ଯାଏଗା" ?

ପ୍ରତି ରିକ୍ସାବାଲାକୁ ନାସ୍ତିସୂଚକ ଅଙ୍ଗଭଙ୍ଗୀ ଦେଖାଇବାକୁ ହୁଏ । ମହାନଦୀ କୂଳକୁ ଯିବା ବାଟରେ ମେଡିକାଲ୍ । ସାରା ସହରର ଶଗଡ଼ ଶଗଡ଼ ଅଳିଆ ସେଠି ଜମା । ଏଇ ମହା ପରୀକ୍ଷାରୁ ଉତ୍ତୀର୍ଣ୍ଣ ନହେଲେ, ମହାନଦୀର ମୁକ୍ତ ପବନ ମିଳିବା ଅସମ୍ଭବ । ରାସ୍ତା ଦୁଇପାଖର ଚା' ଦୋକାନ ଓ ହୋଟେଲ୍ ସବୁ ଖୋଲୁଥାଏ । ଦୋକାନ ସାମନାର କାଠ ବେଞ୍ଚ୍ ବା ଫିତାଖଟରେ ଶରୀରର ସମସ୍ତ ଅଂଶ ଖୋଲା ରଖି ପାର୍ଶ୍ୱବର୍ତ୍ତୀ ଦୋକାନର ଚାକରମାନେ ଶୋଇ ନିଶ୍ଚିନ୍ତରେ ଘୁଙ୍ଗୁଡ଼ି ମାରୁଥାନ୍ତି । କଦବା ହୋଟେଲ୍ ମାଲିକ କୌଣସି ଚାକରର ପ୍ରଜନନକ୍ରିୟା ସମ୍ପର୍କରେ ଅପ୍ରାକୃତିକ ତଥ୍ୟ ଘୋଷଣା କରିବା ସଙ୍ଗେ ସଙ୍ଗେ ଚୁଲିରେ କୋଇଲା ପକାଇବା ପାଇଁ କଡ଼ା ଆଦେଶନାମା ଜାରି କରୁଥାଏ । ଗତରାତିର ନିଶା ପୂରାପୂରି ନ ଛାଡ଼ିଥିଲେ ବି ପଞ୍ଜାବୀ ଡ୍ରାଇଭରମାନେ ପାରାଦ୍ୱୀପ ଅଭିମୁଖେ ସେମାନଙ୍କ ଟ୍ରକ୍ ସବୁ ଛୁଟାଇବା ଆରମ୍ଭ କରିଥାନ୍ତି ।

ପ୍ରାୟ ସବୁଦିନ ସକାଳ ଭ୍ରମଣ ବେଳେ ଅବିନାଶ ତାର ପରିଚିତ ଚା' ଦୋକାନର ସେଇ ଆଠ ବର୍ଷର ଛୋଟ ପିଲାଟିକୁ ଦେଖେ । ଏତେ ସକାଳୁ ବି ପିଲାଟି ଦୋକାନ ସାମନା ପାଇପ୍ ପାଖରେ ବସି ଗତରାତିର ଅଇଁଠା ପ୍ଲେଟ୍, କପ୍ ଓ ଡେକ୍‌ଚି ସଫା କରୁଥାଏ । ଅବିନାଶକୁ ଦେଖିଲେ ସେ କୃତଜ୍ଞତା ପ୍ରକାଶ କରିବା ଭଙ୍ଗୀରେ ଗୋଟିଏ ହାତ ଉପରକୁ ଉଠାଇ ସଲାମ କରେ ଓ ଅବିନାଶ ସାମାନ୍ୟ ହସି ତାହା ଗ୍ରହଣ କରେ । ନିହାତି ମଇଳା ହାଫ୍ ପ୍ୟାଣ୍ଟ୍ ପିନ୍ଧିଥିବା, ଦୁଇ ହାତରେ ଚିତା କୁଟାଇଥିବା ଏଇ ପିଲାଟିର ପରିଚୟ, ଏଇ ପୁରୁଣା ସହରର ଶଗଡ଼ ଶଗଡ଼ ଆବର୍ଜନାର ପରିଚୟଠାରୁ କୌଣସି ଗୁଣରେ ମୂଲ୍ୟବାନ ନୁହେଁ । ଯେ କୌଣସି ରେସ୍ତୋରାଁ, ହୋଟେଲ୍, ଚା' ଦୋକାନକୁ ଗଲେ ଏହାରିପରି ଅପରିଷ୍କାର ପିଲାମାନେ ମଇଳା ଓ ଓଦାକନା ଖଣ୍ଡିଏ ଖଣ୍ଡିଏ ଧରି ଟେବୁଲ୍ ସଫା କରୁଥାନ୍ତି ଓ ଚା'ପ୍ଲେଟ୍-କପ୍ ଧୋଇବା ପାଇଁ ନିଅନ୍ତି । ଟେବୁଲ୍ ଉପରେ ଦୁର୍ଗନ୍ଧମୟ ମଇଳା କନା ଓ ଅଇଁଠା ଚା'କପ୍‌ରେ ପାଣି ଢାଳିବା ପାଇଁ ଏମାନେ ଆଲୋକମାଳା ବିଭୂଷିତ ସୁନ୍ଦର ରେସ୍ତୋରାଁର ଅନ୍ଧାରୁଆ କୋଣମାନଙ୍କରେ ଛାରପୋକ ପରି ଛପି ରହିଥାନ୍ତି ।

ଅବିନାଶ ଆଗକୁ ଚାଲେ, ଥଣ୍ଡା ପବନ ଆଖିରେ ଲଗାଏ ଅଳସ ଓ ସ୍ୱପ୍ନ । ଆବର୍ଜନା ସେ ଡେଇଁ ଆସିଚି । ଏଣିକି ରାସ୍ତା ସୁନ୍ଦର-ବାଁ ପାଖର ଫୁଲଗଛର ବାସ୍ନାରେ ସେ ମୁଗ୍ଧ ହୁଏ । ବତୀଖୁଣ୍ଟର ଆଲୁଅ ଏବେବି ଲିଭିନି । ଡାହାଣ ଦିଗରେ ନର୍ସ୍ ହଷ୍ଟେଲ୍ । ଅନ୍ୟ ସମୟରେ ସଂଯତ ଅବିନାଶ ସେ ଆଡ଼େ ଅନାଏ ନାହିଁ; ମାତ୍ର ସକାଳର ନିର୍ଜନତାରେ ତା ଆଖିର ଭୋକ ହଠାତ୍ ବଢ଼ିଯାଏ । ସେ ଅନାଏ ତିନି ମହଲା କୋଠାକୁ । ଝର୍କା ସାମନାରେ ପର୍ଦ୍ଦାମାନ ଝୁଲୁଛି । ତଥାପି କେଉଁଠି ଦେଖାଯାଉଛି କାହାର ପିଠି, କେଶ ବା ଶାଢ଼ିର କୌଣସି ଅଂଶ । ଅବିନାଶର ସବୁ ସ୍ନାୟୁ ଉତ୍ତପ୍ତ ହେବାକୁ ଆରମ୍ଭ କରନ୍ତି । ନିଷ୍ଠୁର ଭାବରେ ଅତ୍ୟାଚାରିତ ବହୁ କାମନା ହଠାତ୍ ଏକ ସଙ୍ଗେ ଚିତ୍କାର କରି ଉଠନ୍ତି । ହତାଶ ପଶୁପରି ଅବିନାଶ ଆଖି ଫେରାଏ-ଯେମିତି ସେ ଗୋଟାଏ ବାଘ-ଖୋଜୁଛି ଜଙ୍ଗଲର ସବୁଠୁ ଅନ୍ଧାରୁଆ ସ୍ଥାନ-ଯେଉଁଠି ସେ ବସି ବସି ନିଜ ଇଚ୍ଛାରେ ଶିକାରର ଖଣ୍ଡ ଖଣ୍ଡ ମାଂସ ଚୋବାଇ ଖାଇ ପାରନ୍ତା, ପିଇଯାନ୍ତା ସବୁଯାକ ରକ୍ତ । ଅବିନାଶର ଦେହର କେଉଁ ଅଂଶରେ ହିଂସ୍ର ଚମକ ଲାଗେ । ସେ ସଂଯତ ହୁଏ ।

ସାମନାରେ ମହାନଦୀ । ଅସୀମ ଜଳରାଶି । କେଉଁ ସ୍ଥିତଧୀର ପ୍ରଜ୍ଞାପରି ସ୍ଥିର, ଶୀତଳ । ସେପାରି ପଠାମାନଙ୍କରେ ଲାଗି ରହିଛି ଅନ୍ଧାର,ନଦୀର ଅଳସ ତଥାପି ଛାଡ଼ି ନାହିଁ । ପଥରବନ୍ଧ ଉପରେ ବସି ଅବିନାଶ ଅନାଇ ରହେ-ଗୋଟିଏ ଗୋଟିଏ ଡଙ୍ଗା ସ୍ଥିରପାଣି ଉପରେ ଭାସୁଛନ୍ତି, ଡଙ୍ଗା ଭିତରର ମଣିଷମାନେ ବି ସ୍ଥିର, ମାର୍ବଲ ପ୍ରତିମୂର୍ତ୍ତି ପରି । ସକାଳର ମ୍ଳାନ ଆଲୋକରେ ଡଙ୍ଗାର ଛାଇ ଗଭୀର ପାଣିରେ ନିଷ୍ପ୍ରଭ ଦିଶୁଛି । ଶାନ୍ତ ବାତାବରଣ । ଦୂରରେ ନଦୀର ଅନ୍ୟ ତୀରରେ, ଧାଡ଼ି ଧାଡ଼ି ଆଲୋକର ପଟୁଆର ।

କାରଖାନାର ଧୂଆଁ ମେଘ ହୋଇ ଆକାଶରେ ମିଶୁଛି । ସବୁ ନିସ୍ତବ୍‌ଧ-ନଦୀ, ଆକାଶ, ସେପାରିର ଜନବସତି ।

ଏଠି ବି ନିସ୍ତବ୍‌ଧ ପରିବେଶ-ପାହାଡ଼ମାନଙ୍କ କଡ଼େକଡ଼େ ଏକୁଟିଆ ଚାଲିଲାବେଳେ ମନେ ପଡୁଛି ମହାନଦୀ କଟକ । ସବୁଠି ସେଇ ସକାଳ-ଉଜ୍ଜ୍ୱଳ, ସୁନ୍ଦର । ଆବର୍ଜନା ମଣିଷର । ଭଗବାନଙ୍କ ଆଶୀର୍ବାଦ ଏଇ ସକାଳ ଆଲୋକ ଓ ଆନନ୍ଦ ପାଇଁ । ସେଇ ଆନନ୍ଦରେ ବିଭୋର ଆକାଶର ପକ୍ଷୀମାନେ-ଚଞ୍ଚୁରେ ନୀଳତୃଣ ନେଇ ସନ୍ଧ୍ୟାରେ ବାହୁଡ଼ିବେ ଆପଣା ଆପଣା ନୀଡ଼କୁ ।

ଅବିନାଶ ପ୍ରାତଃଭ୍ରମଣରୁ ବାହୁଡ଼ିଲା । ସକାଳ ଅତିକ୍ରାନ୍ତ ହୋଇଛି । ସୂର୍ଯ୍ୟକିରଣ ପ୍ରଖର ହେଉଛି ଓ ତା ସଙ୍ଗେ ଜୀବନର ବାସ୍ତବତା ।

ସକାଳର ଭ୍ରମଣ ସାରି ଫେରିଲାବେଳକୁ ବିଳମ୍ବ ହୋଇ ସାରିଥିଲା । ଭଡାଘରର ସାମନାରେ ରାସ୍ତା ଉପରେ ସବୁଦିନ ପରି ଦଳେ କଲେଜ ପିଲା ଠିଆ ହୋଇ ଅନାବଶ୍ୟକ ବିଷୟ ସବୁ ଚର୍ଚ୍ଚା କରୁଥିଲେ । ପାଖ ଚା' ଦୋକାନରେ ଗହଳି ଖୁବ୍ ବଢ଼ିଯାଇଥିବାରୁ ଦୋକାନ ମାଲିକର ରୂଢ଼ କଣ୍ଠସ୍ୱର ବାରମ୍ବାର ଚାକରମାନଙ୍କ ଉଦ୍ଦେଶ୍ୟରେ ଗର୍ଜି ଉଠୁଥିଲା । ଅବିନାଶ ଚୁପ୍‌ଚାପ୍ ଘରକୁ ଫେରିଲା ।

ସେ ଘରେ ପହଞ୍ଚିବାର ବହୁତ ଆଗରୁ ତା ପାଇଁ ଅପେକ୍ଷା କରି ବସିଥିଲେ ରସିକମୋହନ । ଅବିନାଶକୁ ଦେଖି 'ଗୁଡ୍‌ମର୍ଣ୍ଣିଂ' ଚିତ୍କାର କରି ନିମନ୍ତ୍ରଣ ଜଣାଇଲେ- ! "ଆମେ ଆଜି ସଞ୍ଜରେ ଶିକାରରେ ଯାଉଛୁ । ଆପଣଙ୍କର କୌଣସି ଅସୁବିଧା ନଥିଲେ-"

"ନା ଅସୁବିଧା କ'ଣ" ଗଳାଖଙ୍କାରି ଅବିନାଶ ସମ୍ମତି ଜଣାଇଲା । କେଉଁଦିନ ଏମିତି କଥା ପ୍ରସଙ୍ଗରେ ସେ ଅନୁରୋଧ କରିଥିଲା ରସିକମୋହନଙ୍କୁ ଶିକାର କରିବାର ଆୟୋଜନ କରିବାକୁ । ରସିକମୋହନ ସ୍ଥାନୀୟ ଏନ୍.ଏ.ସି.ର କିରାଣୀ । ଫାମିଲି ପ୍ଲାନିଂ ଅଫିସର ଅବିନାଶବାବୁଙ୍କ ଅନୁରୋଧ ସେ ଏଡ଼ାଇ ପାରିନାହାନ୍ତି । ଅବିନାଶ ତାଙ୍କୁ ଅନୁରୋଧ କରିବା କଥା ମନେରଖନ୍ତୁ, ନରଖନ୍ତୁ, ସେ ନିଜେ ଏତେ ସକାଳୁ ଆସି ଅନୁରୋଧ ଜଣାଉଛନ୍ତି "ଦେଖନ୍ତୁ, କୌଣସି ଅସୁବିଧା ହେବ ନାହିଁ । ଗାଡ଼ି ସୁବିଧା ମୁଁ କରିଛି । ଆମେ ସଞ୍ଜ ଆଠଟାରୁ ବାହାରିଗଲେ ମାଇଛେଳିରେ ପହଞ୍ଚିବାକୁ ଘଣ୍ଟାଏ ଲାଗିବ । ନୂଆଗାଁ ଫରେଷ୍ଟ ଅଫିସରେ ମୋର ଜଣେ ସାଙ୍ଗ ଫରେଷ୍ଟ୍ ଗାର୍ଡ୍ ଅଛନ୍ତି । ସେଠି ପହଞ୍ଚିଲେ ସେ ସବୁ ବ୍ୟବସ୍ଥା କରିଦେବେ ।"

ଜୀବନରେ କେବେ ଦିନେ ଶିକାରରେ ଯିବାକୁ ହେବ ଏହା ଅବିନାଶର କଳ୍ପନାର ବାହାରେ ଥିଲା । ପିଲାଦିନୁ ସେ ଅହିଂସାରେ ବିଶ୍ୱାସ କରି ଆସିଛି । ପୁଣି ବି.ଏ. ପଢ଼ିଲା ଯାଏଁ ସେ ମାଛ ମାଂସ ଛୁଉଁ ନଥିଲା; ମାତ୍ର ଏଇ କେତେଟା ଦିନ ଭିତରେ ସେ ଯେମିତି

ପୂରାପୂରି ବଦଳି ଯାଇଛି । ଶିକାର କରିବାଟା ଯେମିତି ତାର ନିହାତି ଦରକାର । ତା ନହେଲେ ତାର କୌଣସି କାମନା ଅପୂର୍ଣ୍ଣ ରହିଯିବ । ବନ୍ଧୁ ରସିକମୋହନଙ୍କୁ ଚା' ଖାଇବାକୁ ଅନୁରୋଧ କରି ସମ୍ମତିସୂଚକ ଉତ୍ତର ପାଇବା ସଙ୍ଗେ ସଙ୍ଗେ ସେ କହିଲା, "ଏଇ ଶିକାର କରିବାଟା ଗୋଟାଏ ଚମତ୍କାର ହବି-ଗୋରାମାନଙ୍କର । ତାଙ୍କର ପ୍ରେସିଡେଣ୍ଟ ବି ଦିନର କାମ ପରେ ସଞ୍ଜବେଳକୁ କାନ୍ଧରେ ବନ୍ଧୁକ ପକାଇ ବାହାରନ୍ତି ପାଖ ଜଙ୍ଗଲକୁ-ଚଢ଼େଇ ଶିକାର କରିବାକୁ; କିନ୍ତୁ ଆମ ଦେଶରେ ଲୋକେ ଜୀବନ ଉପଭୋଗ କରି ଜାଣନ୍ତିନାହିଁ ।"

ରସିକମୋହନ ଅବିନାଶଙ୍କୁ ସବୁବେଳେ ସବୁକଥାରେ ସମର୍ଥନ କରନ୍ତି । ସେ କହିଲେ, "ଏମିତି କିଣା ମାଂସ ଖାଇଲେ ମଜା ନାହିଁ । ନିଜେ ରାତିରେ ଜଙ୍ଗଲରେ ବୁଲି ଜନ୍ତୁ ମାରିଲେ ବାହାଦୁରି ।"

ଦୁହେଁ ବହୁ ସମୟ ଏମିତି ଶିକାରର ଉପକାରିତା ବିଷୟ ଆଲୋଚନା କଲେ । ରସିକମୋହନ ଶିକାର ଅନଭିଜ୍ଞ ଅବିନାଶଙ୍କୁ ଶିକାର ସଂକ୍ରାନ୍ତୀୟ ବହୁ ଉପଦେଶ ଦେଉଥାନ୍ତି- "ଟର୍ଚ୍ଚଲାଇଟ୍ ଗୋଟିଏ ଯୋଗାଡ଼ କରିବେ । କଳାପୋଷାକ ଥିଲେ ଭଲ । ଆପଣଙ୍କର ଫିଟିଂ-ସୁ ଅଛି ?"

ଅବିନାଶ ରସିକମୋହନଙ୍କ କହିବାନୁସାରେ ପ୍ରସ୍ତୁତ ହେବ ବୋଲି ପ୍ରତିଶ୍ରୁତି ଦେଲା । ସେଦିନ ଅଫିସ୍‌ରୁ ସେ ଶୀଘ୍ର ଫେରି ଆସିଲା ।

ସଞ୍ଜ ହେବା ସଙ୍ଗେ ସଙ୍ଗେ ରସିକମୋହନ ଏକ ବହୁ ପୁରୁଣା ଜିପ୍ ସହ ଅବିନାଶ ଘର ସାମନାରେ ପହଞ୍ଚିଗଲେ । ଅବିନାଶ ଆଗରୁ ପ୍ରସ୍ତୁତ ହୋଇ ରହିଥିଲା । ତେଣୁ ବିଳମ୍ବର କାରଣ ନଥିଲା । ସେମାନେ ସହରର ଶେଷ ଭାଗରେ ଶିଉଳି-ଲଗା ଦେଉଳ ପାଖରେ ଠିଆ ହୋଇ ବାଣୁଆ ଦୁଇଜଣଙ୍କୁ ଅପେକ୍ଷା କଲେ ଓ ଆକାଶ ଅଭିମୁଖେ ସିଗାରେଟ୍ ଧୂଆଁ ଛାଡ଼ିବାକୁ ଲାଗିଲେ । ରାତି ବେଶି ହୋଇ ନଥିଲା । ରାସ୍ତା ଦୁଇପାଖର ଚାଳ ଘରମାନଙ୍କରୁ ମିଞ୍ଜି ମିଞ୍ଜି ଆଲୁଅ ଛିଟ୍‌କି ଆସି ରାସ୍ତା ଉପରେ ପଡୁଥିଲା ଓ ଲୋକମାନଙ୍କର କୋଳାହଳ ଶୁଭୁଥିଲା । ଦଳେ ଗାଁ ପିଲା ଆସି ରସିକମୋହନଙ୍କ ଜିପ୍ ଚାରିପାଖେ ଘେରିଗଲେ । ଗୋଟିଏ ଛୋଟ ପିଲା ଜିପ୍ ଭିତରକୁ ଗୋଡ଼ି ସବୁ ଫିଙ୍ଗିବାକୁ ଲାଗିଲା । ଆଉ କେହି କେହି ଜିପ୍ ଭିତରକୁ ପଶିବାର ବ୍ୟର୍ଥ ଚେଷ୍ଟା ଆରମ୍ଭ କରିଦେଲେ ।

ରସିକମୋହନ ପିଲାମାନଙ୍କୁ ଘଉଡ଼ାଇବାରେ ଲାଗିଲେ । ଅବିନାଶ ପିଲାମାନଙ୍କ ଉପରେ ଚିଡ଼ି ପାରିଲାନାହିଁ । ଏଇ ଦାରିଦ୍ର୍ୟ ପ୍ରପୀଡ଼ିତ ଦେଶରେ ସବୁର ଅଭାବ ଥାଇପାରେ; ମାତ୍ର ଏଇ ଲଙ୍ଗଳା ଭୋକିଲା ପିଲାଙ୍କର ଅଭାବ ନାହିଁ । ଅଫିସ୍ କାମ ସାରି ଗାଁ ବୁଲି ବାହାରିଲେ ସେ ଦେଖିଚି, ଚମ ଧୁଡୁ ଧୁଡୁ ମୁଣ୍ଡ ନୁଖୁରା ପିଲାମାନେ ତା ଆଡକୁ ଢୁଲୁ ଢୁଲୁ ଅନାଇଛନ୍ତି । "ଟିକାଦିଆ ଅଇଲାଣି" ବୋଲି ଦୌଡ଼ି ଦୌଡ଼ି ଦୂରକୁ ପଳାଇଛନ୍ତି । କୌଣସି ପିଲା ଆଡ଼କୁ ହାତ ବଢ଼ାଇଲେ ସେ ଚମକି ଦୂରକୁ ହଟି ଯାଉଛି । ଅବିନାଶ ଭାବିଛି, ସେଇ

ଯେଉଁ ମାଆ ଅନ୍ଧାରରେ ତା ପୁଅର ଗୋଡ଼ କୁଦି ପକେଇବାରୁ ପିଲାଟି ଛୋଟା ହୋଇଯାଇଥିଲା, କିମ୍ବା ସେଇ ଯେଉଁ ପାଗଳୀ ତା ପୁଅକୁ ନଳାପାଣିରେ ଭସାଇ ଦେବାରୁ ପିଲାଟିକୁ ରାସ୍ତାର କୁକୁରମାନେ କଣ୍ଟା ଚୋବାଇ ଖାଇଗଲେ-ଅବିନାଶ ତ ହୋଇ ପାରିଥାନ୍ତା ସେଇ ପିଲା । ତା ପିଲା ଦିନର ସାଥୀ-ବସନ୍ତରେ ଯାହାର ଆଖି ଫୁଟି ଆଖିଥିବା ଜାଗାରେ ଦୁଇଟି ଧଳା ମାଉଁସ ପିଣ୍ଡୁଳା ତଳ ଉପର ହୁଏ-ଅବିନାଶର ତ ସେଇ ଅବସ୍ଥା ହୋଇ ପାରିଥାନ୍ତା; କିମ୍ବା ଆଠ ଦଶ ବର୍ଷର ସେଇ ତେଲେଙ୍ଗୀ ପିଲାମାନେ ଯେଉଁମାନଙ୍କ ଘର କଟକର ପଟାପୋଲ ନଳା ପାଖରେ-ସଞ୍ଜ ହେଲେ 'ସମାଜ' 'ପ୍ରଜାତନ୍ତ୍ର' ବିକନ୍ତି-ଅବିନାଶ ବି ସେଇମାନଙ୍କ ଭିତରୁ ଜଣେ ହୋଇ ପାରିଥାନ୍ତା; କିନ୍ତୁ ତା' ହୋଇନାହିଁ । ତା'ପରି ବହୁ ମଣିଷ ରାସ୍ତାଉପରେ ଚାଲୁ ଚାଲୁ କେଉଁ ଫାଙ୍କ ବାଟେ ତଳକୁ ଖସି ବିକଳାଙ୍ଗ ହୋଇଛନ୍ତି, କାହା ଉପରେ କଂକ୍ରିଟ ମାଟି ଢାଳି ମାଡ଼ିଯାଇଛି ବୁଲ୍‌ଡୋଜର, ଦୁନିଆ ତାର ଖବର ରଖିନି । ଅବିନାଶ ସୌଭାଗ୍ୟକ୍ରମେ ଖସି ଆସିଛି ।

ରାସ୍ତାରେ ଧୂଳି ଉଡ଼ାଇ ଉଚ୍ଚ ସ୍ୱରରେ ପାଟିକରି ଖେଳୁଥିବା ପିଲାମାନଙ୍କଠାରୁ ନିଜକୁ ବେଶ୍ ଦୂରେଇ ରଖି ଅବିନାଶ ଜିପ୍‌କୁ ଆଉଜି ଠିଆ ହୋଇଥିଲା । ରସିକମୋହନ ବାଣୁଆମାନଙ୍କୁ ଡାକିବାକୁ ଯାଇଛନ୍ତି । କ୍ରମେ ରାତି ବେଶି ହେଉଛି । ଦେଉଳ ଭିତରର ଜଣେ ଦି'ଜଣ ଭକ୍ତ ବାହାରି ଚାଲିଗଲା ପରେ ଦେଉଳ ବିଲ୍‌କୁଲ୍ ଖାଲି ହୋଇଗଲାଣି । ହେଇ-ସାମନା ପିଣ୍ଡା ଉପରେ ହୋ ହୋ କରି ପିଲାମାନେ ତଳକୁ ଓହ୍ଲାଉଛନ୍ତି । ଚାହାଳି ସରିଲା । ପାଠ ପଢ଼ାଇସାରି ମାଷ୍ଟ୍ରେ ତଳକୁ ଓହ୍ଲାଇ ଆସୁଛନ୍ତି । ବାଁ ହାତରେ ଧରିଥିବା ବେତଟା ମିଞ୍ଜି ମିଞ୍ଜି ଆଲୁଅରେ ଭୟଙ୍କର ଦେଖାଯାଉଛି ।

ଫୁଲ୍‌ପ୍ୟାଣ୍ଟ୍, କୋଟ୍ ପିନ୍ଧିଥିବା ଅବିନାଶର ଦେହ ଶୀତେଇ ଉଠିଲା । ଅନ୍ଧାର ଭିତରୁ ଜୀଇଁ ଉଠୁଛି ତାର ଅତୀତ-ତାର ସେଇ ପୁରୁଣା ଶିକ୍ଷକ-ଯାହାକୁ ସେ 'ଅବଧାନ' ଡାକୁଥିଲା-ଯାହାଙ୍କ ପାଖରେ ବସି ମୁଣ୍ଡା ଖଡ଼ିରେ ପ୍ରଥମେ ଲେଖିଥିଲା 'ଅ' 'ଆ'-ସେ ଆସି ତା ସାମନାରେ ଠିଆ ହୋଇଛନ୍ତି । ମୁଣ୍ଡ ଚିକ୍‌କଣ ଚନ୍ଦା । ପରିଧାନ ମଇଳା ଗାମୁଛା । ହାତରେ ବେତ । ଅବିନାଶ ପରି କେତେ ଦୁଷ୍ଟ ପିଲାଙ୍କ ପିଠିରେ ପାହାର ଦେଇ, ସେମାନଙ୍କୁ ଅକ୍ଷର ଶିଖାଇ ସେ ଛାଡ଼ିଛନ୍ତି । କେଉଁ ଧନୀଘରର ବଗିଚାରେ ଛୋଟିଆ ଚାଳଘରେ ମାଟି ହାଣ୍ଡିରେ ଭାତ ଫୁଟାଇ ଖାଇ ପିଲାମାନଙ୍କ ମେଳରେ ଚିତ୍କାର କରି କରି ସେ ବୁଢ଼ା ହୋଇଛନ୍ତି । ଅଣ୍ଟା ନଇଁ ଆସିଛି, ହାତର ଶିରା ପ୍ରଶିରା ନେଳି ନେଳି-ଆଖିରେ ଲେନ୍ଧରା, ଅଫିସର ଅବିନାଶ ମହାପାତ୍ରର ପ୍ରଥମ ଗୁରୁ । ଏମିତି କେତେ ଅଫିସରଙ୍କୁ ସେ ପ୍ରଥମେ ପାଠ ପଢ଼ାଇଥିଲେ । କୋଠା ଉପରେ ଚଢ଼ିଗଲା ପରେ କିଏ ମନେ ରଖେ ସେଇ ପାହାଚଟି କଥା-ଯାହା ସବୁ ପାହାଚର ତଳେ ଥାଏ-ପ୍ରଥମେ ଆରୋହୀ ଯାହା ଉପରେ ପାଦ ରଖି ଉପରକୁ ଉଠିବା ଆରମ୍ଭ କରେ । ଦିନେ ଅବିନାଶ ଶୁଣିଲା, ଅବଧାନେ ନାହାନ୍ତି ।

ମରିବାବେଳେ କୁଆଡ଼େ ଅଫିମ ଖାଇବାକୁ ତାଙ୍କ ପାଖରେ ପଇସା ନଥିଲା । ନିହାତି ସାଧାରଣ ସମ୍ବାଦ । ସେଥିରେ କୌଣସି ଗୁରୁତ୍ୱ ଦେଇ ନଥିଲା ଅବିନାଶ । ସେତେବେଳକୁ ସେ ବହୁ ପାହାଚ ଉପରକୁ ଉଠି ଆସିଥିଲା ।

ଏମିତି ଗୋଟିଏ ଗୋଟିଏ ପାହାଚ ଉଠି ସେ ଆସି ଏଠି ପହଞ୍ଚିଚି । ପାହାଚ ଖାଲି ଉପରକୁ ଉଠିବାର ଗୋଟିଏ ମାଧ୍ୟମ-ସେତିକି ତାର ଆବଶ୍ୟକତା । ଉପରକୁ ଉଠିଗଲେ ଆଉ ପାହାଚ କଥା ଭାବିବା ଦରକାର ନଥାଏ । କେଉଁ ପାହାଚରେ କାହା ସହ ଦେଖା ହୋଇଯାଏ । ଟିକିଏ ହସ, ଦି'ପଦ କଥା । ତା ପରେ ପୁଣି ଅନ୍ୟ ପାହାଚରେ ନୂଆ ଲୋକଙ୍କ ସଙ୍ଗେ ଦେଖା । ସବୁଠୁ ତଳ ପାହାଚରେ ଥିଲାବେଳେ ନିଜର ଯାହା ପରିଚୟ ଦିଆଯାଇଥାଏ, ଉପର ପାହାଚରେ ଆଉ ସେ ପରିଚୟ ଦିଆଯାଏନା । ପାହାଚ ବଦଳି ସଙ୍ଗେ ସଙ୍ଗେ ପାହାଚରେ ଚଢୁଥିବା ମଣିଷର ପରିଚୟ ବି ବଦଳିଯାଏ ।

ଅବିନାଶର ମନେହେଲା, ସବୁ ଯେମିତି ବଦଳି ଯାଉଛି । ସେ, ତାର ବନ୍ଧୁମାନେ ଓ ତା'ଚାରିପାଖର ପୃଥିବୀ । ନିଜଲୋକଙ୍କ ପାଖରେ ଏଣିକି ସେ ଅଚିହ୍ନା ହୋଇ ଯାଉଛି । ତା ଠାରୁ ଦୂରରେ ଥିବା ଲୋକଙ୍କ ପାଖରେ ଚିହ୍ନା ହୋଇ ଉଠୁଛି । ଗଲାଥର ଯେତେବେଳେ ସେ ଅଳ୍ପ କେତେଦିନ ପାଇଁ ତା ଘରକୁ ବୁଲି ଯାଇଥିଲା, ତାର ପରିଚିତ ବହୁଲୋକ ତାକୁ କେବଳ ଦୂରରୁ ଅନାଇଲେ, ତା ନାଁ ଧରି ଡାକିବାକୁ ସେମାନଙ୍କ ସାହସ ନଥିଲା । ଅବିନାଶ ତଳକୁ ମୁହଁପୋତି ଚାଲିଗଲା । ସେମାନଙ୍କ ସାଙ୍ଗେ କଥା କହିବାକୁ ତାର ସମୟ ନଥିଲା, ସେ ଯେମିତି ପ୍ରଥମଥର ପାଇଁ ସେମାନଙ୍କୁ ଦେଖୁଚି, କିମ୍ବା ଦୋ ଦୋ ଚିହ୍ନା ହେଉଚି- କେବେ କେଉଁଠି ଦେଖିଥିଲା, ମନେ ପଡୁନାହିଁ । ସେତେବେଳେ ପୂଜାଛୁଟି । ତା ଘରପାଖର ଠାକୁରାଣୀ ଦେଉଳରେ ମହାଷ୍ଟମୀ ପାଇଁ ଭୋଗରାଗ ଚାଲିଥାଏ, ଘଣ୍ଟା ଶବ୍ଦରେ କାନ ଅତଡ଼ା ପଡୁଥାଏ । ଅବିନାଶକୁ ସ୍ୱତନ୍ତ୍ର ଭାବେ ନିମନ୍ତ୍ରଣ ଆସିଲା- । ଅତୀତରେ ଏମିତି ବହୁ ମହାଷ୍ଟମୀ ରାତିରେ ସେ ଠାକୁରାଣୀଙ୍କ ମନ୍ଦିର ପାଖରେ ଲୁଚକାଳି ଖେଳି ବହୁ ରାତି ଯାଏଁ ଅପେକ୍ଷା କରିଛି, ଭୋଗ ଉଠିଲେ ପ୍ରସାଦ ଖାଇବାକୁ । ପିଲାଦିନେ ଦୁଇ ଓଳି ଭଲଭାବରେ ଖାଇବାର ସୌଭାଗ୍ୟ ତାର ପ୍ରାୟ ଜୁଟୁନଥିଲା । ତେଣୁ ପ୍ରତ୍ୟେକ ଭୋଜି ଭାତରେ ସେ ବାପାଙ୍କ ସଙ୍ଗେ ଯାଉଥିଲା; ଅଥଚ ଏଥର ନିମନ୍ତ୍ରଣକୁ ସେ ନିର୍ବିକାର ଭାବରେ ପ୍ରତ୍ୟାଖ୍ୟାନ କରି ସେକେଣ୍ଡ୍ ସୋ ସିନେମା ଦେଖିବାକୁ ଗଲା । ଫେରିଲାବେଳକୁ ଠାକୁରାଣୀଙ୍କ ଦେଉଳପାଖେ ଡେ-ଲାଇଟ୍ ଲାଗି ଉଜ୍ଜ୍ୱଳ ଆଲୁଅରେ ବହୁ ସ୍ୱାସ୍ଥ୍ୟହୀନ ମଳିନ ବ୍ୟକ୍ତି ପ୍ରସାଦ ଖାଇବାରେ ବ୍ୟସ୍ତଥିଲେ । କେତୋଟି ଛୋଟ ପିଲା ରାତ୍ରିର ଆଧିକ୍ୟ ସତ୍ତ୍ୱେ ବି ଧାଡ଼ି ହୋଇ ବସି ସଶବ୍ଦେ ପାୟସ ଜାତୀୟ କୌଣସି ତରଳ ଦ୍ରବ୍ୟ ଖାଉଥିଲେ । ଗମ୍ଭୀର ଅବିନାଶ ଦୁଇ ପକେଟରେ ହାତ ପୂରାଇ ଚୁପ୍‌ଚାପ୍ ସେଇବାଟେ ଚାଲିଗଲା ବେଳେ ତାକୁ ଜଣାପଡ଼ିଲା, ଯେମିତି ସେ ନିଜ ଆଡକୁ ପିଠିକରି ଚାଲିଯାଉଛି କିମ୍ବା ଅବିନାଶ ଯେମିତି କେଉଁଠି ପଛରେ

ରହିଯାଉଛି-ସେ ଖାଲି ଗୋଟାଏ ନକଲି ସଂସ୍କରଣ-ତା ଦେହରୁ ମୂଲ୍ୟବାନ ପରିଚ୍ଛଦ କାଢ଼ିଦେଲେ, ଭିତରୁ ବାହାରି ଆସିବ ଗୋଟାଏ ଭୋକିଲା ମଣିଷ-ଦୂରରେ ଭୋଜି ଖାଉଥିବା ମଣିଷମାନଙ୍କୁ ଅନାଇ ଠିଆହେବ । ସେ କରେ ଗାମୁଛା ପିନ୍ଧା ଯୁବକଟି -ଯାହାର ସାରାଦେହ ଫୁଙ୍ଗୁଳା ଓ ଗାମୁଛାଟି ଉଦ୍ଦିଷ୍ଟ ସମସ୍ତ ଅଂଶ ଆବୃତ କରିବାକୁ ଅକ୍ଷମ-ତା'ରି ପାଖରେ ଯାଇ ବସିବ । ଗଣ୍ଡିଏ ଖାଇବାକୁ ଏମିତି କେତେବେଳ ସେ ଅପେକ୍ଷା କରିଛି ।

ନା, ପଛରେ କେହି ଡାକିନାହିଁ । ଅବିନାଶ ନିରାପଦରେ ଘରେ ପହଞ୍ଚିଲା ।

ସେମାନେ ପ୍ରସ୍ତୁତ ହୋଇ ସାରିଲେଣି । ରସିକମୋହନ ବାଣୁଆମାନଙ୍କୁ ଅନର୍ଗଳ କ'ଣ ବୁଝାଇ କହୁଛନ୍ତି । ମଇଳାଲୁଗା ଉପରେ ପୁରୁଣା ଛିଣ୍ଡା କମିଜ ଗଳାଇ ବାଣୁଆ ଦୁଇଜଣ ବନ୍ଧୁକ ପରଖି ଦେଖୁଛନ୍ତି । ଜଣଙ୍କ ମୁଣ୍ଡରେ ସ୍ପଷ୍ଟ ଲାଇଟ୍ । ରସିକମୋହନ ଦୁଇଟି ବଡ଼ ଟର୍ଚ୍ଚ କେଉଁଠୁ ଯୋଗାଡ଼ କରି ଆଣିଛନ୍ତି । ପାଖ ଦୋକାନରୁ ଆଳୁ ପିଆଜ କିଣାହୋଇ ଆସିଛି । ପ୍ରଥମ ବାଣୁଆ କହୁଚି-ଦକ୍ଷିଣ କାଳୀଙ୍କ ସିନ୍ଦୂର ଆସିଛି ?

ଅନ୍ୟ ବାଣୁଆ ଅଣ୍ଟାରେ ଖୋସିଥିବା ପତ୍ରଟିରୁ ବୁଢ଼ା ଆଙ୍ଗୁଠିରେ ସିନ୍ଦୂର କାଢ଼ି ସମସ୍ତଙ୍କ ମୁଣ୍ଡରେ ଟୋପାଏ ଟୋପାଏ ଲଗାଇ ଦେଇଗଲା । ଦିନ ହୋଇଥିଲେ ଅବିନାଶ ମନା କରିଥାନ୍ତା । ପ୍ୟାଣ୍ଟ୍ କୋଟ୍ ପିନ୍ଧା ଅଫିସରଙ୍କ କପାଳରେ ସିନ୍ଦୂର ଦେଖିଲେ ଲୋକ ଅନାଇବେ; ଆଶ୍ଚର୍ଯ୍ୟ ହେବେ । ଅବିନାଶ ସିନ୍ଦୂର ଲଗାଇଲା । କିଏ ଜାଣେ କ'ଣ ହେବ ! ଜଙ୍ଗଲକୁ ଯାଉଛନ୍ତି ଯେତେବେଳେ, କେଉଁ ଜନ୍ତୁ ହାବୁଡ଼ରେ ପଡ଼ିବେ ଜଣାନାହିଁ । ମୁଣ୍ଡରେ ସିନ୍ଦୂର ଲଗାଇବାରୁ ମନରେ ଦମ୍ଭ ଆସିଲା-ଯଦିଓ ସେ ଜାଣେ, ଏସବୁ କୁସଂସ୍କାର, ଯଦିଓ ସେ ଦେଉଳକୁ ଯାଏ ନାହିଁ, ବନ୍ଧୁମାନଙ୍କ ସଙ୍ଗେ ଗଲେ ସିନ୍ଦୂର ଯାଚିଲେ ହାତଯୋଡ଼ି ମନାକରେ । ତାର ମନେ ପଡ଼ିଲା, ସ୍କୁଲ୍‌ରେ ପଢ଼ିଲା ବେଳେ ଥରେ ସେ କାଳିଜାଈ ଯାଇଥିଲା ଏକ୍‌ସ୍‌କରସନ୍‌ରେ । ଚିଲିକାରେ ଡଙ୍ଗା ପିଟାଇ ନାଉରୀ ଉଚ୍ଚ ସ୍ୱରରେ କାଳିଜାଈଙ୍କ ନାମ ଉଚ୍ଚାରଣ କଲା । ଉପସ୍ଥିତ ସ୍କୁଲ୍ ଶିକ୍ଷକ ବି କାଳିଜାଈଙ୍କ ଉଦ୍ଦେଶ୍ୟରେ ହାତଯୋଡ଼ି ନମସ୍କାର କଲେ । ସବୁ ପିଲା ଶିକ୍ଷକଙ୍କୁ ଅନୁକରଣ କଲେ । ଏକା ଅବିନାଶ ନମସ୍କାର କରିନଥିଲା । ଏସବୁ ଖାଲି ଲୋକ ଦେଖାଣିଆ-ନିଜ ମନକୁ ଭୁଲାଇବା କଥା-ସେ ଭାବିଲା । ଅଥଚ ସେଇ ପୁଣି ଆଜି ଶିକାରକୁ ଯିବା ଆଗରୁ ମୁଣ୍ଡରେ ସିନ୍ଦୂର ଲଗାଇ ଜିପ୍‌ରେ ବସିଛି ଓ ତାକୁ ଜଣାପଡୁଛି, ସତେ ଯେମିତି ଏଇ ସିନ୍ଦୂରରେ ମିଶି ରହିଛି କେଉଁ ଆଦିମ ଶକ୍ତିର ଆଶ୍ୱସ୍ତି ବାଣୀ । ବାହାରେ ନିଜକୁ ଯେତେ ସୋଫିଷ୍ଟିକେଟେଡ୍ ବୋଲି ପରିଚୟ ଦେଲେ ବି

ତାର ମନ ଭିତରର କେଉଁ ଅନ୍ଧାରି କୋଣରେ ଛପି ରହିଛି ତାର ସେଇ ପୂର୍ବପୁରୁଷମାନଙ୍କ ଚିନ୍ତାଧାରା, ସେମାନଙ୍କ ଭୟ ଓ କୁସଂସ୍କାର । ସେମାନଙ୍କୁ ସେ ଦିନ ଆଲୁଅରେ ଅସ୍ୱୀକାର କରେ; କିନ୍ତୁ ଏମିତି ଅନ୍ଧାର ରାତିରେ ଯେତେବେଳେ ଜୀଅନ୍ତା ବିପଦ ଦାନ୍ତ ଦେଖାଇ ସାମନାରେ ଠିଆହୁଏ, ସେ ପୁଣି ଫେରିଯାଏ ସେଇ ପୁରୁଣା ଯୁଗକୁ । ତା ମନଭିତରେ କଞ୍ଚା ମାଉଁସ ଖାଉଥିବା ଜନ୍ତୁମାନଙ୍କ ପଛରେ ଟାଙ୍ଗିଆ ଧରି ଗୋଡ଼ାଉଥିବା ତାର କେଉଁ ପୂର୍ବପୁରୁଷର ଅଜଣା ଶକ୍ତି ଉଦ୍ଦେଶ୍ୟରେ କହିଉଠେ-ମତେ ଏ ବିପଦରୁ ଉଦ୍ଧାର କର, ତୁ ରକ୍ଷା ନକଲେ ମୁଁ ଏ ବିପଦରେ ମରିଯିବି ନାହିଁକି ?

ତେଣୁ ଅବିନାଶ ଏଣିକି ବୁଝିଲାଣି-ଚିଲିକାରେ ଡଙ୍ଗା ଫିଟାଇ ନାଉରୀ କାହିଁକି ଉଚ୍ଚ ସ୍ୱରରେ କାଳିଜାଈଙ୍କୁ ଡାକେ, କାହିଁକି ବାଣୁଆ ଅଣ୍ଟାରେ ଖୋସିଥାଏ ଦକ୍ଷିଣ କାଳୀଙ୍କ ସିନ୍ଦୂର । ସଭ୍ୟ ଶିକ୍ଷିତ ଅବିନାଶ ହୁଏତ ପାଟିକରି ଠାକୁରଙ୍କୁ ଡାକେନାହିଁ, କପାଳରେ ସିନ୍ଦୂର ଲଗାଇବାକୁ ମନାକରେ-କିନ୍ତୁ ସେ କ'ଣ ଫାଙ୍କିଦେଇ ପାରିବ ଯେ, ତା ପୂର୍ବପୁରୁଷଙ୍କ ରକ୍ତ ଖାଲି ତା ଶିରାରେ ଶିରାରେ ବହୁନାହିଁ, ତା ମନଭିତରେ ବି ବଞ୍ଚିରହିଛି ସେଇ ଟାଙ୍ଗିଆଧରା ଲଙ୍ଗୁଳି ମଣିଷମାନଙ୍କ କୁସଂସ୍କାର, ଭୟ, ଅନ୍ଧବିଶ୍ୱାସ ।

ଜିପ୍ ଚାଲିଛି, ଜିପ୍ ଆଲୁଅ ତେରଛା ହୋଇ ପଡୁଛି ରାସ୍ତା ଦୁଇପାଖର ଲମ୍ବ ଲମ୍ବ ଗଛମାନଙ୍କ ଉପରେ । ଲହଡ଼ି ପରି ଉଠ୍‌ପଡ଼ ରାସ୍ତାଟା ଯେମିତି ଅବିନାଶ ଆଡ଼କୁ ମାଡ଼ି ଆସୁଛି । ସାମନାର ରାସ୍ତା ପଛରେ ପଡ଼ିଯାଉଛି । ହେଇ-ଆଗ ପଛ ହୋଇ ଦୁଇଟି ବଳଦଗାଡ଼ି ଛଣ ବୋଝାଇ କରି ଆସୁଛନ୍ତି । ଶଗଡ଼ିଆ ବିଚରା ତରକା ବଳଦମାନଙ୍କୁ ସମ୍ଭାଳିବାକୁ ଶଗଡ଼ ଦଣ୍ଡାଟି ଧରିଛି ଦେହର ସବୁ ଶକ୍ତି ପ୍ରୟୋଗ କରି । ଜିପ୍‌ର ଗତି ମନ୍ଥର କରିବାକୁ ରସିକମୋହନ ଡ୍ରାଇଭରକୁ ନିର୍ଦ୍ଦେଶ ଦେଉଛନ୍ତି ।

ଅବିନାଶ ଭାବୁଛି, ଛଣ ଶଗଡ଼ ବୋହୁଥିବା ଏଇ ମଣିଷମାନଙ୍କ କଥା । ସେ ପିଲାଦିନୁ ପଢ଼ି ଆସିଛି, ମଣିଷ ଜାତିର ଇତିହାସରେ କେତେ ନୂଆ ଯୁଗ ଆସିଛି, ପୁରୁଣା ଯୁଗ ବଦଳି ଯାଇଛି । ପ୍ରଥମେ ମଣିଷ କୁଆଡ଼େ ଜଙ୍ଗଲରେ ପାହାଡ଼ ଗୁମ୍ଫାରେ ରହୁଥିଲା ଡରୁ ନଥିଲା ଖରାବର୍ଷାକୁ । ବାଘ ଦେଖିଲେ ଫାର୍ଶାରେ ଚୋଟ ମାରୁଥିଲା, ସେ ପୁଣି ବଦଳିଲା-ଘର ତିଆରି କରି ଶିଖିଲା, ଗଛ ଗଣ୍ଡି କାଟି ପାଣିରେ ଭସାଇଲା, ନିଆଁ ହୁଳା ଜଳାଇ ଗାଆଁରୁ-ଶସ୍ୟକ୍ଷେତ୍ରରୁ ଜନ୍ତୁ ହୁରୁଡାଇ ନିରାପଦରେ ରହିଲା । କେବେ ସେ ପଥରକୁ ଅସ୍ତ୍ର ରୂପରେ ବ୍ୟବହାର କରୁଥିଲା-ସେତେବେଳେ ଥିଲା ପଥର ଯୁଗ । ସେ ପୁଣି ଲୁହାର ବ୍ୟବହାର ଶିଖିଲା । ତଥାପି ସେତିକିରେ ସେ ସନ୍ତୁଷ୍ଟ ହେଲା ନାହିଁ । ନୂଆ ନୂଆ ଅସ୍ତ୍ର ତିଆରି ପାଇଁ ନୂଆ ନୂଆ ଉପାଦାନ ସେ ଖୋଜି ବାହାର କଲା । ପଥରଯୁଗ ସରି ଆସିଲା, ଲୁହାର ଯୁଗ, କୋଇଲାର ଯୁଗ, ପରମାଣୁର ଯୁଗ; କିନ୍ତୁ ସତରେ କ'ଣ ମଣିଷ ବଦଳୁଛି ? ଏବେ ବି ତ ଲୋକେ ଅଛନ୍ତି-ଯେଉଁମାନେ ଆଖିରେ ଜଳନ୍ତା ଦୃଷ୍ଟି ନେଇ ରାତି ରାତି

ଜଙ୍ଗଲରେ ବୁଲୁଥାନ୍ତି । ତେବେ ବର୍ତ୍ତମାନର ଯୁଗ ସେଇ ପଥରଯୁଗ ନ ହେବ କାହିଁକି ? ଯେଉଁମାନେ ରକେଟ୍‌ରେ ଉଡୁଛନ୍ତି, ସ୍କାଇସ୍କ୍ରେପରରେ ରହୁଛନ୍ତି, ସେମାନେ ଯେମିତି ଏ ଯୁଗର ପ୍ରତିନିଧି, ସେମିତି ବି ପ୍ରତିନିଧି ବଣ ଜଙ୍ଗଲରେ ଧନୁଶର ଧରି ଅଣ୍ଟାତଳେ ତାଳପତ୍ର ଗୁଡ଼ାଇ ବୁଲୁଥିବା ମଣିଷ ଦଳ । ତେଣୁ ଅବିନାଶ ବୁଝେ ନାହିଁ-କେବେ ଗୋଟିଏ ଯୁଗ ଯାଏ, ଆଉ ଗୋଟିଏ ଯୁଗ ଆସେ । ସବୁ ଯୁଗର ମଣିଷ ସବୁ ଯୁଗରେ ବଞ୍ଚିଛନ୍ତି । ଯେଉଁ ମଣିଷ ଗୋଷ୍ଠୀ ସମୟର ଗତିରେ ନିଜକୁ ବଦଳାଇ ନେଉଛି, ସେ ଇତିହାସକୁ ନିଜ ଅବସ୍ଥା ଅନୁସାରେ ଭାଗ ଭାଗ କରିବା ଭୁଲ୍ । ଯେଉଁ ମଣିଷ ଗୋଷ୍ଠୀ ସଭ୍ୟତାର ଆରମ୍ଭରୁ ଏଯାଏଁ ବି ବଦଳିନାହିଁ- ତା'ରି ଅବସ୍ଥା ଅନୁସାରେ ବର୍ତ୍ତମାନର ଇତିହାସକୁ ପଥର ଯୁଗ ଡାକିଲେ କ୍ଷତି କ'ଣ ?

ଜିପ୍ ଅଟକିଲା । ସହରର ଶେଷ ସୀମା କାହିଁ କେତେ ପଛରେ ରହିଲାଣି । ପ୍ରକାଶ ଭାଇଙ୍କ ଘରଠାରୁ ସେମାନେ ବହୁ ଆଗକୁ ଚାଲି ଆସିଲେଣି । ଶିକାରୀ ଦୁଇଜଣ ସୁଟିଂ କରିବାକୁ ଜିପ୍‌ରୁ ଓହ୍ଲାଇଲେ । ଆଉ ଅଳ୍ପ କେତେ ମାଇଲ୍ ଆଗକୁ ଗଲେ ଦଶପଲ୍ଲା । ଲମ୍ବା ପିଚୁ ରାସ୍ତା ଦୁଇକଡ଼େ ଖାଲି ଜଙ୍ଗଲ ଆଉ ଜଙ୍ଗଲର ଥଣ୍ଡା ରାତି । ଆକାଶର କେଉଁ କୋଣରେ ଲଜ୍ଜାବତୀ ଜହ୍ନ ଅବସନ୍ନ ଝିଅଟିର ମୁହଁ ପରି ଝାଉଁଳି ପଡ଼ିଛି । ଉପରକୁ ଅନାଇଲେ ଆକାଶ ପ୍ରଶସ୍ତ ଅଥଚ ଫାଙ୍କା । ସେଠି ଯେମିତି ଆଶ୍ରୟ ନାହିଁ, ଖାଲି ଅଭୟ ବାଣୀ । ଦୁଇ ପାଖେ ଜଙ୍ଗଲର କାନ୍ଥ । ଶିକାରୀ ଦୁହେଁ ଚୁପ୍‌ଚାପ୍ ଜଙ୍ଗଲ ଭିତରକୁ ଓହ୍ଲାଇ ଯାଉଛନ୍ତି । ଜଣେ ହେଡ୍ ଲାଇଟ୍ ପକାଉଛି-ଗଛ-ଲତା ଆଢୁଆଳରେ କେଉଁଠି ଛପିଥିବ ଜନ୍ତୁ, ହରିଣ କି କୁଟୁରା, କିଛି ନ ହେଲେ ଖରିଆ । ଅନ୍ୟ ବନ୍ଧୁମାନେ ଶିକାରୀ ଦୁଇଜଣଙ୍କୁ ଅନାଇ ରହିଛନ୍ତି । କେଉଁଠି କେତେବେଳେ ଗଛ ଆଢୁଆଳରେ ଜୁଳୁଜୁଳୁ ଦେଖାଯିବ ଦୁଇଟି ଆଖି, ଜଳନ୍ତା ନିଆଁ ପରି; ଅଥଚ ହେଡ୍‌ଲାଇଟ୍ ପଡିଲେ ସେ ଦୁଇ ଆଖିର ଚାହାଣୀ ବଦଳିଯିବ । ଜଳନ୍ତା ନିଆଁର ଉଗ୍ରତା ପରିବର୍ତ୍ତେ ସେଥିରେ ଥଣ୍ଡା ପାଣିର କାରୁଣ୍ୟ ଫୁଟି ଉଠିବ । ନିରୀହ ଚକିତ ଆଖି ଦୁଇଟି ଦେଖୁ ଦେଖୁ ଶିକାରୀର ବନ୍ଧୁକ ଫୁଟି ଉଠିବ, ଗୁଡୁମ୍ । ତା'ପରେ ରାସ୍ତାରେ ଅପେକ୍ଷା କରିଥିବା ମଣିଷ ଦଳଟି ବଧ ସ୍ଥାନକୁ ଦୌଡ଼ି ଯିବେ । ମେଞ୍ଚାଏ ରକ୍ତ ଓ ଗୋଟାଏ ମଲା ଦେହ । ଆଃ କି ତୃପ୍ତି !! ସେତିକି ପାଇଁ ସେମାନେ ଏତେ ରାତିରେ ନିକାଞ୍ଚନ ଜଙ୍ଗଲରେ ବୁଲୁଛନ୍ତି ।

ଜୀବନରେ ପ୍ରଥମଥର ପାଇଁ ଶିକାରରେ ଆସିଥିବା ଅବିନାଶ ମହାପାତ୍ର ଏଇ ଅଳ୍ପ କେତେଦିନ ହେଲା ବନ୍ଧୁକ ମାରିବା ଶିଖିଛି । ସବୁଦିନେ ବନ୍ଧୁକକୁ ସେ ଘୃଣା କରି ଆସିଥିଲା, ମାଛ ମାଂସ ଖାଉ ନଥିଲା । ରକ୍ତ ଦେଖିଲେ ତା ମୁଣ୍ଡ ବୁଲାଇ ଦେଉଥିଲା । ସେ ଅହିଂସା ନୀତିରେ ବିଶ୍ୱାସ କରେ ବୋଲି ପ୍ରଚାର କରୁଥିଲା । ମାଛ, ମାଂସ ନ ଖାଇବା ଉଚିତ ବୋଲି ଯୁକ୍ତି କରୁଥିଲା; କିନ୍ତୁ ଦିନେ ହଠାତ୍ ତାର ମାଂସ ତରକାରୀ ଖାଇବାର ଇଚ୍ଛା

ହେଲା । ବର୍ଷ ବର୍ଷ ଧରି ନିର୍ମମ ଭାବରେ ଯେଉଁ ଇଚ୍ଛାକୁ ସେ ଦଳି ଆସିଥିଲା,-କେତେ ଭୋଜି ଉତ୍ସବରେ ସୁଗନ୍ଧ ମାଂସ ବ୍ୟଞ୍ଜନ ଭକ୍ଷଣ ପାଇଁ ତାର ଯେଉଁ ଆଗ୍ରହ ମନ ଭିତରେ ଉଠି ମନ ଭିତରେ ମରି ଯାଇଥିଲା, ହଠାତ୍ ସେଦିନ ରାତିରେ ତାର ସେଇ ଇଚ୍ଛା ପ୍ରବଳ ହୋଇ ଉଠିଲା । ନିରାମିଷାଶୀ ଅବିନାଶ ମାଂସ ତରକାରୀ ଅନୁସନ୍ଧାନରେ ବାହାରିଲା । ସେତେବେଳକୁ ସମୁଦ୍ର କୂଳିଆ ସେଇ ଛୋଟ ସହରଟି ନିଦରେ ଢୁଳାଇ ପଡ଼ିଲାଣି । ଗଳି ରାସ୍ତାର ଶେଷ ମୁଣ୍ଡରେ ରିକ୍ସାବାଲାମାନେ ହାତ ଗୋଡ଼ ଜାକି ରିକ୍ସା ଉପରେ ଶୋଇ ଘୁଙ୍ଗୁଡ଼ି ମାରୁଛନ୍ତି । ଡିସେମ୍ବରର ଶୀତ ରାତିରେ ବି ଏ ସହରର ପିଚୁ ରାସ୍ତାରେ ବୁଲିବାକୁ ଭଲ ଲାଗେ । ଦିଲ୍ଲୀ ବା ସିମ୍ଲାର ହାଡ଼ଭଙ୍ଗା ଶୀତ ଏଠି ନାହିଁ । ରାତି ସାମାନ୍ୟ ଅଧିକ ହେଲେ ରାଜପଥ ଉପରୁ କୋଳାହଳ କମି ଆସେ, ଦୋକାନ ସବୁ ବନ୍ଦ ହୋଇଯାଏ । ସ୍ଥାନେ ସ୍ଥାନେ କେଉଁ ମଣ୍ଡପ ଉପରେ ଦଳେ ଲୋକ ଲଣ୍ଠନ ଆଲୁଅରେ ପଶା ଖେଳୁଥାନ୍ତି ଓ ଖେଳର ଉତ୍ତେଜନାରେ ଚିତ୍କାର କରୁଥାନ୍ତି ।

ଏମିତି ବହୁ ଥଣ୍ଡା ରାତିରେ ଅବିନାଶ ଏ ସହରରେ ବୁଲିଛି । ଅଧିକାଂଶ ସମୟରେ ଭବେନ୍ଦ୍ର ସିଗାରେଟ୍ ପିଇ ପିଇ ତା ସଙ୍ଗେ ସଙ୍ଗେ ଚାଲିଥାଏ । ସେମାନେ ତନ୍ନ ତନ୍ନ କରି ସହରଟିର ଚେହେରା ଦେଖନ୍ତି । ଅଦ୍ଭୁତ ଏ ସହର-ଯିଏ ଯେଉଁ ଦିଗରୁ ଅନାଏ, ତା ପାଇଁ ସେ ସେହିପରି ରୂପ ନେଇ ଠିଆ ହୁଏ । ଅବିନାଶ ତା ଜୀବନର ବହୁ ମୂଲ୍ୟବାନ ବର୍ଷ କଟାଇଛି ଏ ସହରକୁ ଚିହ୍ନିବାରେ- । ଆକାଶରୁ ସକାଳର ଆଲୁଅ ଝରିବା ଆଗରୁ ସେ ପହଞ୍ଚିଛି ସମୁଦ୍ର କୂଳରେ- ଦିନ ଦିନ ଧରି ଅନୁଭବ କରିଛି-ସମୁଦ୍ର ଭିତରୁ ଜୀବନ ଉଙ୍କି ଆସିବାର ସ୍ପର୍ଶ । ରାତିର ଅନ୍ଧାର ସମୁଦ୍ର ବାଲିରୁ ଅପସରି ଯିବା ଆଗରୁ କଳା ଛାଇ ପରି ଜଣେ ଦି ଜଣ ନୋଳିଆ ପଢ଼ୋଉ ମରାମତି କରୁଥାନ୍ତି, ସମୁଦ୍ର କୂଳେ ଏପଟ ସେପଟ ହେଉଥାନ୍ତି । ପୁଣି କେଉଁ ସୁଦୂରର ମହାନଗରୀରୁ ଆଗତ ଭଦ୍ରବ୍ୟକ୍ତି-କୌଣସି ଗୋପନ ବ୍ୟାଧିର ଉପଶମ ପାଇଁ ଡାକ୍ତର ପରାମର୍ଶ କ୍ରମେ ବୁଲୁଥାନ୍ତି, ସମୁଦ୍ର କୂଳେ କୂଳେ । ଦିନରେ ସେ କେତେ ସୁଖୀ ଜଣାଯାନ୍ତି; କିନ୍ତୁ ଏଇ ଅନ୍ଧାରରେ ହିଁ ଚିହ୍ନି ହୁଏ ତାଙ୍କ ମନକୁ, ଦୁରାରୋଗ୍ୟ ବ୍ୟାଧି ଓ ମାନସିକ ଦୁଶ୍ଚିନ୍ତାରେ ଯାହା ପୋଡ଼ି ପାଉଁଶ ହୋଇଯାଇଛି ।

ପୁଣି ବହୁ ଜହ୍ନ ରାତିରେ ଅବିନାଶ ବୁଲିଛି ଝାଉଁବଣ ଭିତରେ-ଥଣ୍ଡା ପବନ, ଜହ୍ନ ଆଲୁଅ ଓ ଝାଉଁପତ୍ରର ଧୂସର ଭାସ୍କର୍ଯ୍ୟ-ସବୁ ମିଶି ଗୋଟାଏ ଅଦ୍ଭୁତ ପରିବେଶ ସୃଷ୍ଟି ହୁଏ । ସମୁଦ୍ର ଗର୍ଜନ ବି ଶାନ୍ତ, ସୁନ୍ଦର । ଅବିନାଶର ମନେ ହୁଏ ସେ ବିସ୍ତୃତ ହେଉଛି ଆକାଶ ପରି । ଏ ଆକାଶ ଯେମିତି ସେ ନିଜେ । ତା ନିଜର ଅସ୍ତିତ୍ୱ ନାହିଁ, ସବୁରି ଭିତରେ ସେ ନିଜକୁ ଖୋଜି ପାଏ, ନିଜ ଭିତରେ ସବୁକୁ । ଦୂରରେ ଯେଉଁଠି ସମୁଦ୍ର ଓ ଆକାଶର ସୀମାରେଖା ମିଶିଯାଇଛି, ଅବିନାଶର ଆଖି ସେଇଠି ଲାଖି ରହେ; କିନ୍ତୁ ପର ମୁହୂର୍ତ୍ତରେ ଭବେନ୍ଦ୍ରର କଣ୍ଠସ୍ୱର ଶୁଣାଯାଏ-ଆଃ ! ବର୍ତ୍ତମାନ ନନ୍ଦିତାକୁ ପାଖରେ ପାଇଲେ... !

ଅବିନାଶ ଚମକି ପଡ଼େ । ନନ୍ଦିତା କଲେଜର ସହପାଠିନୀ ।

କିନ୍ତୁ ଏ ସହରଟା ଖାଲି ସ୍ୱପ୍ନ ନୁହେଁ, ସତ୍ୟ ବି । ସମୁଦ୍ର କୂଳରୁ ଦୂରେଇ ଗଲେ ଝାଉଁ ଗଛର ଛାଇ ପଡ଼ିଥିବା ପିଚୁ ରାସ୍ତା ସରିଯାଏ । ଆକାଶ ଉଞ୍ଚ ଦେଉଳ ସେପାଖେ ଗୋଟାଏ ପରେ ଗୋଟାଏ ମଣିଷ ବସ୍ତି-ରୋଗିଣୀ ନାରୀର ଶୀରା ପ୍ରଶିରା ପରି କେତେ ସାହୀ, କେତେ ଗଳି । ରାସ୍ତା ଦୁଇ ପାଖେ ନଳା ପାଣି, ଆବର୍ଜନା, ଛୋଟ ପିଲାଙ୍କ ପାଇଖାନା, ଧାଡ଼ି ଧାଡ଼ି କୁଷ୍ଠ ରୋଗୀ । ରାସ୍ତା ଉପରେ ଦଳ ଦଳ ମଣିଷ-ଦେହକୁ ଦେହ ଲଗାଲଗି, ଠେଲାଠେଲି । ସେଇ ଲୋକ ଗହଳି ଭିତରେ ପୁଣି ଆଗକୁ ଯିବାକୁ ବ୍ୟାକୁଳ, ରିକ୍‌ସା ବାଲାର ଠନ୍‌ଠନ୍ ଘଣ୍ଟି ଶବ୍ଦ, ମଟରର ହର୍ଣ୍ଣ୍ । ରିକ୍‌ସା ଉପରେ ଆସୀନ ହସ ହସ ମଣିଷଟି, ଯାହାର ଅଣ୍ଟା ତଳର ଅଙ୍ଗ ପ୍ରତ୍ୟଙ୍ଗ ସବୁ ଅସ୍ୱାଭାବିକ ଭାବେ ପୃଥୁଳ-ବେଶ୍ ଅଭ୍ୟସ୍ତ ରୀତିରେ ଲୋକ ଗହଳି ଭିତରକୁ ମେଞ୍ଚା ମେଞ୍ଚା ପାନ ଛେପ ପକାଇ ଲାଗିଥାଏ । ପୁଣି ସେଇଠି ଗାଈ ଷଣ୍ଢମାନେ ରାସ୍ତାରେ ପଡ଼ିଥିବା କଦଳୀ ଚୋପା ଖାଉଥାନ୍ତି, କଦବା କୁକୁରମାନଙ୍କ ଯୌନ ପ୍ରକ୍ରିୟା ଅବାଧ ଗତିରେ ଚାଲିଥାଏ ।

ଅବିନାଶ ଏଇ ସହରକୁ ଭଲ ପାଏ । ଆଉ ଅଳ୍ପ ଆଗକୁ ଗଲେ ଛୋଟ ଅଙ୍କାବଙ୍କା ଗଳି ରାସ୍ତା ସବୁ । ଘରେ ଘରେ ବାତଜରିଆ ଗୋଦରଗୋଡ଼ିଆ ମଣିଷ । ପୁରୁଷେ ଲେଖାଏଁ ଉଞ୍ଚ ଅଣଓସାରିଆ ପିଣ୍ଡାଉପରେ ବସି ଖୋଲାଦେହର ପିଞ୍ଜରା ହାଡ଼ ସବୁ ନିର୍ବିକାର ଭାବରେ ପଦାକୁ ଦେଖାଇ କେହି କେହି ଭାଙ୍ଗ ବାଟୁଥାନ୍ତି । ଚାରିପାଖେ କେତୋଟି ସରା, ଓଳି ଏବଂ ଭାଙ୍ଗ ଖାଇବାର ଆସନ୍ନ ସମ୍ଭାବନାରେ ହସ ହସ କେତେଜଣ ଯାତ୍ରୀ ଗୁମାସ୍ତା, ବରା, ପିଆଜୀ ବିକାଳୀ, ସ୍କୁଲ୍ ପିଅନ ।

ଏଇ ସହର ସହିତ ଅବିନାଶର ବ୍ୟକ୍ତିତ୍ୱର କିପରି ଗୋଟାଏ ସାମଞ୍ଜସ୍ୟ ଅଛି ବୋଲି ସେ ଏବେ ଅନୁଭବ କରୁଛି । ସେଦିନ ରାତିରେ ମାଂସ ତରକାରୀ ଖାଇବା ଲୋଭରେ ସେ ଯେତେବେଳେ ତିନି ଚାରୋଟି ଦୋକାନ ବୁଲି ନିରାଶରେ ଫେରି ଆସିଲା, ତାର ମନେ ହେଲା, ତା' ମନରେ, ବ୍ୟକ୍ତିତ୍ୱରେ, ସେ ପୁଣି କିଛି ଅଳିଆ ଆବର୍ଜନା ଜମା କରିଛି, ଯାହାକୁ ସବୁଦିନେ ଘୋଡ଼ାଇ ରଖିବାକୁ ହେବ । ତାର କିଛିଦିନ ପରେ ନିରାମିଷାଶୀ ଅବିନାଶ ଆମିଷାଶୀ ହେଲା ଏବଂ ମାଛ, ମାଂସ ଖାଇବା ସପକ୍ଷରେ ବନ୍ଧୁ ମହଲରେ ଯୁକ୍ତିତର୍କ କରିବାକୁ ଲାଗିଲା; କିନ୍ତୁ ରାତି ଅଧରେ ମାଂସ ଝୋଳ ଖାଇବା ଲୋଭରେ ଦୋକାନ ଦୋକାନ ବୁଲିବାର କାହାଣୀ କାହା ଆଗେ କହିବାର ସାହସ ତାର ନାହିଁ ।

ଅନ୍ଧାରୁଆ ଜଙ୍ଗଲରେ ସେମାନେ ବୁଲୁଛନ୍ତି । ସେମାନଙ୍କର ଜନ୍ତୁ ଦରକାର । ଏମିତି ଥଣ୍ଡା ରାତିରେ ନୂଆ ଡାକ ବଙ୍ଗଳାରେ ହରିଣ କି କୁଟୁରା ମାଂସର ଗରମ ଝୋଳ ଖାଇବାର ଲୋଭ ସେମାନଙ୍କୁ ଟାଣି ନେଇ ଯାଉଛି ଜଙ୍ଗଲ ଭିତରକୁ । ଆଗରେ ବାଣୁଆ ଦୁଇଜଣ-ଜଣଙ୍କ ମୁଣ୍ଡରେ ସ୍ପଟ୍‌ଲାଇଟ୍, କାନ୍ଧରେ ବନ୍ଧୁକ । ସ୍ପଟ୍‌ଲାଇଟ୍‌ର ଉଜ୍ଜ୍ୱଳ ଆଲୋକ ଘଞ୍ଚ

ବଣରେ ପଡୁଚି-ଆଲୁଅର ଗତି ସଙ୍ଗରେ ଘୂରି ବୁଲୁଛି କେତୋଟି ମାଂସଲୋଭୀ ମଣିଷଙ୍କ ଆଖିଡୋଳା । ସେମାନଙ୍କର କୁଆଡ଼କୁ ନିଘା ନାହିଁ-କେଉଁଠି ଗଛଡାଳ ନଇଁ ଆସିଛି, କାହା ସ୍ୱେଟର ସେଥିରେ ଲାଗି ଚିରିଗଲାଣି, କିଏ ପଥର ମୁଣ୍ଡାଟାଏ ଝୁଣ୍ଟି ଗୋଡ଼ରୁ ରକ୍ତ ବାହାର କଲାଣି । ଆଗପଛ ହୋଇ ସେମାନେ ଚାଲିଛନ୍ତି । ବାଣୁଆ ଦୁହେଁ ବେଳେବେଳେ ହାତ ଦେଖାଇ ସେମାନଙ୍କୁ ଠାରୁଛନ୍ତି-ଯାହାର ଅର୍ଥ, ତୁମେମାନେ ଚୁପ୍‌ଚାପ୍ ଅପେକ୍ଷା କର, ପାଦଶବ୍ଦରେ ଜନ୍ତୁ ହୁରୁଡ଼ି ଯିବେ । ଜନ୍ତୁ ନ ଦେଖିଲେ ସେମାନେ ଚୁ ଚୁ ଡାକୁଛନ୍ତି ଆସ, ଆଗକୁ ଯିବା । ଏଠି ଜନ୍ତୁ ନାହାନ୍ତି ।

ଘଣ୍ଟା ଘଣ୍ଟା ଧରି ସେମାନେ ବୁଲୁଛନ୍ତି । ରାତି ଅଧିକ ଗଭୀର ଓ ଥଣ୍ଡା ହେଉଛି । କେତେ ଗଛ ଡାଳ ଆଡ଼େଇ, ପଥର ଝୁଣ୍ଟି, ଶସ୍ୟ କିଆରୀ ଜୋତାରେ ଦଳି ଦଳି ସେମାନେ ବୁଲୁଛନ୍ତି, ତଥାପି ଜନ୍ତୁର ଦେଖା ନାହିଁ । ବାଣୁଆ ଦୁଇଜଣ ଖାଲିପାଦରେ ବଣର କଣ୍ଟା ପଥର-ଢିମା ମାଡ଼ି ମକ୍‌ଚି ଚାଲିଛନ୍ତି । ସ୍ବଟର୍‌ର ଆଖି ଅନ୍ଦିକନ୍ଦିରେ ଘୂରି ବୁଲୁଛି । କୋଉଠି ବୁଦା ଉହାଡ଼ରେ ପାଣି କୂଳେ ଚରୁଥିବା କୁଟୁରା ମୁହଁରେ ଆଲୁଅ ପଡ଼ିଲେ ସେ ଚମକି ଠିଆ ହେବ-ଆଗକୁ ପଛକୁ ଯାଇ ପାରିବ ନାହିଁ । ତା' ପରେ କାନ୍ଧରେ ବନ୍ଧୁକ ରଖି ପାଦ ଚାପି ଚାପି ତା ପାଖକୁ ଆଗେଇ ଯିବେ ବାଣୁଆ ଦୁଇଜଣ । ଜଣେ ତା ମୁହଁ ସାମ୍ନାରେ ଆଲୁଅ ହଲାଇ ତାକୁ ଜଳକା କଲେ, ଆରଜଣକ ଗୁଳି ଫୁଟାଇବ । ବନ୍ଧୁକ ଭାରି ଭାରି ଲାଗୁଛି । ତଥାପି କାହିଁ କେଉଁଠି ଆଖିର ଦେଖା ନାହିଁ ।

ସେ ଦିନ ଶିକାର ହେଲା ନାହିଁ । ବାଣୁଆ ଦୁଇଜଣ ନିଜ ନିଜ ଭିତରେ କଥା ହେଲେ-କିଏ କ'ଣ ମନ୍ତ୍ର କରିଦେଲାକି ! ଲେଉଟପାଣି କରିଦେଲେ ଆଉ ବନ୍ଧୁକ ନ ଫୁଟେ । ତେବେ ଲେଉଟପାଣିକୁ ଉପାୟ ଅଛି । ସେଥିପାଇଁ ତୁଳସୀପତ୍ର, କଣ୍ଟେଇ କୋଳି ପତ୍ର ଦରକାର । ଏଇଲେ ସେସବୁ କୁଆଡୁ ମିଳିବ ?

ସମସ୍ତେ ଥକ୍କା ହୋଇ ଜଙ୍ଗଲ ଭିତରେ ଖଣ୍ଡେ ଚଟ୍‌କା ଜାଗା ଉପରେ ବସିପଡ଼ିଲେ । ପୂର୍ବଦିଗ ଫର୍ଚ୍ଚା ଦେଖାଗଲାଣି । ଆଉ ଶିକାରର ଆଶା ନାହିଁ । ଏତେ ଚେଷ୍ଟା ହେଲା, ଫଳ ଫଳିଲା ନାହିଁ । ଫାମିଲି ପ୍ଲାନିଂ ଅଫିସର ଅବିନାଶ ବାବୁଙ୍କୁ ସାନ୍ତ୍ୱନା ଦେଇ ରସିକମୋହନ କହିଲେ, "ଆଜି ପାଗଟା କେମିତି ବିଗିଡ଼ିଗଲା । ଏ ଜଙ୍ଗଲରେ ଆଖି ଦେଖା ନ ଯିବା ଆଶ୍ଚର୍ଯ୍ୟ କଥା ।"

ଅବିନାଶ ଜଙ୍ଗଲ ଭିତରେ ଅଜଣା ଜୀବଜନ୍ତୁଙ୍କ ସ୍ୱର ଶୁଣୁଥିଲା । ତାର ମନେ ହେଉଥିଲା, ଜଙ୍ଗଲର ଯେମିତି ଜୀବନ ଅଛି, ତାର ଗୋଟିଏ ଆତ୍ମା ଅଛି । ଦିନ ଆଲୁଅରେ ନୁହେଁ, ଅଧରାତିରେ ଜଙ୍ଗଲରେ ଘୂରିବୁଲିଲେ ବୁଝି ହେବ-ଜଙ୍ଗଲର ଜୀଅନ୍ତା ରୂପ । ଜନ୍ତୁର ଆଖି ଖୋଜି ବୁଲିଲାବେଳେ ଜଙ୍ଗଲକୁ ଉପଲବ୍ଧି କରିବାକୁ ମଣିଷକୁ ବେଳ ନଥାଏ ।

ଜଣେ ବାଣୁଆ କହୁଛି, "ବୁଝିଲେ ବାବୁ, ଆଜି କ'ଣ ହୋଇଛି କେଜାଣି; କିନ୍ତୁ ଗଲା ସାଲ ଏ ଜଙ୍ଗଲରୁ ସମ୍ବରଟାଏ ମାରିଥେଲୁ-ପଣ୍ଡାଟାଏ କାହିଁକି ଟା ଉଞ୍ଚା ହେବ ! ଗାଆଁଟାଯାକ ମାଉଁସ ବାଣ୍ଟିଲୁ । ମାଉଁସ ନୁହେଁ ତ ଖାଲି ଘିଅ । ମାଉଁସ ଖରାରେ ଶୁଖାଇ ମାସେଯାଏଁ ରଖି ଖାଇଲୁ ।" ଆଉ ଜଣେ ପାଳି ଧରୁଛି, "ବାବୁ, ଶିକାର କରି କରି ବାଳ ପାଚିଲାଣି । ମୋର ରୁମ ଯେତେ, ଜନ୍ତୁ ସେତେ । ଏ ଜଙ୍ଗଲରୁ କିନ୍ତୁ ମୁଁ କେବେ ଖାଲି ହାତରେ ଫେରିନଥିଲି ।"

ନୂଆ ଜାଗାରେ ଏମିତି କେତେ ନୂଆ ଅନୁଭୂତି । ନୂଆ ମଣିଷଙ୍କ ସଙ୍ଗେ ଚିହ୍ନା, ଲାଗୁଛି, ସେମାନଙ୍କ ସଙ୍ଗେ ଆଗରୁ ଯେମିତି ବନ୍ଧୁତା ଥିଲା, ମଝିରେ ଛାଡ଼ବାଡ଼ ହୋଇଯାଇଥିଲା, ପୁଣି ସେଇ ବନ୍ଧୁତା ଫେରି ଆସିଛି । ଏଠି ଯେତେବେଳେ ଚାକିରୀ ପାଇଲା ଅବିନାଶ, ତା ଛାତି ଭିତର ଦାଉଁକିନା ହୋଇଗଲା । ବଡ ସହରରେ ଏତେଦିନ କଟାଇ ଆସିଛି-ଯେଉଁଠି ପୁଞ୍ଜା ପୁଞ୍ଜା ବିଜୁଳି ଆଲୁଅ, ସିନେମା, ମଟରଗାଡି, ରେଷ୍ଟୋରାଁ ଓ ଦେଶୀ ବିଦେଶୀ ମଣିଷ । ପୁରୁଷମାନଙ୍କର, ସ୍ତ୍ରୀମାନଙ୍କର ନୂଆ ନୂଆ ଫେସନ୍ । ସୁନ୍ଦର ମୁହଁ, ସୁନ୍ଦର ଚେହେରା । ପୁଣି ସାରା ଦୁନିଆର ଖବର ସେଇଠି । ଦୁନିଆର କେଉଁ ଅନ୍ଧାରି କଣରେ କେଉଁଠି କ'ଣ ଘଟିଲା ସବୁର ଚର୍ଚ୍ଚା । ସେଇ ଗହଳି ରାସ୍ତାରେ ଲାଉଡ୍ ସ୍ପିକରର ଚିତ୍କାର, କଳଗାଉଣାର ମନମତାଣିଆ ଗୀତ । ଏସବୁ ଛାଡ଼ି କୁଆଡ଼େ ଯିବ ସେ-କେଉଁ ଗଡ଼ଜାତ ମଫସଲକୁ-ଗାଉଁଲି ମଣିଷମାନଙ୍କୁ ଫାମିଲି ପ୍ଲାନିଂ ଶିକ୍ଷା ଦେବାକୁ । ଅବିନାଶ ପ୍ରଥମେ ପଛେଇଲା । ନା, ସେଠାକୁ ସେ ଯାଇ ପାରିବନାହିଁ, ଯେଉଁଠି ଟଙ୍କା ଥିଲେ ବି ଜୀବନକୁ ଉପଭୋଗ କରିବାର ସୁବିଧା ନାହିଁ । ସେ ବଡ଼ ସହରରେ ରହିବାକୁ ଚାହେଁ ।

କିନ୍ତୁ ତା ହେଲାନାହିଁ । ଘରେ ଦାରିଦ୍ର୍ୟ ଆଁ କରି ତାକୁ ଅନାଇ ବସିଛି । ଘର ବୋଲି ଗୋଟିଏ ବଖରା-ଅବିନାଶ ପିଲାଦିନୁ ଦେଖି ଆସିଛି, ସେଇ ମଳିନ, ଅନ୍ଧାରୁଆ ମାଟି ଚଟାଣ ଘରେ ରୋଷେଇ ହେଉଛି, ଶୁଆବସା ବି ହେଉଛି । ପୁଣି ତା'ରି ଭିତରେ ରଖାଯାଇଛି ସବୁ ଘରକରଣା ଜିନିଷ-ବୋଉର ପହିଲି ପାଳିରେ ଆସିଥିବା ପୁରୁଣା ପେଡ଼ି, ସିନ୍ଦୁକ, ବାକ୍ସ, ଲୁଗାପଟା, କଂସାବାସନ, କୋଣକୁ ଆଉଜା ହୋଇ ସନ୍ତରା ମସିଣା, ସ୍ୱର୍ଗତ ଗୋସେଇଁ ବାପାଙ୍କ ବଙ୍କୁଲିବାଡ଼ି-ଖଟ ତଳେ ବାଲି ବିଛାହୋଇ ତା ଉପରେ ବିଲାତି ଆଳୁ । ପୁଣି ଭାଡ଼ି ଉପରେ ଜାଳେଣୀ କାଠ, ପୁରୁଣା ଭଙ୍ଗା ପଲଙ୍କ, କୋଉ ଯୁଗର ସିତାରଟାଏ, ଗୋଛା ଗୋଛା ବରଡ଼ା । ତଳ ବଖରାଟା ସବୁବେଳେ ଭଙ୍ଗା, କେତୋଟି ମାଟିକାନ୍ଥ ହତାଶ

ହୋଇ ଛିଡ଼ା ହୋଇଛନ୍ତି । କାନ୍ଥରେ ଅନାବନା ଗଛ, ଦୂବ ଘାସ । କେହି ଭଦ୍ରଲୋକ ଘରକୁ ଆସିଲେ ତାକୁ ଘରଭିତରକୁ ଆଣି ବସାଇବାର ଉପାୟ ନାହିଁ । ଭିତରକୁ ଆସିଲେ ଅଣଓସାରିଆ ପିଣ୍ଡା ଉପରେ ସନ୍ତରା ମସିଣାରେ ଅତିଥିଚର୍ଚ୍ଚା । ପୁଣି ମଝିରେ ମଝିରେ ଅତିଥିକୁ ସାବଧାନ କରାଇଦେବା, ହାଁ ହାଁ ମୁଣ୍ଡ ନୁଆଁଇ ଚାଲନ୍ତୁ । ଦୁଆର ବନ୍ଧ ବାଜିବ ।

ଅବିନାଶ ମହାପାତ୍ର ଚାକିରୀ ପାଇଲା ଦୂର ପାହାଡ଼ିଆ ଗଡ଼ଜାତ ମୁଲକରେ ଓ ଭାବିଲା, ସେଠାକୁ ଯିବ କି ନାହିଁ । ଘରକୁ ସେ ଚାହିଁଲା-ତାକୁ ହତାଶ ଲାଗିଲା । କାନ୍ଥ ସବୁ ମଳିନ-ତା ବୁଢ଼ୀ ମା' ମଲାବେଳେ ଆଜକୁ ପନ୍ଦରବର୍ଷ ତଳେ ଥରେ ଧଉଳା ହୋଇଥିଲା । ତା'ପରେ ସେଥିରେ ଆଉ ଚୁନ ଲାଗିନାହିଁ । ଠାଏ ଠାଏ ପାନ ଭାଙ୍ଗିବାପରେ କାନ୍ଥରେ ଆଙ୍ଗୁଠିରୁ ଚୁନ ପୋଛାଯାଇଛି । ଅନ୍ୟତ୍ର ଛାରପୋକମାନଙ୍କ ବିପୁଳ ହତ୍ୟାକାଣ୍ଡ ଫଳରେ କାନ୍ଥର ନିମ୍ନାଂଶ ରଣଭୂମିର ରୂପ ଧାରଣ କରିଛି । ଆଉ ବାରିଆଡ଼ ମେଲା-ବାରିକୁ ବାରି ଲାଗିଛି । ଲୋକେ ଶାଗପଟାଳି କରିଛନ୍ତି, ପୋତିଛନ୍ତି ଲଙ୍କାମରିଚ ଗଛ । ଜଣକ ବାରିରୁ ଆଉ ଜଣକ ବାରି ଫରକ କରିବାକୁ ସିଝୁବାଡ଼ । କେବେ କାହାର ଗାଈ ଯା ବାଡ଼ିର ବାଡ଼ ଭାଙ୍ଗି ତା ବାଡ଼ିରେ ପଶୁଛି । ଆହା, ବିଚାରୀ ନାଲୁ ବୋଉ କେଡ଼େ କଷ୍ଟରେ ଲେଉଟିଆ ଶାଗ ପୁଞ୍ଜିଏ କରିଥିଲା, ଝୁଅଘରକୁ ପଠାଇଥାନ୍ତା, ତା ଝୁଅର ଲେଉଟିଆ ଶାଗରେ ବଡ଼ ଶରଧା । ହଠାତ୍ ଦିନେ ଖରାବେଳେ ଅଲକ୍ଷଣା ଗାଈଟା ପଶି ସବୁ ଖାଇ ଚମ୍ପଟ । ତା ପରେ ଲାଗେ କଳି । ନାଲୁବୋଉ କି ସହଜେ ଛାଡ଼ିବା ଲୋକ । ସେ ଅଣ୍ଟାରେ ଲୁଗା ଗୁଡ଼େଇ, ଅଙ୍କ ନଇଁ, ଗୋଟିଏ ହାତ ଅଣ୍ଟା ଉପରେ ରଖି, ଅନ୍ୟ ହାତଟି ହଲାଇ ହଲାଇ ଆରମ୍ଭ କରିଦିଏ ଗାଳି-ଦେଖେଇ ଶିଖେଇ, ଯେଉଁମାନଙ୍କର ଗାଈ ଅଛି, ସେମାନଙ୍କୁ ଶୁଣେଇ ଶୁଣେଇ ଗାଳି ଦିଏ ।

"ହେ କୋଉ ଭଲଲୋକର ପୁଅ, ଅକତ ଖିଆର ପୁଅ । ତମ ବାପ ଗାଈ ଅଖିଥେଲା । ହେ ଯୋଗିନୀ ଖିଆର ପୁଅ । ମୋର ପାଞ୍ଚଟଙ୍କାର ଶାଗ-ତମ ପୋଡ଼ପାଡ଼ ଗାଈ ଖାଇଗଲା । ଆଜି ନାଲୁପଣ୍ଡା ଘରୁ ଆସୁ ।"

ଅବିନାଶ ବିଚଳିତ ହେଲା । ଏହିପରି ଗୋଟିଏ ଘରେ ଏହିପରି ପରିବେଶରେ ସେ ଆଜିଯାଏଁ ରହି ଆସିଲା । ପୁରୁଣା ସହରଟି ଭିତରେ ଲଗାଲଗି, ଗୁଞ୍ଜାଗୁଞ୍ଜି କେତୋଟି ଘର । ଗୋଟିଏ ଘରର କଥାଭାଷା ଅନ୍ୟ ଘରର ଲୋକ ଶୁଣେ, କାନ୍ଥ ପାଖେ କାନଡେରି । ଜଣକ ଘରେ ଜିରା ଫୁଟିଲେ ପାଖ ଘରର ଲୋକ କାଶି କାଶି ବେଦମ୍ ହୁଏ । ପୁଣି ନୂଆ ବାହା ହୋଇଥିବା କୌଣସି ଯୁବକ ଉଚ୍ଚ ସ୍ୱରରେ ରେଡ଼ିଓ ଲଗାଇଲେ, କଟକ ସେଣ୍ଟରର ଗାଁ ଗହଳି କାର୍ଯ୍ୟକ୍ରମ ପାଞ୍ଚଟି ପରିବାର ସ୍ୱଚ୍ଛନ୍ଦରେ ଉପଭୋଗ କରନ୍ତି ।

ସେଇ ମଳିନ ଘରେ ପାଠ ପଢୁ ପଢୁ , ଖଟ ଉପରେ ଆଖି ବୁଜି ଭାବୁ ଭାବୁ ଅବିନାଶ ସ୍ୱପ୍ନ ଦେଖିଛି, ସେ ଘର ବଦଳିଯିବ । ପରିଷ୍କାର ପରିଚ୍ଛନ୍ନ ସୁନ୍ଦର ବଖରା

କେତୋଟି, ସଜ୍ଜିତ ଫୁଲଗଛ । ସାମନାରେ ଗେଟ୍ । ପ୍ରଚୁର ମୁକ୍ତ ପବନ, ସୂର୍ଯ୍ୟ ଆଲୁଅ । ଅବିନାଶର ସ୍ୱପ୍ନ ଏଯାଏଁ ସ୍ୱପ୍ନରେ ରହିଛି ।

ଅବିନାଶ ଆଶ୍ଚର୍ଯ୍ୟ ହେଲା, କିପରି ଏଇ ଘରେ ଏଇ ପରିବେଶରେ ସେ ଆଜିଯାଏଁ ବଢ଼ିଆସିଲା, ଏତୁଟିଏରୁ ଏତୁଟିଏ ହେଲା । ପୁଣି କିପରି ତାର ବାପା-ତାଙ୍କ ବାପା-ତାଙ୍କ ବାପା ଏଇଠି ଏଇ ପରିବେଶରେ ଜନ୍ମହେଲେ, ବଢ଼ିଲେ, ଘରସଂସାର କଲେ, ଶାସ୍ତ୍ର ଚର୍ଚ୍ଚା କଲେ, ପଣ୍ଡିତ ହେଲେ, ପରସ୍ପର ଭିତରେ ଝଗଡ଼ା କଲେ, ଘରଘର ଭିତରେ ପାଚେରୀ ଉଠାଇଲେ । ତା'ରି ଭିତରେ ହସ, କାନ୍ଦ, ଶଂଖା, ସିନ୍ଦୂର ସବୁ । ଏଇଠି ଏମିତି ଚେନାଏ ମାଟି ଉପରେ କେତେ ବଡ଼ ଗୋଟାଏ ପରମ୍ପରା, କେତେ ବଡ଼ ଗୋଟାଏ ଅତୀତ ଗଢ଼ି ଆସିଲା । ପୁଣି ଅବିନାଶର ନାସିକା କୁଞ୍ଚିତ ହେଲା । ତାର ମନେହେଲା ସେ ଅସଭ୍ୟ, ବସ୍ତିଲୋକଙ୍କ ମେଳରେ ରହିଛି । ତାର ଆଭିଜାତ୍ୟ ନାହିଁ । ତା ଘରକୁ ଅତିଥି ଆସିଲେ କଲିଂବେଲ୍ ଟିପନ୍ତି ନାହିଁ; ତାଙ୍କୁ ସ୍ୱାଗତ କରେ ନାହିଁ ବିଦେଶୀ ଆଲସେସିଆନ୍ କୁକୁର । ଚେୟାରରେ ବସିଲେ ହାତରେ ଚା'-ଟ୍ରେ ଧରି ସଙ୍କୁଚିତ ହୋଇ ଅପେକ୍ଷା କରେନାହିଁ ପୂଜାରୀ । ମନେପଡୁଛି ବନ୍ଧୁ ନରେନ୍ଦ୍ରଙ୍କ କଥା-ଆଃ କି କୋଠା ତାଙ୍କର ଭୁବନେଶ୍ୱରରେ ! ଘର ଭିତରେ ପଶିଗଲେ ଅସହ୍ୟ ଫୁଲ ବାସ୍ନା । ସେଠି ପଢ଼ିବାକୁ ଚୁପ୍‌ଚାପ୍ କରିଡର ପାଖରେ ଠିଆହୋଇ ସୁନ୍ଦର ଜହ୍ନରାତି କିମ୍ବା ରାସ୍ତା ଉପରେ ଚଳପ୍ରଚଳ ଲୋକଗହଳି ଉପଭୋଗ କରିବାକୁ ମନ ଡାକେ । ସେଠି ପଡ଼ିଶା ଘରର କଥା ଶୁଭେନାହିଁ । ମନଇଚ୍ଛା ଗୀତ ଗାଇହେବ, ପାଟିକରି କବିତା ପଢ଼ିହେବ । କି ଆରାମ୍ !!

ଅବିନାଶ ଶୁଣିଛି, ନରେନ୍ଦ୍ରର ବାପା କୁଆଡେ ଦୁର୍ନୀତି, କଳାବଜାରୀ କରି ଏତେ ବଡ଼ କୋଠା କରିଛନ୍ତି । ହେଉ ପଛେ ଦୁର୍ନୀତିର ଫଳ-ତାଙ୍କ ପିଲାମାନେ ଖାଇବା ପିନ୍ଧିବା ଚିନ୍ତାକରି ଅକାଳରେ ତ ବୁଢ଼ା ହେଉନାହାନ୍ତି ! ତାର ନିଜ ଉପରେ ଘୃଣା ଆସିଲା । ଘୃଣା ଆସିଲା ତା ବାପାଙ୍କ ଉପରେ - ଯେ ଜୀବନରେ ତା' ପାଇଁ କିଛି ରଖିନାହାନ୍ତି । ଖାଲି ତା'ର ମଙ୍ଗଳ ଆଶାରେ ଚମ୍ପାଫୁଲ ନେଇ ଠାକୁରଙ୍କ ଦେଉଳ ସାମନାରେ ଥୋଇ ଦେଇ ଆସିଛନ୍ତି, ବର୍ଷ ବର୍ଷ ହେଲା । ଅବିନାଶ ସେଭଳି କାର୍ଯ୍ୟର ପ୍ରତିବାଦ କରିନାହିଁ । ଭାବିଛି, ଦେଉଳ ଏରୁଣ୍ଡିରେ ଚମ୍ପାଫୁଲ ଥୋଇଲେ, ତାକୁ ମିଳିବ ନାହିଁ ଜୀବନର ସୁଖସ୍ୱାଚ୍ଛନ୍ଦ୍ୟ, ଯାହା ବନ୍ଧୁ ନରେନ୍ଦ୍ରଙ୍କୁ ମିଳୁଛି ।

ଭାବୁ ଭାବୁ କେତେ କଥା ମନେ ପଡୁଛି-ମନ ଗୋଟାଏ ସୂତା ବାଟୁଳି ଯେମିତି-ସୂତା ବାହାରୁଛି ତ ବାହାରୁଛି । ନିଜ ଦାରିଦ୍ର୍ୟ କଥା, ନିଜ ଚାକିରୀ କଥା ଭାବୁଭାବୁ ଅବିନାଶ ଭାବିଯାଉଛି କେତେ କ'ଣ -ସେମାନେ, ଯେଉଁମାନେ ତା ଚାରିପାଖେ ସବୁବେଳେ ଘେରି ରହିଛନ୍ତି । ନିଜ ଘରକୁ ଭାଙ୍ଗି ନୂଆକରି ତୋଳିବାକୁ ସ୍ୱପ୍ନ ଦେଖିଲାବେଳେ ସେ ଭାବୁଛି ଅନ୍ୟାନ୍ୟ ଘରଗୁଡିକ କଥା । ସେମିତି ଅନ୍ଧାରୁଆ, ମୁଣ୍ଡରେ ଦୁଆରବନ୍ଧ ବାଜେ,

ଗୋଟିଏ ବଖରାରେ ବାପ, ମାଆ, ବାହାହେଲା ପୁଅ ବୋହୂ, ବଢ଼ିଲା ଝିଅ । ତା'ରି ଭିତରେ ପିଲା ଜନ୍ମ ହୁଅନ୍ତି, ବୁଢ଼ା ରୋଗରେ ପଡ଼ନ୍ତି, ମରନ୍ତି । ସେଇ ବଖରାଏ ଲେଖାଏଁ ଟୁଙ୍ଗିଘରୁ ଅଧରାତିରେ ମଡ଼କାନ୍ଦଣା ଶୁଭେ, ପୁଣି ସେ ଘର ଚୂନ ଧଉଳା ହୁଏ, ଅଣଓସାରିଆ ପିଣ୍ଡାରେ ଘଡ଼ିକ ପାଇଁ ଡେ ଲାଇଟ୍ ଜଳେ, ବାହା ଭୋଜିଭାତ ହୁଏ ।

ଖୋଲା ବଣ ପାହାଡ଼ରେ ମନଇଚ୍ଛା ବୁଲୁଥିବା ନାଗସାପକୁ କେଳା ପେଡ଼ିରେ ବନ୍ଦକରି ରଖିଲା ଭଳି, ମଣିଷର ସମାଜସଂସ୍ଥା, ମଣିଷର କୁସଂସ୍କାର, ଅନ୍ଧବିଶ୍ୱାସ ମଣିଷକୁ ଏମିତି ମାଡ଼ିମକଚି ତାର ବିଷଦାନ୍ତ ଭାଙ୍ଗି ତାକୁ ପକାଇ ରଖିଛି ଅନ୍ଧାରୁଆ ଘରଟିମାନଙ୍କରେ । ଶହ ଶହ ବର୍ଷ ବିତିଗଲାଣି । ତାର ବିଷଦାନ୍ତ ନାହିଁ, ତେଣୁ ସେ ଅନ୍ୟାୟ ବିରୁଦ୍ଧରେ ବିଦ୍ରୋହ କରୁନାହିଁ, ସବୁ ମଥାପାତି ସହିଯାଉଛି; ଯେମିତି ସହିଯାଉଛି ମୁଣ୍ଡରେ ଦୁଆରବନ୍ଧ ବାଜିଲେ । ଭାବୁନାହିଁ; କ'ଣ କଲେ ଘର ଉଞ୍ଚାହୋଇ ତିଆରି ହୁଅନ୍ତା, ନଇଁ ନଇଁ ବାଟ ଚାଲିବା ଦରକାର ପଡ଼ନ୍ତା ନାହିଁ ।

ଆଖି ଆଗରେ ନାଚିଗଲେ ଗୋଟିଏ ପରେ ଗୋଟିଏ ପରିବାର । ମାଗା । ପଚାଶ ବର୍ଷର ବୁଢ଼ା । ସାହୀମୁଣ୍ଡରେ ଚାରିହାତ ଚଉଡ଼ା ତାର ଘର । ତାର କାମ ରଥଯାତ୍ରା ବେଳେ ରଥ ଉପରେ ଠିଆହୋଇ ଘଣ୍ଟ ପିଟିବା, ବରଷକେ ଥରେ । ବାକି ସମୟଟା ସେ ବଡ଼ଦାଣ୍ଡରେ କାହା ଫଟୋ ଦୋକାନରେ ବସି ଜଗନ୍ନାଥଙ୍କ ଫଟୋ ବାନ୍ଧେ । ଯାତ୍ରୀଙ୍କୁ ବିକେ । ସବୁ ରଥଯାତ୍ରାରେ ଚଳନ୍ତା ରଥ ଉପରେ ଅବିନାଶ ତାକୁ ଦେଖେ । ଅଣ୍ଟାତଳେ ସେଇ ଆଣ୍ଠୁ ନ ଲୁଚା ମଇଳା ଲୁଗା ସଫା ହେଲାନାହିଁ । ଦେହରେ କାମିଜ ଲାଗିଲା ନାହିଁ, ଖାଲି ବାଁ କାନ୍ଧରେ ନାଲି ପାଚିଲା ଗାମୁଛା । ଘରେ ପଟେ ଘଣ୍ଟ ଅଛି, କୋଉ କାଳରୁ କେଜାଣି ! ରଥଯାତ୍ରାବେଳେ ସେ ଘଣ୍ଟ କୋଉଠି ଥାଏ, ଖୋଜା ହୋଇ ବାହାରେ । ରଥ ଉପରେ, ଲକ୍ଷ ଲକ୍ଷ ଦେଶୀ ବିଦେଶୀ ମଣିଷଙ୍କ ଆଗରେ, କଙ୍କାଳମୟ ଦେହର ଗଢ଼ଣକୁ ଦେଖାଇ, ସାରା ଦେହକୁ ଆଗପଛ କରି, ସେ ଘଣ୍ଟ ପିଟେ । ରଥ ଚାଲେ । ସମୟ ବି ଆଗକୁ ଚାଲେ, ଯଦିଓ ରଥ ଦଉଡ଼ି ଟାଣିବା ପରି ସମୟକୁ କେହି ଟାଣିବା ଦରକାର ନାହିଁ । ମାଗାର ଗୋଟିଏ ଗୋଟିଏ ତିନୋଟି ସ୍ତ୍ରୀ ଗଲେଣି । ଏବେ ପୁଣି ନୂଆ ବାହା ହୋଇଛି । ଏଇ ସେ ଦିନ ଅବିନାଶ ଦେଖିଲା, ଦୁଆର ଏରୁଣ୍ଡି ପାଖରେ ମାଗାର ଯୁବତୀ ସ୍ତ୍ରୀ ଠିଆ ହୋଇଥିଲା । ଗର୍ଭବତୀ ଜଣା ପଡୁଥିଲା । ଅକାଳରେ ମରିଥିବା ତିନୋଟି ସ୍ତ୍ରୀଙ୍କ ସ୍ମୃତିକୁ ଚାପିଧରି ମାଗାର ଆଉ ଛଅ ସାତଟି ପିଲା ଦାଣ୍ଡ ଦୁଆରେ ବାଲିରେ ଖେଳୁଥାନ୍ତି, ଝାଡ଼ା ଫେରୁଥାନ୍ତି, ବାପଠାରୁ ଶୁଣିଥିବା ଖରାପ ଭାଷାରେ ଗାଳି ଦିଆଦେଇ ହେଉଥାନ୍ତି ।

ତା ପାଖକୁ ନବା । ଆଗେ କଚେରୀରେ ପଙ୍ଖା ଟାଣୁଥିଲା, ବାବୁଙ୍କ ବୋଲହାକ କରୁଥିଲା । ତା ସ୍ତ୍ରୀ ସାହୀରେ ଘରେ ଘରେ ପାଣି ଦେଉଥିଲା । ଏବେ ତ ଯୁଗ ବଦଳିଗଲା । ଅଫିସ୍‌ରେ କଳପଙ୍ଖା ଲାଗିଲା । ନବାର ଚାକିରି ଚାଲିଗଲା । ଜାତିରେ ସେ ବାରିକ, କିନ୍ତୁ

କ୍ଷିଅର କାମ ଶିଖିନାହିଁ । ତେଣୁ ବିଚରା ବାହା ନିମିତ୍ତରେ ଯାହା କାମ ପାଏ, ସେତିକି । ସ୍ତ୍ରୀ ପାଣିବୋହି ଯେଉଁ ଟଙ୍କା ଆଣେ, ଗୁଲି ଖାଇବାକୁ ସେଇଥିରୁ ପଇସା ନିଏ । ସ୍ତ୍ରୀ ପଇସା ନଦେଲେ ନିର୍ଧୂମ ମାଡ଼ ଚଢ଼ାଏ । ସ୍ୱାମୀ ସ୍ତ୍ରୀ ଦାଣ୍ଡରେ ଠିଆ ହୋଇ ଚିତ୍କାର କରନ୍ତି । ସେ କଳି ପୁଣି ଆପଣା ଛାଏଁ ଭାଙ୍ଗେ । ନବା ଏଠିସେଠି ବସି ପରଚର୍ଚ୍ଚା କରେ, ଗୁଲିଟାଣେ । ପୁଣି ପୁରୁଣା ଅଭ୍ୟାସ ହେତୁ ବେଳେବେଳେ ତା'ର ପୂର୍ବ କାର୍ଯ୍ୟକ୍ଷେତ୍ର କଚେରୀଆଡେ ବୁଲିଯାଏ । ତା'ସ୍ତ୍ରୀ କେବେ କେବେ 'ସେ କଚେରୀ ଯାଇଛନ୍ତି' ବୋଲି ସାହୀର ମାଇପିମାନଙ୍କୁ କହେ ।

ଆଉ ତା'ପାଖକୁ ଯେଉଁ ଘରଟି,ସେଥିରେ କେହି ନାହାନ୍ତି । ବୁଢ଼ୀଟିଏ ଦୁଆର ଆଗୁଳି ବସିଥାଏ । ବର୍ଷ ବର୍ଷ ଧରି ଅବିନାଶ ଦେଖି ଆସୁଛି, ସେଇ ବୁଢ଼ୀ, ସେଇଠି ସେମିତି, ବସିଛି ଯେ, ବସିଛି । ଅବିନାଶ ଛୋଟ ଥିଲା, ସ୍କୁଲ୍‌ରେ ପଢ଼ିଲା, କଲେଜରେ ପଢ଼ିବାକୁ ବଡ ସହରକୁ ଗଲା, ପୁଣି ଚାକିରୀ ପାଇଲା; କିନ୍ତୁ ସେ ବୁଢ଼ୀ ସବୁଦିନେ ଏକାଭଳି । ସମୟ ଯେମିତି ତା ଦାଣ୍ଡ ଦୁଆରେ ଅଟକି ଯାଇଛି । ଅବିନାଶକୁ ଦେଖିଲେ ସେଇ ଗୋଟିଏ ପ୍ରଶ୍ନ ସେ ପଚାରେ-'ବାବୁ ଚାକିରୀ ହେଲାଣି ?'

ଏମିତି ଅନ୍ୟମାନେ । ଗୋଦରୀ ବୁଢ଼ୀ ଚାନ୍ଦିଅପା । ଯା ତା ଘରେ କାମକରେ । ବୁଢ଼ୀ ମଲାବେଳେ ପାଞ୍ଚଶହ ଟଙ୍କା ରଖିଥିଲା, ଶେଯତଳୁ ତକିଆ ଭିତରୁ ବାହାରିଲା ।

ଆଉ ବାବାଜୀ ବୁଢ଼ାଟି । ଶ୍ୱାସରୋଗୀ । ମୋଟା ମୋଟି । ଯେଉଁଠି ପଙ୍ଗତ ହେଲେ ବୁଢ଼ାକୁ ଡାକରା । ବୁଢ଼ା ଧର୍ମକାର୍ଯ୍ୟ କରେ, ପୁଣି ମେଞ୍ଚା ମେଞ୍ଚା ଅଫିମ ଗିଳି ଦୁଆରେ ବସି, ଲୋକ ଜମାଇ, ସେମାନଙ୍କୁ ରାମାୟଣର କାହାଣୀ କହେ ।

ଜଣକ କଥା ମନେ ପକାଇଲେ, ଛାଏଁ ଆଉ ଜଣଙ୍କ କଥା ମନେ ପଡୁଛି । ଦୂରରୁ ସବୁ ମଣିଷ ଜଣା ପଡୁଛନ୍ତି ଏକା ଭଳି । ମଣିଷ ମଣିଷ ଫେଣ୍ଟାଫେଣ୍ଟି, ଗୋଳିଆ ଗୋଳି । ମଣିଷ ସଙ୍ଗେ ମିଶିଯାଇଛି କୁସଂସ୍କାର, ରୋଗ, ଦୁଃଖ, ଦାରିଦ୍ର୍ୟ-ରକ୍ତରେ ରକ୍ତ ହୋଇ ମାଂସରେ ମାଂସ ହୋଇ । ସବୁମିଶି ଗୋଟିଏ ଏକକ-ଶେଷରେ ଗୋଟିଏ ଚେତନାହିଁ । ଖୁବ୍ ତଳେଇ ଭାବିଲେ ମନେ ରହୁନାହିଁ ଦାରିଦ୍ର୍ୟ-ସେସବୁ ତ ବାହ୍ୟ ଅବସ୍ଥା ମାତ୍ର-ମନେ ହେଉଛି ଫିକା କୁହୁଡ଼ିଆ ଆଲୁଅରେ ଛାଇଗୁଡ଼ିଏ ଚଳପ୍ରଚଳ ହେଉଛନ୍ତି । ସେମାନଙ୍କ ଗତିବିଧି ଅଦ୍‌ଭୁତ, ସେମାନଙ୍କ କଥାଭାଷା ଅଦ୍‌ଭୁତ । -ସେମାନେ କେଡ଼େ ଆପଣାର ଜଣାପଡ଼ନ୍ତି-ପୁଣି ଜଣା ପଡ଼ନ୍ତି କେଡ଼େ ପର-ଅବିନାଶ ଯେମିତି ସେମାନଙ୍କୁ ମୋଟେ ଜାଣିନାଇଁ, ମୋଟେ ଚିହ୍ନି ନାଇଁ ।

ଅବିନାଶ ସେଇ ମଣିଷମାନଙ୍କୁ ଭଲ ପାଇଛି-ସେଇମାନଙ୍କ ଭିତରୁ ସେ ଜଣେତ-ହେଉପଛେ, ଆଜି ସେ ସେମାନଙ୍କଠାରୁ ଭିନେ-ସେମାନେ ତାକୁ ଦେଖି ଶଙ୍କିଯାଆନ୍ତୁ ପଛେ । ସେଇମାନେହିଁ ପ୍ରଥମେ ତା'ର ଜନ୍ମ ଖବର ପାଇଥିବେ ଓ ଦେଖିଥିବେ ସେ କେମିତି ପିଲାଟି

ଦିନରୁ ବଢ଼ି ଆସିଛି । ମଇଳା ହାଫ୍‌ପ୍ୟାଣ୍ଟ୍ ପିନ୍ଧି ଖାଲି ପାଦରେ ଦେହରେ ମଳିଝାଳ ବୋହି ତା ସାହୀର ଅଣ ଓସାରିଆ ଗଳିରେ ସେ ଗୁଲି ଖେଳିବାର, ଡାବୁପୁଆ ଖେଳିବାର ଓ ଗୁଡ଼ି ଉଡ଼ାଇବାର ଦୃଶ୍ୟ ସେଇମାନଙ୍କ ଭିତରୁ ଏବେବି କାହାର କାହାର ମନେ ଅଛି । ମଝିରେ ମଝିରେ ମନେ ପକାଇ ଦିଅନ୍ତି କେହି କେହି "ଆହା, ତୁ ଏଡୁଟିଏ ହେଲୁଣି ! ମାଆ ନଥିଲା ପିଲାଟି କେଡ଼େ ନାରଖାର ହେଲୁ ରେ ।"

"ଏଡିକି ଦୁଷ୍ଟ ଥିଲୁ ତୁ । ଚାଲିଲା ଶଗଡରେ ହାତ ପୂରାଉଥିଲୁ । ପୁଣି ଏଡ଼ିକି ସୁଧାର ହୋଇଗଲୁ । ପଢ଼ାପିଲା ପରା ଦୋସରା କାଟର ହେବେ ।"

ଏ ପାହାଡ଼ିଆ ସହରକୁ ଚାକିରି କରିବାକୁ ଆସିବା ଆଗରୁ ଅବିନାଶ ସାହୀର କାହାରି କାହାରି ଘରକୁ ବୁଲିବାକୁ ଯାଇଥିଲା । ସେ ଯାହା ଘରକୁ ବୁଲିବାକୁ ଗଲା, ସେ ଘରେ ଆଗରୁ ପହଞ୍ଚି ସାରିଥିଲା ଅବିନାଶର ଚାକିରୀ ପାଇବାର ସମ୍ବାଦ । ସବୁବେଳେ ଦାଣ୍ଡ ଦୁଆରେ ବସିଥିବା ପୂର୍ବତନ ପୁଲିସ୍ କର୍ମଚାରୀ ମହନି ବାବୁ ଅବିନାଶକୁ ପାଖକୁ ଡାକିଲେ । ଅବିନାଶ ମୁହଁକୁ ତଳକୁ ପୋତି ଠିଆ ହେଲା ମହନି ବାବୁଙ୍କ ଆଗରେ । ମହନି ବାବୁ କେଡ଼େ ଧୀରସ୍ଥିର ମଣିଷ-ଅଥଚ ଅବିନାଶ ପିଲାଦିନୁ ଶୁଣି ଆସିଚି, ଏହାଙ୍କ ପ୍ରବଳ ପ୍ରତାପ ସଂପର୍କରେ କେତେ ରୂପକଥା, କେତେ କିମ୍ବଦନ୍ତୀ । ସେ ପୁରୁଣା ଯୁଗର ପୁଲିସ, ତାର ପ୍ରତୀକ ନିଶ ଦୁଭପଟ ମନେ ପକାଇଦିଏ-ନାଲ ପଗଡ଼ିକୁ ନ ଡରଇ କିଏ ? କଥା କଥାକେ ସେ କହନ୍ତି ସାହୀ ଲୋକଙ୍କୁ, ପଶା ଖେଳିଲାବେଳେ, କିମ୍ୱା ପଙ୍ଗତରେ ବସିଥିବାବେଳେ - "ସେ ବେଳ ଥିଲା ଦୋସରା । ବୁଝିଲ ପଣ୍ଡାଏ ! ଗୋରା ଦେଶର ଲୋକ ଆମକୁ ଶାସନ କରୁଥିଲେ । ସେମାନଙ୍କ ଅକଲ କେତେ, ସାତ ସମୁଦ୍ର ତେର ନଈ ପାରିହୋଇ ସେମାନେ ଆସିଥିଲେ । ସେମାନଙ୍କୁ ସିନା ରଜା କହିବ, ଆଉ ଏ ରାମା ଦାମା ଶାମା ଖଦଡ଼ ଖୋଳ ଗଳେଇ ଯେତେ ମନ୍ତ୍ରୀ ହେଲେ, ସେ ଅକଲ ପାଇବେ କାହୁଁ ?"

ମହନିବାବୁଙ୍କ ପୁରୁଣା ଘରଟିରେ ଏବେ ବି ମହାନୁଭବ ପଞ୍ଚମ ଜର୍ଜ୍‌ଙ୍କ ଫଟୋ ଖବର କାଗଜରୁ କଟା ହୋଇ ମରା ହୋଇଛି । ଇଂରେଜ ରାଜାଙ୍କ ରଜତ ଜୟନ୍ତୀ ବେଳେ ବିଶ୍ୱସ୍ତ ସରକାରୀ କର୍ମଚାରୀ ଭାବରେ ସେ ଦୁଆର ଚାଳ ଉପରେ ଆମ୍ବ ଡାଳ ଖୋସିଥିଲେ । ପୁଣି-ଯେତେବେଳେ ଗୋଟାଏ କ'ଣ ହୁରି ପଡ଼ିଲା ଯେ ଦେଶ ସ୍ୱାଧୀନ ହେଲା-ଗାନ୍ଧି ମହାତ୍ମା ଦେଶରୁ ଅଛୁଆଁ ଲୋପ କଲେ, ସବୁ ମଣିଷ ସମାନ-ଅଗଷ୍ଟ ପନ୍ଦରରେ ସବୁ ଘରେ ନାଲି ତ୍ରିରଙ୍ଗା ପତାକା ଖୋସା ହେଲା,-ସେତେବେଳେ ବି ମହନିବାବୁ ଦୁଆର ଚାଳ ଉପରେ ସ୍ୱାଧୀନ ପତାକା ଉଡାଇଲେ; 'ସମାଜ'ରୁ ଗାନ୍ଧିଙ୍କ ଫଟୋଟି କାଟି

ଅଠାରେ କାନ୍ଥରେ ଲଗାଇଥିଲେ ।

ସେଇ ମହନିବାବୁ, ସବୁବେଳେ ଦାଣ୍ଡ ଦୁଆରେ ହିଁ ବସିଥାନ୍ତି-ସ୍ତ୍ରୀକୁ କୁଆଡେ ତଡି ଦେଇଛନ୍ତି । ଘରେ ଚାକରାଣୀଟିଏ ଆଣି ରଖିଛନ୍ତି । ସ୍ତ୍ରୀ ତାଙ୍କ ଭାଇ ଘରେ ଯାଇ ରହିଥିଲାବେଳେ ଅବିନାଶର ବୁଢ଼ୀମା ତାଙ୍କ ପାଖକୁ ଯାଏ । ତାଙ୍କ ଦୁଃଖରେ ସମବେଦନା ଜଣାଏ । ତାଙ୍କ ନାଁ ପାର । ସେ ତୁଳସୀ ମାଳ କରି ସବୁଦିନ ଅବିନାଶର ବୁଢ଼ୀମା ହାତରେ ଦେଉଳକୁ ପଠାନ୍ତି । ସେ ତୁଳସୀ ମାଳ ଜଗନ୍ନାଥ ଘେନା କଲେ କି ନାହିଁ ଜଣାନାହିଁ, କିନ୍ତୁ ଭାଇଘରେ ସେମିତି ମାଳଗୁନ୍ଥି ମହନିଙ୍କ ସ୍ତ୍ରୀ ମଲେ । ମହନି ପଚାରିଲେ ନାହିଁ । ଅବିନାଶର ବୁଢ଼ୀମା ପାର ଆଗେ ଗୋଟିଏ ଢଗ ବୋଲନ୍ତି-ତୁନି ହ'ଲୋ ଶୁଆଶାରୀ, ପୋଇଲି ଭୋଗୁଛି ସୁଖ ଶିରୀ । ପିଲାଦିନେ ଅବିନାଶ ବୁଢ଼ୀମା ସଙ୍ଗେ ପାର ଘରକୁ ଗଲାବେଳେ ଏଇ ଢ଼ଗଟି ବହୁବାର ଶୁଣିଚି ।

ସେ ବି ବ୍ରିଟିଶ୍ ଅମଳର କଥା ।

ସାହୀଲୋକ ଏସବୁ ଆଲୋଚନା କରନ୍ତି ନାହିଁ । ଏ ପୁରୁଣା ହୋଇଗଲାଣି । ମହନିବାବୁ ଏବେ ଆଉ କାହାରି ଆଗେ ପ୍ରତାପ ଦେଖାନ୍ତି ନାହିଁ । ଧୀରେ ଧୀରେ ଜମେଇ ଜମେଇ କଥା କହନ୍ତି । ଅବିନାଶକୁ ପାଖକୁ ଡାକି, କଅଁଳେଇ, ମହନି ପଚାରୁଛନ୍ତି- "ଅଫିସର ଚାକିରୀ ପାଇଛ ପରା? ଅବଶ୍ୟ ଟଙ୍କା ଦୁଇ ଶହ ମିଳିବ ତ?" ଅବିନାଶ ମୁଣ୍ଡ ହଲାଇ ସମ୍ମତି ଜଣାଇଲା ପରେ ବୁଢ଼ାଙ୍କ ସ୍ୱର ଆହୁରି ନଇଁ ଆସିଲା । ନିହାତି ବିଶ୍ୱସ୍ତ ଯେମିତି । ପୁଣି ପ୍ରଶ୍ନ "ଭଲ ଚାକିରୀ ? ଦି ପଇସା ଅଛି ?"

ଅବିନାଶ ହସିଦେଇ ଚାଲିଯାଇଛି । ମନେ ପଡ଼ିଛି, ସ୍କୁଲ୍‌ରେ ପଢ଼ିଲାବେଳେ ଶିଖିଥିବା ନୀତିକଥା-ମିଛ କହିବ ନାହିଁ, ଲାଞ୍ଚ ନେବ ନାହିଁ । – ଆଉ ଆଉ କେତେ କଥା । ସବୁ ମନେ ଅଛି, କିନ୍ତୁ ଭାବିଲେ ସିରିୟସ୍ ଲାଗୁନାହିଁ । ପ୍ରାଇମେରୀ ସ୍କୁଲ୍‌ରେ ଯେଉଁ ଶିକ୍ଷକ ପିଲାମାନଙ୍କୁ 'ଲାଞ୍ଚନେବା ପାପ' ବୋଲି ଶିଖାଉଥିଲେ, ସେ ଗଣେଶ ଚତୁର୍ଥୀ, ବସନ୍ତ ପଞ୍ଚମୀରେ ଅଭିଭାବକମାନଙ୍କ ସହିତ କେତେ ଯୁକ୍ତିତର୍କ କରି ଭେଦା ଟଙ୍କା ସଂଗ୍ରହ କରୁଥିଲେ । ଘରକୁ ବୋହି ନେଉଥିଲେ କୁଡୁଆ କୁଡୁଆ ଅଭଡା, ଡାଲି ଓ ତରକାରୀ । ଗୋଟିଏ ଛାଞ୍ଚୁଣୀ କିଣିବାକୁ ସେ ପୁଣି ଆଦାୟ କରୁଥିଲେ ପ୍ରତି ପିଲାଠାରୁ ପଇସେ ଲେଖାଏଁ । ଶ୍ରେଣୀରେ ଚାଳିଶି ଜଣ ପିଲା । ଛାଞ୍ଚୁଣୀ ଦାମ୍-ତିନି ପଇସା ।

ଅବିନାଶ ଭାବିଲା-ମହନିବାବୁ ଭୁଲ୍ କହିଲେ କି ଠିକ୍ କହିଲେ, କିଏ ବିଚାର କରିବ ? ପୋଥିରେ ପଢ଼ା କଥା ଅଙ୍ଗେ ନିଭାଇବା କଥାଠାରୁ କେତେ ଫରକ୍ !! ଆଗେ ଯୋଉ କଥାକୁ ସେ ଘୃଣା କରୁଥିଲା ଏବେ ସେ ସବୁ ଭଲ ଲାଗିଲାଣି । ଭଲ ନ ଲାଗିଲେ ବି ଘୃଣା ଆସୁନାହିଁ । ମନରେ ଭାବ ଆସୁଛି-ହଁ ଚାଲିଛି ତ ଚାଲିଛି । ଅନ୍ୟକଥାରେ ମୁଣ୍ଡ ଖେଳେଇବାକୁ ସମୟ କାହିଁ ? ଆସ୍ତେ ଆସ୍ତେ ସେ ଅନୁଭବ କରୁଛି, ସେ ଯେମିତି ନିଜ ଭିତରେ ନିଜେ ସଙ୍କୁଚିତ

ହୋଇ ଆସୁଚି କଇଁଚଟି ଭଳି, ଯିଏ ବାହାରେ ଆଘାତ ପାଇଲେ ନିଜ ଖୋଳପାର ଅନ୍ଧାର ଭିତରେ ଜାକିଜୁକି ହୋଇ ରହେ । ହେଉପଛେ ଅନ୍ଧାର, ନିରାପଦ ।

ଅବିନାଶର ମନେପଡୁଛି ସେଇ ଗପ-ରାତି ପାହିଲା ବେଳକୁ ଜଣେ ମଣିଷ ଦେଖିଲା, ସେ ଏକ ପ୍ରକାଣ୍ଡ ପୋକ ହୋଇଯାଇଛି ଓ ତାର ଅସଂଖ୍ୟ ଗୋଡ଼ ସାଲୁ ବାଲୁ କରି ଶୂନ୍ୟରେ କିଛି ଗୋଟିଏ ଧରିବାର ଚେଷ୍ଟା କରୁଚି । ସେ ହୁଏତ ନିଜେ ସେଇ ପୋକ-ସେ ବି କିଛି ଗୋଟାଏ ଧରିବାକୁ ଚେଷ୍ଟା କରୁଚି, ପାରୁନାହିଁ । ପିଲାଦିନୁ ତା ସାମ୍ନାରେ ଆଦର୍ଶର ଯେଉଁ ପର୍ଦ୍ଦାଟି ସେ ଝୁଲାଇ ରଖିଥିଲା, ଏବେ ଦେଖୁଚି, ସେ ପର୍ଦ୍ଦାରେ ଗୋଟିଏ ବିରାଟ କଣା । ସେଇ କଣା ବାଟେ ଅନ୍ୟପାଖ ଦେଖାଯାଉଚି ଜଳ ଜଳ, ଯେଉଁଠି ଜଣେ ନୁହେଁ, ଶହ ଶହ ମହନିବାବୁ ତାକୁ ବିଶ୍ୱସ୍ତ କଣ୍ଠରେ ପଚାରୁଛନ୍ତି- "ଅଫିସର ଚାକିରି, ଉପୁରି ଅଛି ?"

ମନେ ପଡୁଛି ନରହରି ପାଣି । କମର୍ସିଆଲ୍ ଟ୍ୟାକ୍ସ ଅଫିସର୍ । ଘୁଷ୍ ନେବା ସପକ୍ଷରେ ସେ ଯୁକ୍ତି ଦିଅନ୍ତି, "ଆହେ ରଖ ହେ, ତମ ଆଦର୍ଶ । ଆଦର୍ଶଗୁଡା ଗିଳି ଗିଳି ବଦ୍‌ହଜମୀ ହେଲାଣି । ଆଦର୍ଶ କଥା ଆଲୋଚନା ପାଇଁ ଲିଭର୍ ଦରକାର; ବାପାଙ୍କର ସଂପତ୍ତି ବାଡି ଥିବା ଦରକାର । ଆଉ ଏମିତି କେତେ ଅବିନାଶ ଗଲେଣି । ଛାତ୍ର ଥିବାବେଳେ ଖଦଡ ପିନ୍ଧୁଥିବା, ନିଶ ଦାଢ଼ୀ ରଖୁଥିବା କେତେ ଆଦର୍ଶବାଦୀ ପରେ ଟେରିଲିନ୍ ପିନ୍ଧୁଛନ୍ତି, ସିନେମା ଷ୍ଟାରଙ୍କ ପରି ନିଶ ରଖୁଛନ୍ତି ।"

ଅଦ୍‌ଭୁତ ମଣିଷଟି ନରିହରି ପାଣି । ତାକୁ କେହି କେହି କହନ୍ତି ପାଗଳ, ଆଉ କେହି କେହି କହନ୍ତି କମ୍ୟୁନିଷ୍ଟ । ସରକାରୀ ଚାକିରୀରେ ଥାଇ ବି ପାନ ଦୋକାନ, ଚା' ଦୋକାନରେ ସରକାରଙ୍କ ବିରୁଦ୍ଧରେ ସେ ଗପେ । ମୋଟା ଫ୍ରେମ୍ ଚଷମା ଭିତରୁ ତାର ତେଜିଆନ୍ ଆଖି ଦୁଇଟା ବିରାଡି ଆଖି ପରି । ମନେହୁଏ, ଯେମିତି ସେ ହୃଦୟଟାକୁ ଡଗ ଡଗ କରି ପଢ଼ି ପକାଉଛି । ତୁମେ ତାକୁ କିଛି ଅଛପା ରଖି ପାରିବନାହିଁ । ସମସ୍ତଙ୍କର ଗୋଟେ ମତ ହେଲେ ତାର ଆଉ ଗୋଟିଏ ମତ । ଯାହା ବୁଝିଥିବ ସେଇଆ । ଯେତେ ବୁଝାଇଲେ ନୁହେଁ । କହେ "ଘୁଷ୍ ନ ନେବା ପାପ । ବଡ଼ ବଡ଼ ଲୋକେ ଘୁଷ୍ ନେଉଛନ୍ତି, ସାନ ସାନ ନନେବେ କାହିଁକି ? ସମସ୍ତେ ଘୁଷ୍ ନେଲେ କ୍ରମେ ଶାସନ କଳର ନୈତିକତା ଭାଙ୍ଗି ପଡିବ । ତା' ପରେ ଲୋକେ ସଚେତନ ହେବେ, ଆନ୍ଦୋଳନ କରିବେ । ଆମର ଏଇ ପୁରୁଣା ଗୋଲାମି ଶାସନସଂସ୍ଥା ଭୁଷୁଡ଼ି ପଡ଼ିବ । କାରଣ ନଥିଲେ କାର୍ଯ୍ୟ ନାହିଁ । କାରଣ ହେଲା ଦୁର୍ନୀତି; କାର୍ଯ୍ୟ ହେଲା ବିପ୍ଲବ, ଆନ୍ଦୋଳନ । ବିପ୍ଲବର ଫଳ ହେଲା ସଂସ୍କାର, ଅଗ୍ରଗତି । ଆମେ ବିପ୍ଲବ ଚାହୁଁ । ତେଣୁ ବିପ୍ଲବ ପାଇଁ କ୍ଷେତ୍ର ପ୍ରସ୍ତୁତ କରିବାକୁ ହେଲେ ଆମକୁ ଲାଞ୍ଚ ନେବାକୁ ହେବ, ଦୁର୍ନୀତି କରିବାକୁ ହେବ ।"

ପୁଣି କହେ "ନିଜେ ଯେତେ ସମ୍ଭବ ଗାଁ ଲୋକଙ୍କୁ ଡରାଇ ରଖ । ଗାଁ ଲୋକଙ୍କ ସାମନାରେ ଇଂରାଜୀରେ କଥା କୁହ, ସବୁବେଳେ ଟାଇ କୋଟ୍ ପିନ୍ଧ । ଲୋକଙ୍କୁ ନ ଡରାଇଲେ

ସେମାନେ ତୁମକୁ ପସନ୍ଦ କରିବେ ନାହିଁ । ଓଲଟି ତୁମକୁ ଡରାଇବେ ।" କମର୍ସିଆଲ୍ ବ୍ୟାଙ୍କୁ ଅଫିସର୍ ଭାବେ ତାର ଅନୁଭୂତି ସେ କହେ । ମଳିମୁଣ୍ଡିଆ ଲୋକଙ୍କୁ ଦେଖିବା ତ ଦୂରର କଥା, ସେମାନଙ୍କ କଥା ଶୁଣିଲେ ହିଁ ସେ ବିରକ୍ତି ପ୍ରକାଶ କରେ । ଅବିନାଶ ସମସ୍ତଙ୍କ କଥା ଶୁଣିଛି । ଯାହା ଅନୁଭୂତି ଯେପରି, ତାହାର କଥା ମଧ ସେହିପରି । ପ୍ରତ୍ୟେକେ ନିଜ କଥା ଅନ୍ୟକୁ ବୁଝାଇବା ପାଇଁ ଚେଷ୍ଟା କରନ୍ତି । ଜଣେ ଜଣେ ବାହାରନ୍ତି ଧର୍ମ ପ୍ରଚାରକ, ଦାର୍ଶନିକ କି ଅବତାର, ସେମାନେ ଯାହା କହନ୍ତି ତାହା ଅନେକଙ୍କ ମନକୁ ଘେନିଲା ଭଳି ଜଣାଯାଏ-ତିଆରି ହୁଏ ଦଳ, ଗୋଷ୍ଠୀ, ସଂପ୍ରଦାୟ । ତା'ପରେ ମୂଳକଥା କୁଆଡ଼େ ଯାଏ-ପରିଣାମରେ କଳି ତକରାଳ, ଯୁଦ୍ଧ । ଏହିପରି ତ ଲାଗିଛି ଇତିହାସର ଏମୁଣ୍ଡ ସେମୁଣ୍ଡ ।

ତା ଚାକିରି ପାଇବାର ସମ୍ବାଦ ଜଣାଇବାକୁ ସେ ବନ୍ଧୁ ବାନ୍ଧବଙ୍କ ଘରକୁ ଯାଇଥିଲା । ଯାଇଥିଲା ତାର ସଂପର୍କୀୟ ଖୁଡ଼ୀ ଘରକୁ ବହୁତ ଦିନ ପରେ । ଖୁଡ଼ୀ ମସିଣା ପକାଇ ଦେଲେ । ପକ୍ଷାଘାତରେ ବହୁଦିନୁ କତରାଲାଗି ତାର ଦାଦା କୁଶଳ ପଚାରିଲେ । ଅବିନାଶ ଭାବିଥିଲା ସେମାନେ କହି ବସିବେ ସେମାନଙ୍କ ଦୁଃଖ, ଦାରିଦ୍ର୍ୟ, ବ୍ୟାଧି ପ୍ରସଙ୍ଗ । ସେମାନେ ତାହା କହିଲେ ନାହିଁ । ଦୁଃଖ କ୍ରମେ ଦେହସୁହା ହୋଇ ତାର ଦୁଃଖତ୍ୱ ହରାଇଛି । ମନେହେଉଛି, ଆପଣାର ଏହି ଦାଦାଙ୍କୁ ଶିଶୁ ଅବିନାଶ ଦେଖିଥିଲା ଦେଉଳରେ, ତାର ହେତୁ ହେଲା ବେଳକୁ । ସେତେବେଳେ ସେ ମାଟିଆ ଜାମାପେଣ୍ଟ୍ ପିନ୍ଧି ହାତରେ ଗୁଆ କୋରଡ଼ା ଧରି ବଡ଼ ଦେଉଳ ସିଂହ ଦ୍ୱାର ପାଖେ ଠିଆ ହୋଇଥିଲେ । ବୁଢ଼ୀମାଙ୍କ ସଙ୍ଗେ ଦେଉଳକୁ ଗଲାବେଳେ ସବୁଦିନେ ତାଙ୍କୁ ସେ ସେମିତି ଦେଖିଥିଲା । ତାଙ୍କ ପ୍ରତାପରେ ସେ ଅଭିଭୂତ ହୋଇଥିଲା । ବୁଢ଼ୀମା ସଙ୍ଗେ ରାସ୍ତାରେ ଗଲାବେଳେ ରାସ୍ତାସାରା ପଡ଼ିଥିବା ହାତୀଗୁହ ମାଡ଼ିଲେ ବୁଢ଼ୀମା କହୁଥିଲା, "ହାତୀଗୁହ ମାଡ଼ିଲେ ପୁଲିସ ହବୁ ।" ଆଉ ରଜାଙ୍କର ହାତୀ ନାହାନ୍ତି କି ପ୍ରବଳ ପ୍ରତାପୀ ପୁଲିସ ହେବା ପାଇଁ ଅବିନାଶର ଇଛା ନାହିଁ ।

ଖୁଡ଼ୀ ଚା' ତିଆରି କରୁଛନ୍ତି । ହାଣ୍ଡିଶାଳରେ କ'ଣ ସବୁ ଦରାଣ୍ଡୁଛନ୍ତି । ମଇଳା ଟିଣ ଡବାରୁ ଚିନି ଟିକିଏ, ସେଥିରେ ପିମ୍ପୁଡ଼ି । ଛୋଟ ଅଣିକିଆ ଚା' ପୁଡ଼ାରେ ଚା' ଅଛି କି ନାହିଁ । ସଞ୍ଜ, ମିଞ୍ଜି ମିଞ୍ଜି ଜଳୁଛି ପୁରୁଣା ଲଣ୍ଠଣଟି । ବତୀ ତେଜିଲେ ଉଠୁନାହିଁ । କଳ ବିଗିଡ଼ି ଯାଇଛି । ଲାଗୁଛି ହତାଶ । ସେ ଦିନର ସେହି ପ୍ରତାପୀ ଦାଦା, ଯିଏ ସିଂହଦ୍ୱାରେ ଠିଆ ହୋଇ ଶହ ଶହ ଲୋକଙ୍କ ଗତିବିଧି ନିୟନ୍ତ୍ରଣ କରୁଥିଲେ, ରଥଯାତ୍ରା ବେଳେ ଚଳନ୍ତା ରଥ ଉପରେ ଠିଆହୋଇ ଲୋକଙ୍କୁ ଦୁଇ ପାଖକୁ ଆଡ଼େଇ ଯିବାପାଇଁ କ୍ରମାଗତ ନିର୍ଦ୍ଦେଶ ଦେଉଥିଲେ, ଗୁଆ କୋରଡ଼ାରେ-ଯେ ପୁଣି ପରେ କୋଉ ଛାପାଖାନାରେ କ'ଣ କାମ କଲେ, ତା'ପରେ ହେଲେ ଅସୁସ୍ଥ-ପକ୍ଷାଘାତ ରୋଗୀ-ଶୋଇଛନ୍ତି ଅସହାୟ ଭାବେ ତା ସାମନାରେ । ନିଃସନ୍ତାନ । ପଡ଼ୋଶୀ ଘରର ପିଲାମାନେ ଆସି ବୋଲହାକ କରିଯାଆନ୍ତି । ଅବିନାଶର କଳ୍ପନାର ପ୍ରତାପୀ ପୁରୁଷଟିର ପ୍ରେତ ଯେମିତି ତା ସାମନାରେ ଶୋଇଛି । ଢେଗା ଢେଗା ଆଖି ମେଲାଇ କଳା ଓଠରେ ହସ

ଉକୁଟାଇ ପଚାରୁଚି- "ବାବୁ, ପାଠପଢ଼ି ଚାକିରି କଲ । ଆଉ ଡେରି କାହିଁକି ? ହାତକୁ ଦି'ହାତ ହେଲେ ସଇଲା । ତେଣିକି ତମ କଥା ତମର ।"

ଅନ୍ଧାରୁଆ ହାଣ୍ଡିଶାଳୁ ଦାଦାଙ୍କ କଥାର ପ୍ରତିଧ୍ୱନି ଆସୁଛି- "ହଇଏ, କ'ଣ କହୁଥିଲିକି, ଆମ ଗାଁର ଉଦିମ ! ତା'ଝିଅ ପେଇଁ କହୁଥିଲା । ଆମ ଅବି ତା ମନକୁ ବଡ଼ ପାଇଛି ।"

"ଛି-" ଚିଡ଼ି ଉଠୁଛନ୍ତି ଦାଦା, ପକ୍ଷାଘାତ ରୋଗୀ, ଠେସ ଦେଇ ବସିଛନ୍ତି ଚିରା ତୁଳା ଉପୁଡା ତକିଆରେ । କହୁଛନ୍ତି, "ଆଲୋ, ସେ କ'ଣ ଦିଆନିଆ କରିବେ ? ଯକ୍ଷଘର ତାଙ୍କର ।"

"ହଁ-ତା'ସତ ଦିଆନିଆକୁ ସେମାନେ ପାରିବେ ନାହିଁ ।"

ପିତଳ ତାଟିଆରେ ତାଟିଆଏ ଚା । ଅଦା ବାସ୍ନା । ଅବିନାଶ ଚା ଖାଇଲା । ଖୁଡ଼ୀ କହୁଛନ୍ତି- "ଅବିର ପିଲାଦିନୁ ବତକରେ ବଡ଼ ସଉକ । ଆମ ନଟବାବୁଙ୍କ ବତକ ଦେଖିବା ପାଇଁ ସ୍କୁଲ୍ ଛୁଟି ପରେ ସବୁଦିନ ପରା ସେ ଆସୁଥିଲା ! ସବୁବେଳେ କହିବ, ବତକଟିଏ ଘରକୁ ନେବି ।"(ନଟବାବୁ ଦାଦାଙ୍କ ପଡ଼ୋଶୀ । ଆଗେ ଦୁଇ ଅଗଣା ମଝିରେ କାନ୍ଥ ଉଠିନଥିଲା ।)

ନଟବାବୁ ମଲେଣି । ଡେଙ୍ଗା ପେଟା ମଣିଷ । ବାଡ଼ିରେ ଜାତିଜାତିକା ଫୁଲଗଛ ଲଗାଇଥିଲେ । ସେ ମଲାପରେ ଫୁଲଗଛରେ କେହି ପାଣି ଦେଲେ ନାହିଁ । ଗଛ ସବୁ ଶୁଖିଗଲା । ଏବେ କେତୋଟା ଖାଲି କୁଣ୍ଡ, ଗୋଟାଏ ଗୋଟାଏ କୁଣ୍ଡରେ ମୃତ ବୃକ୍ଷର ଅବଶିଷ୍ଟାଂଶ ।

ଖୁଡ଼ୀ କହୁଛନ୍ତି, "ଅବି, ତୋର ମନେଅଛି, ସମୁଦ୍ର କୂଳରେ ସେଇ ଯୋଉ ବାବୁଘରକୁ ଯାଉଥିଲୁ ଓଷଦ ପାଇଁ । ମିଠା ଓଷଦ । ସବୁବେଳେ ଲଗେଇଥିବୁ ବେଶୀ ଓଷଦ ଆଣିବା । ଏତେ ବାଟ ଆସି ଏତିକି ଟିକିଏ ଓଷଦ ।"

ଅବିନାଶ ହସିଲା । ଦାଦା ହସିଲେ । କହିଲେ, "ଆଲୋ, ଓଷଦ ଖାଇବା ବେଳ ହେଲାଣି, ଲାଗୁଚି ।" ଖୁଡ଼ୀ ଓଷଦ ଦେଲେ । ସମସ୍ତେ ନୀରବ ।

ଅବିନାଶ ଉଠିଲା ।

ନୂଆ ସହରରେ ନୂଆ ଜୀବନ । ଗଡ଼ି ଚାଲିଛି ସମୟ । ଅବିନାଶ ଭୁଲି ଗଲାଣି ଯେ, ସେ ଦିନେ ଏ ସହରକୁ ଆସିବାକୁ ଡରୁଥିଲା । ଅଚିହ୍ନା, ଅଜଣା ମଣିଷ, ଅପରିଚିତ ପରିବେଶ, ସବୁ ଆଜି ମନେ ହେଉଛନ୍ତି ଚିହ୍ନା ଜଣା । ଯେଉଁ ଆଖି ସବୁଦିନେ ତାକୁ ଦେଖି ପ୍ରଶ୍ନରେ ଢାଙ୍କି ହୋଇଥିଲେ, ସେଇ ଆଖି ସବୁରୁ ଝରୁଛି ସ୍ନେହ, ବନ୍ଧୁତା, ଆଶୀର୍ବାଦ, କଦବା ହିଂସା ଓ ସନ୍ଦେହ । ଅବିନାଶକୁ ସହଜ ଲାଗୁଛି ଏସବୁ । ଏଇ ନୂଆ ମଣିଷଗୋଷ୍ଠୀ ମଧ୍ୟରୁ ସେ ବାଛିନେଲାଣି ତା'ର ବନ୍ଧୁ, କାହାକୁ ଡାକିଲାଣି ଭାଇ-ଭାଉଜ, କାହାକୁ ଅଜା, ମାମୁଁ । ପୁଣି ସ୍କୁଲ୍ ବା କଲେଜରେ ପଢୁଥିବା କେଉଁ ଛାତ୍ରୀକୁ ସେ ମନେ ରଖିଛି, ବନ୍ଧୁମାନଙ୍କୁ ପଚାରି ବୁଝିଲାଣି ତା'ର ନାଁ, ତା'ର ଘର-ଜାଣିଲାଣି କେତେବେଳେ ସେ ପଢ଼ିବାକୁ ଯାଏ, କେତେବେଳେ ସାନଭାଇ ସଙ୍ଗେ ବୁଲିଯାଏ ପାର୍କ୍‌କୁ । ଚେତନ ଅବଚେତନ ମନତଳେ କାହାପାଇଁ କେତେ ସଂପର୍କ ଖଞ୍ଜି ହେଲାଣି । ଶେଷରେ ସବୁ ମିଶି ଗୋଟାଏ ମାୟା ଓ ମୋହ, ଏ ସହର ପାଇଁ, ପରିଚିତ କେତୋଟି ମୁହଁ ପାଇଁ । ଆସ୍ତେ ଆସ୍ତେ ଏ ସହର ସହ ଅବିନାଶର ସଂପର୍କ ଅଧିକ ନିବିଡ଼ ହିଁ ହେଲା । ଦେହସୁହା ହୋଇଗଲା ଏଠାର ପ୍ରତିଟି ଦୃଶ୍ୟ, ପ୍ରତ୍ୟେକଟି ଶବ୍ଦ । ସକାଳୁ ଝରକା ଖୋଲି ଅନାଇଲେ ଦେଖାଯାଏ ଯେଉଁ ପାହାଡ଼, କେବେ କେଉଁ ରଙ୍ଗରେ - ଚକ୍‌ଖଡ଼ି ବୋଳି ହେଲାପରି ଧୋବ, ଆକାଶ ପରି ଶାଗୁଆ, ମେଘ ପରି କଳା ନୀଳ ମିଶାମିଶି, ସେଥିରେ ପୁଣି ଛାଇ ଆଲୁଅର ଖେଳ, ଗୋଡ଼ିଆଗୋଡ଼ି-ପାହାଡ଼ ଉପରେ ଟୋପାଏ ଜଳନ୍ତା ବିନ୍ଦୁ ପରି ଜୀବଜନ୍ତୁ - ସବୁଦିନେ ସକାଳେ ସେଇ ଦୃଶ୍ୟ ଦେଖିବାରେ ଅଭ୍ୟସ୍ତ ହୋଇଗଲାଣି । ଘର ସାମନା ରାସ୍ତାରେ ସ୍କୁଲ୍ ପୁଅଝିଅମାନେ ପାଟିକରି ପଢ଼ିବାକୁ ଯିବା, ସବୁଦିନେ ଏକା ପରି, ନୂଆ କିଛି ନୁହେଁ । ଚା' ଦୋକାନରେ ବସିଲେ ଆସି ପହଞ୍ଚନ୍ତି ପୁରୁଣା ଗରାଖ ସବୁ-କାଲି ଠିକ୍ ଏଇ ବେଳରେ ଯେଉଁମାନେ ଆସିଥିଲେ । ସେଇ ଘାଗଡ଼ା ସ୍ୱର, ସେଇ ମଳିନ ହଳଦିଆ ମୁଁ ଓ ଠିକ୍

କାଲିଭଳି ରୁଢ଼ ଆଦେଶ-କପେ କଡ଼ା ଚା' । ଖରାରେ ସିଝି ସିଝି ଆପଣା ଆପଣା ସମୟକୁ ଜଗି ଆସି ପହଞ୍ଚନ୍ତି ବସ୍‌ସବୁ-ବସ୍ ଦେଖିଲେ ହିଁ ଜାଣିହୁଏ କିଏ ଏହାର ଡ୍ରାଇଭର ଓ ବସ୍ ଠିଆହେଲେ ହିଁ ବହି ବିକାଳୀ ବୁଢ଼ାର ପାଟି ଶୁଭେ, ଖୁଲଣା ସୁନ୍ଦରୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ମଥୁରାମଙ୍ଗଳ । ବୁଢ଼ା ତା'ର କଳା କଳା ଦାନ୍ତ ଦେଖାଇ ପଦେ ପଦେ ରସରସିଆ ଗୀତ ବି ଗାଏ- ଅର୍ଥ ବି କରେ ଓ ବସ୍ ଭିତରୁ ମୁହଁ ସବୁ ବାହାରକୁ ବାହାରେ ଗୀତ ଶୁଣିବାକୁ -କେବେ କାହା ହାତ ବସ୍ ଭିତରୁ ଲମ୍ବିଆସେ । ବହିଟିଏ ବିକ୍ରି ହୋଇଯିବା ଆଶାରେ ବୁଢ଼ା ଆଉରି ଜୋର୍‌ରେ ପାଟିକରି ଗୀତ ଗାଏ ।

ତା'ପରେ ସେଇ ବସ୍ ଯାଏ, ଆଉ ଗୋଟିଏ ବସ୍ ଆସେ । ପୁଣି ସେଇ ପୁରୁଣା ଦୃଶ୍ୟ ।

ଚା' ଦୋକାନରେ ବସି ଚା' ଖାଉ ଖାଉ ଅବିନାଶ ସେଇ ପୁରୁଣା ଦୃଶ୍ୟକୁ ବାରମ୍ବାର ଦେଖେ । କେବେ କେଉଁ ସହରର ବାବୁ ସଫା ଜାମା ପ୍ୟାଣ୍ଟ ପିନ୍ଧି ସାଙ୍ଗରେ ସୁନ୍ଦରୀ ସ୍ତ୍ରୀ ଝିଅ ଧରି ଏଇ ମଳି ମୁଣ୍ଡିଆଙ୍କ ମେଳରେ ବସ୍‌ରେ ବସି ଚାଲିଯାନ୍ତି । ଓଟପରି ମୁଣ୍ଡ ଟେକି ଅନ୍ଧାର ଓ ଅଳନ୍ଧୁଭରା ଚା' ଦୋକାନ ଭିତରୁ ଅନାଏ ଅବିନାଶ – ନା, ସେମାନେ ଅପରିଚିତ-ସେ ଚା' ଖାଏ । ନିର୍ଦ୍ଧୂମ ଖରାରେ ବି କୁଆଡୁ ଶୁଣାଯାଏ ନଈର କଳ କଳ ଗୀତ । ଅବିନାଶକୁ ଲାଗେ ସେ ବସିଚି କେଉଁ ନଈ କୂଳରେ -ଦୁଇପାଦ ପାଣିରେ ତିନ୍ତାଇ । ସଞ୍ଜ-ସୂର୍ଯ୍ୟ ବୁଡିନାହାନ୍ତି-ନୀଡ଼ ଫେରନ୍ତା ଚଢ଼େଇମାନେ ତଥାପି ଦଳ ଦଳ ହୋଇ ଆକାଶରେ ଉଡ଼ି ଯାଉଛନ୍ତି । କିଏ ସବୁ ମନେ ପଡୁଛନ୍ତି । ଲାଗୁଛି ଅବଶ ଓ ହତାଶ । ଯେମିତିକି କ'ଣ ସେ ହଜାଇ ଆସିଛି କେଉଁଠି, ମନେ ପଡୁନାହିଁ । ଖାଲି ଲାଗୁଛି, ଏଇ ତ ଥିଲା । ଅଥଚ ଆଉ ନାହିଁ । ନାହିଁ-

ମନେ ପଡୁଛି ପିଲାଦିନର ଗୋଟିଏ ଦୃଶ୍ୟ । ତା'ଘର ପାଖରେ ହିଁ ନି:ପ୍ରା: ସ୍କୁଲ୍ । ଟିଣ ଛାତଦିଆ ଚୁନ ସିମେଣ୍ଟ ବଖରା ତିନି ଚାରି । ସ୍କୁଲ୍‌ର ପୁରସ୍କାର ବିତରଣ ଉତ୍ସବ ପାଇଁ ପ୍ରତି ରବିବାରରେ ଅଭିନୟ ଶିଖୁଥିଲେ ପିଲାମାନେ । ରାଧା-କୃଷ୍ଣଙ୍କ ବସନ୍ତରେ ହୋରୀ ଖେଳିବାର ଦୃଶ୍ୟ । ଗୋଟିଏ ଝିଅ ରାଧା ଆଉ ଗୋଟିଏ ଝିଅ କୃଷ୍ଣ । ଅବିନାଶର ସହପାଠିନୀ ସେମାନେ । ହାତରେ ସୁନ୍ଦର ମଲାଟବନ୍ଧା ଗୀତ ଖାତା ଧରି ସେମାନେ ଆସନ୍ତି ସ୍କୁଲ୍‌ଘରକୁ । ଗୀତସାର୍ ନାଚମାଷ୍ଟ୍ରେ ଆସି ପହଞ୍ଚିଲେ ରାଧା ଗାଆନ୍ତି "ଆଉ ମାରନା ରଙ୍ଗ ପିଚକାରୀ । ରଙ୍ଗେ ରଙ୍ଗାଇ ଦିଅନା ରଙ୍ଗୀନ ଶାଢ଼ି । ଆଉ ମାରନା-" କୃଷ୍ଣ ରାଧାଙ୍କର ଅଭିମାନ ଭାଙ୍ଗନ୍ତି । ଗୀତ ଗାଇ ଗାଇ ନାଚନ୍ତି ସେମାନେ । ନାଚମାଷ୍ଟ୍ରେ ସେମାନଙ୍କୁ ନାଚ ଶିଖାନ୍ତି-କିପରି ପାଦ ପକେଇବାକୁ ହେବ, କିପରି ବଦଳାଇବାକୁ ହେବ ଆଖିର ଚାହାଣୀ । ବିରହ ପରେ ମିଳନ । ଧନୀ ଘରର ଦୁଇଟି ଝିଅ ଚିକ୍‌ଚିକ୍ ଫ୍ରକ୍ ପିନ୍ଧି ନାଚନ୍ତି-ନିଜେ ହେଡ୍‌ମାଷ୍ଟ୍ରେ, ଚୌକି ଉପରେ ବସିଥାନ୍ତି ମୁରବୀ ଭଳି । ଅଭିନୟ ଦେଖିବାକୁ ଝରକା ବାଟେ ଅନାଇଥାନ୍ତି

ଦଳେ ପିଲା, ଯେଉଁମାନେ ଖରାବେଳେ ଦାଣ୍ଡରେ କ'ଣ ଖେଳ ଲଗାଇଥିଲେ-ଗୀତ ଓ ନାଚ ଦେଖି ସେମାନେ ଖେଳ ଭୁଲି ଯାଇଛନ୍ତି । ସେଇ ପିଲାଙ୍କ ଦଳ ଭିତରେ ଜଣେ ସେ,- ଅବିନାଶ -ଫୁଙ୍ଗୁଳା ଦେହ ଓ ଆଖିରେ ବିସ୍ମୟ । ଝରକା ବାଟେ କେବଳ ଅନାଇ ରହିଥାଏ ରାଧା ଓ କୃଷ୍ଣଙ୍କୁ, ନାଚ ଗୀତ ସରିବାଯାଏଁ ।

ଭୁଲି ହୋଇନାହିଁ ରାଧା ଓ କୃଷ୍ଣଙ୍କର ସେଇ ବିରହ ଓ ମିଳନ । ସମୟର ଝାଞ୍ଜିପବନ ଉଡ଼ାଇନେଲାଣି କେତେ ଦୃଶ୍ୟ, କେତେ ସୌନ୍ଦର୍ଯ୍ୟ; କିନ୍ତୁ ଟିଣ ଛାତ ଘେରା ସେଇ ସ୍କୁଲ୍‌ଘରେ ରାଧା ପାର୍ଟ୍ କରୁଥିବା ସେଇ ଝିଅଟିର 'ଆଉ ମାରନା ରଙ୍ଗ ପିଚକାରୀ'ଗୀତ କାନରେ ବାଜି ଯାଉଛି ଆଜି ଏତେ ଦିନ ପରେ- । ଆଶ୍ଚର୍ଯ୍ୟ ଲାଗୁଛି । କ'ଣ ହଜାଇଛି ଅବିନାଶ ? ବାହାରକୁ ସବୁତ ପରିପୂର୍ଣ୍ଣ । ଏତେ ପାଠ ପଢ଼ା । ଅଫିସର ଚାକିରୀ । ଦେହରେ ଦାମୀ ସୁଟ୍ । ସେଦିନର ସେଇ ମଳିନ ଫୁଙ୍ଗୁଳା କ'ଣ ଚାହିଁଥିଲା ଓ ପାଇ ନାହିଁ ? ଅଫିସର ଅବିନାଶ ମହାପାତ୍ର ଭିତରେ କିଏ କାନ୍ଦୁଛି ତୁହାଇ ତୁହାଇ । କ'ଣ ସେ ଖୋଜୁଚି ?

ଏଇ ଚା'ଖିଆ ବେଳ । ପାହାଡ଼ିଆ ଟାଙ୍ଗର ଭୂଇଁରେ ନିଆଁର ଚାବୁକ୍ ଭଳି ଖରା ପିଟୁଚି । ଜଳି ଯାଉଛି ପାହାଡ଼ ଓ ପାହାଡ଼ କଡ଼େ କଡ଼େ ଧାଡ଼ି ଧାଡ଼ି ଚାଳଘର, ଗଛ ଓ କଦବା ଗୋଟିଏ ଗୋଟିଏ ଚଳମାନ ବସ୍ । ସବୁ ଜଳି ଯାଉଛି ।

ଫାମିଲି ପ୍ଲାନିଂ ଅଫିସର ଅବିନାଶର ମନେ ପଡୁଛି ସେଇ ଦୃଶ୍ୟ ବାରମ୍ବାର । ଭିତରେ କ୍ଲାସ୍ ରୁମ୍‌ରେ ଟୁଲ୍ ଓ ଡେସ୍କ ସବୁ ଗୋଟିଏ କୋଣରେ ତା ଉପରେ ତା ଉପରେ ଜମା ହୋଇଛି । ସତରଞ୍ଜି ପଡିଛି । ନାଚ ଶିଖା ହେଉଛି ପୁରସ୍କାର ବିତରଣୀ ଉତ୍ସବ ପାଇଁ । ଅବିନାଶ ଝରକାରେ ଆଉଜି ଅନାଇଚି-ଅନାଇଚି- ।

ନା -ଆଉ ସେ ଦୃଶ୍ୟ ନାହିଁ । ଅବିନାଶ ବଡ଼ ସ୍କୁଲ୍‌ରେ ପଢୁଛି । କ୍ଲାସ୍‌ରେ ଫାଷ୍ଟ୍ ହେଉଛି । ଶ୍ରେଣୀରେ ମନିଟର । ପ୍ୟାଣ୍ଟ୍ ଭିତରେ ସାର୍ଟ୍ ଇନ୍ କରି ବୁଲୁଛି ପିଲାମାନଙ୍କ ମେଳରେ । ଖାଲି ବହି ଓ ପଢ଼ା । ପଢ଼ା ଓ ବହି । ସକାଳୁ ଉଠି ବସୁଛି କୁଜା ହୋଇ । କଷୁଚି ଆଲ୍‌ଜେବ୍ରା, ଘୋଷିଯାଉଛି ଇଂରାଜୀ ବ୍ୟାକରଣ । ଆଉରି ଆଉରି । ଆସୁଛି ପ୍ରଶଂସା । ସେଇ ମଳିନ ଘର ବଦଳି ନାହିଁ । ସେଇ ମାଟି ବଖରାରେ ପାଠପଢ଼ା, ରୋଷେଇବାସ, ଶୁଆବସା, ଭବିଷ୍ୟତର ସୁନେଲି ଆଶା ଓ କାନ୍ଥ ସନ୍ଧିରେ ସନ୍ଧିରେ ମେଞ୍ଚା ମେଞ୍ଚା ଛାରପୋକ, ସବୁ ମିଶିଯାଉଚି । ଆଶା ଓ ହତାଶା । ଖାଲି ପାଠପଢ଼ା ଓ ପ୍ରଶଂସା ପାଇବାର ଚେଷ୍ଟା । ସେ ଲେଖୁଚି କବିତା, ଗପ-ହେଇ ସେ ବକ୍ତୃତା ଦେଉଛି ସଭାମଞ୍ଚ ଉପରେ-ଗୋଡ଼ ଥରୁଚି, ପାଟି ଖନି ମାରୁଚି, ବେକରେ ଝାଳ-ସେ ଦବି ନାହିଁ-ପୁଣି ବକ୍ତୃତା ଦେଉଛି । ହେଇ ସେ ହାତଯୋଡ଼ି ଗ୍ରହଣ କରୁଛି ପୁରସ୍କାର,-ପଛରେ ତାଳି-ତା ଗୋଡ଼ ଆଉ ଥରୁନାହିଁ । ବେଶ୍ ଦୃଢ଼ତାର ସହିତ ଆତ୍ମବିଶ୍ୱାସର ସହିତ ସେ ଏଣିକି ଭାଷଣ ଦେଉଛି- "ସଭାପତି ମହୋଦୟ ଓ ଉପସ୍ଥିତ ଭଦ୍ରମଣ୍ଡଳୀ"- । ପୁଣି ପ୍ରଶଂସା । ସେ ଜଣେ ବଡ଼ ମଣିଷ ହେବ, କହୁଛନ୍ତି

ଶ୍ରେଣୀର ଶିକ୍ଷକ । ସାଙ୍ଗମାନେ ତାକୁ ମାନୁଛନ୍ତି, ଆଶ୍ଚର୍ଯ୍ୟ ହୋଇ ଅନାଉଛନ୍ତି । ଅବିନାଶ ନିଜେ ନିଜକୁ ଆବିଷ୍କାର କରୁଛି-ସେ ତେବେ ଅନ୍ୟମାନଙ୍କଠାରୁ ପୃଥକ୍ !!

ପୁଣି ସେ ଅନାଇଚି-

ସେଇ ଝିଅ, ଯିଏ ତା ସଙ୍ଗେ ପଢ଼ିଲାବେଳେ ରାଧା ପାର୍ଟ୍ କରୁଥିଲା । କ'ଣ ଯେମିତି ବଦଳି ଯାଇଛି ଯା ଭିତରେ ! ସେ ସାଲଓ୍ୱାର୍ ପଞ୍ଜାବୀ ପିନ୍ଧିଛି । ଅଣ୍ଟାତଳ ଯାଏଁ ଲମ୍ବିଛି ତା'ର ବେଣୀ । ସେ ତ ଆଗେ ଏତେ ଗୋରା ନଥିଲା ? ତାକୁ ଅନାଇ ହେଉନାହିଁ ।

ଦଶମ ଶ୍ରେଣୀର ଛାତ୍ର ଅବିନାଶ ତଳକୁ ମୁହଁପୋତି ଚାଲିଯାଉଥିଲା । ସିଏ ବି କୌଣସି ଏକ ଛୁଟିଦିନର ଖରା ବେଳ । ନି:ପ୍ରା: ସ୍କୁଲ୍‌ର ଅଭିନୟ ଶିଖା ରବିବାର ଭଳି ଆଜି କିନ୍ତୁ ସେ ଝିଅଟିର ମୁହଁକୁ ଚାହିଁ ଠିଆ ହେବାର ସାହସ ନଥିଲା ଅବିନାଶର । କ'ଣ ଯେମିତି ବଦଳି ଯାଇଛି ଯା ଭିତରେ ।

ଅବିନାଶ ତଳକୁ ମୁହଁପୋତି ଉଦାସୀନ ହୋଇ ପଳାଇ ଆସୁଥିଲା ।

- "ଅବି"- କିଏ ଡାକୁଚି । ଠିଆ ହେଲା ଅବିନାଶ, ମଳିନ ତାର ପୋଷାକ, ସେ ଦରିଦ୍ର, ପାଦରେ ଯୋତା ନାହିଁ । ହସିଲା ।

ଝିଅଟି କହୁଚି- "ତୁ ଦଶମରେ ପଢୁଚୁ ?"

"ହଁ"-

"ତୁ ?" ଅବିନାଶ ପଚାରୁଛି ।

"ଆଉ ପଢୁନାହିଁ । ଅଷ୍ଟମରେ ଦୁଇବର୍ଷ ଫେଲ ହେଲି । ଘରେ ପଢୁଛି ! ଟିଉସନ ମାଷ୍ଟ୍ରେ ଆସୁଛନ୍ତି । ତୁ କ୍ଲାସ୍‌ରେ ଫାଷ୍ଟ ହେଉଛୁ ବୋଲି ତୋ ବାପା ମୋ ବାପାଙ୍କ ଆଗରେ କହୁଥିଲେ । ତୁ କୁଆଡ଼େ ବକ୍ତୃତାରେ ପ୍ରାଇଜ୍ ପାଉଛୁ, କବିତା ଲେଖୁଛୁ ?"

ଅବିନାଶ କିଛି କହୁନାହିଁ ।

"ତୋ କବିତା ମୁଁ ପଢ଼ିଛି । ମୀନାବଜାରରେ-।"

ତଥାପି ଅବିନାଶ ନୀରବ ।

ଦୁଇ ମହଲା ହଳଦିଆ କୋଠାଘର ସାମନାରେ କାଠଚମ୍ପା ଗଛମୂଳେ ଠିଆ ହୋଇଛି ସେଇ ଝିଅଟି, ଯିଏ ଦିନେ ଗାଉଥିଲା "ଆଉ ମାରନା ରଙ୍ଗ ପିଚକାରୀ ।"-ପଛରେ ଆଲସେସିଆନ୍ କୁକୁର ପଥର ମୂର୍ତ୍ତିଭଳି ଠିଆ ହୋଇଛି । ଆଣ୍ଡରସନ୍‌ଙ୍କ ଟିଣ୍ଡରବକ୍‌ସ କାହାଣୀରେ ପଢ଼ିଛି ଅବିନାଶ ଏଇ କୁକୁରମାନଙ୍କ କଥା-ପ୍ରଥମ କୁକୁରଟିର ଆଖି କପ୍ ପରି, ଦ୍ୱିତୀୟର କାରଖାନାର ଚକପରି, ତୃତୀୟର ପ୍ରକାଣ୍ଡ ପ୍ରକାଣ୍ଡ କୋଠାଘର ପରି । ସେମାନେ ସୈନିକଟି ପାଇଁ ରାଜପ୍ରାସାଦରୁ ରାଜାଝିଅକୁ ଚୋରାଇ ଆଣିଥିଲେ ।

ଗେଟ୍ ଖୋଲା । ଭିତରେ ଠିଆ ହୋଇଛି ସେ ଝିଅଟି, ସାଲଓ୍ୱାର୍ ଓ ପଞ୍ଜାବୀ ପିନ୍ଧିଛି । ଆଲ୍‌ସେସିଆନ୍ ତା ଦେହରେ ବିଲ୍‌କୁଲ୍ ଲାଗି ଠିଆ ହେଲାଣି । ଗେଟ୍ ବାହାରେ

ଅବିନାଶ । ଦରିଦ୍ର ଓ ମଳିନ । ହାତରେ ମେନସୁରେସନ୍ ବହି । ଝିଅଟି କହୁଛି- "ତୁ ମତେ ତୋ ଇଂରାଜୀ ନୋଟ୍ ଦବୁ ?"

ଅବିନାଶ ହଁ କରୁଛି ଓ ଚାଲିଆସୁଛି ଆସ୍ତେ ଆସ୍ତେ । ପଛରୁ ଗେଟ୍ ବନ୍ଦ ହେଉଛି । ଲାଗୁଚି ଅବଶ । ଘରେ ଆସି ଅବିନାଶର ପଢ଼ାରେ ମନ ଲାଗୁନାହିଁ । କ୍ଲାସ୍‌ରେ ଗଣିତ ସାର୍ କହୁଛନ୍ତି- "ଷ୍ଟ୍ରେଞ୍ଜ ! ତମେ ତ ଟାସ୍କ୍ ନକରି କେବେ କ୍ଲାସ୍‌କୁ ଆସ ନାହିଁ । ଆଜି କ'ଣ ହେଲା ?"

"ଦେହ ଭଲ ନଥିଲା ସାର୍ !"

ଅବିନାଶ ମିଛ କହେ ନାହିଁ, ସାର୍ ଜାଣନ୍ତି ।

ଆଉରି ଚା' ଓ ସିଗାରେଟ୍ । କେହି ଜଣେ ତାକୁ ନମସ୍କାର କରୁଚି- । ଓଃ ସତାରା ମିଆଁ । ସେଇଦିନୁ ତାକୁ ଚିହ୍ନିଚି । ସେମାନେ ସମସ୍ତେ ଚଢ଼େଇ ଶିକାର କରିବା ପାଇଁ ଯାଇଥିଲେ । ସେ, ପୋଲିସ୍ ଅଫିସର ସନାତନ ବାବୁ, ଡକ୍ଟର ମହାନ୍ତି ଓ ପାଣିଗ୍ରାହୀବାବୁ । ଚମତ୍କାର ଅନୁଭୂତି । ପ୍ରଚଣ୍ଡ ପାହାଡ଼ିଆ ଶୀତକୁ ନ ଡରି ସେମାନେ ସମସ୍ତେ ସାଇକେଲ୍‌ରେ ଚାଲିଗଲେ ଆଠ ମାଇଲ । ବାଟରେ ଅସହ୍ୟ ଥଣ୍ଡା । ଅବିନାଶ ଥଣ୍ଡାକୁ ଉପଭୋଗ କରିଥିଲା । ରାସ୍ତାରେ ମଝିରେ ମଝିରେ ଜଳନ୍ତା ନିଆଁ ଓ ତାକୁ ଘେରି କେତୋଟି ଅଧାଲଙ୍ଗଳା ମଣିଷ । ସେମାନେ ପହଞ୍ଚିଲେ ଗୋଟିଏ ହ୍ରଦକୂଳେ । ରାତିର ଅନ୍ଧାର ତଥାପି ଛାଡ଼ିନଥିଲା । ହ୍ରଦର ନେଳି କଳା ପାଣି ଉପରେ ଧଳା ଧଳା ଫୁଲପରି ହଂସରାଳୀମାନେ ଭାସୁଥିଲେ । ଶିକାରୀ ପୋଜିସନ୍ ନେଲେ । ଗୁଡୁମ୍ ଗୁଡୁମ୍ । ଚଢ଼େଇମାନେ ପବନକୁ ଉଠୁଛନ୍ତି ଛତରଛାଳ ହୋଇ, ନିର୍ଜ୍ଜନତାର ଛାତି ଫାଟିଛି, ଶୂନ୍ୟରୁ ଖସି ପଡୁଛି ଗୋଟା ଗୋଟା ପକ୍ଷୀର ଦେହ - ଅନ୍ଧାରରେ ରକ୍ତ ଦିଶୁନାହିଁ, ଲଥ୍ କରି କ'ଣ ସବୁ ପାଣିରେ ପଡୁଛି ।

କିନ୍ତୁ ଏ ଅନ୍ଧାର ଶୀତରେ ଏତେ ପାଣିରେ ପଶି କିଏ ଆଣିବ ଶିକାର ? କେତେ ଚଢ଼େଇ ମରିନାହାନ୍ତି, ପହଁରି ପଳାଉଛନ୍ତି ଦୂରକୁ ଦୂରକୁ । ହେଇ ପାଣିରେ ପଶିଲା ସତାରା ମିଆଁ । ତା ବେକରେ ଦଉଡ଼ିରେ ଛୁରୀ ଝୁଲୁଛି । ତା' ଧର୍ମରେ କେଉଁଠି ଅଛି ମଲା ଜନ୍ତୁର ମାଂସ ଖାଇବ ନାହିଁ । ସତାରା ଧର୍ମଗ୍ରନ୍ଥ ପଢ଼ିନାହିଁ, ଧର୍ମକଥା କୋଉ ଫକୀର ମୁହଁରୁ, ଆଗକାଳର ବୁଢ଼ାବୁଢ଼ୀଙ୍କ ମୁହଁରୁ ଶୁଣିଛି । ସେଇ ଶୁଣାକଥାକୁ ଲଂଘିବାର ସାହସ ତାର ନାହିଁ । ତେଣୁ ଏଇ ଶୀତ ଅନ୍ଧାରରେ ବରଫ ଥଣ୍ଡା ହ୍ରଦପାଣିରେ ସେ ଅଧମରା ହଂସରାଳୀର ବେକକୁ 'ଆଲ୍ଲା' 'ଆଲ୍ଲା' କହି ଦି ଖଣ୍ଡ କରିଦେଇଛି, ବେକରେ ବନ୍ଧାଥିବା ଦଦରା ଛୁରୀରେ ।

ସେଇ ଏ ସତାରା ମିଆଁ । ଅବିନାଶକୁ ନମସ୍କାର କରିଛି । ଅବିନାଶ ଚା' ଦୋକାନକୁ

ବରାଦ ଦେଇଛି- "ୟା'କୁ କପେ ଚା' ଦିଅ ।" ସତାରା କହୁଛି, "ଆଉ କେବେ ଯିବାନାହିଁ ? ମାଇଛେଳି ଜଙ୍ଗଲରେ ଭାରି କୋଚିଲାଖାଇ ଚଢ଼େଇ ପଡିଛନ୍ତି, ଡକ୍ଟର ମହାନ୍ତି କହୁଥିଲେ ।" ପୁଣି ଟିକିଏ ଛାଡ଼ି ଚା' କପ୍‌ରେ ଓଠ ଲଗାଇ 'ସୁ' କରି ଶବ୍ଦ କରି ସତାରା କହୁଛି,- "ବୁଝିଲେ ଆଜ୍ଞା, ଏବେ ଖରାବେଳେ କୁଟ୍ରାଟାଏ ଆମ ଗାଁ ପାହାଡ଼ ଆଡ଼େ ଗଡୁଛି । କଲେଜର ଏନ୍.ସି.ସି. ଓସ୍ତାତ୍ ତାକୁ କେତେଥର ଛକିଲାଣି । ପାରୁନାହିଁ । ବଡ଼ କୁଟ୍ରାଟାଏ ନା କ'ଣ ।"

ପୁଣି ଆଉ ଟିକକପରେ ଆରମ୍ଭ କରୁଛି, "ଆପଣଙ୍କର ଅଣ୍ଡା ସରିଯିବଣି ?" ଅବିନାଶ ଘରେ ସତାରା ଅଣ୍ଡା ଦେଇଯାଏ । ବଜାର ଅପେକ୍ଷା ଶସ୍ତା ।

ସତାରା ନମସ୍କାର କରି ଫେରି ଯାଉଛି । ମାଟିଆ ଜାମା ଓ ପେଣ୍ଟ ଭିତରେ ଦିଶୁଛି ଅସହାୟ । ଚଢ଼େଇ ଶିକାର ବେଳେ ତା'ର ଉତ୍ସାହ ସବୁଠୁ ବେଶି । କୁଆଡୁ ଯୋଗାଡ଼ କରି ଆଣେ ବଡ଼ବଡ଼ ଟର୍ଚ୍ଚ, ବନ୍ଧୁକ, ଗୁଳି । ଦିନରେ ଏନ.ଏ.ସି. ଅଫିସରେ ପିଅନ କାମ ।

ଅବିନାଶ ଘଡ଼ିକୁ ଅନାଇଲା । ତିନିଟା । ଏତେବେଳେ ବି ବସ୍ ଡ୍ରାଇଭର ଜଣେ ଟିଣ ଥାଳିରେ ଭାତ ଓ ହତା ନଥିବା କପ୍‌ରେ ମାଉଁସ ଝୋଳ ଗେଫି ଯାଉଛି, ବେଗେ ବେଗେ । ବସ୍ ଥକ୍କା ମାରୁଛି । ଯାତ୍ରୀମାନେ ତଳକୁ ଓହ୍ଲାଇ ଏକଡ଼ ସେକଡ଼ ହେଉଛନ୍ତି । କେହି ଜଣେ ବସ୍‌ଷ୍ଟାଣ୍ଡରେ ନୂଆ ଖୋଲିଥିବା ସରବତ ଦୋକାନୀଟି ସହିତ ଗିଲାସେ ସରବତର ଦର ଦାମ ନେଇ ଯୁକ୍ତିତର୍କ କରୁଛି । ଖରା ମହଳଣ ପଡ଼ି ଆସୁଛି । ପାହାଡ଼ ଦେହରେ ଛାଇର ଭାଗ ବଢୁଚି । ଏତେ ଦିନ ରହିଲା ପରେ ବି ବେଳେ ବେଳେ ଚାଉଁକିନା ଲାଗେ, କେଉଁ ରାଜ୍ୟ ଏ ! କେମିତି ସେ ଆସିଲା ଏଠିକି ? ପର ମୁହୂର୍ତ୍ତରେ ସବୁ ଲାଗେ ସ୍ୱାଭାବିକ । ଲାଗେ, ଘଟନା ସବୁ ଯାହା ଘଟିଯାଇଛି ତା ଜୀବନରେ, ସରିନାହିଁ, ଏବେ ବି ଘଟିଯାଉଛି ଯାହା -ସେ ସବୁ ଯେମିତି ଆପେ ଆପେ ଘଟୁନାହିଁ । କିଏ ଜଣେ ଛପି ରହିଛି କେଉଁଠି,ସବୁ ଘଟଣା ମୂଳରେ ତା'ରି ହାତ । ଗୋଟିଏ ଘଟଣା ଆରଟିଠୁ ଭିନେ ନୁହେଁ । ସମସ୍ତଙ୍କ ଭିତରେ ସମ୍ପର୍କର ଡୋର । ସେ ଡୋରର ତ ପୁଣି କେଉଁଠି ଆରମ୍ଭ ଥିବ, ଶେଷ ଥିବ ! ସେ ଡୋରକୁ ତ ପୁଣି କିଏ ଧରିଥିବ ? ଭାବିଲେ ଥଳକୂଳ ମିଳେ ନାହିଁ । କେତେ ପ୍ରଶ୍ନ ମନକୁ ଆସେ । ଉତ୍ତର ମିଳେ ନାହିଁ ।

ଉତ୍ତର ମିଳି ନାହିଁ । ଗୋଟିଏ ଗୋଟିଏ ସ୍ମୃତି ଗୋଟିଏ ଗୋଟିଏ ପ୍ରଶ୍ନ ପରି ରହିଯାଇଛି । ମନର ଅନ୍ଧାରିଆ କୂଅ ଭିତରେ କାହାର ଟହ ଟହ ହସ, କାହାର ତୁହାକୁ ତୁହା କାନ୍ଦଣା ଶୁଭି ଯାଉଛି । ଆଜି ନିଛାଟିଆ ଖରାବେଳେ ଏଇ ଚା' ଦୋକାନରେ ଏହିପରି କେତେ ତୁଣ୍ଡର ସ୍ୱର ଶୁଣାଯାଉଥିଲା । ଆସ୍ତେ ଆସ୍ତେ ଚା' କପ୍‌ରେ ଭାସି ଯାଉଥିଲା କେତେ ଚାହାଣୀ । ପୁଣି ଲିଭି ଯାଉଥିଲା, ଭାସି ଉଠୁଥିଲା ।

କଲେଜ ଝିଅଟିଏ ଚାଲି ଯାଉଛି ରାସ୍ତାରେ । ସେହିପରି ତ । ଯେ ଦିନେ ଗାଇଥିଲା,

"ଆଉ ମାରନା ରଙ୍ଗ ପିଚକାରୀ ।" କିମ୍ବା ଆଉ କାହାପରି । ମନେ ପଡ଼ୁଚି ଛାଇଛାଇଆ ହୋଇ ।

ତାଙ୍କ ଘରପାଖରେ ଓକିଲବାବୁଙ୍କ ଘର । ଏତେ ବଡ଼ କୋଠା, କୁକୁର, ଚାକର, ପୂଜାରୀ । ବାପାଙ୍କ ସାଙ୍ଗରେ ଶଂକି ହୋଇ ଅବିନାଶ ତାଙ୍କ ଘରକୁ ଯାଏ । ଡର ଲାଗୁଥିଲା ଦେଖିଲେ ସେ କୋଠାର ପାହାଚ, ଉପରକୁ ଉପରକୁ । ଗୋଲ୍ ହୋଇ ପୁରୁଣା ଟେବୁଲ୍ ଚାରିପାଖେ ଚୌକୀ । ଓକିଲ ବାବୁ ସେଇ ଲୋକଟି, ନେଳି ଲୁଙ୍ଗି ପିନ୍ଧି ଯେ ସିଗ୍ରେଟ ଖାଉଥାନ୍ତି । ପରେ ସେ ଜାଣିଲା, ତାଙ୍କର ଗୋଟିଏ ଆଖି ନଥିଲା, କାଚ ଆଖି ଲଗାଇଥିଲେ । ପାଟିରେ ଦାନ୍ତ ନଥିଲା, ପଥର ଦାନ୍ତ ବସାଇଥିଲେ । ତାଙ୍କର ଝିଅ ରିନା, ଅବିନାଶଠାରୁ ଅନେକ ବର୍ଷ ବଡ଼ । ସାବନା ଝିଅଟି, ଘରେ ଏଆଡ଼େ ସେଆଡ଼େ ଧାଇଁଲା ବେଳେ ମୁହଁ ଉପରେ କେରା କେରା ବାଳ ପଡ଼ିଥାଏ, ସମସ୍ତେ ତାକୁ ଅଣ୍ଡିରାଚଣ୍ଡୀ ବୋଲି ଡାକୁଥିଲେ ।

ବୈଶାଖ ମାସରେ ଓକିଲବାବୁଙ୍କ ମାଆ ବ୍ରାହ୍ମଣଙ୍କୁ ପଣା ଦେଉଥିଲେ ସବୁଦିନେ । ଅବିର ବାପା ପଣା ପିଇବାକୁ ଯାଉଥିଲେ ତାଙ୍କ ଘରକୁ । ସାଙ୍ଗରେ ଯାଉଥିଲା ଅବିନାଶ, ନି:ପ୍ରା: ସ୍କୁଲର ଛାତ୍ର । ପଣା ପିଇବାକୁ ଯେତେ ନୁହେଁ, ରିନାନାନୀକୁ ଦେଖିବାପାଇଁ ।

ରିନାନାନୀ ବଡ଼ ସ୍କୁଲ୍‌ରେ ପଢୁଥିଲା । ପାହାନ୍ତାରେ ନିଦ ଭାଙ୍ଗିଗଲେ ଶେଯ ଉପରେ ଶୋଇ ଅବିନାଶ ଶୁଣୁଥିଲା କିଏ ଗାଉଛି ଗୀତ, କି ରହସ୍ୟ ଥିଲା ସେଥିରେ କେଜାଣି, କେଡ଼େ ମିଠା ଲାଗୁଥିଲା । ବାପା କହୁଥିଲେ, ଓକିଲବାବୁଙ୍କ ଝିଅ ରିନା ଗାଉଛି । ଦିନେ ରିନାନାନୀ କୋଠା ଉପରକୁ ଡାକିନେଲା ଅବିନାଶକୁ । ତାକୁ ପାଉଁରୁଟି ଖାଇବାକୁ ଦେଲା । ତା' ଗାଲରେ ଚୁମା ଦେଲା । ତାକୁ ଗେଲ କଲା । କହିଲା, 'ଅବି , ମୋର ଭାଇ ନାହିଁ । ତୁ ମୋ ଭାଇ ହବୁ ?' ଅବିନାଶ କିଛି କହିନଥିଲା । ସେଦିନ ତାକୁ ଠିକ୍ ସେମିତି ଲାଗିଥିଲା, ଯେମିତି ଲାଗିଲା ଅନେକ ବର୍ଷ ପରେ, ଆଉ ଜଣେ କିଏ ଚମ୍ପାଗଛ ମୂଳେ ଠିଆହୋଇ ପଚାରିଲାବେଳେ- "ତୁ କ୍ଲାସ୍‌ରେ ଫାଷ୍ଟ୍ ହେଉଛୁ ?"

ସମ୍ପର୍କ ନଥିବା ଏଇ ଦୁଇଟି ଘଟନା ଭିତରେ କ'ଣ ଯେମିତି ସମ୍ପର୍କ ରହିଯାଇଥିଲା କେଉଁଠି-ଗୋଟିକର କଥା ଭାବିଲେ ଆରଟି ଆସୁଥିଲା ମନକୁ ।

ଯୋଉଦିନ ସ୍କୁଲ୍ ପଡ଼ିଆରେ ଛୋଟ ବଲ୍‌ଟି ପଛରେ ଗୋଡ଼ାଉ ଗୋଡ଼ାଉ ବଲ୍‌ଟି ଉପରେ ଗୋଡ଼ ନ ବାଜି ବାଜିଥିଲା ଖଣ୍ଡିଏ ପଥରରେ, ପାଦରୁ ଚମଡ଼ା ଉଠି ମେଞ୍ଚା ମେଞ୍ଚା ବୋହି ଆସିଥିଲା ରକ୍ତ, ସେତେବେଳେ କିଏ ତାହାର ଦୁଇହାତ ଧରି ତାକୁ ନେଇଥିଲା ଆପଣା ଘରକୁ, ଗୋଡ଼ରେ ତୁଳା ବ୍ୟାଣ୍ଡେଜ୍ ବାନ୍ଧିଦେଇଥିଲା, କପାଳରେ କଅଁଳ ହାତ ବୁଲାଇ ପଚାରିଥିଲା- "ଭଲ ଲାଗୁଚି ?"

କିଏ ସେ ? କେଡ଼େ ମିଠା ତାର ଗଳା, ସବୁଦିନେ ପାହାନ୍ତାରେ ଗୀତ ଅଭ୍ୟାସ କରେ, ରିନାନାନୀ । ଭାବିଲେ ଆଖିରେ ଲୁହ ଆସେ । ଆଜି ବି !

ସେଥର ସାହାରେ ଯାତ୍ରା ହେଉଥିଲା । ଶନି ହୋଇ ବାହାରିଥିଲା ଯେଉଁ ମଣିଷଟି, କେଡ଼େ ପ୍ରଚଣ୍ଡ ତା'ର ହସ- । ଠିକ୍ ସେଇଥର । ଯାତ୍ରା ସରିଆସିଲା ବେଳକୁ କ'ଣ ହଲ୍ଲା ହେଲା । ଲୋକେ ଏଆଡ଼େ ସେଆଡ଼େ ଉଠି ଧାଇଁବାକୁ ଲାଗିଲେ । କିଛି ସମୟ ହୋ ହୋ ପରେ ପୁଣି ସବୁ ସ୍ଥିର ହେଲା । ଗୋଟିଏ ଜାଗାରେ କିନ୍ତୁ ଦଳେ ଲୋକ ତଥାପି ଠିଆ ହୋଇଥିଲେ । ଜଣେ କିଏ କାନ୍ଦୁଥିଲା । ସେ ରିନାନାନୀ । ତାକୁ ଷଣ୍ଢ ଭୁଷିଚି । ତା' ମୁଣ୍ଡ ଫାଟିଯାଇଚି । ଅବିନାଶ ବି ପାଟିକରି କାନ୍ଦିଥିଲା ସେଦିନ ।

ରିନାନାନୀ ଓକିଲବାବୁଙ୍କ ଝିଅ, ତାଙ୍କର କୋଠାଘର । ଅବି ତାଙ୍କର କେହି ନୁହେଁ । ଯେଉଁଦିନ ବାହାହେଲା ରିନାନାନୀ, ହୋମ ନିଆଁ ପାଖରେ ବସି ବସି ସେ କୁଆଡେ ଅଚେତା ହୋଇଯାଇଥିଲା । କେଡ଼େ ସୁନ୍ଦର ବର ତା'ର, ସିଲ୍କ ଜାମା ପିନ୍ଧିଥିଲେ, ଚନ୍ଦନ ପାଟି ଲଗାଇଥିଲେ । କେତେ ଭୋଜି ହେଲା । ସରାରେ ଦିଆ ହୋଇଥିଲା ମାଂସ ପଲାଉ । ଅବି ଖାଇଲା ନାହିଁ । ତାକୁ ଖାଲି କାନ୍ଦ ଲାଗିଲା ।

ତା'ପରଦିନ ରିନାନାନୀ ମଟରରେ ବର ସାଙ୍ଗେ ଚାଲିଗଲା । ସାଙ୍ଗପିଲାଙ୍କ ମେଳରେ ଠିଆ ହୋଇଥିଲା ଅବି,-ସେ ବର୍ଷ ସେ ଉ.ପ୍ରା. ସ୍କୁଲ୍‌ର ବୃତ୍ତି ପରୀକ୍ଷା ଦେବାର ଥାଏ । ରିନାନାନୀ ଓଢ଼ଣା ପକାଇଥିଲା । ତାକୁ ଅନାଇଲା ନାହିଁ ।

ମଟର ଚାଲିଗଲା । ତଥାପି ତ ଦିନେ ରିନାନାନୀ ତାକୁ ପଚାରିଥିଲା- "ତୁ ମୋ ଭାଇ ହବୁ ? ବେଳେ ବେଳେ ମନେ ପଡ଼େ, ଅଫିସର ଅବିନାଶକୁ ଲାଗେ ସେ ଯେମିତି ଛୋଟ ପିଲାଟିଏ ହୋଇଯାଇଛି, ପାଖରେ ଅଣ୍ଡିରାଚଣ୍ଡୀ ରିନାନାନୀ ।

ନିଛାଟିଆ ରାସ୍ତାରେ ଚାଲିବାକୁ ଅବିନାଶକୁ ଭଲ ଲାଗେ । ଦି' ପାଖରେ ହୁଏତ ବଡ଼ ବଡ଼ କୋଠାଘର, ସକାଳୁ ଲୋକ ଗହଳି ନାହିଁ, ଠାଏ ଠାଏ ଗୋଟାଏ ଗୋଟାଏ କୁକୁର ଶୋଇଥାନ୍ତି, ଅବିନାଶକୁ ଦେଖି ଦୂରରୁ ଦୂରକୁ ପଳାନ୍ତି ଓ ସେପରି ରାସ୍ତାରେ ଚାଲିଥାଏ ଅବିନାଶ । ସ୍କୁଲ୍‌ରେ ପଢ଼ିଲାବେଳେ ସବୁଦିନେ ପାହାନ୍ତାରୁ ଉଠି ସେ ସମୁଦ୍ର କୂଳକୁ ଯାଉଥିଲା । ହୁଏତ ଏଇଥି ପାଇଁ ଯେ ସମୁଦ୍ରକୂଳ ପରି ନିର୍ଜନ ସ୍ଥାନ ଆଉ ନାହିଁ । ନିର୍ଜନ ଅଥଚ ଜୀବନ୍ତ । ଲହଡ଼ି ଓ ରଙ୍ଗ, ପୁଣି ସଙ୍ଗୀତ । ପରିପୂର୍ଣ୍ଣ ସୌନ୍ଦର୍ଯ୍ୟ । ସକାଳର ଓଦା ବାଲି ଉପରେ କଙ୍କଡ଼ା ଓ ଟିକି ଟିକି ଚଢ଼େଇମାନଙ୍କ ପାଦ ଚିହ୍ନ ବି ବାରି ହୋଇ ପଡ଼େ । କେଡ଼େ ବଡ଼ ପ୍ରକାଣ୍ଡ ରୂପ ପାଖରେ କେଡ଼େ କୋମଳ ଜୀବନର ପ୍ରକାଶ !

ଏକୁଟିଆ ଚାଲିବାକୁ ଭଲ ଲାଗେ । ଲାଗେ, ଯେତେ ଯାହା ସେ ଦେଖୁଚି, ଆକାଶ ଓ ପୃଥିବୀର ଯେଉଁତକ ପଡୁଚି ତା ଆଖିରେ, ସେ ସବୁ କେବଳ ତା'ରି, ଆଉ କାହାରି ନୁହେଁ । ଯୁଆଡ଼େ ଗଲେ ତ ମଣିଷ, ହୁଅନ୍ତୁ ପଛେ ସୁନ୍ଦର ଓ ସଭ୍ୟ-ପରୋପକାରୀ ବା ମହାତ୍ମା–ସେମାନଙ୍କ ଦଳରୁ ଖସି ଆସି ବେଳେ ବେଳେ ନିଛାଟିଆ ରାସ୍ତାରେ ଚାଲିଲେ, କି ନିର୍ଜନ ନଈ ବା ସମୁଦ୍ର କୂଳେ ବସିଲେ କେଡ଼େ ଭଲ ଲାଗେ । ଯେମିତି ସେତେବେଳେ ତା'ର ସବୁଠୁ ଅନ୍ତରଙ୍ଗ ସେ ନିଜେ । ସେଠି ସେ ଦୁଇଭାଗ ହୁଏ । ନିଜ ସଙ୍ଗେ ନିଜ କଥା କହେ । ନିଜ ଭିତରୁ ଫାଳେ କାନ୍ଦେ, ଫାଳେ ହସେ । ନିଜକୁ ସେ ପ୍ରଶ୍ନ ପଚାରେ, ନିଜେ ଉତ୍ତର ଦିଏ । ନିଜେ ଆପତ୍ତି କରେ, ସମାଧାନର ବାଟ ପୁଣି ବତାଏ । ନିଜେ ଅଧୈର୍ଯ୍ୟ ହୁଏ, ନିଜେ ପୁଣି ନିଜକୁ ସାନ୍ତ୍ୱନା ଦିଏ ।

ସେମିତି ଲାଗୁଥିଲା ଆଜି ସକାଳେ, ପାହାଡ଼ କଡ଼େ କଡ଼େ ଏକୁଟିଆ ଚାଲିଥିଲା ବେଳେ । କୁହୁଡ଼ିଆ ସକାଳ ଜଣାପଡୁଥିଲା ରହସ୍ୟମୟ ଓ ଦୂରରେ ସୂର୍ଯ୍ୟର ତେରଛା

ଆଲୁଅ ସବୁ ଉଜ୍ଜ୍ୱଳ ସରଳ ରେଖାରେ ସେ ରହସ୍ୟ କାଟିବାକୁ ଚେଷ୍ଟା କରୁଥିଲେ ।

ସେ ଚାଲିଥିଲା ।

ନାକରେ ବାଜୁଥିଲା ସକାଳର ସୁଗନ୍ଧ । ରାତିରେ ପଡ଼ିଥିବା କାକର, ପାହାଡ କଡ଼େ କଡ଼େ ଫୁଟିଥିବା କେଉଁ ବଣୁଆ ଫୁଲ, କେଉଁ ପୋଖରୀ ହୁଡ଼ାରେ ଜଙ୍ଗଲ ପରି ମାଡ଼ିଥିବା ମେଞ୍ଚା ମେଞ୍ଚା ଦଳ-ସବୁର ଗନ୍ଧମିଶି କେମିତି ଗୋଟାଏ ନୂତନ ଗନ୍ଧ ସୃଷ୍ଟି କରିଥିଲା । ଦେହ ପୁଲକିତ ହୋଇ ଉଠୁଥିଲା । ସବୁ ଲାଗୁଥିଲା ସହଜ ସ୍ୱାଭାବିକ, ପାହାଡିଆ ଅଞ୍ଚଳରେ ସବୁଠିତ ପ୍ରକୃତିର ଏହିପରି ରୂପ । ପୁଣି ମନେ ହେଉଥିଲା, ଏସବୁ ସୂଚନା ମାତ୍ର; ଆଉରି ଆକର୍ଷଣୀୟ କେଉଁ ରୂପ, ଆଉରି ନିବିଡ କେଉଁ ଗନ୍ଧ କେଉଁଠି ଛପି ରହିଛି, ତାକୁ ଖୋଜିବାକୁ ହେବ ।

କିନ୍ତୁ ସେ କ'ଣ ଖୋଜିଥିଲା ? କେବେ ଦିନେ ତାକୁ ଲାଗିଥିଲା କ୍ଲାସ୍‌ରେ ଫାଷ୍ଟ୍ ହେବା ସବୁଠୁ ବଡ଼ କାମ । ପ୍ରାଇଜ୍ ମିଳିବ । ସମସ୍ତେ କହିବେ- ସାବାସ୍ ଓ ତାହା ସେ ପାଇଥିଲା । ସେମିତି ପାଇଥିଲା ଆହୁରି ଅନେକ କିଛି-ଯାହା ସେ ଭାବିଥିଲା । ବକ୍ତୃତା ଦେଇଥିଲା, କବିତା ଲେଖିଥିଲା, ଫୁଟ୍‌ବଲ୍ ଖେଳିଥିଲା, ସ୍ପୋର୍ଟସ୍‌ରେ ଭାଗ ନେଇଥିଲା । ସବୁବେଳେ ଲାଗିଥିଲା, ସେ ଯାହା ଖୋଜୁଛି, ପାଉଛି; କିନ୍ତୁ ସବୁ ପାଇବା ଭିତରେ କ'ଣ ଯେମିତି ଅପୂର୍ଣ୍ଣ ରହି ଯାଉଥିଲା- କିଛି ଗୋଟାଏ ଯେମିତି ତା ହାତ ପାଆନ୍ତାରୁ ଖସି ଯାଉଥିଲା ! ଲାଗୁଥିଲା, ମିଳି ପାରିଥାନ୍ତା, ମିଳିଲା ନାହିଁ ।

ବୟସ ବଢ଼ିବା ସଙ୍ଗେ ସଙ୍ଗେ ଅନେକ ଖୋଜିବା ଓ ପାଇବା ପରେ ପାଇବାର ଇଚ୍ଛା ବି ବଢୁଥିଲା । ଦିନସାରା ଅଫିସ୍ କାମ ସାରି ସଞ୍ଜକୁ ଘରକୁ ଆସି ଆରାମ୍ ଚେୟାର୍‌ରେ ବସିଲେ ବହୁ ଦୃଶ୍ୟ ଓ ସ୍ୱର ଏକ ସଙ୍ଗେ ମନକୁ ଅଧିକାର କରି ବସୁଥିଲେ । ସଂପର୍କ ନଥିବା ବହୁ ଘଟନା ମନେ ପଡୁଥିଲା । ମନେ ପଡୁଥିଲା ସେଇ ପିଲାଟି କଥା, ଯିଏ କେବେ ତା ସଙ୍ଗେ ପଢୁଥିଲା ସ୍କୁଲ୍‌ରେ, ହାତରେ ବସ୍ତାନୀଟାଏ ଧରି ଧାଇଁ ଧାଇଁ ସ୍କୁଲ୍‌କୁ ଆସେ । ସେ ଭାରି ଗୋରା ଓ ସୁନ୍ଦର ଥିଲା । ଆଜି ଠିକ୍ ମନେ ପଡୁନାହିଁ, କାହାର ସେ ପୁଅ, କ'ଣ ଥିଲା ତା'ର ନାଆଁ । ଖାଲି ମନେଅଛି, ସେ ଦେଖିବାକୁ ସୁନ୍ଦର ଥିଲା । ଅବିନାଶ କ୍ଲାସ୍‌ରେ ତା ସାଙ୍ଗେ କଥା କହିବାକୁ, ତା ପାଖେ ବସିବାକୁ ଚାହୁଁଥିଲା; କିନ୍ତୁ କ'ଣ ହେଲା କେଜାଣି, ଆଉ ସେ ସ୍କୁଲ୍‌କୁ ଆସିଲା ନାହିଁ । ଦିନେ, ଦୁଇ ଦିନ, ଅନେକ ଦିନ । କିଏ କହିଲା ସେ ବସନ୍ତରେ ମରିଯାଇଛି ।

ସେଇଦିନୁ ସେ ଆବିଷ୍କାର କରିଥିଲା ମୃତ୍ୟୁକୁ ଯେ ସମସ୍ତେ ମରିବେ । ସେଇକଥା ମନେ ପକାଇ ଦେଉଥିଲେ ତା ବାପା, ସେ ସାହୀର କିଏ ମଲେ ତା ଘରେ ପହଞ୍ଚି ତା ଶବ ସତ୍କାର ପାଇଁ ଅଯାଚିତ ଭାବେ ଆୟୋଜନ କରିଦେଉଥିଲେ । ସେଥିରେ କି ଲାଭ ଥିଲା ତାଙ୍କର, ସେଦିନ ଅବିନାଶ ବୁଝି ନଥିଲା । ଆଜି ଅବଶ୍ୟ ବୁଝୁଛି, ମଣିଷର ସବୁ

କାମରେ ବ୍ୟବସାୟ ବୁଦ୍ଧି ନଥାଏ, ସବୁଠି ଲାଭ ଖୋଜିଲେ କ୍ଷତି ହିଁ ହୁଏ ।

କେବେ ଦିନେ ଅବିନାଶ ଦେଖିଥିଲା, ତା ବାପା ଅନ୍ୟ ତିନି ଜଣଙ୍କ ସଙ୍ଗେ ଗୋଟିଏ କୋକେଇ ବୋହି ବୋହି ତାଙ୍କରି ଘର ସାମନାରେ "ରାମ ନାମ ସତ୍ୟ ହେ" କହି ଚାଲିଗଲେ । କେହି ଜଣେ ସଧବା ମରିଗଲା । ତା'ସାମନାରେ ଅହ୍ୟ ତେଙ୍ଗୁରା ବାଜୁଥିଲା । ସେମାନେ ଯେଉଁ ଶବକୁ ବୋହି ବୋହି ନେଉଥିଲେ, ତାକୁ ଗୋଟିଏ ମଶିଣାରେ ଗୁଡ଼ାଇ ରଖାଯାଇଥିଲା ଓ ତାର ଦୁଇ ପାଦ ବାହାରକୁ ବାହାରିଥିଲା । ସେଇ ଦୁଇ ପାଦରେ ଅଳତା ଲାଗିଥିଲା ଓ ଆଙ୍ଗୁଠିରେ ମୁଦି ଥିଲା ।

ହେତୁ ପାଇଲା ଦିନୁ ଅବିନାଶ ଲକ୍ଷ୍ୟ କଲା, ତା ସାହୀର ଜଣେ ଜଣେ ମରୁଛନ୍ତି । ଯିଏ ମରୁଛି, ତା ସାଙ୍ଗେ ଲୁଚି ଯାଉଛି ଗୋଟିଏ ବୈଚିତ୍ର୍ୟମୟ ଇତିହାସ, ଗୋଟିଏ ପରମ୍ପରା । ଅନେକ କାହାଣୀ ସବୁଦିନ ପାଇଁ ଅକୁହା ରହିଯାଉଛି । ଆଉ କେହି ସେ କାହାଣୀ କହି ପାରିବ ନାହିଁ । ସେମିତି ଦୁଇ ଭାଇ ଥିଲେ-ନକୁଳ ଓ ମକର । ସେମାନେ ପଥୁରିଆ । ଦିହିଙ୍କର ଯୋଡ଼ିଏ ଛୋଟ ଘର, ପାଖକୁ ପାଖ ଲଗାଲଗି । ଘର ଯୋଡ଼ିକ ଠିକ୍ ଏକାପରି । ଦେଖିଲେ ହିଁ ଯେ କେହି ଜାଣିପାରେ, ଏ ଦୁଇ ଘର ଦିନେ ଏକ ଥିଲା । ଭାଇ ଭାଗ ହୋଇ ପାଚେରି ଉଠିଛି । ଦୁଇ ଭାଇ ଦାଣ୍ଡ ଦୁଆରେ ବସି ବଡ଼ ବଡ଼ ପଥରଖଣ୍ଡ ଉପରେ ନିହାଣ ଖଟ ଖଟ କରୁଥାନ୍ତି । ଦିନରେ, ପୁଣି ରାତିରେ ମିଞ୍ଜି ମିଞ୍ଜି ଡିବି ଆଲୁଅରେ । ସେଇ ନୁଆଣିଆ ଚାଳଘରର ଦାଣ୍ଡ ପିଣ୍ଡା ଉପରେ ଗଢ଼ାହୁଏ କେତେ ସୁନ୍ଦର ମୂର୍ତ୍ତି । ରକ୍ତମାଂସର ମଣିଷ ଗଢ଼ା ମୂର୍ତ୍ତି, ରକ୍ତମାଂସର ମଣିଷଠାରୁ ବି ଆଉରି ସୁନ୍ଦର ଦିଶେ । ସାହୀରେ ଯାଉଥିବା ଲୋକେ ଅଟକି ଯାଆନ୍ତି । ଅବିନାଶ ଦେଖିଛି, କୁଆଡୁ କେମିତି ଖବର ପାଇ ମୂର୍ତ୍ତି ସବୁ ଦେଖିବାକୁ ଆସନ୍ତି ଗୋରା ସାହେବମାନେ । ସେମାନଙ୍କ କାର୍ ସାହୀ ଭିତରକୁ ପଶିପାରେ ନାହିଁ । ସେମାନେ ପାଦରେ ଚାଲି ଚାଲି ଆସନ୍ତି । ସେମାନଙ୍କ ପଛେ ପଛେ ଧାଇଁଥାନ୍ତି ପଙ୍ଗେ ଲଙ୍ଗଳା କଳା ମଣିଷ ପିଲା । ସାହେବ ପାଖେ ସେମାନେ ମଣିଷ ପିଲା ପରି ଦିଶନ୍ତି ନାହିଁ, ଦିଶନ୍ତି ଜଙ୍ଗଲର ଜନ୍ତୁ ପରି । ସେଇ ସାହେବମାନେ ନକୁଳ ଓ ମକରଙ୍କ ହାତଗଢ଼ା ମୂର୍ତ୍ତିର ଫଟୋ ନିଅନ୍ତି । ମୂର୍ତ୍ତି ବି କିଣିନିଅନ୍ତି ଚଢ଼ା ଦାମ୍‌ରେ । ସେମାନେ କୁଆଡ଼େ ଇଂରାଜୀ ଭାଷାରେ ନକୁଳ ଓ ମକରକୁ ପ୍ରଶଂସା କରନ୍ତି । ବେଳେ ବେଳେ ଭଙ୍ଗା ହିନ୍ଦୀରେ ପଚାରନ୍ତି-ଏମିତି ଏମାନେ କୋଉ ସ୍କୁଲ୍‌ରେ ପଢ଼ି ମୂର୍ତ୍ତି ତିଆରି ଶିଖିଛନ୍ତି । ଏମାନଙ୍କର କ'ଣ ଷ୍ଟୁଡିଓ ନାହିଁ ? ଏମାନେ ଏମିତି ଦରିଦ୍ର ହୋଇ ରହିଛନ୍ତି କାହିଁକି ?

ସାହୀର ଅଧା ପାଠୁଆ କେହି ବଙ୍କା ବଙ୍କା ଇଂରେଜୀରେ ଏଣୁ ତେଣୁ ଉତ୍ତର ଦିଏ । ସେମାନେ ଫେରିଯା'ନ୍ତି । କିଏ ପୁଣି କହେ, ସାହେବ କୁଆଡେ ଏଇ ମୂର୍ତ୍ତିମାନଙ୍କୁ

ସମୁଦ୍ରପାରି ଦେଶମାନଙ୍କୁ ପଠାଏ । ସେଠି କୁଆଡେ ଏଇ ମୂର୍ତ୍ତିର ତାରିଫ ହୁଏ । ନକୁଳ ଓ ମକର ବି ଶୁଣନ୍ତି । ସାହେବ ଆସିଲେ ସଲାମ୍ ମାରି ଠିଆ ହୁଅନ୍ତି । ସାହେବଙ୍କ ଭାଷା ତ ତୁଣ୍ଡରେ ପଡ଼ଇଟେ ନାହିଁ,ନମ୍ରତା ଦେଖାଇ ମୁଣ୍ଡ କୁଣ୍ଡାନ୍ତି । ମୂର୍ତ୍ତି ବିକ୍ରୀ ହୋଇଗଲେ କୃତ-କୃତ୍ୟ ଭାବ ଦେଖାନ୍ତି । ସେ ଦୁଇ ଭାଇ ଚାଲିଗଲେ ଆଗପଛ ହୋଇ । ସେତେବେଳକୁ ଅବିନାଶ ସ୍କୁଲ୍ ପଢ଼ାସାରି କଲେଜରେ ନାମ ଲେଖାଇଥାଏ । ସାହୀରେ ଲୋକେ କୁହାକୁହି ହେଲେ, ଆଉ ସେମିତି କାରିଗର ଜନ୍ମ ହେବେନାହିଁ । ନକୁଳ ଗୋଟିଏ ମୂର୍ତ୍ତି ତିଆରି କରୁଥିଲା, ଅଧା ରହିଗଲା । ବହୁଦିନ ଯାଏଁ ସେ ଅଧା ମୂର୍ତ୍ତିଟି ସେମିତି ତା ଦାଣ୍ଡ ଦୁଆରେ ଥୁଆ ହୋଇଥିବା ଅବିନାଶ ଦେଖିଥିଲା ।

ତା'ପରେ ସେ ଦେଖିଲା,ଏମିତି ଅଧାମୂର୍ତ୍ତି ତା ଦେଶ ସାରା । ଯୋଉ ଦେଶରେ ମଣିଷ ମୂକ, ସେ ଦେଶର ପଥର ଯେ କଥା କହିପାରେ, ଏହା ଦେଖି ସେ ଆଶ୍ଚର୍ଯ୍ୟ ହେଲା । ଏ ଦେଶକୁ ଧାଇଁ ଆସୁଥିବା ଯାତ୍ରୀମାନେ ମଣିଷର ଭାଷା ବୁଝିବାକୁ ଚେଷ୍ଟା ନକରି ପଥରର ଭାଷା ବୁଝି ଫେରିଯା'ନ୍ତି । ତା'ର ଛୋଟ ସାହୀକୁ ସେମିତି ଆସିଥିଲେ ଯାତ୍ରୀମାନେ, ଇଂଲଣ୍ଡ, ଅଷ୍ଟ୍ରେଲିଆ, ଆମେରିକା-ଏମିତି ଆଉ କେଉଁ କେଉଁ ଦୂର ଦେଶରୁ-ପଥର ମୂର୍ତ୍ତିର ଫଟୋ ନେଲେ, ମୂର୍ତ୍ତି ବି କିଣି ନେଲେ-ନକୁଳ ଓ ମକରଙ୍କ ଭାଷା ସେମାନେ ବୁଝିଲେ ନାହିଁ । ନକୁଳ ଓ ମକରଙ୍କ ନୂଆଣିଆ ଚାଳଘର ଛପର ହେଲା ନାହିଁ । ସେମାନଙ୍କ ପିଲା ପାଠ ନପଢ଼ି ଦାଣ୍ଡରେ ଗୁଲି, ଡାବପୁଆ ଖେଳିଲେ, ଗୁଡ଼ି ଉଡ଼ାଇଲେ, ଅସଭ୍ୟ ଭାଷା କହି ପରସ୍ପର ସଙ୍ଗେ କଳି କଲେ । ପେଟ ପୋଷିବା ପାଇଁ ସେମାନେ ବି ନିହାଣ ଧରିଲେ; କିନ୍ତୁ ପଥରରେ ସେ ନିହାଣ ଆଉ ଜୀବନ ଫୁଟାଇ ପାରିଲା ନାହିଁ । ଖାଲି ପେଟ ପୋଷିବା ପାଇଁ ଗୋଟାଏ ପ୍ରଚେଷ୍ଟା । ବାପା ବଡ଼ବାପାଙ୍କ ସାଧନା ନଥିଲା, ସିଦ୍ଧି ନଥିଲା । ପଥରର ଯେ ହୃଦୟ ଅଛି, ପଥରରେ ହୃଦୟର ଭାଷା ଫୁଟାଇବାକୁ ହେଲେ ପଥରର ହୃଦୟକୁ ଯେ ଚିହ୍ନିବାକୁ ହେବ, ଏକଥା ସେମାନେ ଭୁଲିଗଲେ । ଘରେ ଯୋଉ ପୋଥି ଥିଲା, କାରିଗରୀ ବିଦ୍ୟା ସମ୍ପର୍କରେ, ସେ ସବୁ ଉଇ ଖାଇ ରାସ୍ତାରେ ଫିଙ୍ଗା ହେଲା ।

ଏହିପରି ତ ମୃତ୍ୟୁ ଆସିଲା-ନକୁଳ ଓ ମକରଙ୍କର ନୁହେଁ,ଇତିହାସ ଓ ପରମ୍ପରାର । ଯେଉଁମାନେ ଗଲେ, ଆଉ ଫେରିଲେ ନାହିଁ । ସେମାନଙ୍କ ପାଦଚିହ୍ନ ବାରି ଯେଉଁମାନେ ବାଟ ଚାଲିଥାନ୍ତେ, ସେମାନେ ବାଟ ହୁଡ଼ିଲେ ।

ଆଉରି ଅନେକ ମରିଛନ୍ତି ସାହୀର-ଯଦିଓ ସମସ୍ତେ ନକୁଳ ଓ ମକରଙ୍କ ପରି ଇତିହାସ ଓ ପରମ୍ପରାର ପ୍ରତୀକ ନଥିଲେ । ସେମାନେ ଥିଲେ, ସାଧାରଣ ମଣିଷ । ତଥାପି ସେମାନଙ୍କ ଜୀବନରେ ବୈଚିତ୍ର୍ୟ ନଥିଲା । ମୃତ୍ୟୁପରେ ସେମାନଙ୍କ ବୈଚିତ୍ର୍ୟ ସେମାନଙ୍କୁ ବଞ୍ଚାଇ ରଖିଥିଲା ଅନେକ ଦିନଯାଏଁ । ଦୁଇଜଣ ଥିଲେ ମାଝି ଓ ପୁଅ

ପଢ଼ିଆରି । ଜଣେ ଗେଡ଼ା ଓ ନିଶୁଆ; ଆଉ ଜଣେ ଡେଙ୍ଗା ନିଶ ନାହିଁ । ସେମାନେ କେବେଠୁ ମଲେଣି । ବଞ୍ଚିଥିଲାବେଳେ ବି ସେମାନେ ରୂପକଥାର ଚରିତ୍ରପରି ଆକର୍ଷଣୀୟ ଥିଲେ ଓ ମଲାପରେ କେତେ କିମ୍ବଦନ୍ତୀ ଓ ଲୋକକଥା ସେମାନଙ୍କୁ ଆଉରି ବୈଚିତ୍ର୍ୟମୟ କରିଛି । ସେ ଦୁହେଁ ଥିଲେ ଧୂଳିଆ ଗୁମାସ୍ତା । ଷ୍ଟେସନରେ ପହଞ୍ଚୁଥିବା ଯାତ୍ରୀମାନଙ୍କୁ ନେବା ପାଇଁ ପଣ୍ଡା ପଣ୍ଡା ଭିତରେ ଝଗଡ଼ା ହେଲେ ମାଝି ଓ ପୁଅ ପଢ଼ିଆରି ସମସ୍ତଙ୍କୁ ହଟାଇ ନିଜ ପଣ୍ଡା ପାଖକୁ ନେଇ ଆସୁଥିଲେ ଯାତ୍ରୀମାନଙ୍କୁ । ସେମାନଙ୍କ ବାହୁରେ ବଳ ଥିଲା । ତେଣୁ ସେମାନଙ୍କୁ ଅନ୍ୟ ଧୂଳିଆ ଗୁମାସ୍ତାମାନେ ଡରୁଥିଲେ । ସାଧାରଣ ଧୂଳିଆ ଗୁମାସ୍ତାଠାରୁ ସେମାନେ ବେଶି ରୋଜଗାର କରୁଥିଲେ । ଅବିନାଶ ଶୁଣିଥିଲା ସେମାନେ କୁଆଡ଼େ ଘରକୁ ଯାଆନ୍ତି ନାହିଁ । ଗୁମାସ୍ତାଗିରିରୁ ଯାହା ପାଆନ୍ତି, ଅଧିକରେ ଭାଙ୍ଗ ପିଅନ୍ତି, ଆଉ ଅଧିକରେ ଖେଚେଡ଼ି, ସର, ଲହୁଣୀ ଖାଆନ୍ତି । କେଉଁ ଅନ୍ଧାରିଆ, ଅପରିଷ୍କାର ଘରେ ପଡ଼ିଥାନ୍ତି ତାଙ୍କ ପିଲାମାଇପ । ବେଳେ ବେଳେ ଯାଇ ମାଇପକୁ ଟଙ୍କେ ଆଠଣା ଧରାଇ ଚାଲିଆସନ୍ତି । ରାତିରେ ଜାଗାଘରେ ଖୋଲା ପବନରେ ଶୁଅନ୍ତି ।

ଚନ୍ଦନଯାତ୍ରାବେଳେ ମାଝି ନରେନ୍ଦ୍ର ପୋଖରୀ ଜଗନ୍ନାଥଙ୍କ ଭୋଗ ବିକେ । ଅବିନାଶ ଦେଖିଛି । ପୁଅ ପଢ଼ିଆରିର ପେଟରେ ଘା' ହୋଇ ସେ କୁଆଡ଼େ ଅନେକଦିନ ଡାକ୍ତରଖାନାରେ ପଡ଼ିଥିଲା ।

ସେମାନେ ମଲେଣି । କେତେ ଜଣ ଧୂଳିଆ ଗୁମାସ୍ତା ଓ ତାଙ୍କ ପିଲାମାନଙ୍କ ଛଡା ଆଉ କେହି ସେମାନଙ୍କୁ ମନେ ରଖି ନଥିବେ ।

ନିଜ ଘରଠାରୁ ବହୁ ଦୂରରେ ଟାଙ୍ଗରା ପାହାଡ଼ିଆ ରାସ୍ତା ଉପରେ ଚାଲିଲାବେଳେ ଅବିନାଶ ସେମାନଙ୍କ କଥା ସବୁ ଭାବୁଥିଲା-ସେଇ ଯେଉଁମାନେ ଥିଲେ, ଆଜି ନାହାନ୍ତି । ପିଲାଦିନେ ସେମାନଙ୍କୁ ଦେଖି ଭୟ ଆସୁଥିଲା, ଲାଗୁଥିଲା କେଡ଼େ କେଡ଼େ ମଣିଷ, କେତେ ସେମାନଙ୍କ ଶକ୍ତି ! ସେଇମାନଙ୍କ ପରି ହେବାକୁ ଇଚ୍ଛା ହେଉଥିଲା । ଷ୍ଟେସନରେ ଗାଡ଼ି ଲାଗିଲେ ଯାତ୍ରୀମାନଙ୍କୁ ସଙ୍ଗରେ ନେଇ ପଣ୍ଡାଘରକୁ ଫେରିଲାବେଳେ ମାଝି ଓ ପୁଅ ପଢ଼ିଆରି ଖୁବ୍ ବଡ ପାଟିରେ ଯୁକ୍ତିତର୍କ କରୁଥାନ୍ତି । ସେମାନେ କେମିତି ଅମୁକ ପଣ୍ଡାର ଗୁମାସ୍ତାମାନଙ୍କୁ ହାତରେ ଆଡ଼େଇ ଯାତ୍ରୀମାନଙ୍କୁ ନେଇ ଆସିଲେ, ଅମୁକ ଲୋକଟା କେମିତି ନୂଆ ଯାତ୍ରୀମାନଙ୍କୁ ବିଗାଡ଼ି ଦେଇଛି-ଏଥକୁ ଉପାୟ ନକଲେ ନ ଚଳେ-ଏହିପରି ବିଷୟ ସବୁ ସେମାନେ ଆଲୋଚନା କରି କରି ଆଗରେ ମଳିନ ହିନ୍ଦୁସ୍ତାନୀ ଯାତ୍ରୀମାନଙ୍କୁ ଚଲାଇ ଚଲାଇ ପଣ୍ଡାଘରକୁ ଆସନ୍ତି । ଯାତ୍ରୀମାନେ ବେଳେ ବେଳେ କ'ଣ ହିନ୍ଦୀ ଗୀତ ଗାଆନ୍ତି । ଏମାନେ ସବୁ ବୁଝିବା ଭଙ୍ଗୀରେ ଚିତ୍କାର କରନ୍ତି- 'ବୋଲୋ ଜଗନ୍ନାଥ ସ୍ୱାମୀ - କୀ - ।' ଯାତ୍ରୀମାନେ ଉତ୍ତର ଦିଅନ୍ତି - 'ଜୟ ।'

ଯାତ୍ରୀମାନେ ଓଡ଼ିଆ ବୁଝନ୍ତି ନାହିଁ । ଏଣୁ ସେମାନଙ୍କ ସାଙ୍ଗରେ ଥାଇ ସେମାନଙ୍କ

ବିଷୟରେ ଆଲୋଚନା କରନ୍ତି । କୋଉ ଲୋକଟାଠାରୁ କେତେ ଆଦିକା ହୋଇ ପାରିବ, କିଏ କେତେ ସୁନାଗହଣା ଲଗାଇଛି। ଯାତ୍ରୀମାନେ ଯେମିତି ଚିଡ଼ିଆଖାନାର ଜନ୍ତୁ, ଲୁଲୁ ଲୁଲୁ ଅନାନ୍ତି ।

ପଣ୍ଡା ଦୁଆରେ ଆଉରି ବଡ଼ପାଟିରେ ଆଲୋଚନା କରନ୍ତି ମାଝି ଓ ପୁଅ ପଡ଼ିଆରି । ଆଜି କାର୍ଯ୍ୟରେ ଅଧିକ ପାରଦର୍ଶିତା ଦେଖାଇଥିବାରୁ ଭାଙ୍ଗପାଇଁ କିଛି ପଇସା ମାଗନ୍ତି- "ଅବଧାନ, ରାଗପାଣି ପାଇଁ କିଛି ଅଧିକା ହୁକୁମ୍ ହେଉ !"

ସେମାନେ ଆଉ ନାହାନ୍ତି । କେଉଁଠି କୁହା ହୋଇଛି, ଜୀବନ ପାଣିଫୋଟକା ପରି । ସତ କଥା, ଅବିନାଶ ଭାବିଲା । ମାଝି ଓ ପୁଅ ପଡ଼ିଆରିଙ୍କ ପିଲାମାନେ ବିଡ଼ି ଟାଣି ଧୂଳିଆ ଗୁମାସ୍ତା କାମ କରିବେଣି । ଖରା ଓ ଧୂଳି ଖାଇ ଭାଙ୍ଗ ପିଇ ଅନ୍ଧାର କୁଡ଼ିଆ ଘରେ ପିଲାମାଇପଙ୍କୁ ଛାଡ଼ି ଢାଗାଘରେ ଶୋଇ ସେମାନେ ବି ମରିବେ । ଆସୁଥିବେ ଦଳ ଦଳ ଯାତ୍ରୀ । ସେମାନଙ୍କ ଧର୍ମ ବିଶ୍ୱାସ, ଅନ୍ଧ ବିଶ୍ୱାସର ସୁବିଧା ନେଇ କେଉଁ ପଣ୍ଡାର ଗନ୍ତାଘରେ ସୁନା ବଢୁଥିବ । ବଂଶ ପରମ୍ପରାକ୍ରମେ କେଉଁମାନେ ପୁଣି ଯାତ୍ରୀମାନଙ୍କୁ ଷ୍ଟେସନରୁ ଆଣି ପଣ୍ଡାଘରେ ଛାଡି ଭାଙ୍ଗପାଇଁ କିଛି ଅଧିକା ପଇସା ମାଗୁଥିବେ ।

ଇତିହାସ ଓ ପରମ୍ପରା ଭାଙ୍ଗିଛି । ପୁଣି ଭାଙ୍ଗିନାହିଁ । ଗଛର କେଉଁ ଡାଳ ଭାଙ୍ଗିଲାଣି, କେଉଁଟା ଶୁଖିଲା ମୁରୁକୁଟିଆ ହୋଇ ବି ଗଛରେ ଲାଗିରହିଛି । କେଉଁଦିନ ଏଇଟା ବି ଭାଙ୍ଗି ମାଟିରେ ମିଶିବ, ନୂଆ ଡାଳରେ ପତ୍ର କଅଁଳିବ, ଜଣାନାହିଁ । ସବୁ ବଦଳିଛି, ବଦଳିବ । କେତେ ପୁରୁଣା ଡାଳ ଭାଙ୍ଗିଛି, ଏ ଡାଳ ବି ଭାଙ୍ଗିବ । ଗଛ ବି ରହିବ ନାହିଁ ସବୁଦିନେ; କିନ୍ତୁ ଋତୁ ପରିବର୍ତ୍ତନ ପାଇଁ ଅପେକ୍ଷା କରିବାକୁ ହେବ ।

ଏଇ ଭଙ୍ଗାଗଢ଼ା ଭିତରେ ଅନେକ ଭଲ ବି ଭାଙ୍ଗିଯାଇଛି, ଗଢ଼ା ହୋଇ ପାରିନାହିଁ, ଯେମିତି ନକୁଳ ଓ ମକରଙ୍କ ଶିଳ୍ପକଳାର ପରମ୍ପରା । ପୁଣି ଅନେକ ମନ୍ଦ ଏବେ ବି ଭାଙ୍ଗିନାହିଁ, ଭଲ ଆସିବାକୁ ଡେରି ଅଛି ।

ଅବିନାଶ ଭାବିଲା, ଗଛର ପୁରୁଣା ଡାଳ ଭାଙ୍ଗି ଦିଆଯାଏ, ନୂଆ ଡାଳ ଶୀଘ୍ର କଅଁଳିବ ବୋଲି । ସେମିତି ଆମର ଏ ସମାଜ ସଂସ୍କାର ଅନେକ କିଛି ବାଦ୍ ଦେବାକୁ ହେବ । ତା'ସ୍ଥାନରେ ନୂଆ ନିୟମ ଚଳାଇବାକୁ ହେବ; କିନ୍ତୁ ଗଛଟାକୁ ମୂଳରୁ ଓପାଡ଼ିଦେଲେ ଚଳିବ ନାହିଁ । କାରଣ ଗଛରେ ଶୁଖିଲା ମୁରୁକୁଟିଆ ଡାଳ ସହିତ ସବୁଜ ପତ୍ର, ଫୁଲ ଛନ ଛନ ଡାଳ ବି ତ ଥିବ,-ଉପାଡ଼ି ଦେଲେ ସବୁ ଯିବ । ଯେତେବେଳେ ଗଛର ଗଣ୍ଡିଟାକୁ ଘୁଣ ଖାଇବ, ଆଉ ଡାଳ କଅଁଳିବାର ଆଶା ରହିବ ନାହିଁ, ସେତେବେଳେ ଗଛଟାକୁ ମୂଳରୁ ଉପାଡ଼ିବା ଛଡା ଉପାୟ ନାହିଁ ।

କେଉଁ ଉଦ୍ଦେଶ୍ୟରେ କେଉଁ ସ୍ଥାନକୁ ତୀର୍ଥସ୍ଥାନର ଆଖ୍ୟା ଦିଆଯାଇଥିଲା, ଲୋକେ

ତା ଭୁଲିଗଲେଣି । ପୁରୀକୁ ଆସୁଥିବା ଯାତ୍ରୀ, ଷ୍ଟେସନରୁ ବାଟ କଢ଼ାଇ ନେଉଥିବା ଗୁମାସ୍ତା ଓ ଯାତ୍ରୀଙ୍କୁ ନିଜ ଘରେ ରଖି ଦର୍ଶନ କରାଇ ଆଟିକା କରୁଥିବା ପଣ୍ଡା, କେହି ଆଜି ମୂଳ ଉଦ୍ଦେଶ୍ୟ ମନେ ରଖି ନାହାନ୍ତି । ଯାତ୍ରୀମାନେ କିଛି ଟଙ୍କା ଖର୍ଚ୍ଚ କରି ଧର୍ମ କିଣି ନେବାକୁ ଯେପରି ବ୍ୟାକୁଳ, ପଣ୍ଡା ଓ ଗୁମାସ୍ତାମାନେ ସେମିତି ବ୍ୟାକୁଳ, କିଛି ଟଙ୍କା ରୋଜଗାର ପାଇଁ । ଏକ ପୁରୁଣା ଧର୍ମାନୁଷ୍ଠାନ ଆଜି ଗଛରେ ଝୁଲୁଥିବା ଶୁଖିଲା ମୁରୁକୁଟିଆ ଡାଳପରି ଝୁଲୁଛି । ଭାଙ୍ଗି ନାହିଁ, ଭାଙ୍ଗି ପଡ଼ିବ ।

ସେ ପାଖେ ମଶାଣି । ଠାଏ ଠାଏ ପୋଡ଼ାକାଠ ଖଣ୍ଡେ ଖଣ୍ଡେ ଓ ମଲା ମଣିଷର ହାଡ଼ସବୁ, ବିଭିନ୍ନ ଆକୃତିର, ଏଠି ସେଠି ପଡ଼ିଛି । ମଶାଣି ସାମନାରେ ବଇଁଶିବାବୁ ନୂଆ କରତ କଳ କରିଛନ୍ତି । ଦିନରାତି ବେଞ୍ଚ ଉପରେ ବସି କାମ ତଦାରଖ କରନ୍ତି । ସେ ହିଁ ଖବର ରଖନ୍ତି ସବୁ ମୃତ୍ୟୁର; କାରଣ ଯେ ମଲେ ତାଙ୍କରି ପାଖରୁ ମଣିଷ ପୋଡ଼ା ପାଇଁ କାଠ କିଣା ହୁଏ । କାଠ ବିକ୍ରୀ ବେଳେ ସେ ବୁଝି ନିଅନ୍ତି, କିଏ ମଲା, କି ରୋଗରେ-ତାକୁ କେତେ ବୟସ ହୋଇଥିଲା । ସାଙ୍ଗମାନଙ୍କ ସଙ୍ଗେ ଆଲୋଚନା ବେଳେ ମଶାଣି କଥା ସେ ପ୍ରାୟ କହିଥାନ୍ତି । ଏମିତି କି କେଉଁ ପୋଡ଼ାକାଠଟା କାହାର ଦେହକୁ ପାଉଁଶ କରିଥିଲା, ସେ କଥା ବି ।

ବଇଁଶି ବାବୁ କହନ୍ତି, ପାହାଡ଼ କଡ଼େ ସେଇ ଯେଉଁ ବଡ଼ ଝାମ୍ପୁଲା ଗଛଟା, ତା'ରି ମୂଳେ ପୋଡ଼ା ହୋଇଥିଲା କଲେଜର ଝିଅଟିଏ । ସେ କୁଆଡ଼େ ଆତ୍ମହତ୍ୟା କରିଥିଲା । ରାତିରେ ସେ ଗଛମୂଳେ କୁଆଡ଼େ ମିଞ୍ଜି ମିଞ୍ଜି ଆଲୁଅଟିଏ ଆଜିକାଲି ଦେଖାଯାଉଛି । ବଇଁଶିବାବୁ ତ ସଞ୍ଜ ହେଲେ ଘରକୁ ଚାଲିଯାନ୍ତି । ସେ ଦେଖି ନାହାନ୍ତି । ରାତିରେ କାରଖାନା ଜଗି ଶୋଇ ରହନ୍ତି ଯେଉଁ ଚାକରମାନେ, ସେମାନେ ଭିତରୁ ଦୁଆର ବନ୍ଦ କରି ଶୁଅନ୍ତି । ବାହାରେ କେତେ ପ୍ରକାର ଭୟଙ୍କର ବିକଟାଳ ଶବ୍ଦ ଶୁଣନ୍ତି । କିଏ କିଏ ବି କବାଟ ଜଳାବାଟେ ପଦାକୁ ଅନାଇ ମିଞ୍ଜି ମିଞ୍ଜି ଆଲୁଅ ଦେଖିଲେଣି ।

ସେଇ ବଇଁଶି ବାବୁ କହୁଥିଲେ-ଆଗେ କୁଆଡ଼େ ଏଇ ଅଞ୍ଚଳରେ ଜଣେ ଅତ୍ୟାଚାରୀ ରଜା ଥିଲେ । ସାମାନ୍ୟ ଦୋଷ ପାଇଁ ପ୍ରଜାମାନଙ୍କ ମୁଣ୍ଡକାଟ କରୁଥିଲେ । ମୁଣ୍ଡ ନଥିବା ଭୂତମାନେ ରାତିରେ ରାଜ ଉଆସରେ ନାନା ଉପଦ୍ରବ କଲେ । ରାଜାଙ୍କୁ ବି ଭୂତମାନେ ଡରାଇଲେ । ଶେଷରେ ରଜା ସେଇ ଭୂତମାନଙ୍କ ଭୟରେ ହିଁ ମଲେ ।

ଏହିପରି ଆଉରି କେତେ ଗପ ।

ଅବିନାଶ ବଇଁଶିବାବୁଙ୍କ କରତକଳ ପାଖେ ନ ରହି ଆଗକୁ ଆଗକୁ ଚାଲିଥିଲା । ସେ କୁଆଡ଼େ ଚାଲିଥିଲା, କାହିଁକି ଚାଲିଥିଲା, ଜାଣି ନଥିଲା । ହଠାତ୍ ତାକୁ ଲାଗିଲା, ସେ ତା' ମୃତ୍ୟୁ ଆଡ଼କୁ ହିଁ ଚାଲିଛି । ମୃତ୍ୟୁ ଆଡ଼କୁ ତ ଚାଲିଛନ୍ତି ସମସ୍ତେ, ଅବିନାଶ ଭାବିଲା, ଜାଣତରେ ହେଉ କି ଅଜାଣତରେ ହେଉ ।

ଓ ସେ ଦେଖିଛି, ମୃତ୍ୟୁ ସଙ୍ଗେ ସାକ୍ଷାତ୍‌କାରର କେତୋଟି ଦୃଶ୍ୟ । ସେମିତି କେତୋଟି ଦୃଶ୍ୟ ସ୍ମୃତିର ସମୁଦ୍ର ଭିତରୁ ଲହଡ଼ିର ରଙ୍ଗ ପରି ଫୁଟିଉଠୁଛି । ନିଛାଟିଆ ରାସ୍ତା ଲାଗୁଛି ଆଉରି ନିଛାଟିଆ । ମନେ ପଡୁଛି ମୃତ୍ୟୁର ମୁହଁ । ସଫା ମନେ ପଡୁନାହିଁ, ଯେମିତି ଅନ୍ଧାରରେ ଦେଖିଥିଲା ସେ ମୁହଁଟାକୁ । ସନ୍ତରା ମଶିଣାରେ ମାଟି ଘର ଭିତରେ ଶୋଇ ରହିଛି ଅଠର ବର୍ଷର ଗୋଟିଏ ବୋହୂ । ତା ଚାରିପାଖେ ଆଉ କେତେଜଣ ଗାଉଁଲି ମାଇପେ ବାହୁନା ପକାଇ କାନ୍ଦୁଛନ୍ତି । ପାଖରେ ବସିଛି ସେ ନିଜେ, ତିନି ଚାରିବର୍ଷର ଶିଶୁ । ସେମାନେ କାନ୍ଦୁଛନ୍ତି ଓ ବେଳେ ବେଳେ ତା ଉଦ୍ଦେଶ୍ୟରେ କିଛି କହୁଛନ୍ତି ଲୁହରେ ଲୁହରେ । ହେଇ, ସେ ବୋହୂଟିକୁ ମଶିଣାରେ ଗୁଡ଼ାଇ ଟେକି ନେଉଛନ୍ତି କେତେଜଣ ପୁରୁଷ ଲୋକ । କାନ୍ଦୁଥିବା ସ୍ତ୍ରୀ ଲୋକେ କିଏ କୁଆଡେ ଚାଲିଗଲେଣି । କେବଳ ବୁଢ଼ୀଟିଏ ମାଟିରେ ଗଡ଼ିଗଡ଼ି କାନ୍ଦୁଛି । ପାଖରେ ସେମିତି ବସି ରହିଛି ସେ,ଅବିନାଶ, ଚାରିବର୍ଷର ଶିଶୁ ।

ଯେ ମରିଥିଲା, ସେ ଅବିନାଶର ବୋଉ ।

ପୁଣି ଆଉ ଏକ ଦୃଶ୍ୟ । ନୁଆଁଣିଆ ମାଟିଘରର ଅଗଣାରେ ଅନ୍ଧାରୁଆ ମୁହଁ ସଞ୍ଜରେ ଗୋଟିଏ ଶବ-ବୁଢ଼ୀମା'ର- ଓ ଚାରିପାଖରେ ମଡ଼ କାନ୍ଦଣା । କିଏ କହୁଥିଲା, ଦୁଇଟା କଳା କୁକୁର କୁଆଡ଼େ ଭୁକି ଉଠିଥିଲେ ବୁଢ଼ୀର ପିଣ୍ଡରୁ ପ୍ରାଣ ଛାଡ଼ିବାବେଳେ । ବୁଢ଼ୀ ମଲାବେଳେ ତା ପେଡ଼ିରୁ ବାହାରିଥିଲା ଗୋଟିଏ ରୂପା ଟଙ୍କା, ସାରା ଜୀବନର ସଞ୍ଚିତ ସମ୍ପତ୍ତି ।

ସେଇ ରୂପାଟଙ୍କା ପରି ଏବେବି ଉଜ୍ଜ୍ୱଳ-ସ୍ନେହ ଛଳ ଛଳ ବୁଢ଼ୀ-ମାଆର ସ୍ମୃତି ।

ଘରକୁ ଫେରିଲାବେଳକୁ ମୁଣ୍ଡଟା ଲାଗୁଥିଲା ଭାରି ଭାରି । ଘର ପାଖ ଚା' ଦୋକାନରୁ କପେ ଗରମ ଚା' ଖାଇବାକୁ ଇଚ୍ଛା ହେଉଥିଲା; କିନ୍ତୁ ସେ ସେମିତି ଚାଲି ଆସିଲା । ନୂଆ ଶୀତ ପଡିଛି । ପାହାଡ଼ଘେରା ଛୋଟ ଏଇ ମଣିଷ ବସ୍ତିରେ ସବୁ ଋତୁକୁ ନିବିଡ଼ ଭାବରେ ଅନୁଭବ କରିହୁଏ, ଖାଲି ଦେହରେ ନୁହେଁ, ମନରେ, ଚେତନାରେ । ଅବିନାଶ ଏ ସହରକୁ ଆସିବା ବେଳେ ବର୍ଷାଋତୁ ନୀରସ ପାହାଡ଼କୁ ସ୍ୱପ୍ନରେ ଢାଙ୍କି ରଖିଥିଲା । କେତେବେଳେ ବର୍ଷାଋତୁ ପଛରେ ରହିଲାଣି । ଶୀତଋତୁରେ ସବୁ କୁହୁଡ଼ିଆ, ଛାଇ ଛାଇଆ-ଯେମିତି ସବୁ ଦେଖି ହେଉଚି, ଅଥଚ କିଛି ବୁଝି ହେଉନାହିଁ ।

ଠିକ୍ ଘର ସାମନାରେ ପହଞ୍ଚି ହଠାତ୍ ସେ ଅଟକିଗଲା । ଅନ୍ଧାରରେ କିଏ ଜଣେ ବସିଥିଲେ । ଧଳା ମଣିଷ, ପାଖରେ ଦୁଇ ତିନୋଟି ବୁଜୁଳି ଥୁଆ ହୋଇଥିଲା । "କିଏ ?"ଅବିନାଶର ହାତରୁ ଜଳନ୍ତା ସିଗାରେଟ୍ ଖସିପଡ଼ିଲା ।

"ଅବି, ବାପା, କେତେବେଳୁ ତତେ ଚାହିଁ ବସିଛି !"

"ଅବି ମୁଣ୍ଡ ନୁଆଁଇଲା । ପ୍ରଥମ ଥର ପାଇଁ ଆସିଛନ୍ତି ତା'ର ବାପା, ତାକୁ ଦେଖିବାକୁ । ସେ ଠିଆହେଲେ ଅନ୍ଧାରରେ । ଅବିକୁ ଲାଗିଲା, ସେ ଯେମିତି ତାଙ୍କର ପୁରୁଣା ଘରକୁ ଫେରି ଯାଇଛି । ସେ ଆଲୁଅ ଜଳାଇଲା, ବାପା ଆଣିଥିବା ବୁଜୁଳି ସବୁ ଘରକୁ ବୋହିନେଲା । ବାପା ଲୁଗା ବଦଳାଇ ଚଟାଣରେ ସପ ମଶିଣାଟାଏ ପକାଇ ବିଶ୍ରାମ କଲେ । ନା-ଖଟ ତାଙ୍କର ଦରକାର ନାହିଁ । କେବେ ନଥିଲା । ଆଖି ବୁଲାଇ ଥରେ ନୁହେଁ, ଅନେକ ଥର ସେ ଦେଖିନେଲେ, ପୁଅର ଭଡ଼ାଘରକୁ । ସାହେବୀ ରୀତିରେ ସଜା ହୋଇଛି । ବଡ଼ ବଡ଼ ଲୋକଙ୍କ ଘର ଭିତରକୁ ପଶିଗଲେ ଯେମିତି ଲାଗେ, ତାଙ୍କୁ ତାଙ୍କ ପୁଅର ଘର ଆଜି ସେମିତି ଲାଗୁଥିଲା । ଶଙ୍କା ଲାଗୁଥିଲା, ଡର ଆସୁଥିଲା, ଲାଗୁଥିଲା ଏ ଘର ଯାହାର, ସେ ଯେମିତି ଆଉ ଜଣେ କିଏ, ଅବି ନୁହେଁ । ପୁଣି ମନରେ ଗର୍ବ ଆସୁଥିଲା ଯେ, ତାଙ୍କରି ଅବି-ବଡ଼ ଅଫିସର-ଏଇ ଘରେ

ରହେ । ସେ ତା'ରି ବାପା । ଆହା, ଅଭାଗୀଟା ଥିଲେ ଆଜି ଦେଖିଥାନ୍ତା । ଛାଡ଼, ବଞ୍ଚିଲା ନାହିଁ ।

ବାପା ହୋଟେଲ୍‌ରେ ଖାଆନ୍ତି ନାହିଁ । ଅବି ଗଲା ବଜାରକୁ ଚୁଡ଼ା କିଣିବାକୁ । ବିଜୁଳି ଆଲୁଅ ଜଳା ଘର ଭିତରେ ଅବିନାଶର ବୁଢ଼ା ବାପା ନୀଳାମ୍ବର-ମହାପାତ୍ର ସପ୍ ମଶିଣାଟି ଉପରେ ଗଡୁଥିଲେ । କାନ୍ଥରେ ଟଙ୍ଗା ହୋଇଥିଲା ଦୁଇ ତିନୋଟି କ୍ୟାଲେଣ୍ଡର, ଗୋଟିଏ କଣକୁ ର୍‍ୟାକ୍, ବହି ଥାକରେ ବହିସବୁ ସଜାହୋଇ ରଖା ଯାଇଥିଲା । ଶୋଇବା ଖଟ ଉପରେ ନେଳି ବିଛଣା ଚାଦର ପଡ଼ିଥିଲା, ଘରର ଗୋଟିଏ କୋଣରେ ମନିପ୍ଲାଣ୍ଟ୍ ମାଡ଼ିଥିଲା । ପଢ଼ାଟେବୁଲ୍ ଉପରେ କେତୋଟି ବହି ଓ ପତ୍ରିକା ଖେଳେଇ ହୋଇ ରହିଥିଲା । ଏଇ ସୁନ୍ଦର ଘରଟି ଭିତରେ ଷାଠିଏ ବର୍ଷର ବୁଢ଼ା କ୍ଷୀଣସ୍ୱାସ୍ଥ୍ୟ ନୀଳାମ୍ବରଙ୍କ ଉପସ୍ଥିତି ଜଣା ପଡୁଥିଲା ଖାପଛଡ଼ା । ସେ ବି ସେମିତି ଚାହୁଁଥିଲେ ଏଣେ ତେଣେ, ନୂଆ ପରିବେଶକୁ ନିଜର କରି ପାରୁ ନଥିଲେ ।

ରାତି ବେଶି ହୋଇ ନଥିଲା । ନୀଳାମ୍ବର ବସ୍‌ରେ ଶହେ ମାଇଲ୍ ଆସିଛନ୍ତି । ତାଙ୍କର ଆଖିପତା ଲାଗି ଆସୁଥିଲା, ଅପରିଚିତ ସ୍ଥାନରେ ଚାଉଁକିନା କ'ଣ ଲାଗୁଥିଲା, ନିଦ ହେଉ ନଥିଲା । ଆଜିଠାରୁ ପଚାଶ ବର୍ଷ ତଳେ ସେ ଏଇ ସହର ଦେଇ ଶଗଡ଼ରେ ଯାଇଥିଲେ କୋଉ ଗାଁଆକୁ । ସେଠି ହୁକୁମ୍ ଦିଆ ହେଉଥିଲା । କେଉଁ ଦେବୀଙ୍କ ପୂଜକ ହୁକୁମ୍ ଦେଉଥିଲା, ନୀଳାମ୍ବରଙ୍କ ମନେ ନାହିଁ । ଖାଲି ମନେ ଅଛି, ସେ ଛୋଟ ପିଲା ଥିଲେ, ବୋଉ କୋଳରେ ବସି ଶଗଡ଼ରେ ଯାଇଥିଲେ । ଧାଡ଼ି ଧାଡ଼ି ଶଗଡ଼ ପଛକୁ ପଛ, ଲଣ୍ଠନଟିଏ ମିଞ୍ଜି ମିଞ୍ଜି ହୋଇ ପ୍ରତି ଶଗଡ଼ ତଳେ ଝୁଲୁଥାଏ । ବଳଦ ବେକରେ ଘଣ୍ଟି । ଗୋଟିଏ ଶଗଡ଼ ଭିତରେ ପଲେ ମାଇପିଙ୍କ ଭିତରେ ଜଣକ କୋଳରେ ସେ ଜାକିଜୁକି ହୋଇ ବସିଥିଲେ । ବୋଉ କେବେଠୁ ମଲାଣି । ଇଏ ବି ବଣଜଙ୍ଗଲ ମୁଲକ ହୋଇନାହିଁ, ଯୁଆଡ଼େ ଦେଖିବ କୋଠାଘର, ବିଜୁଳିବତୀ !

ଯୁଗ ବଦଳିଛି, କେତେ କ'ଣ ବଦଳି ଗଲାଣି ଭାବିଲେ ନୀଳାମ୍ବର ଥଳକୂଳ ପାଆନ୍ତି ନାହିଁ କେବେ । ଆଜି ବି ପାଉ ନଥିଲେ । ତାଙ୍କ ଅମଳକୁ ଏ ଅମଳ କେତେ ଫରକ୍ । କାଲିପରି ଲାଗୁଛି, ପହିଲେ ଯେତେବେଳେ ଏଇ ପୂରାପେଣ୍ଟ୍ ପିନ୍ଧିଲେ ନୂଆ ନୂଆ ଇଂରେଜୀ ପଢୁଆ ପିଲାଏ,ନୀଳାମ୍ବର ତାଙ୍କ ବୟସର ଅନ୍ୟମାନଙ୍କ ପରି ନାକ ଟେକିଥିଲେ । ଦେଖ ଯେ ଯୁଗ ପୁଣି ଏମିତି ବଦଳିଲା, ଯୋଉମାନେ ପୂରାପେଣ୍ଟକୁ ନାକ ଟେକୁଥିଲେ, ସେମାନେ ତାଙ୍କ ପିଲାଙ୍କ ପାଇଁ ପୂରାପେଣ୍ଟ୍ କିଣିଲେ । ଅବି ତ ପୂରାପେଣ୍ଟ୍ ପିନ୍ଧୁଚି । ହୋଟେଲ୍‌ରେ ଖାଉଚି । ଜାତି ଅଜାତି ମାନୁ ନାହିଁ । ନୀଳାମ୍ବର ସବୁ ଜାଣନ୍ତି, କେବେ ପାଟି ଫିଟାନ୍ତି ନାହିଁ । ମାଆ ନଥିବା ପିଲାକୁ କହିଲେ, ମନରେ କଷ୍ଟ । ସେଥିରେ ପୁଣି, ଯିଏ ଇଂରାଜୀ ପଢ଼ିଲା, ସିଏ ଏମିତି ହେଲା,- ପଢ଼ାର ପୁଣି ଗୋଟାଏ ଗୁଣ ଅଛି ତ !

ଯେତେ ହୁରୁଡ଼େଇଲେ ବି ଗୋଟାଏ ମଶା ନୀଳାମ୍ବରଙ୍କ କାନ ପାଖେ ବାରମ୍ବାର ଗୁଣୁଗୁଣୁ ହେଉଥିଲା । ଶେଷରେ ବିରକ୍ତ ହୋଇ ସେ ଉଠି ବସିଲେ, ମଶାମାନଙ୍କ ଉଦ୍ଦେଶ୍ୟରେ

ମନକୁ ମନ କ'ଣ ବିଡ଼୍ ବିଡ଼୍ ହେଲେ । ପୁଅଟା କୁଆଡ଼େ ଯାଇଚି ଚୁଡ଼ା ଆଣିବାକୁ । ସେ ତ ମନା କରୁଥିଲେ । ଏତେ ରାତି ହେଲାଣି । ସେ ସେମିତି ଶୋଇ ପଡ଼ିବେ । ପୁଅ ଶୁଣିଲା ନାହିଁ । ଚୁଡ଼ା ପାଇଁ ଗଲା । ସବୁଦିନେ ଅବିଟା ଏମିତି । ତାଙ୍କ କଥା ଶୁଣେ ନାହିଁ । ବୋଉ ନାହିଁ ବୋଲି ସିଏ ବି ତାକୁ କିଛି କହନ୍ତି ନାହିଁ । ଘରେ ରହିଲେ ଦୁଷ୍ଟାମୀ କରିବ ଭାବି ସେ ତାକୁ ଇସ୍କୁଲ୍‌ରେ ଭର୍ତ୍ତି କରିଥିଲେ । ଦିନେ ହେଡ୍‌ମାଷ୍ଟ୍ରେ ଆସି କହିଲେ, -ମହାପାତ୍ରେ, ତୁମ ପୁଅ ଫାଷ୍ଟ୍ ହେଉଛି । ବୃତ୍ତି ପରୀକ୍ଷାକୁ ଯିବ ।

ନୀଳାମ୍ବର ସେଦିନ ତାଙ୍କର ସବୁ ବନ୍ଧୁମାନଙ୍କୁ ସେ କଥା କହିଥିଲେ । କେଜାଣି, ଅବି ଯେ ବେଶୀ ପାଠ ନ ପଢ଼ିବ, ବଡ଼ ମଣିଷ ନ ହେବ କିଏ କହିବ !

ବାହା ହେବାର ଚାରିବର୍ଷ ପରେ ନୀଳାମ୍ବରଙ୍କ ସ୍ତ୍ରୀ ମରିଥିଲେ । ନୀଳାମ୍ବର ବନ୍ଧୁମାନଙ୍କ ସଙ୍ଗେ ସେତେବେଳେ କେଉଁ ଗାଆଁର ମେଳଣ ଦେଖୁଥିଲେ । ସେଇଠି ଖବର ପାଇଲେ । ବାହା ହେବାର ଚାରିବର୍ଷ ନ ପୂରୁଣୁ, ସ୍ତ୍ରୀ ମୁହଁ ଭଲକରି ଦେଖିବା ଆଗରୁ, ସେ ସ୍ତ୍ରୀଙ୍କୁ ହରାଇଥିଲେ । କେହି କେହି ଲଗାଇଲେ ଆଉ ଥରେ ବାହା ହେବା ପାଇଁ । ସେ ନାହିଁ କଲେ । ବୁଢ଼ୀ ମାଆଟା କାନ୍ଦି କାନ୍ଦି ମଲା । ପୁଅକୁ ଆଉ ଥରେ ବାହା କରିପାରିଲା ନାହିଁ । ତାଙ୍କ ବାପା ନରି ମହାପାତ୍ରେ ମାତ୍ର ତେତିଶି ବର୍ଷ ବୟସରେ ମଲାପରେ ନୀଳାମ୍ବର ଜୀବନର ସୁଖ କ'ଣ ଜାଣିନଥିଲେ । ବାହା ହେବା ପରେ ସ୍ତ୍ରୀ ବି ମଲେ । ଅତୀତ ଯାଇଥିଲା, ଭବିଷ୍ୟତ ବି ଗଲା; କିନ୍ତୁ ସେ ଦିନର ସେଇ ଶିଶୁର ଢଳଢଳ ମୁହଁ ମନରେ ପୁଣି ସ୍ୱପ୍ନ ଲଗାଇଥିଲା । କେଜାଣି ଯଦି ଅବି ବଞ୍ଚି ମଣିଷ ହୋଇଯାଏ !

କେଡ଼େ ବେଗେ ତାଙ୍କ ଜୀବନଟା ବିତିଗଲା । ଏଇ ଯେମିତି ସବୁ ଘଟି ଯାଇଚି ଘଡ଼ିକ ଆଗରୁ । ଅବିକୁ ଯେତେବେଳେ ଦଶ ବର୍ଷ, ବୁଢ଼ୀ ମାଆ ମଲା । ଅବିର ସବୁ ଦୁଷ୍ଟାମୀ ସେ ସହିଲା, ବଞ୍ଚିଲା ନାହିଁ ତା ନାତି କେମିତି ଅଫିସର ହୋଇଛି, ଦେଖିବାକୁ ।

ନୀଳାମ୍ବର କର ଲେଉଟାଇଲେ ।

ତା'ପରେ ଦିନେ ଅବିନାଶ ବି.ଏ. ପାଶ୍ କଲା । କଟକ ଗଲା ଏମ.ଏ. ପଢ଼ିବାକୁ । ପାଖରେ ଟଙ୍କା ନଥିଲା, ହେଲେ ମନରେ ଥିଲା ସାହସ । ସେଇ ସାହସରେ ସେ ଜୀବନଟାକୁ ଏ ଯାଏଁ ଠେଲି ଆଣିଲେ । ଏଠୁ ସେଠୁ ଟଙ୍କା କରଜ କରି ପାଠ ପଢୁ ପଢୁ ଦିନେ ଅବି ଏମ୍.ଏ. ବି ପାଶ କଲା । ତା' ଆଗକୁ ଆଉ ପଢ଼ା ନାହିଁ, ଏଣିକି ଚାକିରୀ । ତା' ବି ମିଳିଲା । ସମସ୍ତେ ଲଗାଇଛନ୍ତି ପୁଅର ବାହାଘର କରିବାକୁ । କେତେଠୁ ପ୍ରସ୍ତାବ ଆସିଚି । ଅବି ରାଜି ହେଲେ ହେଲା । ତାଙ୍କର ଦାୟିତ୍ୱ ସେତିକି । ପୁଅର ମୁଣ୍ଡରେ ଦୁବ ଚାଉଳ ପକାଇଦେଲେ ସେ ନିଶ୍ଚିନ୍ତ ।

ତା' ପରଦିନ ସକାଳୁ ସେ ସେଇ କଥା ହିଁ ଅବିନାଶକୁ କହିଲେ । ଏହା ଆଗରୁ ଅନେକଥର ସେ ବାହାଘର କଥା ଉଠାଇଛନ୍ତି । ଅବିନାଶ କୌଣସି ଥର ରାଜି ହୋଇନାହିଁ । ପୁଅ କଲେଜରେ ପଢ଼ିବାଦିନୁ ନୀଳାମ୍ବର ସ୍ୱପ୍ନ ଦେଖି ଆସିଛନ୍ତି-ଘରକୁ ବୋହୂଟିଏ ଆଣିବେ, ଆଉ ତା ସଙ୍ଗରେ ଅନେକ ଯୌତୁକ । ଅବସ୍ଥା ବଦଳି ଯିବ । ଏମିତି ଅନେକଙ୍କ ଅବସ୍ଥା ବଦଳିଛି ଯୌତୁକ ଟଙ୍କାରେ, ସେ ଦେଖିଛନ୍ତି । ତାଙ୍କ ପୁଅର ବି ସେମିତି ହେବ ।

ନୀଳାମ୍ବର ମନେ ମନେ ବୋହୂ ଠିକ୍ କରିସାରିଥିଲେ ଅନେକ ଦିନ ତଳେ, ଏମିତିକି କ'ଣ କ'ଣ ଯୌତୁକ ଆଣିବେ, ତା'ବି । ସେତେବେଳେ ଅବିନାଶ ନୂଆ ହୋଇ କଲେଜରେ ନାଆଁ ଲେଖାଇଥାଏ । ଏତେ ବଡ଼ କଲେଜରେ ଏତେ ପ୍ରତିଭା,ଏତେ ପ୍ରତିଯୋଗିତା ଭିତରେ ନିଜକୁ ଜଣେ ବୋଲି ପରିଚିତ କରାଇବା ଥିଲା ସେତେବେଳେ ତା'ର ସାଧନା । ସବୁଥିରେ ସେ ଭାଗ ନେଉଥାଏ, ବକ୍ତୃତା ପ୍ରତିଯୋଗିତାରେ, ନିର୍ବାଚନରେ, ଏମିତିକି କଲେଜ ସ୍ପୋର୍ଟ୍ସରେ । କ୍ରମେ ସମସ୍ତଙ୍କ ଦୃଷ୍ଟି ତା' ଉପରେ ପଡୁଥାଏ । ଶ୍ରେଣୀରେ ସେ ପଢୁଥାଏ ସବୁଠାରୁ ଭଲ । ତଥାପି ମନ ବୁଝୁ ନଥାଏ, ଆହୁରି ଅନେକ କିଛି ପାଇବାକୁ ସେ ଚାହୁଁଥାଏ-ଏ ସାମାନ୍ୟ ପ୍ରଶଂସା, ସାମାନ୍ୟ ଖ୍ୟାତି ତାକୁ ଅଣ୍ଟୁ ନଥାଏ ।

ସେତିକିବେଳେ ସେ ପୁଣି ଆରମ୍ଭ କରିଥାଏ ଟିଉସନ୍ । ଆଃ-ସେ କି ଯନ୍ତ୍ରଣା ! ଆଜି ଭାବିଲେ ଅବିନାଶର ନିଜ ପ୍ରତି ଦୟା ଆସେ । ମଳିନ ଧୋତି ପିନ୍ଧି ଘଣ୍ଟା ଘଣ୍ଟା ଛୋଟ ପିଲାଙ୍କୁ ପାଠ ପଢ଼ାଇବା, କେତେଟା ଟଙ୍କା ବା ଦରମା ! ସେଥିରେ ପୁଣି ଅନାଦର ସହି ମଳିନ ମୁହଁରେ ହସ ଫୁଟାଇବାର ଅଭିନୟ । ପଢ଼ିବା ପାଇଁ ସମୟ ଅଭାବ ! ତଥାପି ସବୁ ଲାଗୁଥିଲା ସହଜ-ଯେତେବେଳେ ମନକୁ ଆସୁଥିଲା ଯେ ଏଇ ମଳିନତା ଦିନେ ଘୁଞ୍ଚିଯିବ । ସେ ହେବ ହୁଏତ ଜଣେ ବଡଲୋକ !

ଏଇ ସ୍ୱପ୍ନରାଜ୍ୟରୁ ସେଦିନ ଯେମିତି ନୀଳାମ୍ବର ତାକୁ ଟାଣି ଓଟାରି ବାହାର କରି

ପ୍ରସ୍ତାବ ଦେଇଥିଲେ- "ବାପ, ପାଠ ତ ଅନେକ ପଢ଼ିଲଣି । ଏଣିକି ଚାକିରୀ କର । ବୋହୂ ଠିକ୍ କରିଛି । ମୁଁ ବୁଢ଼ା ହେଲିଣି । କେତେବେଳେ ଭଲ ଅଛି, ମନ୍ଦ ଅଛି ।"

ଅବିନାଶ ବାପାଙ୍କ ଆଖିକୁ ଅନାଇଲା, ଯେମିତି ସେ ତାଙ୍କ ଆଖିରେ ନୂଆ କିଛି ଦେଖିଲା ଆଜି, ଆଗରୁ ଦେଖି ନଥିଲା । ତାକୁ ଲାଗିଲା ସେ ଦୁଇ ଆଖିର ସ୍ନେହ ମମତା ତଳେ ସ୍ୱାର୍ଥପରତା ଲୁଚି ନାହିଁ ତ ? ପୁଅର ଏତେ ଆଶା, ଏତେ କଳ୍ପନା ବାପା ବୁଝୁ ନାହାନ୍ତି । ସେ ଚାହୁଁଛନ୍ତି ନିରାପତ୍ତା, ତାଙ୍କର ଓ ତାଙ୍କ ବଂଶ ପରମ୍ପରାର । ସେ ଖାଲି ଚାହୁଁଛନ୍ତି ଗଡ଼ିଚାଲୁ ତାଙ୍କ ରକ୍ତର ଧାର ଆଗକୁ ଆଗକୁ-ପୁଅ, ନାତି, ଅଣନାତି, ଗଡ଼ିଚାଲୁ ମଣିଷର ସ୍ରୋତ । ଅନ୍ଧାରୁଆ ଥଣ୍ଡା ଏଇ ମାଟିଘରେ କେତେ ବଂଶଧର ଜନ୍ମହୋଇ ମଲେଣି, ମରିବେ । ଅବିନାଶ ବି ହେବ ସେଇ ସ୍ରୋତ ଭିତରେ ଗୋଟିଏ ଯୋଗସୂତ୍ର, ଆଉ କିଛି ନୁହେଁ ।

ନା-ଅବିନାଶ ମନା କରିଦେଇଥିଲା ସେଦିନ, ସେ ପାଠ ପଢ଼ିବ, ବାହା ହେବ ନାହିଁ । ବାପା ପ୍ରଥମେ ଦେଖିଲେ ପୁଅର ଦାମ୍ଭିକତା,-ତାଙ୍କରି ଅବି ଏଣିକି କଥା ମାନୁନାହିଁ । ଇଂରେଜୀ ପଢ଼ା ସେମିତି । ସେ ଚୁପ୍ ରହିଲେ ।

ଅବିନାଶ ମନରେ କିନ୍ତୁ ଲାଗି ରହିଲା ଝଡ଼, ସବୁଦିନେ ସେ ନିଜକୁ ବୁଝାଇଥିଲା, ବାପା ସ୍ୱାର୍ଥ ତ୍ୟାଗ ନ କଲେ ସେ ହୁଏତ ମଣିଷ ହୋଇ ପାରିବ ନାହିଁ । ନିଜର ଦାରିଦ୍ର୍ୟ ପାଇଁ ସେ ବାପାଙ୍କୁ ଦୋଷ ଦେଇଥିଲା । ତାକୁ ଲାଗିଥିଲା, ବାପା ଯେମିତି ଅତୀତ- ତାକୁ ପଛରୁ ଟାଣୁଛନ୍ତି । ସେ ଆଲୋକ ଖୋଜୁଥିଲା ଓ ସେଇ ଆଲୋକ ପାଇବାର ଚେଷ୍ଟାରେ ଅସ୍ତ ବ୍ୟସ୍ତ ହୋଇ ଧାଇଁଥିଲା । ବେଳେବେଳେ ସେ ଚମକି ଥିଲା, ଅଧରାତିରେ ଝାଳରେ ଓଦା ହୋଇ ବିଛଣାରେ ଉଠି ଶୁଣୁଥିଲା-ବୁଢ଼ାବାପା କାଶୁଛନ୍ତି, ସବୁବେଳେ ମନମାରି ରହୁଛନ୍ତି । ପୁଅ କୋଉଦିନ ଚାକିରୀ କରିବ, ଘରକୁ ବୋହୂ ଆଣିବ । ତାଙ୍କର ଧୈର୍ଯ୍ୟ ତୁଟି ଆସୁଛି । ଅବିନାଶକୁ ଲାଗିଥିଲା, ସେ ଯେଉଁ ରାସ୍ତାରେ ଚାଲିଛି, ସେ ତା ବାପାଙ୍କ ପିଠି ନୁହେଁ ତ ? ଦାନ୍ତ ଚିପି, ପିଠିରେ ଭଙ୍ଗାରୁଜା ଚିନ୍ତାର ବୋଝଧରି ବାମନ ପରି ସେ ଚାଲିଥିଲା, ନିଜ ଛାଇକୁ ଅନାଇ ଅନାଇ । ଏତେବଡ଼ ରାସ୍ତାରେ ଯେମିତି ଆଉ କେହି ନାହିଁ, ଖାଲି ସେ ଓ ତା'ର ଛାଇ । ସେ ଚାଲିଛି ପଛେ ପଛେ, ଛାଇଟି ଆଗେ ଆଗେ । ସେ କଥା କହିଲେ ଛାଇ କଥା କହୁଛି, ମୁଣ୍ଡ ହଲାଇଲେ ମୁଣ୍ଡ ହଲାଉଛି । ଆଉ କିଏ ତା'କଥା ଶୁଣୁ ବା ନ ଶୁଣୁ, ତା କଥାରେ ମୁଣ୍ଡ ହଲାଉ ବା ନ ହଲାଉ । ସେ ଛାଇକୁ ଛାଡ଼ି ନାହିଁ, ତା ଛାଇ ତାକୁ ଛାଡ଼ିନାହିଁ । ସେ ଓ ଛାଇ ଅଲଗା ନୁହନ୍ତି । ଦୁହେଁ ମିଶି ଏକ୍ ହୋଇଛନ୍ତି ।

ଅବିନାଶ ନିଜ ଉପରେ ନିଜେ ନିର୍ଭର କରି ଶିଖିଲା । ବାପାଙ୍କ କଥା ଏଡ଼ାଇ ଦେଲା ପରେ ତାକୁ ଲାଗିଥିଲା, ସେ ଏଡ଼ାଇ ଦେଇ ପାରିବ ସମାଜକୁ, ଦର୍କାର ପଡ଼ିଲେ ଭଗବାନଙ୍କୁ । ନିଜ ଉପରେ ତା'ର ବିଶ୍ୱାସ ବଢ଼ିଥିଲା-ଠିକ୍ ହେଉ, ଭୁଲ୍ ହେଉ, ନିଜ କଥାରେ ଦୃଢ଼ ରହିବାକୁ ସେ ଶିଖିଥିଲା ।

ଓ ଦିନେ ଲାଠି ବନ୍ଧୁକଧାରୀ ପୁଲିସ୍ ଫୌଜ ଆଗରେ ସେ ଚିତ୍କାର କରିଥିଲା-ଛାତ୍ର ଏକତା ଜିନ୍ଦାବାଦ୍ । ମାଟିଆ ପୋଷାକ ପିନ୍ଧା ମୃତ୍ୟୁ ଯେମିତି ତା ଆଗରେ ଢେଗା ଢେଗା ଆଖି ମେଲି ଅନାଇଥିଲା । ସେ ଡରି ନଥିଲା । କେତେବେଳେ ସେ ହୋଇ ସାରିଥିଲା ଛାତ୍ରନେତା । ବିରାଟ ଜନସଭାରେ ହାତ ହଲାଇ ବକ୍ତୃତା ଦେଉଥିଲା-ଆଗରେ ଅସଂଖ୍ୟ ହଲଚଲ ହେଉନଥିବା ମଣିଷମୁଣ୍ଡ । ସେ ଯେମିତି ଗୋଟିଏ ଚିତ୍କାର । ସବୁ ମୁଣ୍ଡର ଖପୁରୀରେ ଲୁହାକଣ୍ଟାପରି ଠକ୍ ଠକ୍ ପିଟି ହେଉଥିଲା । ଜନତାର କରତାଳି ଓ ଫୁଲମାଳ ତା'ଚାରିପଟେ ଭଉଁରୀ ପରି ଘୁରୁଥିଲେ । ସଭାରୁ ଘରକୁ ଫେରି, ବୁଢ଼ାବାପାଙ୍କ ଉପସ୍ଥିତିରେ ସେ କିନ୍ତୁ ନିଜକୁ ଏକାନ୍ତ ଅସହାୟ ଭାବିଥିଲା । କାହା ବିରୁଦ୍ଧରେ ସେ ଚିତ୍କାର କରୁଥିଲା ? ସରକାର ବିରୁଦ୍ଧରେ, ଦୁର୍ନୀତି ବିରୁଦ୍ଧରେ ନା ନିଜ ବିରୁଦ୍ଧରେ ?

ଅନ୍ୟମାନଙ୍କର ନେତା ହେବାର ଛଳନା ଭିତରେ ସେ ନିଜକୁ ଯେମିତି ମଲାଦେହ ପରି ଆଗକୁ ଘୋଷାରି ନେଉଥିଲା, ଅନ୍ୟ ବିରୁଦ୍ଧରେ ଚିତ୍କାର କରି ନିଜ ବିରୁଦ୍ଧରେ ହିଁ ବିଦ୍ରୋହ କରିଥିଲା ।

ମାତ୍ର ସେ ଚିତ୍କାର ଶେଷରେ ହଠାତ୍ ଦିନେ ନୀରବ ହୋଇଗଲା । ସରକାରୀ ଚାକିରୀ ପାଇ ଅବିନାଶ ରାତାରାତି ବିଶ୍ୱସ୍ତ କର୍ମଚାରୀ ହୋଇପଡ଼ିଲା ।

ତେଣୁ ଆଜି ଯେତେବେଳେ ବାପା ଅବିନାଶ ଆଗରେ ଗୋଟି ଗୋଟି ବାହାଘର ପ୍ରସ୍ତାବ ଗଂପି ଯାଉଥିଲେ, ଆଗପରି ସେ ପ୍ରତିକ୍ରିୟା ଦେଖାଉ ନଥିଲା । ତା ଭିତରର ନିଆଁ ପାଉଁଶରେ ଢାଙ୍କି ହୋଇପଡ଼ିଥିଲା । ସେ ଆଜି ମୁଣ୍ଡ ନୁଆଁଇ ଆଣୁଥିଲା ଫାଶ ଦଉଡ଼ି ଆଡ଼କୁ । କୁଆଡ଼େ କିଛି ନ ପାଇ ଏଇ ଫାଶ ଦଉଡ଼ିକୁ ଧରି ଖସିଯିବ, ଭାବୁଥିଲା ।

ଅତ୍ୟନ୍ତ ଆବେଗରେ ନୀଳାମ୍ବର କହୁଥିଲେ, "ଆମ ସାହିର ଜଗନ୍ନାଥ ଅନେକ ଦିନ ହେଲା ଲଗେଇଛି ତା'ଝିଅ ପାଇଁ । ଝିଅଟିର ମାଟ୍ରିକ୍ ପଢ଼ା । ଦଶହଜାର ଟଙ୍କା ଦେବ । ତା'ନହେଲେ ଗୋପାଳବାବୁ ଓକିଲ । ଝିଅଟି କଲେଜରେ ପଢୁଛି, କହିଲେ ଫଟୋ ପଠାଇବ । ଭଲ ଦିଆନିଆ କରିବେ- । ହଁ, ଆଉ ଗୋଟିଏ ପ୍ରସ୍ତାବ ଆସିଚି ।"

ଅବିନାଶ ଆଉ ଶୁଣିବାକୁ ଚାହିଁଲା ନାହିଁ । ଧପ୍ ଧପ୍ ବିଜୁଳି ଆଲୁଅ ତଳେ ଠିଆ ହୋଇଥିଲେ ବାପା । ବଙ୍କା ଦିଶୁଥିଲେ, ମୁହଁରେ ଆଲୁଅ ଓ ଛାଇ । ଅବିନାଶ ଧୀର ସ୍ୱରରେ କହିଲା, "ମୋର କିଛି କହିବାର ନାହିଁ । ତୁମେ ଯାହା ଠିକ୍ ମନେକରୁଚ, କର । ମୋର କେଉଁଥିରେ ଆପତ୍ତି ନାହିଁ ।"

ନୀଳାମ୍ବର ଚୁପ୍ ହେଲେ । କ'ଣ କହିବାକୁ ଦାନ୍ତ ନ ଥିବା ପାଟି ଅଳ୍ପ ମେଲା ହୋଇଥିଲା, ଗୋଟିଏ ହାତ ଅଳ୍ପ ଟେକି ହୋଇଥିଲା ଉପରକୁ- । ସେ କିଛି କହି ପାରିଲେ ନାହିଁ । ପୁଅ ଏତେ ସହଜରେ ରାଜି ହୋଇଯିବ, ଏ ଆଶା ତାଙ୍କର ନଥିଲା । ଦୁଇ ଢେଗା ଆଖିରୁ ତାଙ୍କର ବହୁ ଦିନର ସଞ୍ଚିତ ଦୁଃଖ ତରଳି ବହି ଆସୁଥିଲା ।

କେଉଁଥିରେ ତାର କିଛି କହିବାର ନଥିଲା । ସବୁଦିନ ପରି ସେ ବେଗେ ବେଗେ ପାଦ ପକାଇ ପାହାଡ଼ କଡ଼େ କଡ଼େ ଚାଲିଥିଲା, ଯେମିତି କେଉଁଠି କିଛି ଜରୁରୀ କାମ ଅଛି; କିନ୍ତୁ ତା'ର କେଉଁଠି କିଛି କାମ ନଥିଲା । ଦୁଇ ପାହାଡ଼ ସନ୍ଧିରେ ବୁଡ଼ି ଯାଉଥିବା ରକ୍ତାକ୍ତ ସୂର୍ଯ୍ୟକୁ ପିଠିକରି ଚାଲିଲାବେଳେ ତାକୁ ଲାଗୁଥିଲା, ସେ ନିଜେ ବି ଯେମିତି ସୂର୍ଯ୍ୟ କିରଣରେ ରକ୍ତାକ୍ତ ହୋଇପଡ଼ିଛି ଓ ଅସ୍ଥିର ଯନ୍ତ୍ରଣାର ଚିତ୍କାର ପରି କେଉଁଠି ବିଲୀନ ହୋଇଯିବାକୁ ଚାହୁଁଛି ।

କିନ୍ତୁ ବିଲୀନ ହେବା ପାଇଁ କେଉଁଠି ଟିକିଏ ଖୋଲା ସ୍ଥାନ ନାହିଁ । ସବୁ ରୁଦ୍ଧ । ଆକାଶ, ପବନ, ମଣିଷର ହୃଦୟ, ସବୁ ପଥରଖଣ୍ଡ ପରି ନିଦା !

ଗତ କାଲି ପାଇଁ ତା'ର ଶୋଚନା ନାହିଁ । ଆସନ୍ତାକାଲି ପାଇଁ ଉତ୍ସାହ ବି ନାହିଁ । ବାପା ଫେରି ଯାଇଛନ୍ତି । ହୁଏତ ସେ ତାଙ୍କ ନିଜ ଇଚ୍ଛାରେ ପୁଅ ପାଇଁ ବାହାଘର ଠିକ୍ କରିସାରିବେଣି । ବହୁ ଯୁକ୍ତିତର୍କ ଓ ଆଲୋଚନାର ପରିଣତି ନୀରବତା । ବର୍ତ୍ତମାନ ସେଇ ନୀରବତା ଘୋଟି ଆସୁଛି ସବୁ ଦିଗରୁ । ବାପାଙ୍କ ସଙ୍ଗେ ଯୁକ୍ତି କରି ବାହାଘର ଘୁଞ୍ଚାଇ ଦେବାକୁ ଇଚ୍ଛା ହେଉନାହିଁ । ଯେଉଁ ଧାରାରେ ସେ ଚାଲିଛି, ସେଥିରେ ପରିବର୍ତ୍ତନ ଆଣିବାକୁ ସେ ଭାବୁନାହିଁ । ସେ ଖାଲି ଚାଲିଛି । ତା ଆଖିରେ ଏଇ ନିର୍ଜନ ଆକାଶର ଅସୀମ ଶୂନ୍ୟତାରୁ ଟୋପାଏ ଛିଟ୍‌କି ପଡ଼ିଛି । ସେ ଶୂନ୍ୟଦୃଷ୍ଟିରେ ଆକାଶକୁ ଅନାଇଛି ଓ ଚାଲିଛି ।

ଆଜି ଅଫିସ୍‌ରେ କିଏ କହୁଥିଲା, ତାଙ୍କ ଚାକିରୀ ଉଠିଯିବ । କଟକରେ ବଡ଼ ଅଫିସରମାନେ କୁଆଡ଼େ ସିଦ୍ଧାନ୍ତ ନେଇ ସାରିଛନ୍ତି; ଅଥଚ ଗତ ସପ୍ତାହରେ ଶୁଣାଯାଉଥିଲା, ତା'ର ପ୍ରମୋସନ୍ ହେବ । ଏଇ ଉଡ଼ା ଖବର ଉପରେ କେତେଜଣ ବନ୍ଧୁ ତାଠାରୁ ଚା' ଆଦାୟ କରିବାକୁ ବି ଭୁଲି ନଥିଲେ ।

ଓ ସେଇ ବନ୍ଧୁମାନେ, ଯେଉଁମାନେ ସେଦିନ ତାର ପ୍ରମୋସନ୍ ହେବ ବୋଲି ତା'ଠାରୁ ଚା' ଖାଇଥିଲେ, ଆଜି ସେମାନଙ୍କ ଚାହାଣୀରେ ଅବିନାଶ ଦେଖିଲା ଅସହାୟ

ଭାବ-ଯେମିତି ସେ ଦେଖିଥିଲା ଥଣ୍ଡା ରାତିର ଜଙ୍ଗଲରେ ବୁଲୁଥିବା ବନ୍ଧୁକକୁ ବେକ ଦେଖାଇ ଠିଆ ହୋଇଥିବା ହରିଣ ଆଖିରେ । କେତେବେଳେ ବନ୍ଧୁକ ଫୁଟିବ ଓ ତା'ପରେ ସେ ଆଖି ଦୁଇଟି ହେବ ସ୍ଥିର ଓ ନୀରବ । ଆଜି ଅବିନାଶର ଚାକିରୀ ଚାଲିଯାଉଛି । କାଲି ହୁଏତ ଆଉ କାହାର ଯିବ । ସେଥିପାଇଁ ଅବିନାଶ ଉଦ୍ଦେଶ୍ୟରେ ଅଫିସ୍‌ର ବିଭିନ୍ନ ଟେବୁଲ୍‌ରେ ହାମୁଡ଼େଇଥିବା ସେମାନଙ୍କ ଚଷମା କାଚ ତଳୁ ପାନବୋଳ ଲଗା ପାଟିଭିତରୁ ସହାନୁଭୂତି ଠେଲି ହୋଇ ବାହାରିଥିଲା । ସେଇ ସହାନୁଭୂତି ସବୁ ମେଞ୍ଚା ମେଞ୍ଚା ପୋକପରି ଅବିନାଶର ଦେହରେ ଚରିଗଲେ । ଅବିନାଶ ସେସବୁ ଲୋଡି ନଥିଲା । ଅନ୍ୟ ଯେ କୌଣସି ଦିନପରି ବେଶ୍ ଚୁପ୍‌ଚାପ୍ କଫି ଦୋକାନରେ ବସି ସେ ବହୁସମୟ ଯାଏଁ ନିରୀକ୍ଷଣ କରିଥିଲା ଗୋଟି ଗୋଟି ଚଳନ୍ତା ବସ୍‌କୁ । ସେଇ ସର୍ବତ୍ ଦୋକାନ, ବହି ବିକାଳୀ ବୁଢ଼ା, ମଳିନ ମାଟିଆ ଜାମାର ଖୋଳ ଭିତରେ ସତାରା ମିଆଁ । ସେଇ ଗୀତ-ଆଉ ମାରନା ରଂଗ ପିଚକାରୀ । ପୁଣି ସେଇ ଅଖଣ୍ଡ ନୀରବତା । ଏଇ ଯେତେ ସବୁ କୋଳାହଳ, ନୀରବତାର ସମୁଦ୍ରକୂଳରେ କାହାର ତାଳି ମାରିବା ପରି । ପୁଣି ନୀରବତା !

ଅଫିସ୍‌ରୁ ଆସି ସେ ସିଗାରେଟ୍‌ରେ ନିଆଁ ଧରାଇ ଅନେକ ସମୟ ଯାଏଁ ଝରକାବାଟେ ପଦାକୁ ଅନାଇଥିଲା । ସମସ୍ତେ ଯେମିତି ଫେରି ଆସୁଥିଲେ । ସ୍କୁଲ୍ ପିଲା, ଅଫିସ୍‌ର କର୍ମଚାରୀ, ଗାଈଗୋଠ । ସେମାନେ ଯେମିତି କ'ଣ ଖୋଜିବାକୁ ଯାଇଥିଲେ । ପାଇଲେ ନାହିଁ । ତେଣୁ ଫେରୁଥିଲେ । ସମୟ ଯେମିତି ଫେରୁଥିଲା ପଛକୁ । ଓ ଅବିନାଶ ଆଶ୍ଚର୍ଯ୍ୟ ହେଲା, ଯେଉଁମାନେ ଫେରୁଥିଲେ, ସେମାନଙ୍କ ପାଦ ଶବ୍ଦ ଶୁଭୁ ନଥିଲା । ଏମିତିକି ସେ ଚଟାଣରେ ଚାଲିଲାବେଳେ ତା ନିଜ ପାଦ ଶବ୍ଦ ବି ତାକୁ ଶୁଭିଲା ନାହିଁ ।

ଏଇ ପାହାଡ଼ ଘେରା ମଣିଷ ବସ୍ତିକୁ ଆସିବା, ତା'ର ପାହାଡ଼, ଜଙ୍ଗଲ ଓ ମଣିଷ, ରକ୍ତ ଓ ଲୁହକୁ ଭଲ ପାଇବା ଥିଲା ତା'ର ନିର୍ବାକ୍ ଅଭିନୟ । ସେଇ ଅଖଣ୍ଡ ନୀରବତା ଭିତରେ ସେ ବୁଡ଼ିଯାଉଥିଲା । କୂଳର ଲୋକମାନଙ୍କୁ ସେ ଡାକୁଥିଲା ହାତଠାରି । କି ଆଶ୍ଚର୍ଯ୍ୟ, ଯେତେ ଚେଷ୍ଟା କଲେ ବି ସେ ଚିତ୍କାର କରିପାରୁନଥିଲା । ହୁଏତ ଚିତ୍କାର କରୁଥିଲା, କିନ୍ତୁ ସେଥିରେ ଶବ୍ଦ ନଥିଲା । ହୁଏତ ଶବ୍ଦ ଥିଲା, କିନ୍ତୁ ନୀରବତାର ସମୁଦ୍ରରେ ସେ ଶବ୍ଦ କେଉଁଠି ମିଳାଇ ଯାଉଥିଲା । କୂଳରେ ଠିଆ ହୋଇଥିବା ଲୋକମାନେ ତା'ର ଏ ଅବସ୍ଥା ଦେଖି ଚିତ୍କାର କରୁଥିଲେ; କିନ୍ତୁ ସେ ନିଃଶବ୍ଦ ଚିତ୍କାର ତାକୁ ନୀରବତାରେ ଶୀଘ୍ର ବୁଡ଼ିବାରେ ହିଁ ସାହାଯ୍ୟ କରୁଥିଲା !

ଦୂରରୁ କିଏ ଜଣେ ଆସୁଛି । ଧଳାଲୁଗାରେ ଆବୃତ ଶବଟିଏ ଯେମିତି ଚାଲି ଚାଲି ଆସୁଛି । ରକ୍ତରେ ଜୁଡୁବୁଡୁ ଆକାଶକୁ ପିଠିକରି ସେ ଅବିନାଶର ନିକଟ ହେଉଛି । ଓଃ- ବଇଁଶିବାବୁ । ମଶାଣି ପାଖରେ ତାଙ୍କର କାଠ ଅଡ଼ା । ଯେ କେହି ମଲେ, ସେ କାଠ ଯୋଗାନ୍ତି ।

"ଆପଣ ଏଠି, ଅବିନାଶବାବୁ ? ପୁଣି ଏକୁଟିଆ ?"

"ହଁ, ଏମିତି ।"

"ଫେରନ୍ତୁ । କୁଆଡ଼େ ଚାଲିଛନ୍ତି ?"

"ଜାଣେନା ।"

"ମାନେ ?"

ବଇଁଶିବାବୁ ଚାଲିଯାଉଛନ୍ତି ଧୀରେ ଧୀରେ, ଯେମିତି ଆସିଥିଲେ ସେମିତି, ମୁହଁଟା ତାଙ୍କର ଯେମିତି ଗୋଟାଏ ମୁଖା, ସେଥିରେ କୌଣସି ଭାବ ନାହିଁ ।

ଦୂର ପାହାଡ଼ି ଗାଆଁର ମିଞ୍ଜି ମିଞ୍ଜି ଆଲୁଅସବୁ ମେଞ୍ଚା ମେଞ୍ଚା ଆଲୁଅ ପରି ଛଳ ଛଳ ହେଉଛି । ଏଇ ଯେମିତି ବହିଯିବ! ଟିକିଏ ଆଗରୁ ଯାହା ସବୁ ଥିଲା ଗଛ, ରାସ୍ତା ବା ମଶାଣିରେ ପଡ଼ିଥିବା ଅଧାପୋଡ଼ା କାଠ, ସବୁ କ୍ରମେ ଅନ୍ଧାରରେ ପରିଣତ ହେଉଛି । ମାଡ଼ି ଆସୁଛି ଅନ୍ଧାର ସବୁ ଦିଗରୁ ଓ ସେ ନିର୍ଜ୍ଜନ ଅନ୍ଧାର ପଶିଯାଉଛି ଅବିନାଶ କାନରେ, ନାକରେ, ଫୁସ୍‌ଫୁସ୍‌ରେ ଓ ରକ୍ତସଙ୍ଗେ ବହିଯାଉଛି ଶିରାରେ ଶିରାରେ !

ଆଃ-ସେ ଧାଇଁବ କି ଆଉ ? ଘରେ ସେ ବେଡିଂ ବାନ୍ଧି ଥୋଇ ଦେଇ ଆସିଛି । ସେ ଯିବାକୁ ପ୍ରସ୍ତୁତ; କିନ୍ତୁ କୁଆଡ଼େ ଯିବ ଜାଣେନା । ବାପା ତାଙ୍କ ଇଛାରେ କେଉଁ ନିରୀହ ଅଜଣା ଝିଅଟି ସଙ୍ଗେ ତା ଜୀବନକୁ ଗୁନ୍ଥି ସାରିବେଣି । ହୁଏତ ତା ଚାକିରୀ ଚାଲିଯିବ ବୋଲି ନୋଟିସ୍ ଆସୁଥିବ ।

ବେଡିଂ ବନ୍ଧା ସରିଛି । ସେ ପ୍ରସ୍ତୁତ । ହଠାତ୍ କାହିଁକି ବୁଢ଼ୀମାଆର କଥା ମନକୁ ଆସୁଛି । ସାହୀରେ ଧୂଳି ବାଲିରେ ସାଙ୍ଗପିଲାଙ୍କ ସଙ୍ଗେ ଖେଳିସାରି ସଞ୍ଜକୁ ଘରକୁ ଫେରିଲାବେଳକୁ ସେ ଦେଖେ, ଦାଣ୍ଡଘର ଅନ୍ଧାର । ସେ ପିଣ୍ଡାରେ ଠିଆ ହୁଏ ଓ ବୁଢ଼ୀମା'କୁ ଡାକେ । ହାତରେ ଧୂଆଁଉଠା ଡିବି ଧରି ଥରି ଥରି ଆସେ ବୁଢ଼ୀମା, ତା'ହାତ ଧରି ତାକୁ ଘରକୁ ନେଇଯାଏ ଓ ସବୁଦିନେ ସେଇ ଏକା ଅଭିଯୋଗ-କୋଉଠି ଥିଲୁରେ ଏତେବେଳଯାଏଁ ।

ଅନ୍ଧାର ଭିତରୁ ଯେମିତି ବୁଢ଼ୀମା ଜୀଇଁଉଠି ତା'ହାତ ଧରିଛି ।

ତା'ପାଖ ଦେଇ ଗାଈଜଗା ପିଲାଟିଏ ଉପରକୁ ବେତ ଉଞ୍ଚାଇ କେଉଁ ହଜି ଯାଇଥିବା ଗାଈ ଉଦ୍ଦେଶ୍ୟରେ ଡାକି ଡାକି ଧାଇଁ ଯାଉଛି । ପଛରେ ରହିଯାଉଛି ତା'ର ସେଇ ଲହରିଆ ଡାକ-ଗାଈଜଗା ପିଲା ଦିଶୁ ନାହିଁ-ଖାଲି ଗୋଟାଏ ଲହରିଆ ସ୍ୱର ହିଁ ରହିଯାଇଛି-କେଡ଼େ କରୁଣ, କେଡ଼େ ମର୍ମନ୍ତୁଦ ସେଇ ଡାକ !!!

(ରଚନାକାଳ : ୧୯୬୬-୬୭)

---

'ନେତା' ପ୍ରଥମେ ପ୍ରକାଶିତ ହୋଇଥିଲା ୧୯୭୩ ମସିହାରେ, 'ମାନସ' ପୂଜା ସଂଖ୍ୟାରେ ।

'ନେତା'ର ସମସ୍ତ ଚରିତ୍ର ଓ ଘଟଣା କାଳ୍ପନିକ । କୌଣସି ବାସ୍ତବ ଘଟଣା କିମ୍ବା ଜୀବନ୍ତ ବା ମୃତ ଚରିତ୍ର ସହିତ ନେତାରେ ବର୍ଣ୍ଣିତ ଘଟଣା ବା ଚରିତ୍ରର ସାମଞ୍ଜସ୍ୟ ଥିଲେ ତାହାକୁ ଆକସ୍ମିକ ମନେ କରିବାକୁ ଅନୁରୋଧ ।

'ନେତା'ରେ ଯେଉଁ 'ମହାଜନତା ପାର୍ଟି' ସଂପର୍କରେ ଉଲ୍ଲେଖ କରାଯାଇଛି, ଭାରତୀୟ ରାଜନୀତିର ଜନତା ପାର୍ଟି ସହିତ ତାହାର କୌଣସି ସଂପର୍କ ନାହିଁ । 'ନେତା' ପ୍ରକାଶିତ ହୋଇଥିଲା ୧୯୭୩ରେ, କିନ୍ତୁ ଭାରତୀୟ ରାଜନୀତିରେ 'ଜନତା ପାର୍ଟି'ର ଆବିର୍ଭାବ ୧୯୭୭ରେ ।

– ଲେଖକ

---

ଚତୁର୍ଥ ସାଧାରଣ ନିର୍ବାଚନ ଯେତେ ଯେତେ ପାଖେଇ ଆସୁଥିଲା, ପୁରୀ ସହରର ନିଦୁଆ ବାତାବରଣ ସେତେ ସେତେ ଉଷ୍ମ ହୋଇ ଉଠୁଥିଲା । ସିଂହଦ୍ୱାରରେ ପ୍ରତି ଦିନେ ଦୁଇ ଦିନ ଛାଡ଼ି ସାଧାରଣ ସଭାମାନ ଲାଗି ରହିଥିଲା ଓ ଭାରତ ତଥା ଓଡ଼ିଶାର ବିଶିଷ୍ଟ ନେତାମାନଙ୍କର ଭାଷଣରେ ସମୁଦ୍ର ଗର୍ଜନ ବି କେତେକ ଦିନ ହେଲା ନିରବ ହୋଇ ଯାଇଥିଲା । ବଡ଼ଦାଣ୍ଡ ତ ଦୂରର କଥା, ଛୋଟ ଅଣଓସାରିଆ ଗଳିର ପାନ ଦୋକାନରେ ବି ଏବେ ଆଉ କିଛି ଆଲୋଚନା ଶୁଣା ଯାଉନଥିଲା । ସବୁଠି ଖାଲି ଗୋଟିଏ କଥା – ରାଜନୀତି ଓ ନିର୍ବାଚନ । ପୁରୁଖା ଲୋକମାନେ କହୁଥିଲେ, ଦେଶରେ ତିନି ତିନିଟା ନିର୍ବାଚନ ହୋଇ ବିଧାନ ସଭା ଓ ଲୋକସଭାକୁ ପ୍ରତିନିଧି ନିର୍ବାଚିତ ହୋଇଛନ୍ତି ସତ; ମାତ୍ର ଏଥର ଭଳି ଆଉ କେବେ ଲୋକେ ରାଜନୀତି ସଂପର୍କରେ ଏତେ ସଚେତନ ନଥିଲେ । ଯୁବକମାନେ କହୁଥିଲେ, ଯାହାହେଉ, ଏଇ ନିର୍ବାଚନ ହିଁ ପ୍ରକୃତ ନିର୍ବାଚନ । ଏଇଥର ମହାଜନତା ପାର୍ଟି ଗାଦିରୁ ହଟି ଖଟିଖିଆ ପାର୍ଟି ସରକାର ଗଢ଼ିଲେ ଦେଶରୁ ସବୁଦିନ ପାଇଁ ଦୁର୍ନୀତି ହଟିଯିବ ।

ଅନ୍ୟାନ୍ୟ ନିର୍ବାଚନ ବର୍ଷ ପରି ଏବର୍ଷ ମଧ

ସହରର କୋଠାଘରର କାନ୍ଥମାନଙ୍କରେ ବଡ଼ ବଡ଼ ପୋଷ୍ଟର ମରା ହୋଇଥିଲା, ପିଚୁ ରାସ୍ତାମାନଙ୍କ ଉପରେ ଚୂନରେ ପ୍ରାର୍ଥୀମାନଙ୍କୁ ଭୋଟ୍ ଦେବା ପାଇଁ ନିବେଦନ କରା ଯାଇଥିଲା । ତା'ଛଡ଼ା ଦଳେ ଲୋକ ସାହୀ ସାହୀ ବୁଲି ପ୍ରାର୍ଥୀମାନଙ୍କ ପାଇଁ ପ୍ରଚାର କରୁଥିଲେ ଓ ପ୍ରାର୍ଥୀମାନଙ୍କ ଗୁଣାବଳୀ ମୁଦ୍ରିତ ହୋଇଥିବା ନାଲି ନେଳି କାଗଜ ବାଣ୍ଟୁଥିଲେ । ସହରର ତିନୋଟି ସିନେମା ଘରେ ନିୟମିତ ଭାବରେ ଗତ ଦୁଇମାସ ହେଲା ପ୍ରାର୍ଥୀମାନଙ୍କୁ ଭୋଟ୍ ଦେବା ପାଇଁ ବିଜ୍ଞାପନ ପ୍ରଦର୍ଶିତ ହେଉଥିଲା । ମନ୍ଥରଗତି ଘୋଡ଼ାଗାଡ଼ିରେ ସାହୀ ସାହୀ ବୁଲି କେତେ ଜଣ ସ୍ଥାନୀୟ କଲେଜ ଛାତ୍ର ମାଇକ୍‌ରେ ପ୍ରାର୍ଥୀମାନଙ୍କ ପାଇଁ ପ୍ରଚାର କରୁଥିଲେ । ପୁଣି ମଝିରେ ମଝିରେ ଧୋତି-ପଞ୍ଜାବି ପରିହିତ ହସ ହସ ମୁଖମଣ୍ଡଳ ଅମାୟିକ ପ୍ରାର୍ଥୀମାନେ ଯୋଡ଼ ହସ୍ତରେ ସହରର ରାସ୍ତା ଉପରେ ଚାଲି ଚାଲି ସାଧାରଣ ଲୋକମାନଙ୍କୁ ଆଲିଙ୍ଗନ କରିବା ଓ 'ଭାଇ' ସମ୍ବୋଧନ କରିବା ଦେଖା ଯାଉଥିଲା ।

ଗତ ନିର୍ବାଚନ ପରି ଏଥର ମଧ୍ୟ ପ୍ରାର୍ଥୀମାନଙ୍କ ସଂଖ୍ୟା ଏକ ଡଜନରୁ କମ୍ ନଥିଲା । ମାତ୍ର ନିର୍ବାଚନ ମଣ୍ଡଳୀର ସମସ୍ତଙ୍କ ଦୃଷ୍ଟି ଥିଲା ଦୁଇଜଣଙ୍କ ଉପରେ- ଏକ ପକ୍ଷରେ ମହାଜନତା ପାର୍ଟିର ଭଗୀରଥ ମହାପାତ୍ର ଓ ଅନ୍ୟପକ୍ଷରେ ନିଖିଳ ଉତ୍କଳ ଖିଟିଖିଆ ଦଳର ଅର୍ଜୁନ ଗୋଛିକାର । ଉଭୟେ ଥିଲେ ପୁରୀ ସହରରେ ସୁପରିଚିତ । ଭଗୀରଥ ଗତ ନିର୍ବାଚନରେ ବିପୁଳ ଭୋଟ୍‌ରେ ବିଜୟୀ ହୋଇଥିଲେ । ଗତ ପାଞ୍ଚ ବର୍ଷ ପୁରୀର ଜନସାଧାରଣଙ୍କ ସେବା କରିବା ପରେ ତାଙ୍କର ବହୁଦିନର ଅବ୍ୟବହୃତ ପୁରୁଣା ରାଲେ ସାଇକେଲ ଖଣ୍ଡକରେ ଦ୍ୱାର ଦ୍ୱାର ବୁଲୁଥିଲେ । ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଯୁବନେତା ଅର୍ଜୁନ ଗୋଛିକାର ଏଇମାତ୍ର ଓକିଲାତି ଆରମ୍ଭ କରିଥିଲେ ବି ଛାତ୍ରନେତା ହିସାବରେ ସହରରେ ବେଶ୍ ସୁନାମ ଅର୍ଜନ କରିଥିଲେ । କେତେଜଣ କଲେଜ ଛାତ୍ର ଓ ବେକାର ଯୁବକଙ୍କୁ ସଂଗରେ ଧରି ଖାଲି ପାଦରେ ସେ ମଧ୍ୟ ଦେଶ ସେବା ପାଇଁ ତାଙ୍କୁ ଭୋଟ୍ ଦେବାକୁ ଲୋକମାନଙ୍କୁ ବୁଝାଉଥିଲେ ।

ପୃଥିବୀର ସବୁଠାରୁ ବୃହତ୍ ଗଣତାନ୍ତ୍ରିକ ରାଷ୍ଟ୍ର ଭାରତର ଚତୁର୍ଥ ସାଧାରଣ ନିର୍ବାଚନ ଆଉ ମାତ୍ର ଦଶଟି ଦିନ ବାକି ଥିଲା ।

ଆଉ ମାତ୍ର ଦଶଟି ଦିନ... ।

ମହାଜନତା ପାର୍ଟିର ଭଗୀରଥ ମହାପାତ୍ର ଆରାମ୍ ଚେୟାର୍ ଉପରେ ବସି ତାଙ୍କର ସଦ୍ୟ ନିର୍ମିତ ଦୁଇ ମହଲା କୋଠାର ବାଲକୋନୀ ଉପରୁ ଜନଶୂନ୍ୟ ରାସ୍ତା ଉପରକୁ ଚାହିଁ ରହିଥିଲେ । ତାଙ୍କୁ ଘେରି ବସିଥିଲେ ପାର୍ଟିର ଜିଲ୍ଲା ଶାଖା ସଭାପତି ଗିରିଧାରୀ ବାହିନୀପତି, ସହରର ବିଶିଷ୍ଟ ବ୍ୟବସାୟୀ ଜୟ ହନୁମାନ ଅଗ୍ରବାଲା ଓ ସହରର ଉଦୀୟମାନ ଯୁବନେତା ନବଘନ ଦାସ । ସେମାନଙ୍କ ସମ୍ମୁଖରେ ରଖାଯାଇଥିବା ଛୋଟ ଟି-ପୟ ଉପରେ ଗୋଟି ବୋତଲ ଓ କେତୋଟି ଗିଲାସ ଥୁଆ ହୋଇଥିଲା । ସେମାନେ ମଝିରେ ମଝିରେ ବୋତଲରୁ କିଛି କିଛି ପାନୀୟ ଗିଲାସରେ ଢାଳି ପାଟି ପାଖକୁ ନେଉଥିଲେ ଓ ଶୂନ୍ୟ ଗିଲାସମାନ ଟି-ପୟ ଉପରେ ରଖି ଦେଉଥିଲେ ।

ରାତି ଅନେକ ହୋଇଥିଲା । ସେକେଣ୍ଡ ସୋ ସିନେମା ଦେଖି ନିକଟବର୍ତ୍ତୀ ସିନେମା ହଲ୍‌ରୁ କେତେଜଣ ଲୋକ ଅଳ୍ପ ସମୟ ଆଗରୁ ସାମ୍‌ନା ରାସ୍ତାରେ ଯାଇଥିଲେ । ସେମାନେ ଗଲା ପରେ ରାସ୍ତାଟା କେମିତି ବେଶି ଖାଁ ଖାଁ ଲାଗୁଥିଲା । ଅଳ୍ପ ଦୂରରେ ଅଚିହ୍ନା ଜନ୍ତୁଟାଏ ପରି ଗର୍ଜୁଥିବା ସମୁଦ୍ରଟା ବେଳକୁବେଳ ଅଧିକ ଜୋର୍‌ରେ ଗର୍ଜନ କଲାଭଳି ଜଣାପଡୁଥିଲା । ଜହ୍ନଟା ସଫା ଆକାଶରେ କାଗଜ ଡଙ୍ଗା ଖଣ୍ଡେ ପରି ଅସହାୟ ଭାବରେ ଭାସୁଥିଲା ।

କଲେଜରେ ପଢ଼ିବାବେଳେ କବିତା ଲେଖି ସୁନାମ ଅର୍ଜନ କରିଥିବା ଭଗୀରଥ ଅନ୍ୟମନସ୍କ ହୋଇ ପଡ଼ିବା ଦେଖି ଜୟ ହନୁମାନ କହିଲେ, 'କ୍ୟା ଭାବୁଛନ୍ତି ଆଜ୍ଞା ! କଲ୍ ସେବେରେ ପ୍ରସେସନ୍ ବାହାରିବ, ଶୋଇବେ ଯା'ନ୍ତୁ ।'

ନବଘନଙ୍କୁ ଏହା ମଧ୍ୟରେ ଘୁମ ଲାଗି ଆସିଥିଲା । ସେ ଚମକି ଉଠିଲା ପରି କହିଲା, 'କିଛି ଡର ନାହିଁ, ଆଜ୍ଞା ! ଏଥର ଅମୋଘ ଅସ୍ତ୍ର ପ୍ରୟୋଗ କରିବା ବେଳ ଆସିଗଲା । ଅର୍ଜୁନଟା ଟୋକାଟାଏ । ମୋ ହାତରେ ପଚିଶିଟା ଗାଁ, ଗୋଟିଏ ଭୋଟ୍

ଏପଟ ସେପଟ ହେବାର ନାହିଁ । ଖାଲି ଯାହା କହିଲି, ସେତିକି ମୋତେ ଦେବାକୁ ହେବ ।'

ଭଗୀରଥ ମୁଣ୍ଡ ହଲାଇ ସମ୍ମତି ଜଣାଇଲେ ।

ଜୟ ହନୁମାନ କହିଲେ, 'ହାମେ ଯାଉଛୁ ଆଜ୍ଞା । କଲ୍ ସବେରେ ସାକ୍ଷାତ ହେବ ।

ଜୟ ହନୁମାନ, ନବଘନ ଓ ଗିରିଧାରୀ ନମସ୍କାର କରି ଚପ୍‌ଚାପ୍ ତଳକୁ ଓହ୍ଲାଇ ଗଲେ । ଭଗୀରଥ ସେମାନଙ୍କୁ ରାସ୍ତା ଉପରେ ଛାଡ଼ି ଆସି ପୁଣି ଛାତ ଉପରେ ଏକୁଟିଆ ବସିଲେ । ସିଗାରେଟ୍‌ରେ ନିଆଁ ଧରାଇ ସେ ଦୂରକୁ ଏକ ଲୟରେ ଚାହିଁ ରହିଲେ । ଜହ୍ନ ଆଲୁଅରେ ଝାଉଁବଣ ନୀଳ ରଂଗର ପର୍ଦ୍ଦାଟିଏ ପରି ଦେଖାଯାଉଛି । ରାତି ଯେତେ ଗଭୀର ହେଉଛି, ସମୁଦ୍ରର ଗର୍ଜନ ସେତିକି ସେତିକି ତୀବ୍ର ହେଉଛି । ବେଳେ ବେଳେ ଭ୍ରମ ହେଉଛି, ସମୁଦ୍ର ଯେମିତି କେତେବେଳେ ଆସି ତାଙ୍କ କୋଠାଘରକୁ ଛୁଇଁଲାଣି । ଏଇ ଯେମିତି ମୁହୂର୍ତ୍ତକେ ସବୁ କିଛି ବିପୁଳ ଜଳରାଶିରେ ବୁଡ଼ିଯିବ !

ଆଉ ମାତ୍ର ଦଶଟି ଦିନ !

ଗତଥର କିନ୍ତୁ ଅବସ୍ଥା ଥିଲା ଭିନ୍ନ । ଭଗୀରଥ ନୂଆ ନୂଆ ରାଜନୀତିରେ ପଶିଥିଲେ । ଏପରି ସେ ଓଡ଼ିଶାରେ ଏତେ ଜଣାଶୁଣା ନଥିଲେ ସତ; ମାତ୍ର ତାଙ୍କ ବିରୁଦ୍ଧରେ କହିବା ପାଇଁ ବିରୋଧୀ ପ୍ରାର୍ଥୀଙ୍କର କିଛି ନ ଥିଲା । ଗତ ପାଞ୍ଚବର୍ଷ ଭିତରେ ସେ ଜନସାଧାରଣଙ୍କ ପାଇଁ ଯେତେ ଯାହା କରିଛନ୍ତି, ସେ ଦୃଷ୍ଟିରୁ ତାଙ୍କର ଅପ୍ରତିଦ୍ୱନ୍ଦୀ ଭାବେ ନିର୍ବାଚିତ ହେବା କଥା । ମାତ୍ର ନିର୍ବାଚନ ଯେତେ ପାଖେଇ ଆସୁଛି, ତାଙ୍କ ଅବସ୍ଥା ସେତେ ଖରାପ ହେବାରେ ଲାଗିଛି । ଅବଶ୍ୟ ଗତ ଥର ପରି ଏଥର ତାଙ୍କର ଟଙ୍କାର ଅଭାବ ନାହିଁ । ଗତ ଥର ନିର୍ବାଚନ ପାଇଁ ବହୁ କଷ୍ଟରେ ପାର୍ଟି ଟିକେଟ୍ ଯୋଗାଡ଼ କଲାବେଳେ ସେ ଥିଲେ କପର୍ଦ୍ଦକଶୂନ୍ୟ । ଶେଷରେ ଏକମାତ୍ର ପୈତୃକ ସଂପତ୍ତି ନଅର ଗଳିର ଛୋଟ ଚାଳଘରଟିକୁ ବିକ୍ରି କରିଦେବାକୁ ହେଲା ମାତ୍ର ଅଢ଼େଇ ହଜାର ଟଙ୍କାରେ । ଛିଣ୍ଡା ପଂଜାବି, ମଇଳା ଧୋତି ପିନ୍ଧି ପୁରୁଣା ରାଲେ ସାଇକେଲ ଖଣ୍ଡକରେ ସାହୀ ସାହୀ ବୁଲି ପ୍ରଚାର କରି ଶେଷରେ ସେ ହେଲେ ବିଜୟୀ । ଏଥର ପରି ତାଙ୍କ ପାଇଁ ପ୍ରଚାର କରିବାକୁ ଏତେ ଲୋକ ନଥିଲେ କି ଏତେ ଜିପ୍‌ଗାଡ଼ି ନଥିଲା । ଥିଲା ଜନସାଧାରଣଙ୍କ ସାହାଯ୍ୟ ଓ ସମର୍ଥନ ।

ଏଥର କିନ୍ତୁ ପବନ ଅନ୍ୟ ଆଡ଼େ ବହୁଛି । ତାଙ୍କ ବିରୁଦ୍ଧରେ ବହୁ ଅଭିଯୋଗ ଶୁଣାଯାଉଛି । ଖଟିଖିଆ ପାର୍ଟିର ନେତା ଗଦାଧର ସେଦିନ ଜନତାର ବିପୁଳ କରତାଳି ମଧ୍ୟରେ ଯାହା ଘୋଷଣା କରିଗଲେ, ତାହା ମନେପଡ଼ି ଗଦାଧରଙ୍କ ପ୍ରତି ଘୃଣା ଓ କ୍ରୋଧରେ ଭଗୀରଥଙ୍କ ଦେହ ଶୀତେଇଗଲା । ଗଦାଧର ଜନତା ସମ୍ମୁଖରେ ଘୋଷଣା କରିଗଲେ, ଗଲା ପାଞ୍ଚବର୍ଷ ଭିତରେ ଭଗୀରଥ ଯାହା ଯାହା ସଂପତ୍ତି କରିଛନ୍ତି, ଗୋଟିଏ ତଦନ୍ତ କମିଶନ୍ ବସି ତାହାର ଅନୁସଂଧାନ କରନ୍ତୁ । ସମ୍ବାଦପତ୍ରମାନଙ୍କରେ ମଧ୍ୟ ଗଦାଧରଙ୍କ ଦାବି ବଡ଼ ବଡ଼ ଅକ୍ଷରରେ ବାହାରିଲା । ଏହା ଭିତରେ ସେ ଯାହା କରିଛନ୍ତି, ପାର୍ଟି ସଭାପତି

ବାହିନୀପତିଙ୍କ ତୁଳନାରେ ତାହା କେତେ ସାମାନ୍ୟ ! ଅଥଚ ବାହିନୀପତି ବୁଦ୍ଧିମାନର କାର୍ଯ୍ୟ କରି ପ୍ରତିଦ୍ୱନ୍ଦ୍ୱିତାରୁ ଓହରିଗଲେ । ତାଙ୍କର ସର୍ତ୍ତ, ପରେ ତାଙ୍କୁ ରାଜ୍ୟସଭାକୁ ପଠାଯିବ । ରାଜ୍ୟସଭା ନିର୍ବାଚନରେ ଗୋଳମାଳ ଆଦୌ ନାହିଁ । ସେ ନିଜେ ରାଜ୍ୟସଭାକୁ ଯିବାକୁ ହିଁ ଚାହୁଁଥିଲେ, ମାତ୍ର ବାହିନୀପତି ବାଟ ଛାଡ଼ିଲେ ନାହିଁ । ବାହିନୀପତିଙ୍କର ପୁରୀରେ ଦୁଇଟା କୋଠା, ଭୁବନେଶ୍ୱରରେ ତିନିଟା, ପୁଣି ଦୁଇଟା ଟାକ୍‌ସି, ବ୍ୟାଙ୍କ ବାଲାନ୍‌ସ କଥା ତ ସେ ତାଙ୍କୁ ଫିଟାଇ କହି ନାହାନ୍ତି । ବାହିନୀପତିଙ୍କ ତୁଳନାରେ ସେ ବା କ'ଣ କରଛନ୍ତି ? ଏଇ ତ ଗୋଟିଏ ବୋଲି କୋଠା-ଲକ୍ଷେ ବୋଲି ଟଙ୍କା ଖର୍ଚ୍ଚ ହୋଇଛି । ଖଣ୍ଡିଏ ବୋଲି କାର୍ । ବ୍ୟାଙ୍କ୍ ବାଲାନ୍‌ସ ଏଯାଏଁ ତିନିଲକ୍ଷରୁ ସାତ ହଜାର ଊଣା ପଡ଼ିଲା । ସେଥିରେ ପୁଣି ଗଦାଧରଙ୍କର ଏତେ ଅଭିଯୋଗ !

ଦୂର ଝାଉଁବଣ ଜହ୍ନ ଆଲୁଅରେ ଧୂଆଁଳିଆ ଦିଶୁଥିଲା । ଭଗୀରଥଙ୍କ ମନେ ହେଲା, ଯେମିତି ଷଡ଼ଯନ୍ତର ଗୋଟିଏ ଜାଲ ତାଙ୍କ ଆଡ଼କୁ ଧୀରେ ଧୀରେ ପ୍ରସରି ଆସୁଛି ! ହଠାତ୍ ତାଙ୍କର କେଜାଣି କାହିଁକି ଅଧ୍ୟାପକ ଗୋଲୋକବିହାରୀ ମିଶ୍ରଙ୍କ କଥା ମନେ ପଡିଲା । ଏଇମାତ୍ର ଦୁଇଦିନ ତଳେ ସେ ଆସିଥିଲେ । ତାଙ୍କ ଚେହେରା ଠିକ୍ ସେହିପରି ଅଛି- ଯେମିତି ଥିଲା ପନ୍ଦରବର୍ଷ ତଳେ, ସାମନ୍ତ ଚନ୍ଦ୍ରଶେଖର କଲେଜରେ ସେ ଛାତ୍ର ଥିବାବେଳେ । ଆଜିର ଏଇ ଶାନ୍ତ ସହଜ ଚେହେରାର ଅଧ୍ୟାପକ ସେଦିନ ଥିଲେ ପ୍ରସିଦ୍ଧ ଛାତ୍ରନେତା । ତାଙ୍କର ଅଗ୍ନିବର୍ଷୀ ଭାଷଣ ଶୁଣି ଭଗୀରଥଙ୍କ ହୃଦୟରେ ସେଦିନ ନେତା ହେବାର ଅଭିଳାଷ ଜାଗିଥିଲା । ଇଚ୍ଛା ହୋଇଥିଲା, ସେ ବି ଗୋଲୋକବିହାରୀଙ୍କ ପରି ଜନ-ସମୁଦ୍ର ସମ୍ମୁଖରେ ଅନର୍ଗଳ ବକ୍ତୃତା ଦିଅନ୍ତେ, ଜନତାର ଶୋଭାଯାତ୍ରାର ଆଗେ ଆଗେ ଚାଲିଥାନ୍ତେ-ପୋଲିସର ଲାଠିକୁ ଡରନ୍ତେ ନାହିଁ, ଡରନ୍ତେ ନାହିଁ ଜେଲ୍ ପାଚେରୀକୁ । ସତ୍ୟ ନ୍ୟାୟ ପାଇଁ, ଏ ଦେଶର ଅସଂଖ୍ୟ ଦରିଦ୍ର ଜନ-ସାଧାରଣଙ୍କ ପାଇଁ, ସେ ଆତ୍ମବଳି ଦେବାକୁ ଆଗେଇ ଆସନ୍ତେ ! ମନେ ପଡ଼ିଥିଲା ଦେଶ ବିଦେଶର ବହୁ ମହାପୁରୁଷଙ୍କ କଥା । ଉତ୍ସାହରେ ରୋମ ଟାଙ୍କୁରି ଉଠିଥିଲା ।

କିନ୍ତୁ ସେ ସବୁ ଥିଲା କେବଳ କଳ୍ପନା । ଛାତ୍ରଜୀବନର ଦାରିଦ୍ର୍ୟ ଅଭାବ ଭିତରେ ଭଗୀରଥଙ୍କ ନେତା ହେବାର ଉଚ୍ଚ ଆକାଂକ୍ଷା ମ୍ରିୟମାଣ ହୋଇ ପଡ଼ିଥିଲା । ମୋହରିର କାମ କରି ବାପା ଚକ୍ରପାଣି ମହାପାତ୍ର ଯାହା ସାମାନ୍ୟ ଅର୍ଜନ କରୁଥିଲେ, ସେତିକିରେ କୁଟୁମ୍ବ ପ୍ରତିପାଳନ ଥିଲା ଏକ ବିରାଟ ସମସ୍ୟା । ଭଗୀରଥଙ୍କୁ ତେଣୁ ଛାତ୍ରଜୀବନରୁ ନିଜକୁ ନିଜେ ଗଢ଼ିବାକୁ ପଡ଼ିଥିଲା । ଦିନରେ ଦୁଇ ଓଳି ଟିଉସନ୍ କରି ବହୁ କଷ୍ଟରେ ବି.ଏ. ପାଶ କରି ଭଗୀରଥ କଟକ ଗଲେ ଓକିଲାତି କରିବାକୁ । ଓକିଲାତି ପରେ ପୁରୀରେ ପ୍ରାକ୍ଟିସ୍ ଆରମ୍ଭ କରୁ କରୁ ଦିନେ ହଠାତ୍ କି ଯୋଗରେ କେଜାଣି ସେ ନିଜକୁ ଆବିଷ୍କାର କଲେ ରାଜନୀତିର ମହା ଜଙ୍ଗଲ ଭିତରେ ।

ସେଇ ସ୍ମରଣୀୟ ଦିନଟି ଭଗୀରଥଙ୍କର ସବୁବେଳେ ମନେ ପଡ଼େ । ଆଜି ଗଭୀର ରାତ୍ରିରେ ବାଲକୋନି ଉପରେ ଏକା ବସି ସିଗାରେଟ୍ ଟାଣୁ ଟାଣୁ ଭଗୀରଥ ସେଇ ଦିନଟି କଥା ପୁଣି ମନେ ପକାଇଲେ । ଏହା ଭିତରେ ସ୍ତ୍ରୀ କାଂଚନ ଦେବୀ ଦୁଇଥର ଅନୁରୋଧ କରି ସାରିଲେଣି ଶୋଇବାକୁ ଯିବାକୁ । ଗମ୍ଭୀର ଭଗୀରଥ ତାଙ୍କ ଚିନ୍ତାରେ ବାଧା ନ ଦେବାକୁ ସ୍ତ୍ରୀଙ୍କୁ ହାତଠାରି ନିର୍ଦ୍ଦେଶ ଦେଇଛନ୍ତି । ରାଜନୀତିଜ୍ଞ ସ୍ୱାମୀଙ୍କ ବ୍ୟବହାର ସହିତ ବାହାହେବାର ଦଶବର୍ଷ ଭିତରେ କାଂଚନ ଦେବୀ ବେଶ୍ ଅଭ୍ୟସ୍ତ ହୋଇ ପଡ଼ିଥିଲେ । ସେ ନୀରବରେ ଫେରିଯାଇଛନ୍ତି ବିଛଣାକୁ । ଭଗୀରଥ ମୁହଁ ଫେରାଇ ଚାହିଁଛନ୍ତି, ସ୍ତ୍ରୀ ହୁଏତ ଶୋଇ ନଥିବେ, ତାଙ୍କୁ ଅପେକ୍ଷା କରିଥିବେ । ଶୋଇବା ଘରର ଆଲୁଅ ଯେପରି କ୍ରମେ ବେଶି ବେଶି ଉଜ୍ଜ୍ୱଳ ଦିଶୁଛି ।

ସେ ଦିନଟି ଆସି ନଥିଲେ ହୁଏତ ଆଜି ଭଗୀରଥଙ୍କ ଜୀବନ ବି ଗୋଲୋକବିହାରୀଙ୍କ ଜୀବନ ପରି ହୋଇଥାନ୍ତା ସହଜ ଓ ନିସ୍ତରଙ୍ଗ । ଭଗୀରଥ ବେଳେବେଳେ ଗୋଲୋକବିହାରୀଙ୍କୁ ହିଂସା କରନ୍ତି ତାଙ୍କ ଶାନ୍ତିମୟ ଜୀବନ ପାଇଁ । ହୁଏତ ଗୋଲୋକବିହାରୀ ବୁଦ୍ଧିମାନ । ହୁଏତ ଛାତ୍ର ଜୀବନରେ ରାଜନୀତି ସହିତ ଯେତିକି ସଂପର୍କ, ସେତିକିରୁ ଗୋଲୋକବିହାରୀ ବୁଝି ଯାଇଛନ୍ତି, ବୃହତ୍ତର ଜୀବନକୁ ରାଜନୀତି ବିଭ୍ରାନ୍ତ କରି ଦେବ ହିଁ ଦେବ । ତେଣୁ ସେ ହଟି ଯାଇଛନ୍ତି । କିନ୍ତୁ ଭଗୀରଥ ?

ହୁଏତ ଅନ୍ୟ ଉପାୟ ନଥିଲା । ସହରର ହଜାର ହଜାର ସାଧାରଣ ଲୋକଙ୍କ ପରି ସେଦିନ ନୂଆ ଓକିଲାତି ଆରମ୍ଭ କରିଥିବା ଭଗୀରଥ ମହାପାତ୍ର ଯାଇଥିଲେ ପୁରୀ ଷ୍ଟେସନ୍ ଆଡ଼େ, ଜଣେ ଦେଖଣାହାରି ଭାବେ । ସେତେବେଳେ ସମଗ୍ର ଓଡ଼ିଶାରେ ସୀମା ଆନ୍ଦୋଳନ ନାମରେ ଯେଉଁ ବିରାଟ ଗଣ ବିପ୍ଳବ ଦେଖାଦେଇଥିଲା, ସେଥିରେ ଏଇ ପୁରୀ ସହରହିଁ ଥିଲା ଅଗ୍ରଣୀ । ସ୍କୁଲ୍ ଛାତ୍ରଠାରୁ ଅତି ସାଧାରଣ ନାଗରିକ ପର୍ଯ୍ୟନ୍ତ ସମସ୍ତେ ଯେପରି ସେଦିନ ପାଗଳ ହୋଇ ପଡ଼ିଥିଲେ । ତତ୍କାଳୀନ ମୁଖ୍ୟମନ୍ତ୍ରୀ ବି ସେତେବେଳେ ଇସ୍ତଫାପତ୍ର ନେଇ ଦିଲ୍ଲୀ ଧାଇଁ ଯାଇଥିଲେ । ଏଇ ସମ୍ବାଦ ହୁଏତ ଜନସାଧାରଣଙ୍କୁ ଆହୁରି ପାଗଳ କରିଦେଇଥିଲା । ସାରାଦିନ ସହରର ମୁଖ୍ୟରାସ୍ତାମାନଙ୍କରେ ଚାଲିଥିଲା ଜନତାର ପଟୁଆର । ସ୍ଲୋଗାନ୍‌ରେ ଆକାଶ ପବନ କଂପି ଉଠୁଥିଲା । ସବୁଠାରେ ଯୁଦ୍ଧ ଡାକରା – ଆମର ଦାବୀ ପୂରଣ ହେଉ । ଓଡ଼ିଶା ବାହାରେ ରହି ଯାଇଥିବା ଓଡ଼ିଆଭାଷୀ ଅଞ୍ଚଳ ସବୁ ଓଡ଼ିଶାରେ ମିଶୁ । ଓଡ଼ିଆମାନଙ୍କ ଜିଭ କଟା ନହେଉ– 'ମେଦିନୀପୁରରେ ଯାହା ହୋଇଛି, ଷଢ଼େଇକଳା ଖରସୁଆଁରେ ତାହା ନହେଉ...' ଏହା ହିଁ ଥିଲା ସେଦିନର ଦାବୀ । ସେଇ ଦାବୀ ପୂରଣ କରି ନଥିଲେ ଜବାହରଲାଲ ନେହୁରୁଙ୍କ ପ୍ରତିଷ୍ଠିତ ସୀମା କମିଶନ୍ । ସେଥିପାଇଁ ଓଡ଼ିଶାରେ ଲାଗିଥିଲା ନିଆଁ ଓ ସେ ନିଆଁ ସବୁଠାରୁ ବେଶି ଜୋର୍‌ରେ ଜଳୁଥିଲା ପୁରୀରେ । ସତେ ଯେମିତି ସେ ନିଆଁର ଶିଖା ବଡ଼ଦେଉଳକୁ ଟପିଯିବ ।

ସେଦିନ ଭଗୀରଥ ମହାପାତ୍ର ପୁରୀ ରେଳଷ୍ଟେସନ୍ ଆଡ଼େ ଯାଇଥିଲେ ସାଧାରଣ ସଭାରେ ଯୋଗଦେବାକୁ । ଶହ ଶହ ଲୋକ ରେଳ ଲାଇନ୍ ଉପରେ ଧାରଣା ଦେବାର ଦୁଇଦିନ ହୋଇଯାଇଥାଏ । ନଖାଇ ନପିଇ ପାଗଳ ଜନତା ଖରା କାକରରେ ପଡ଼ି ରେଳଗାଡ଼ି ଅଟକାଇ ଥାନ୍ତି-ହୁଏତ ସେମାନଙ୍କ ଦାବୀ ଦିଲ୍ଲୀରେ ପହଂଚିବ । ରେଳ ଲାଇନ୍ କଡରେ ସାଧାରଣ ସଭା-ଚାରିଆଡ଼େ ଖାଲି ମଣିଷ ଓ ମଣିଷ । ସତେ ଯେମିତି ସାରା ପୁରୀ ସହର ଉଠି ଆସିଛି ଏଇ ରେଳ ଲାଇନ୍ କଡ଼କୁ । ଶୁଣା ଯାଉଥାଏ-ଯେ କୌଣସି ମୁହୂର୍ତ୍ତରେ ଗୁଳି ଚାଲିବ ! ସଂଜ ନଇଁ ଆସୁଥାଏ । ଝାଉଁବଣ ଉପରେ ରକ୍ତ ଜୁଡୁ ବୁଡୁ ଲାଲ୍ ଜହ୍ନଟାଏ ଉଙ୍କି ମାରିଲା । ଏଆଡେ ଚାଲିଥାଏ ଜନତାର ସଭା - ନେତାମାନଙ୍କ ଓଜସ୍ୱିନୀ ଭାଷଣ ଓ ସଭାରେ ଗୁଳି ଚାଲିବାର ଭୟରେ କେମିତି ଗୋଟାଏ ଭୟଙ୍କର ପରିବେଶ ସୃଷ୍ଟି ହୋଇଥାଏ ! କେହି ଜଣେ ନେତା ତଣ୍ଟି ଫଟାଇ ଚିତ୍କାର କରୁଥାନ୍ତି – 'ଭାଇମାନେ, ଆଜି ଏ ରେଳଗାଡ଼ିକୁ ଅଟକାଇ ରଖ । ଯଦି ଏ ରେଳଗାଡ଼ି ଚାଲେ, ତେବେ ତାହା ଓଡ଼ିଆ ଜାତିର ଛାତି ଉପରେ ମାଡ଼ିଯାଉ ।'ପାଗଳ ଜନତା କରତାଳି ଦେଉଥାନ୍ତି-ଉତ୍ତେଜନାରେ ଥରି ଥରି ଚିତ୍କାର କରୁଥାନ୍ତି । ନିଜ ଅଜାଣତରେ ଭଗୀରଥ ବି ଥରିବାକୁ ଲାଗିଥିଲେ । ହଠାତ୍ କେତେବେଳେ ସେ ଡେଇଁପଡିଲେ ସଭାମଞ୍ଚକୁ - ସାମ୍ନାରେ ବସିଥିବା ଲୋକମାନଙ୍କ ମୁହଁସବୁ ତାଙ୍କୁ ଦିଶୁନଥିଲା-ସବୁ ଦିଶୁଥିଲା ଝାପ୍‌ସା ଝାପ୍‌ସା । ଆନ୍ଦୋଳନର ମୂଳ କାରଣ ସେ ଭୁଲି ଯାଇଥିଲେ । ତାଙ୍କୁ ଲାଗୁଥିଲା, କେହି ଯେପରି ଚକ୍ରାନ୍ତ କରି ଆଜି ପୃଥିବୀ ପୃଷ୍ଠରୁ ଓଡ଼ିଆ ଜାତିକୁ ଧ୍ୱଂସ କରିଦେବାକୁ ବସିଛି ଓ ଜାତିକୁ ରକ୍ଷା କରିବାର ଗୁରୁଦାୟିତ୍ୱ ତାଙ୍କରି ଉପରେ ହିଁ ପଡ଼ିଛି ! କେତେବେଳେ ସେ ଆରମ୍ଭ କରିଦେଇଥିଲେ ବକ୍ତୃତା-ସେ କ'ଣ କହୁଥିଲେ, ହୁଏତ ନିଜେ ଜାଣୁ ନଥିଲେ-କିନ୍ତୁ ଜନସମୁଦ୍ରରୁ କରତାଳି ପରେ କରତାଳି ଅଜାଡ଼ି ହୋଇ ପଡ଼ିଥିଲା । ସେ ନିଜକୁ ବି ଭୁଲି ଯାଇଥିଲେ । ଯେପରି ଏ ଯାଏଁ ତାଙ୍କ ଭିତରେ ରୁନ୍ଧି ହୋଇ ରହିଥିବା ସବୁ ଅସନ୍ତୋଷ ଏକ ପ୍ରଚଣ୍ଡ ବିସ୍ଫୋରଣରେ ହଠାତ୍ ବାହାରି ଆସିଛି !

ଏହାର ପରିଣତି ଥିଲା ସହଜ । ଭଗୀରଥ ଯେତେବେଳେ ପ୍ରକୃତିସ୍ଥ ହେଲେ, ସେତେବେଳକୁ ଚାରିଜଣ ପୁଲିସ୍ ତାଙ୍କୁ ଜେଲ୍ ଭ୍ୟାନ୍‌ରେ ଭର୍ତ୍ତିକରି ଅନ୍ଧାରୁଆ ଜେଲ୍ କୋଠରୀକୁ ନେଇ ଯାଇଥିଲେ । ପରେ ସେ ଶୁଣିଲେ, ତାଙ୍କ ବକ୍ତୃତା ପରେ ସଭାରେ ଲାଠି ମାଡ଼ ହୋଇଥିଲା ଓ ଗୁଳି ଚାଲିଥିଲା । ଦୁଇଜଣ ସମବୟସ୍କ ଛାତ୍ର ସେହି ଗୁଳି ଚାଳନାର ଶିକାର ହୋଇଥିଲେ । ପୁରୀ ସହରରେ ଘୋଟି ଯାଇଥିଲା ଅରାଜକତା-ଆଇନର ଶାସନ ଭୁଷୁଡ଼ି ପଡ଼ିଥିଲା । ସହରର ରାସ୍ତାଘାଟରେ ବନ୍ଧୁକଧାରୀ ଗୁର୍ଖାବାହିନୀ ଦିନ ଦିନ ଧରି ଜୀବନ୍ତ ମୃତ୍ୟୁ ପରି ପଇଁତରା ମାରିଥିଲେ ।

ଭଗୀରଥ ମହାପାତ୍ର କିନ୍ତୁ ବହୁ ଦିନ ଥିଲେ ପୁରୀ ଜେଲ୍‌ରେ । ଦୀର୍ଘ ତିନିମାସ ପରେ ସେ ଯେତେବେଳେ ଜେଲ୍‌ରୁ ମୁକ୍ତ ହେଲେ, ସେତେବେଳେ ତାଙ୍କୁ ସ୍ୱାଗତ କରିବା

ପାଇଁ ଜମା ହୋଇଥିବା ବିରାଟ ଜନତା ଦୀର୍ଘ ପଟୁଆରରେ ସିଂହଦ୍ୱାରକୁ ଘେନି ଯାଇ ବିପୁଳ ସମ୍ବର୍ଦ୍ଧନା କରିଥିଲେ । ସହରର ଶାନ୍ତ ବାତାବରଣ ଏହା ଭିତରେ ଫେରି ଆସିଥିଲା । ପରଦିନ ସମ୍ବାଦପତ୍ରର ପ୍ରଥମ ପୃଷ୍ଠାରେ ବାହାରିଲା - ପୁରୀର ବିଶିଷ୍ଟ ନେତା ଭଗୀରଥ ମହାପାତ୍ର ଜେଲ୍‌ରୁ ମୁକ୍ତ ହେଲେ । ସମ୍ବାଦ ସହିତ ଭଗୀରଥଙ୍କ ଆଲୋକଚିତ୍ର ।

ଆଜିର ନିର୍ବାଚନ ଓ ବିନିଦ୍ର ରାତ୍ରି ଯାପନ ସେଇ ଦିନର ସ୍ୱାଭାବିକ ପରିଣତି- ଏଥିରେ ଭଗୀରଥଙ୍କର ସନ୍ଦେହ ନଥିଲା ।

ସବୁଦିନ ପରି ମୁରାରୀ ଦାସ ସକାଳୁ ସକାଳୁ ତାଙ୍କର ଅତି ପରିଚିତ ନୂତନ ମିଷ୍ଟାନ୍ନ ଭଣ୍ଡାରରେ ବସିଥିଲେ । ସୂର୍ଯ୍ୟ ଉଇଁବାକୁ ତଥାପି ଡେରି ଥିଲା । ଜଳବାୟୁ ପରିବର୍ତ୍ତନରେ ଆସିଥିବା ବଙ୍ଗୀୟ ଭଦ୍ରବ୍ୟକ୍ତି ଭଦ୍ରମହିଳାମାନେ ହୋଟେଲ ଛାଡ଼ି ଦଳ ଦଳ ହୋଇ ସମୁଦ୍ର କୂଳକୁ ବୁଲି ବାହାରି ଥିଲେ । ନୂତନ ମିଷ୍ଟାନ୍ନ ଭଣ୍ଡାର ଖୋଲିବାର ଠିକ୍ ପରେ ପରେ ପ୍ରାୟ ପ୍ରତିଦିନ ମୁରାରୀ ଦାସ ହିଁ ହୋଇଥାନ୍ତି ପ୍ରଥମ ଗରାଖ । ନିମ୍ନ ପ୍ରାଥମିକ ସ୍କୁଲ୍ ଶିକ୍ଷକ ମୁରାରୀ ଦାସ ଆଜକୁ ବାରବର୍ଷ ହେଲା ମୁନିସିପାଲିଟି ଚାକିରିରୁ ଅବସର ନେଲା ପରେ ସକାଳସଂଜରେ ଅଧିକାଂଶ ସମୟ ଏଇ ନୂତନ ମିଷ୍ଟାନ୍ନ ଭଣ୍ଡାରରେ କଟାଇଥାନ୍ତି । ନୂତନ ମିଷ୍ଟାନ୍ନ ଭଣ୍ଡାରର ମାଲିକ ହରିଦତ୍ତ ସହିତ ମୁରାରୀ ଦାସଙ୍କ ପରିଚୟ ହୋଇଥିଲା ତିରିଶି ବର୍ଷ ତଳେ । ସେଇଦିନୁ ଦୁହିଁଙ୍କ ଭିତରେ ବନ୍ଧୁତା । ଏହା ଭିତରେ ସମୟ ବଦଳିଛି । ପ୍ରଥମେ ଯେତେବେଳେ ଛୋଟ ଚାଳଘରଟିରେ ନବ ବିବାହିତ ହରିଦତ୍ତ ଚା' ଦୋକାନ ଖୋଲିଥିଲା, ସେତେବେଳେ ସ୍ଥାନଟି ଥିଲା ଏକାନ୍ତ ନିଛାଟିଆ । ମଝିରେ ମଝିରେ କେତୋଟି ସମ୍ଭ୍ରାନ୍ତ ବଙ୍ଗୀୟ ପରିବାରଙ୍କ କୋଠାଘର ହିଁ କେବଳ ମୁଣ୍ଡ ଟେକିଥିଲା । ସେତେବେଳେ ଏ ଅଂଚଳଟିର କ'ଣ ନାଆଁ ଥିଲା, ମୁରାରୀ ଦାସଙ୍କ ମନେ ନାହିଁ । ପରେ କିନ୍ତୁ ଆନ୍ଧ୍ରରୁ ଆସି ବହୁ ମୋଚି ଏଠାରେ ଧାଡ଼ିଏ କୁଡ଼ିଆ ତୋଳି ରହିବାଦିନୁ ଆଜି ଏ ଅଂଚଳର ନାଆଁ ହୋଇଛି ମୋଚି ସାହି । ଆଜି ଅବଶ୍ୟ ଦୋକାନ ବଜାରରେ ସ୍ଥାନଟି ହୋଇ ଉଠିଛି କୋଳାହଳମୟ ।

ଆଜି ସକାଳୁ ନୂତନ ମିଷ୍ଟାନ୍ନ ଭଣ୍ଡାରରେ ମୁରାରୀ ଦାସ ଗୋଟିଏ ନୂଆ କଥା ଲକ୍ଷ୍ୟ କଲେ । ଅନ୍ୟ ଦିନମାନଙ୍କରେ ଚା' ଦୋକାନ ଏତେ ବେଳକୁ ପ୍ରାୟ ଖାଲି ପଡ଼ିଥାଏ । ହରିଦତ୍ତ ତାର ପୃଥୁଳ ଶରୀରଟି ଦୋହଲାଇ ଚାକରମାନଙ୍କ ଉଦ୍ଦେଶ୍ୟରେ ଅସଭ୍ୟ ଭାଷାରେ ଗାଳି ବର୍ଷଣ କରୁଥାଏ ଓ ଆଂଚ ହେଉଥିବା କୋଇଲା ଚୁଲିର ଧୂଆଁ ଦୋକାନଟିକୁ ରୁନ୍ଧି ଦେଉଥାଏ । ଆଜି କିନ୍ତୁ ଦୋକାନର ସମସ୍ତ ବେଂଚ୍ ଗରାଖମାନଙ୍କ ଦ୍ୱାରା ଅଧିକୃତ ହୋଇ

ସାରିଥିଲା ଓ ଦୋକାନର ଚାକରମାନେ ଏପରିକି ମାଲିକ ନିଜେ ଗରାଖମାନଙ୍କୁ ଜଳଖିଆ ଓ ଚା' ଯୋଗାଇବାରେ ଲାଗି ପଡିଥିଲେ । ମୁରାରୀ ଦାସ ତାଙ୍କର ଅତି ପରିଚିତ ଚା' ଦୋକାନରେ ଆଜି ନିଜକୁ ଅପରିଚିତ ମନେ କଲେ ଓ ତାଙ୍କର ସବୁଦିନର ଆସନ ଛାଡ଼ି ଗୋଟାଏ କୋଣରେ ଚୁପ୍‌ଚାପ୍ ବସିଲେ ।

ଚାକରଟୋକା ନଟବର ଅନ୍ୟଦିନ ହୋଇଥିଲେ ମୁରାରୀ ଦାସଙ୍କୁ ସଲାମ୍ ପକାଇ ଦୁଇଟା ନିମିକି ଓ କପେ ବାମ୍ଫଉଠା ଚା' ଥୋଇ ଦେଇଥାନ୍ତା । ଆଜି କିନ୍ତୁ ସେପରି ହେଲା ନାହିଁ । ମୁରାରୀ ଦାସ ଆଶ୍ଚର୍ଯ୍ୟ ହୋଇ ଅନାଇଲେ । ଦେଖିଲେ, ଆଜି ଯେଉଁ ଗରାଖମାନେ ଏମିତି ସକାଳୁ ସକାଳୁ ଜୁଟିଛନ୍ତି, ସମସ୍ତେ ତାଙ୍କର ଅଜଣା ନୁହନ୍ତି; କିନ୍ତୁ ସେମାନଙ୍କ ପୋଷାକ ଓ କଥାବାର୍ତ୍ତା ଆଜି କାହିଁକି ବଦଳି ଯାଇଛି । ସମସ୍ତେ ଖଦଡ଼ ଲୁଗା ପିନ୍ଧିଛନ୍ତି ଓ କେହି କେହି ଟୋପି ଲଗାଇଛନ୍ତି । ମୁରାରୀ ଦାସଙ୍କ ଚିହ୍ନା ମୋଚି ରାବଣା ଦୋରା ମୁଣ୍ଡରେ ନାଲି ଟୋପି ପିନ୍ଧି ଅଧା ତେଲୁଗୁ ଅଧା ଓଡ଼ିଆରେ କହୁଚି – 'ବାବୁ, ଗାନ୍ଧି ମହାତ୍ମା ଯାହା କହୁଥିଲା, ଆମର ଭଲ ପାଇଁ ନା ? ଖଟିଖିଆ ଦଳ କହୁଚି ମଦ ଖା । କିରେ ମଦ ଖାଇଲେ ଫାଯଦା କାହାର ? ତୋର ପିଲା ମାଇପ ନାହାନ୍ତି କି ? ଅନର୍ଗଳ ଏତିକି କହି ସେ ତା ପାଖରେ ବସିଥିବା ମୋଚି ଯୁବକକୁ ତେଲୁଗୁରେ ଚୁପ୍ ଚୁପ୍ ପଚାରିଲା, 'ବାବୁ ଯାହା ଶିଖେଇଥିଲେ, ମୁଁ ଠିକ୍ ଠିକ୍ କହୁଚି ତ ?'

ସେ ଯୁବକଟି ଛୋଟ ଛୋଟ ବାଳ ରଖିଥିଲା ଓ ଗୋଟିଏ ଗାଢ଼ ନାଲି ଜାମା ପିନ୍ଧିଥିଲା । ସେ ମୁଣ୍ଡ ହଲାଇ ଉତ୍ତର ଦେଲା – 'ହଁ ।'

'ସହଜ ତ୍ରିଭାଷୀ ଶିକ୍ଷା' ପୁସ୍ତକରୁ ମୁରାରୀ ଦାସ ଟିକିଏ ଟିକିଏ ତେଲୁଗୁ ଶିଖିଥିଲେ । ରାବଣା ଦୋରାର କଥା ତାଙ୍କୁ କେମିତି ପ୍ରହେଳିକା ପରି ଲାଗିଲା । ଜଳଖିଆ ଖାଉଥିବା ଯୁବକମାନେ ପରସ୍ପର ଭିତରେ କ'ଣ ଯେପରି ଗୋଟିଏ ବିଷୟରେ ଆଲୋଚନା କରୁଥିଲେ । ମୁରାରୀ କଥାଟା ଠିକ୍ ଧରି ପାରିଲେ ନାହିଁ । ଅଳ୍ପ ଦୂରରେ ବସିଥିବା ନବଘନ ଉପରେ ଆଖି ପଡିବାରୁ ମୁରାରୀ ପଚାରିଲେ, 'କିରେ ନବ, ତୁ କେମିତି ଏଠି ? ଏମାନେ ସବୁ କୁଆଡ଼େ ବାହାରିଛନ୍ତି ?'

ବାରମ୍ବାର ମାଟ୍ରିକ୍ ଫେଲ୍ ହୋଇ ପାଠ ଛାଡ଼ିବା ପରେ ନବଘନ ରାଜନୀତିରେ ଯୋଗ ଦେଇଛି । ମୁରାରୀ ପିଲାଦିନୁ ତାକୁ ଦେଖି ଆସୁଛନ୍ତି । ମଦ ବିଡ଼ି ଖାଇ କୁଆଡ଼େ ବୁଲି ବୁଲି ରାତି ଅଧକୁ ସେ ଘରକୁ ଫେରେ, ଦିନେ ଦିନେ ଫେରେନାହିଁ । ନବଘନର ବାପା ଶ୍ୟାମଘନ ପୁଅର ଦୁର୍ଦ୍ଦଶା ପାଇଁ ମୁରାରୀ ଦାସଙ୍କ ଆଗରେ ବହୁବାର ଦୁଃଖ କରନ୍ତି ।

ସେହି ନବଘନ ହାତରେ ଗୋଟିଏ ଚମଡା ବ୍ୟାଗ୍ ଧରିଥିଲା ଓ ମୁଣ୍ଡରେ ଧଳା ଟୋପିଟିଏ ପିନ୍ଧିଥିଲା । ଆଜି କେମିତି ସେ ନେତା ପରି ଦିଶୁଥିଲା । ହାତ ହଲାଇ ସେ ମୁରାରୀ ଦାସଙ୍କ ଉଦ୍ଦେଶ୍ୟରେ ଭାଷଣ ଆରମ୍ଭ କଲା, 'ବୁଝିଲ ମଉସା, ଏ ଖଟିଖିଆ ଦଳ

ନିଶା ନିବାରଣ ନୀତିକୁ ବିରୋଧ କରୁଛି । ଏ ଦଳ ସରକାରକୁ ଆସିଲେ ରାସ୍ତାରେ ରାସ୍ତାରେ ମଦ ଦୋକାନ ଖୋଲି ଦେବ । ଏଇ କର୍ମୀମାନଙ୍କୁ ନେଇ ଆଜି ମୁଁ ସହରରେ ଜନମତ ସୃଷ୍ଟି କରିବି । ଆପଣମାନଙ୍କ ସହଯୋଗ ଆମେ ଚାହୁଁ । ମହାତ୍ମା ଗାନ୍ଧିଙ୍କ ନୀତି କ'ଣ ଆମେ ଭୁଲିଗଲେ ?'

ମୁରାରୀ ଦାସ ଦୋଳମଣ୍ଡପ ସାହୀ ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ହେଡ୍ ପଣ୍ଡିତ ଥିଲାବେଳେ ଯେଉଁଦିନ ଶ୍ୟାମଘନ ପାଞ୍ଚ ବର୍ଷର ପୁଅ ନବଘନର ହାତ ଧରି ଟାଣି ଟାଣି ତାଙ୍କ ସମ୍ମୁଖକୁ ଆଣି କହିଥିଲେ, ପିଲାଟା ବଡ ଦୁଷ୍ଟ । କେମିତି ତାକୁ ମଣିଷ କରି । ତମୁକୁ ଲାଗିଲା ।'- ସେଦିନଟି ଏବେବି ମୁରାରୀଙ୍କର ମନେ ଅଛି । ସେ ଖାଲି ବୋକାଙ୍କ ପରି ନବଘନର ମୁହଁକୁ ଅନାଇଲେ ।

ନୂତନ ମିଷ୍ଟାନ୍ନ ଭଣ୍ଡାର ଆଜି ଅସ୍ୱାଭାବିକ ଭାବେ କୋଳାହଳମୟ ହୋଇ ଉଠିଥିଲା । ଉପସ୍ଥିତ ଜନତା ଜଳଖିଆ ଓ ଚା' ଖାଇବା ସଂଗେ ସଂଗେ କିପରି ଭାବରେ ସତ୍ୟାଗ୍ରହ କରିବେ, ଆଲେଚନା କରୁଥିଲେ । ନବଘନ ବୁଝାଉଥିଲା, 'ଦେଖ, ହିଂସାତ୍ମକ ଆଚରଣ କରିବ ନାହିଁ । ରାବଣା ପ୍ରଥମେ ପତାକା ଉଡ଼ାଇ ଯିବ ଓ ତୁମ୍ଭେମାନେ ତା ପଛେ ପଛେ ଧାଡ଼ି ହୋଇଯିବ । କାଲି ରାତିରେ ଯେପରି ଶିଖାଇଛି, ସେହିପରି ସ୍ଲୋଗାନ୍ ଦେବ ।'

ପାଖ ରାସ୍ତାର ଲୋକଗହଳି କ୍ରମେ ବଢୁଥିଲା ଓ ଆହୁରି ଅନେକ ଲୋକ କୌତୁହଳବଶତଃ ସେଠି ଜମି ସାରିଥିଲେ । ସବୁଦିନେ ଅକାରଣେ ନୂତନ ମିଷ୍ଟାନ୍ନ ଭଣ୍ଡାରରେ ବସୁଥିବା ସେଇ ଛୋଟା ଯୁବକ ମାଧବ ହାତରେ ଗୋଟାଏ କାଗଜପଟା ଧରିଥିଲା । ସେଥିରେ ଲେଖା ଥିଲା - 'ନିଶା ନିବାରଣ- ମହାଜନତା ପାର୍ଟିର ଦାବି ।' ଚୋରା ଅଫିମ କାରବାର ପାଇଁ ଥରେ ଏ ଯୁବକଟି ଥାନାକୁ ଯାଇଥିଲା, ମୁରାରୀ ଦାସ ଜାଣନ୍ତି । ସେ କିନ୍ତୁ ଅନେକ ଦିନ ତଳର କଥା । ସମସ୍ତେ ଭୁଲି ଯିବେଣି । ମାଧବ ରୁଢ଼ ସ୍ୱରରେ ପାଟି କରୁଥିଲା, 'କି ବେ କ'ଣ ଜଳଖିଆ ଖାଉଥିବ କି ? ବେଗେ ପ୍ରଶେସନ୍ କର । ସାରା ସହର ବୁଲିବାକୁ ହେବ । ମାହାଲିଆ କି ? ଭଗୀରଥ ବାବୁ ଆସିବା ବେଳ ହେଲାଣି ।

ଜଳଖିଆ ସାରି ଜଣେ ଜଣେ ନୂତନ ମିଷ୍ଟାନ୍ନ ଭଣ୍ଡାର ବାହାରକୁ ଆସିଲେ । ନବଘନ ସେମାନଙ୍କୁ ଧାଡ଼ି କରାଇବାରେ ଲାଗିଲା । ଆଜି କେମିତି ସବୁଆଡ଼େ ଗୋଟାଏ ଚାଂଚଲ୍ୟ, ସମସ୍ତଙ୍କ ମୁହଁରେ ଆନନ୍ଦ । ମୁରାରୀ ଦାସ ଭାବିଲେ - କିଏ ଜାଣେ, ଏ ନବଘନ ଦିନେ ହୁଏତ ମନ୍ତ୍ରୀ ହେବେ । ଆଗେ ସିନା ରାଜାଙ୍କ ପୁଅ ରାଜା ହେଉଥିଲା, ଏବେ ତ ଯୁଗ ବଦଳି ଯାଇଛି; ଆମ ଲୋକଙ୍କ ହାତକୁ ଦେଶ ଚଳାଇବାର କ୍ଷମତା ଆସିଛି । କିଏ କେତେବେଳେ କ୍ଷମତାକୁ ଆସିବ, ଜାଣିବାର ଉପାୟ ନାହିଁ ।

ନବଘନଙ୍କ ନେତୃତ୍ୱରେ ଖଦଡ଼ଧାରୀମାନଙ୍କ ଶୋଭାଯାତ୍ରା ସହର ପରିକ୍ରମା ପାଇଁ ପ୍ରସ୍ତୁତ ହୋଇ ସାରିବା ବେଳକୁ ପୁରୁଣା ରାଲେ ସାଇକେଲ ଖଣ୍ଡକ ଚଢ଼ି ଭଗୀରଥ ମହାପାତ୍ର

ପହଂଚିଗଲେ । ରାବଣା ନିଜର ମୁଷ୍ଟିବଦ୍ଧ ଡାହାଣ ହାତ ଉପରକୁ ଉଠାଇ ଚିତ୍କାର କଲା - ଆମର ନେତା, ଉପସ୍ଥିତ କର୍ମୀମାନଙ୍କ ମିଳିତ ସ୍ୱର ଉତ୍ତର ଦେଲା - 'ଭଗୀରଥ ମହାପାତ୍ର' । ରାବଣା ଆହୁରି ଜୋର୍‌ରେ କହିଲା - ଆମର ଚିହ୍ନ, ଜନତା ଉତ୍ତର ଦେଲା - ହାତଟଣା ରିକ୍‌ସା ।'

ଶୋଭାଯାତ୍ରାଟି ଭଗୀରଥ ଓ ନବଘନଙ୍କ ନେତୃତ୍ୱରେ ମୋଚିସାହୀରୁ ସିଂହଦ୍ୱାର ଅଭିମୁଖେ ଆଗେଇ ଚାଲିଲା ।

ନଟବର ଏତେବେଳକୁ ମୁରାରୀ ଦାସଙ୍କୁ ସଲାମ ବଜାଇ ତାଙ୍କ ଆଗରେ ଦୁଇ ଖଣ୍ଡ ନିମିକି ଓ କପେ ବାମ୍ଫଉଠା ଚା' ଥୋଇ ଦେଇଗଲା ।

ମହାଜନତା ପାର୍ଟିର ନେତା ବିଧାନସଭା ପ୍ରାର୍ଥୀ ଭଗୀରଥ ମହାପାତ୍ର ଓ ଉଦୀୟମାନ ତରୁଣ ନେତା ନବଘନଙ୍କ ନେତୃତ୍ୱରେ ବାହାରି ଥିବା ଶୋଭାଯାତ୍ରାଟି ନିଶା ନିବାରଣ ସପକ୍ଷରେ ସ୍ଲୋଗାନ୍ ଦେଇ ସାରା ସହର ପରିକ୍ରମା କରିସାରିବା ପରେ ସନ୍ଧ୍ୟାରେ ଗଦାଧରଙ୍କ ନବ ଉନ୍ମୋଚିତ ମଦ୍ୟ ଦୋକାନ 'ବ୍ୟାଧି-ନିବାରିଣୀ'ସମ୍ମୁଖରେ ପହଂଚିଲା । ପାର୍ଟିର କାର୍ଯ୍ୟକ୍ରମ ଅନୁସାରେ ସହର ପରିକ୍ରମା ପରେ ଏଇଠାରେ ଭଗୀରଥଙ୍କର ଚବିଶି ଘଣ୍ଟା ଧାରଣା ଦେବା କଥା । ପୁରୀ ମ୍ୟୁନିସିପାଲିଟିର ଚେୟାରମ୍ୟାନ୍ ରୂପେ ନିର୍ବାଚିତ ହେବା ପରେ ଗଦାଧର ମରିଚୀକୋଟ ଛକରେ ଏକ ମଦ ଦୋକାନ ଖୋଲିଥିଲେ । ମାତ୍ର ଗଦାଧରଙ୍କ ଦୋକାନଟି ଉପରେ ମହାଜନତା ପାର୍ଟିର ଯେପରି ମୂଳରୁ ଦୃଷ୍ଟି ପଡ଼ିଥିଲା, ଏବଂ ଗଦାଧରଙ୍କ ଦୋକାନ ଖୋଲିବା ପରଠାରୁ ମହାଜନତା ପାର୍ଟିର ଜିଲ୍ଲା ଶାଖା ନିଶା ନିବାରଣ ପାଇଁ ଜନମତ ସଂଗ୍ରହ କରିବା ଉପରେ ଯେପରି ଜୋର୍ ଦେଉଥିଲେ; ଏଥିରୁ ଗଦାଧର ମୂଳରୁ ଅନୁମାନ କରି ନେଇଥିଲେ ଯେ ଏଇ ଦୋକାନଟିକୁ କେନ୍ଦ୍ର କରି ଦିନେ ମହା ରାଜନୈତିକ ସଂଘର୍ଷ ସୃଷ୍ଟି ହେବା ସୁନିଶ୍ଚିତ । ଗଦାଧରଙ୍କ ଖଟିଖିଆ ପାର୍ଟି ଯେ ନିଶା ନିବାରଣ ବିରୁଦ୍ଧରେ ଲୋକମତ ସୃଷ୍ଟି କରୁ ନଥିଲେ, ତା ନୁହଁ; କିନ୍ତୁ କେଜାଣି କାହିଁକି ଗଦାଧରଙ୍କ ଦୋକାନର ବଡ ବଡ ଗରାଖମାନେ ମଧ୍ୟ ପ୍ରକାଶ୍ୟରେ ମହାଜନତା ପାର୍ଟିର ନିଶା ନିବାରଣ ନୀତିର ବିରୋଧ କରିବାକୁ ସାହସ କରି ପାରୁନଥିଲେ । ଏହା ଯଥାର୍ଥରେ ଗଦାଧରଙ୍କ ଦୁଶ୍ଚିନ୍ତାର କାରଣ ହୋଇଥିଲା ।

ତେଣୁ ଆଜି ଭଗୀରଥ ଗଦାଧରଙ୍କ ସମ୍ମୁଖରେ ଧାରଣା ଦେବା ସମ୍ବାଦରେ ଗଦାଧର କିମ୍ବା ଖଟିଖିଆ ପାର୍ଟିର ସଭ୍ୟମାନେ ଆଶ୍ଚର୍ଯ୍ୟ ହୋଇ ନଥିଲେ । ବରଂ ପରିସ୍ଥିତିକୁ କିପରି ସାମ୍ନା କରିବାକୁ ହେବ, ଏ ବିଷୟରେ ଗତ ତିନିଦିନ ଧରି ପାର୍ଟିର ରୁଦ୍ଧଦ୍ୱାର ବୈଠକରେ ଆଲୋଚନା ଚାଲିଥିଲା । ଭଗୀରଥ ସଦଳବଳେ ବ୍ୟାଧି-ନିବାରିଣୀ ନିକଟରେ ପହଂଚିଲା

ବେଳକୁ ସ୍ଥାନଟି ଉଭୟ ଦଳର କର୍ମୀ, ସମର୍ଥକ ଓ ଦେଖଣାହାରୀଙ୍କ ଦ୍ୱାରା ପୂର୍ଣ୍ଣ ହୋଇ ସାରିଥିଲା ।

ଜଗନ୍ନାଥଙ୍କ ଆଳତି ଦେଖିବା ପାଇଁ ବାହାରିଥିବା ମୁରାରୀ ଦାସ ଅନ୍ୟାନ୍ୟ ବହୁ ସାଧାରଣ ଲୋକଙ୍କ ପରି ମରିଚୀକୋଟ ଛକରେ ଅଟକି ଯାଇଥିଲେ । ସକାଳେ ଏପରି ଗଣ୍ଡଗୋଳ ହୋଇପାରେ ବୋଲି ହରିଦତ୍ତ କହୁଥିଲା । ଅଳ୍ପ ଦୂରରେ ମାଟିଆ ପୋଷାକପିନ୍ଧା ସିପାହୀମାନେ ଲମ୍ବା ଲମ୍ବା ଲାଠି ଧରି ଠିଆ ହୋଇଥିବା ଦେଖି ମୁରାରୀ ଦାସ ହରିଦତ୍ତ କଥାର ସତ୍ୟତା ବୁଝିପାରିଲେ ।

ଭଗୀରଥ ରିକ୍‌ସା ଉପରେ ବସି ହାତରେ ମାଇକ୍ ଧରି ବକ୍ତୃତା ଆରମ୍ଭ କରି ଦେଇଥିଲେ - 'ଭାଇମାନେ, ମଦ ଖାଆନ୍ତୁ ନାହିଁ । ମହାଜନତା ହାତରୁ ପୁରୀ ମ୍ୟୁନିସିପାଲିଟି ଚାଲିଯିବା ଦିନୁ ସହରର ଜନସାଧାରଣଙ୍କର ଅତ୍ୟନ୍ତ ନୈତିକ ଅଧୋଗତି ହେଲାଣି । ଆପଣମାନେ ସମସ୍ତେ ଏ ମଦଦୋକାନ ସମ୍ମୁଖରେ ଧାରଣା ଦିଅନ୍ତୁ । ଏ ମଦଦୋକାନର ମାଲିକ ଆପଣଙ୍କ ମ୍ୟୁନିସିପାଲିଟିର ଚେୟାରମ୍ୟାନ୍ । ଏହା ଚିନ୍ତା କଲେ ଲଜ୍ଜାରେ ମୋ ମୁଣ୍ଡ ତଳକୁ ନଇଁ ଯାଉଛି । ମୋର ଆଶା, ଜାତିର ପିତା ମହାତ୍ମା ଗାନ୍ଧିଙ୍କ ନୀତି ଆପଣମାନେ ମନେ ରଖିଛନ୍ତି । ଆପଣମାନେ ଆଜି ଗଦାଧରଙ୍କ ଇସ୍ତଫା ଦାବୀ କରନ୍ତୁ ।'

ଭଗୀରଥଙ୍କୁ ସମର୍ଥନ କରି ଦଳେ କଲେଜ ଛାତ୍ର ଉପରକୁ ହାତ ଟେକି କହୁଥିଲେ - 'ଆମର ନେତା - ଭଗୀରଥ ମହାପାତ୍ର ।'

ସେ ଆଡ଼େ, ବ୍ୟାଧି-ନିବାରିଣୀ ଉପରେ, ହାତରେ ଗୋଟିଏ ଫଟୋ ଧରି ଗଦାଧର ବକ୍ତୃତା ଆରମ୍ଭ କରିଦେଲେ - 'ଭାଇମାନେ ଏଇ ମହାପୁରୁଷଙ୍କ ଫଟୋ ଆଡ଼କୁ ଚାହାନ୍ତୁ । ଦେଖି ପାରୁଛନ୍ତି ? ଏଇ ଆମମାନଙ୍କ ଜାତିର ପିତା ମହାତ୍ମା ଗାନ୍ଧି । ଅହିଂସା ପାଇଁ ସେ ଜୀବନ ଦେଇଛନ୍ତି । ତାଙ୍କ ଛାତିରେ ଆତତାୟୀର ଗୁଳି ବାଜିଛି, ରକ୍ତ ଶୁଖି ନାହିଁ । କିନ୍ତୁ ସେ ଅହିଂସା ନୀତି ଆଜି ଦେଶବାସୀ ଭୁଲି ଯାଇଛନ୍ତି । ଭଗୀରଥ ବାବୁ ଆଜି ମୋ ଦୋକାନ ସାମ୍ନାରେ ଯେଉଁ ଗଣ୍ଡଗୋଳ ଆରମ୍ଭ କରିଛନ୍ତି, ତାହା ହିଂସାତ୍ମକ କାଣ୍ଡ । ମହାତ୍ମା ଗାନ୍ଧି ଆଜି ବଂଚିଥିଲେ ଏହାର ନିନ୍ଦାବାଦ କରିଥାନ୍ତେ । ତା'ଛଡ଼ା ଆପଣମାନେ ଜାଣନ୍ତି, ଭଗୀରଥ ନିଜେ ଲୋକ ପଠାଇ ମୋ ଦୋକାନରୁ ମଦ କିଣନ୍ତି । ରାଜନୀତିକ ଦୁରଭିସନ୍ଧି ରଖି ସେ ଏଠାରେ ଧାରଣା ଦେଇଛନ୍ତି ।'

ଏହି ସମୟରେ ଜନତା ମଧ୍ୟରୁ ପ୍ରବଳ କରତାଳି ହେବାରୁ ଗଦାଧର ଯାହା କହିଲେ ପରିଷ୍କାର ଶୁଣାଗଲା ନାହିଁ । ଜନତାକୁ ଚୁପ୍ ରହିବାକୁ ଅନୁରୋଧ କରି ହାତ ଯୋଡ଼ି ଗଦାଧର ପୁଣି ଆରମ୍ଭ କଲେ - 'ମୋର ପ୍ରିୟ ଭାଇମାନେ, ଆପଣମାନେ ମୋତେ ଜାଣନ୍ତି । ଆପଣମାନଙ୍କ ସ୍ନେହ ସହାନୁଭୂତି ଏଡ଼ି ନପାରି ମୁଁ ପୁରୀ ସହରର ମ୍ୟୁନିସିପାଲିଟି ଚେୟାରମ୍ୟାନ୍ ଦାୟିତ୍ୱ ଗ୍ରହଣ କରିଛି । ଆପଣମାନେ ଟିକିଏ ତଳେଇ ଦେଖିଲେ, ନିଶ୍ଚୟ

ବୁଝିପାରିବେ, ଏଇ ମଦଦୋକାନ ମୁଁ ଖୋଲିଛି ଆପଣମାନଙ୍କ ସେବା ପାଇଁ । କେହି କେବେ ମଦ ଖାଇ ମାତାଲ ହେବାକୁ ମୁଁ କହୁ ନାହିଁ । ଶରୀରର ବା ମନର ରୋଗ ଦୂର କରିବାକୁ ଡାକ୍ତର ପରାମର୍ଶ କ୍ରମେ ଏଠାରୁ ମଦ କିଣାଯାଇପାରେ । ତା'ଛଡ଼ା ଯେଉଁ ବିଦେଶୀମାନେ ପୁରୀ ସହରକୁ ବୁଲି ଆସନ୍ତି, ସେମାନଙ୍କୁ ମଦ ଯୋଗାଇ ନଦେଲେ ସେମାନଙ୍କର ଅସୁବିଧା ହେବ ଓ ପୁରୀ ସହରକୁ ବିଦେଶୀମାହେନ ଆଉ ଆସିବେ ନାହିଁ । ନିଶା ନିବାରଣ ନାମରେ ମହାଜନତା ପାର୍ଟି ଏକ ଧୂଆଁବାଣ ମାରୁଛି । ଆମ ଦେଶର ଅଧିକାଂଶ ନେତା, ଜନସେବକ ଓ ବଡ଼ ବଡ଼ ସରକାରୀ କର୍ମଚାରୀ ମଦ ଖାଆନ୍ତି । ଯେଉଁ ମଦ୍ୟ ବ୍ୟବସାୟୀମାନେ ଜନସାଧାରଣଙ୍କ ପ୍ରତି ସେମାନଙ୍କ କର୍ତ୍ତବ୍ୟ ଭୁଲି ଚଢ଼ା ଦରରେ ମଦ୍ୟ ବିକ୍ରୀ କରୁଛନ୍ତି, ବରଂ ଦର କମାଇବା ପାଇଁ ଭଗୀରଥ ବାବୁ ସେମାନଙ୍କ ଦୋକାନ ସାମ୍ନାରେ ହରତାଳ କରିବା ଉଚିତ୍ ।

ଗଦାଧରଙ୍କ ଦୋକାନ ପାଖରେ ଜମା ହୋଇଥିବା ଲୋକମାନଙ୍କ ଭିତରୁ ଜଣେ ଏହି ସମୟରେ ଖୁବ୍ ଜୋର୍‌ରେ ଚିକ୍ରାର କଲା - 'ଗଦାଧର ବାବୁ ଆମର ମା' ବାପ' । ଖଟିଖିଆ ପାର୍ଟି ଜିନ୍ଦାବାଦ । ଆଉ ଜଣେ କିଏ ପାଟି କଲା, ଜୟ ବଜରଙ୍ଗୀ !'

ଗଦାଧରଙ୍କ ଭାଷଣ ଚାଲିଥିଲାବେଳେ ଭଗୀରଥଙ୍କ ରିକ୍‌ସାକୁ କେତେଜଣ ଲୋକ ଦୂରକୁ ଠେଲି ନେଇଥିଲେ । ଭଗୀରଥଙ୍କ ହାତରୁ ମଧ ମାଇକ୍‌ଟି କେହି ଛଡ଼ାଇ ନେଇଥିଲା । ଭଗୀରଥ ଅନ୍ୟାନ୍ୟ ଦେଖଣାହାରୀଙ୍କ ପରି ଅସହାୟ ଦୃଷ୍ଟିରେ ଗଦାଧରଙ୍କ ଆଡ଼କୁ ଅନାଇ ରହିଥିଲେ । ଚତୁର ଗଦାଧର ପରିସ୍ଥିତି ମୁକାବିଲା କରିବା ପାଇଁ ଆଗରୁ ଏତେ ସମର୍ଥକ ଯୋଗାଡ଼ କରିବା ଦେଖି ସେ ହତାଶ ହୋଇ ପଡ଼ିଥିଲେ । ଗଦାଧରଙ୍କ ବକ୍ତୃତା ତଥାପି ସରି ନଥିଲା । ଭାଇମାନେ, ନିଶା ନିବାରଣ ଏକ ଭାଣ୍ଡାମୀ । ନିଶା ନିବାରଣ ଆଇନ କାର୍ଯ୍ୟକାରୀ ହେଲେ ଦେଶର ଚାରିଆଡ଼େ ଚୋରା ନିଶା କାରବାର ଚାଲିବ ଓ ରାଜକୋଷର ବହୁତ କ୍ଷତି ହେବ । ଯେଉଁମାନେ ଆଜି ନିଶା ନିବାରଣ କଥା କହୁଛନ୍ତି, ସେମାନଙ୍କର ଚୋରା ନିଶା କାରବାର କରିବା ମତଲବ ଅଛି । ସେମାନଙ୍କ କଥାରେ ଆପଣମାନେ ଭୁଲନ୍ତୁ ନାହିଁ ।

ଏହି ସମୟରେ କେତେଜଣ କଳା କଳା ମୋଟା ଲୋକ ଦୋକାନ ପଛରୁ ସାମ୍ନାକୁ ଆସିବା ଦେଖାଗଲା । ସେମାନେ ଦେହରେ ଜାମା ପିନ୍ଧି ନଥିଲେ, ଖାଲି ଖଣ୍ଡିଏ ଲେଖାଁ ମଇଳା ଲୁଗା ପିନ୍ଧିଥିଲେ । ସେମାନଙ୍କ ଲମ୍ବା ନିଶ ନଡ଼ିଆ କତା ପରି ପାଉଁଶିଆ ଦିଶୁଥିଲା । ପିଆଜ ପରି ସେମାନଙ୍କ ଆଖି ନାଲି ଦେଖାଯାଉଥିଲା । ସେମାନେ ହାତସବୁ ମୁଠା କରି ଓ ବାହୁର ମାଂସପେଶୀ ଫୁଲାଇ ଭଗୀରଥ ମହାପାତ୍ରଙ୍କ ରିକ୍‌ସା ଆଡକୁ ଚାଲିଲେ ।

ମୁରାରୀ ଦାସ ଦୂରରୁ ଗୋଟିଏ ପାନ ଦୋକାନରେ ବେଂଚ୍ ଉପରେ ଠିଆ ହୋଇ ଏ ଦୃଶ୍ୟ ଦେଖୁଥିଲେ । ଏହି ଲୋକମାନେ ତାଙ୍କୁ କାହାଣୀରେ ପଢ଼ିଥିବା ଯମଦୂତ ପରି ଦେଖାଗଲେ । ସେ ଭାବିଲେ, ପୁଲିସ୍‌ବାଲା ଯେଉଁଠି ଥିଲେ ବି ଏମାନଙ୍କୁ ହଟାଇ ଦେବେ ।

ପୁଲିସ୍‌ବାଲା କେଉଁଠି ଅଛନ୍ତି ଜାଣିବାକୁ ମୁରାରୀ ଦାସ ଏପଟ ସେପଟ ଅନାଇବାକୁ ଲାଗିଲେ ।

ଆସ୍ତେ ଆସ୍ତେ ଗଣ୍ଡଗୋଳ ବଢୁଥିଲା । ଯମଦୂତ ପରି ଦିଶୁଥିବା ସେଇ ମୋଟା କଳା ନିଶୁଆ ଲୋକମାନେ ଭଗୀରଥ ବାବୁଙ୍କ ରିକ୍‌ସାକୁ ଘେରି ଯାଇଥିଲେ । କେହି ତାଙ୍କ କାନ ମୋଡୁଥିଲା; କିଏ ଲୁଗା ଟିଂଗୁଥିଲା, କେହି ତାଙ୍କୁ ଚିମୁଟୁଥିଲା, କିନ୍ତୁ ଭଗୀରଥ ହଟି ଯାଉ ନଥିଲେ । ମୁରାରୀ ଏ ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ହେଲେ । କେହି ଜଣେ ଗୋଟିଏ ବାଡ଼ିରେ ଭଗୀରଥଙ୍କ ମୁଣ୍ଡ ଧୀରେ ଧୀରେ ଠୁକାଉଥିଲା । ପୁଲିସ୍ କେତେ ଜଣ ଦୂରରେ ବସି ବିଡ଼ି ଟାଣୁଥିଲେ, ଜଣେ ନାସ ଶୁଂଘୁଥିଲା । ସେମାନେ ନିଜ ନିଜ ଭିତରେ କ'ଣ କଥା ହୋଇ ହି-ହି ହସୁଥିଲେ । ସେମାନଙ୍କ ଲମ୍ବା ଲମ୍ବା ଲାଠି ସବୁ ତଳେ ଥୁଆ ହୋଇଥିଲା ।

ଏହି ସମୟରେ ପାନ ଦୋକାନୀ ଦୋକାନ ବନ୍ଦ କରିବାକୁ ବାହାରିଲା । ତେଣୁ ମୁରାରୀ ଦାସ ବେଂଚ୍ ଉପରୁ ତଳକୁ ଓହ୍ଲାଇ ଆସିଲେ ।

ମୁରାରୀ ପଚାରିଲେ, 'ତମେ ଦୋକାନ ବନ୍ଦ କରୁଛ କାହିଁକି ?'

ଦୋକାନୀ କହିଲା, 'ମାହାର୍ଜେ, ତମେ ପଂଚକୋଶୀ କି ? ଦେଖୁଛ ଗଣ୍ଡଗୋଳ ହେଲାଣି । ନାହିଁ ନାହିଁ ଯଦି ମୋ ଦୋକାନ ଉପରେ ଚଢ଼ାଉ ହୁଏ ? ପୁରୀ ସହରଟି ଯେ । ଏଠି ଦିନ ଦି'ପହରେ ମୁଣ୍ଡ କାଟି ନେଲେ କେହି ପଚାରିବେ ନାହିଁ !

ମୁରାରୀ ବୋକାଙ୍କ ପରି ପୁଣି ପଚାରିଲେ, 'ପୁଲିସ୍‌ବାଲା କ'ଣ କରୁଛନ୍ତି ? ଗୁଣ୍ଡାମାନଙ୍କୁ ଜବତ୍ କରୁ ନାହାନ୍ତି ?'

ଦୋକାନୀ ସେତେବେଳକୁ ଦେକାନ ବନ୍ଦ କରି ସାରିଥିଲା । ତାଲା ପକାଇ ସାରି ତାଲାଟି ଠିକ୍ ପଡ଼ିଛି କି ନାହିଁ, ପରୀକ୍ଷା କରୁ କରୁ ସେ ମୁରାରୀଙ୍କ ଆଡ଼କୁ ଅନାଇ ହସିଲା । କିଛି କହିଲା ନାହିଁ । ଦୋକାନ କରକୁ ଆଉଜା ହୋଇଥିବା ସାଇକେଲ୍‌ରେ ଚଢ଼ି ଚାଲିଗଲା ।

ମୁରାରୀ ଏ ଆଡ଼େ ସେ ଆଡ଼େ ଅନାଇଲେ । ଗଣ୍ଡଗୋଳ କ୍ରମେ ବଢୁଥିଲା । ବେଶୀ ବେଶୀ ଲୋକ ଘଟଣା ସ୍ଥଳରେ ଜମା ହେଉଥିଲେ । ରିକ୍‌ସା ଉପରେ ବସିଥିବା ଭଗୀରଥଙ୍କ ଉପରେ ଦଳେ ଲୋକ ଝୁଙ୍କି ପଡ଼ିଥିଲେ । ଭଗୀରଥ ଯାହା କହୁଥିଲେ, ଲୋକ କୋଳାହଳରେ ଶୁଣା ଯାଉନଥିଲା । ପୁଲିସ୍‌ବାଲା ଉଠି ଠିଆ ହୋଇ ସାରିଥିଲେ, କିନ୍ତୁ ପାଖକୁ ଆସୁ ନଥିଲେ । ଯେଉଁଠି ଗଣ୍ଡଗୋଳ, ସେଠିକି ବା ସେମାନେ ଆସନ୍ତେ କାହିଁକି ? ସେମାନଙ୍କର ତ ପୁଣି ଜୀବନ ଅଛି, ପିଲାଛୁଆ ଅଛନ୍ତି !

ମୁରାରୀ ଭାବିଲେ, ସେଠାରୁ ତାଙ୍କର ପଳାଇବା ଭଲ । ବଡ଼ ଦେଉଳରେ ଆଳତି ବେଳ ଗଡ଼ିଯିବଣି । ହରିଦତ୍ତ ବି ତାଙ୍କୁ ଅନାଇଥିବ ।

ଧାନବୋଉ ତା ଅଣ ଓସାରିଆ ନୁଆଣିଆ ମାଟି ପିଣ୍ଡା ଉପରେ ବସି ତରାଟ ଓ ଗେଣ୍ଡୁ ଫୁଲରେ ମାଳ ଗୁନ୍ଥୁ ଗୁନ୍ଥୁ ମନକୁ ମନ କ'ଣ ବିଡ୍ ବିଡ୍ ହେଉଥିଲା । ସବୁଦିନ ସକାଳୁ ଖରା ମୁଣ୍ଡ ଉପରକୁ ଉଠିବା ଯାଏଁ ସେ ଏମିତି ମାଳ ଗୁନ୍ଥୁ ଥାଏ । ମନକୁ ମନ କଣ ଗପୁ ଥାଏ । ହାଡ଼ିସାହୀର ଶେଷ ମୁଣ୍ଡରେ ତାର ଘର - ଗୋଟିଏ ବୋଲି ବଖରା । ଘର ଭିତରକୁ ଅନାଇଲେ ଅନ୍ଧାରୁଆ ଦିଶେ - ଭିତରେ କ'ଣ ଅଛି, ଜାଣିବାର ଉପାୟ ନାହିଁ । ରାତି ପାହିଲେ ହାଡିସାହିରୁ ଦଳ ଦଳ ଲୋକ କାମକୁ ବାହାରିଯାଆନ୍ତି । ଅଧିକାଂଶଙ୍କର ମେହେନ୍ତର କାମ । ମୋଃଚିସାହୀ ମ୍ୟୁନିସିପାଲିଟି ଅଫିସକୁ ଯାଇ ସେଠାରୁ ସେମାନେ କାମକୁ ବାହାରନ୍ତି; କିଏ ଝାଡୁ ଟୋକେଇ, କିଏ ହାଣ୍ଡି ଅଣକ, କିଏ ବା ମଇଳାବୁହା ଗାଡ଼ି ଧରି ପୁରୀର ସାତସାହୀ ବୟାଳିଶି କନ୍ଦିରେ ସେମାନେ ଖେଦିଯାନ୍ତି । ତୀର୍ଥସ୍ଥାନ ବୋଲି ସାରା ଭାରତରେ ସୁପରିଚିତ ଜଗତର ନାଥ ଜଗନ୍ନାଥଙ୍କ ବାସସ୍ଥାନଟିକୁ ପରିଷ୍କାର ରଖିବାର ଦାୟିତ୍ୱ କେଉଁ ଦିନରୁ କେଜାଣି ହାଡ଼ିସାହିର ବାସିନ୍ଦାମାନଙ୍କ ଉପରେ ହିଁ ପଡ଼ିଥିଲା ।

ସମସ୍ତେ କାମକୁ ଯାଆନ୍ତି, ଯାଏ ନାହିଁ ଧାନବୋଉ । ସିଏ ବା କୁଆଡ଼େ ଯିବ ? ତାର ତ କେହି ନାହାନ୍ତି । ତା' ପେଟ ଚାଖଣ୍ଡକ ପାଇଁ ସିଏ ଯିବ ସରକାରୀ ବେଠି କରିବାକୁ ? ତା'ଠାରୁ କୂଅ ପୋଖରୀକୁ ଡେଇଁ ପଡ଼ିବା ଭଲ ।

ଧାନବୋଉ ପଟକାରେ ତରାଟ ଓ ଗେଣ୍ଡୁଫୁଲ ଗୁନ୍ଥୁ ଗୁନ୍ଥୁ ଆଜି ବେଶୀ ବିଗିଡି ଯାଇଥିଲା । ସାହୀର ଠାକୁରାଣୀଙ୍କ ପାଇଁ ମାଳ ଗୁନ୍ଥିବା ବେଳେ ସବୁଦିନେ ସେ ମନକୁ ମନ ବକର ବକର ହୁଏ । ଆଜି ସକାଳୁ ଚକରା ନାହାକ କହିଲା, 'ଖୁଡ଼ିଲୋ, ଆମ ସାଇକି ମନ୍ତିରୀ ଆସିବେ ଭୋଅଟ କଥା କହିବାକୁ । ପିଣ୍ଡାରେ ବଇଥା ଦେଖିବୁ ।'

ଚକରା ଏତିକି କହି ଚାଲିଯିବା ପରେ ସତକୁ ସତ ଧାନବୋଉ ଦେଖିଲା, ଗୋଟାଏ ଯୋଡ଼ାଏ ମଟର ଗାଡ଼ି ତା ଦୁଆର ଦେଇ ଚାଲିଗଲା । ସାଇର ଦଳେ ଟୋକା ହାତରେ

ଝାଡୁ ଟୋକେଇ ଧରି ରାସ୍ତା ସଫା କରିବାରେ ଲାଗି ପଡ଼ିଲେ । କିଏ ଗୋଟାଏ ରିକ୍‌ସାରେ ବସି ବଡ଼ ପାଟିରେ କହି କହି ଗଲା, 'ସମସ୍ତେ ଘରେ ଥିବ । ମନ୍ତ୍ରୀ ଆସିବେ । ଦେଶ କଥା କହିବେ ।'

କେଜାଣି କାହିଁକି, ଏଇ ମନ୍ତ୍ରୀମାନଙ୍କ ଉପରେ ଧାନ ବୋଉର ଭାରି ରାଗ । ସିଏ ମନକୁ ମନ କହୁଥିଲା - 'ଛିଆଲ ମନ୍ତିରୀ ! ଦିନେ ନାଇଁ କାଳେ ନାଇଁ ଗହ୍ଲା ପୁନେଇକି ମାଇଁ ମାଇଁ ! ହଇଲୋ ! ଦିନେ ତ ଦେଖା ନାଇଁ, ଖାଲି କ'ଣ ନା ଭୋଅଟ ଦିଅ ! ଭୋଅଟ ପାଇଲେ ମୁହଁ ଓପ୍ରୁରୁକୁ । କୁଆଡ଼େ ଯିବ ଯେ ସେ ପୁଣି ସେଇ, ଭୋଅଟ ବେଳକୁ ଦେଖା ! ଛିଆଲୋ-'

ଘନିଆ ମେହେନ୍ତର ଆଜି ବେଗେ ବେଗେ ମ୍ୟୁନିସିପାଲିଟି କାମ ସାରି ମନ୍ତ୍ରୀ ଆସିବେ ବୋଲି ଘରମୁହାଁ ଛୁଟିଥିଲା । ଧାନବୋଉ ପାଖରେ ସେ କେଜାଣି କାହିଁକି ଟିକିଏ ଠିଆ ହୋଇଗଲା । କହିଲା - ଖୁଡ଼ି; ଏତେ ତ ମାଳ ଗୁନ୍ଥୁଚୁ, ମନ୍ତିରୀ ଆସିବେ ତାଙ୍କ ପାଇଁ ଗୋଟିଏ ଗୁନ୍ଥୁନୁ !

ଧାନବୋଉ ମୁହଁ ଛିଞ୍ଚାଡ଼ି କହିଲା, 'ଛିଆଲୋ ! ଠାକୁରାଣୀକି ମାଳ ଦେଇ ଦେଇ ଠାକୁରାଣୀର ଦୁରୁଷ୍ଟି ପଡ଼ିଲା ନାଇଁ, ଆଉ ଏ ମନ୍ତିରୀକୁ ମାଳ ଦେଲେ ମୋ ଧାନ ଲେଉଟି ଆସିବ କି ।'

ଘନିଆ ସାହୀକୁ ଗଲାବେଳେ ଧାନବୋଉକୁ ଏମିତି ବେଳେ ବେଳେ ଥଟ୍ଟାକରେ । ଆଜି କିନ୍ତୁ କଥାଟା କେମିତି ଅଡୁଆ ହୋଇଗଲା । ଧାନ କଥା ମନେ ପଡ଼ିଲେ ଧାନବୋଉ କାନ୍ଦି ପକାଏ । ଘନିଆ ଏକଥା ଜାଣେ ।

ଘନିଆ କହିଲା, 'ହଉ ଖୁଡ଼ି ବଇଥା ପୁଅ ହାତରେ କଖାରୁ ଡଙ୍କ ପଠଉଚି । ବାଇରେ ଭଲ କଖାରୁ ଡଙ୍କ ମାଡ଼ିଚି । ଚେଏରମେନ୍ ବାବୁ ବଗିଚା ସଫା କଲାବେଳେ ଚାରା ଦୋ'ଟି ଆଣିଥିଲି ।

ଘନିଆ ଚାଲିଗଲା । ଧାନବୋଉର ପିଣ୍ଡା ଉପରକୁ ଖରା ଉଠିଲାଣି । ବେଳ କେତେ ହେଲାଣି, କେଜାଣି । ଧାନବୋଉର ମାଳଟି ଅଧାଗୁନ୍ଥା ହୋଇ ପଡ଼ି ରହିଲା । ତା' ହାଡୁଆ ଗାଲ ଉପରେ କୋରଡ଼ପଶା ଆଖିରୁ ଦି'ଧାର ଗରମ ଲୁହ ନିଗିଡ଼ି ପଡ଼ି ଶୁଖି ଯାଇଥିଲା । ତାକୁ ଏ ଭୋଅଟ ମନ୍ତିରୀରୁ କ'ଣ ମିଳିବ ?

ଆଜିକି ଦୁଇଯୁଗ ହେଲାଣି । ଆଜିପରି ଆଉ ଦିନେ ସେମିତି ତା ସାହୀର ଟୋକାମାନଙ୍କ ମୁଣ୍ଡକୁ ପିତ ଚଢ଼ିଥିଲା । ସାହୀ ସଫାସୁତୁରା ହୋଇଥିଲା, ଘରସବୁ ଲିପାପୋଛା ହୋଇଥିଲା, ସବୁ ଚାଳରେ ଆମ୍ବଡାଳ ଖୋସା ହୋଇଥିଲା । କଥା କ'ଣ ନା ଗାନ୍ଧି ମହାତମା ଆସିବେ । ସେଦିନ ଘନିଆ ମୁଣ୍ଡରେ ଖଦଡ଼ ଟୋପି ପିନ୍ଧି କେମିତି ନେତା ପରି ଦିଶୁଥିଲା । ସେଇ ଘନିଆ ସାଙ୍ଗରେ ମାତିଥିଲା ଧାନ, ତାର ଅଠର ବର୍ଷର ଭେଣ୍ଡା ପୁଅ । କାଲିପରି

ଲାଗୁଚି । ହେଇ ସେଠି ଯେଉଁଠି ବରଗଛ ମୂଳେ ଠାକୁରାଣୀ ଉଭା ହୋଇଛନ୍ତି – ଦୂରକୁ ଦିଶୁଛନ୍ତି ନାଲି ପଥର ଖଣ୍ଡିଏ ପରି- ସେଇଠି ଗାନ୍ଧି ମହାତମା ସଭା କରିଥିଲେ । ଧାନବୋଉ ଆଜିଯାଏଁ ଏତେ ଲୋକ ଏକାଠି ଆଉ କେବେ ଦେଖିନାହିଁ । ତାଙ୍କ ସାହୀକି ଆଉ କେବେ ଏତେ ଧୋବ ଧଉଳିଆ ବାବୁ ଆସିବା ବି ତାର ମନେ ପଡୁନାହିଁ । ସେଦିନ ତାକୁ ଲାଗିଥିଲା, ଯେମିତି ସେମାନେ ଆଉ ମେହେନ୍ତର ହୋଇ ନାହାନ୍ତି । ଗାନ୍ଧି ମହାତମା ବି କୁଆଡ଼େ ସେଇକଥା କହିବାକୁ ଆସିଥିଲେ । ଘନିଆ କହିଲା – 'ଖୁଡ଼ିଲୋ, ଆମ ସାଇ ନାଆଁ ଆଜିଠୁ ବଦଳି ଗଲା । ଆଉ ଏ ସାଇର ନାଆଁ ହାଡ଼ି ସାଇ ନୁହେଁ – ଗାନ୍ଧି ନଗର ।'

ସତକୁ ସତ କାଗଜପତ୍ରରେ କେବେଠୁ ଏଇ ମେହେନ୍ତର ବସ୍ତିର ନାମ 'ଗାନ୍ଧିନଗର' ହୋଇ ସାରିଥିଲା; କିନ୍ତୁ ଲୋକମୁଖରେ ସେଇ 'ହାଡ଼ିସାହୀ' ନାମ ହିଁ ଆଜିଯାଏ ଚଳି ଆସୁଥିଲା । ତେଣୁ ଆଜି ଯେତେବେଳେ ନବଘନ ଘୋଡାଗାଡ଼ିରେ ବସି ମାଇକ୍‌ରେ ତୁହାକୁ ତୁହା ପାଟି କରୁଥିଲା – 'ଭାଇମାନେ, ଆଜି ଆପଣମାନଙ୍କର ସୌଭାଗ୍ୟ, ଓଡ଼ିଶାର ଜଙ୍ଗଲ ବିଭାଗ ମନ୍ତ୍ରୀ ରାଧିକାଚରଣ ଦାସ ଗାନ୍ଧି ନଗରରେ ପଦାର୍ପଣ କରୁଛନ୍ତି –' ହାଡ଼ିସାହୀର ପୁରୁଷ-ସ୍ତ୍ରୀମାନଙ୍କୁ ସେମାନଙ୍କ ସାଇର ଏଇ ଭଲ ନାଁଟା କେମିତି ନୂଆ ନୂଆ ଲାଗୁଥିଲା । ଘନିଆ ତା ଭାରିଜାକୁ କହିଲା, 'ଆଲୋ ଶୁଣୁଚୁ, ସାଇ ନାଁଟା ଗାନ୍ଧିନଗର ହେଲେ କେତେ ନହେଲେ କେତେ । ଆମେ ଯୋଉ ହାଡ଼ି ହାଡ଼ିଆଣି ଥେଲେ, ସେଇତା ରହିଚେ !'

ଧାନବୋଉ ମନକୁ ମନ କହୁ ଥିଲା, ଏମିତି ଗାନ୍ଧିନଗର ଫଗର କଥା କହି ଦିନେ ଧାନର ମୁଣ୍ଡ ବିଗାଡି ଦେଇଥିଲେ ଗାନ୍ଧି ମହାତ୍ମା । ବାବୁମାନଙ୍କ କଥାରେ ପଡ଼ି ସେ ଜିଏଲ ଗଲା ଯେ ଗଲା । ଆଉ ଲେଉଟିଲା ନାହିଁ ।

ଇଏ ସେଇ ସମୟର କଥା, ଯେତେବେଳେ ମହାତ୍ମା ଗାନ୍ଧିଙ୍କ 'ଭାରତ ଛାଡ଼' ଆନ୍ଦୋଳନରେ ଏ ଦେଶ ପଡୁଥିଲା, ଉଠୁଥିଲା । ଖଦଡ଼ପିନ୍ଧା, ବାହାରକୁ ଅତି ଦୁର୍ବଳ ଦିଶୁଥିବା ସେଇ ଚନ୍ଦାମୁଣ୍ଡିଆ ବୁଢ଼ା ଲୋକଟି ଭାରତର ଗାଁ ଗାଁ ସହର ସହରରେ ଲଗାଇଥିଲା ନିଆଁ । ଦାରିଦ୍ର୍ୟ ବ୍ୟାଧିରେ ଜାକି ଜୁକି ହୋଇ ଯୁଗ ଯୁଗ ଧରି ପଡ଼ି ରହିଥିବା ଲୋକଙ୍କୁ ସିଏ ଶିଖାଇଥିଲା ନୂଆ ମନ୍ତ୍ର । ସେ ମନ୍ତ୍ରରେ ସେଦିନ ଯେଉଁମାନେ ଦୀକ୍ଷିତ ହୋଇଥିଲେ, ସେମାନେ ଆଜି ବଡ଼ ବଡ଼ ନେତା – କିଏ ମନ୍ତ୍ରୀ, କିଏ ରାଜ୍ୟପାଳ, କିଏ ଇତିହାସର ଅମର ନାୟକ । ସେମାନଙ୍କ ଭିତରେ କିନ୍ତୁ ଧାନ ଦାସର ନାଁ ନଥିଲା । ପୁରୀ ହାଡ଼ିସାହୀର ଧାନ ଦାସ ତା ନିଶ ଉଠିବା ବୟସରେ ଗାନ୍ଧି କଥାରୁ ଗାନ୍ଧି ରୂପରୁ କ'ଣ ବୁଝିଲା କେଜାଣି, ଅସହଯୋଗରେ ଯୋଗ ଦେଇ ଜେଲ୍ ଯାଇଥିଲା । ତା ପରି ଆଉରି ବି କେତେ ଯାଇଥିଲେ ଯେଉଁମାନେ ଦିନେ ଜେଲ୍ ଯାଇଥିଲେ, ସ୍ୱାଧୀନ ଦେଶରେ ସେଇମାନେ ହେଲେ ପ୍ରଥମ ନାଗରିକ । ହାଡିସାହୀର ଘନିଆ ନାୟକ ଜେଲ୍‌ରୁ ଫେରିଲା; କିନ୍ତୁ ତାକୁ କେହି ପଚାରିଲେ ନାହିଁ । ମ୍ୟୁନିସିପାଲିଟି ଚେୟାରମ୍ୟାନ୍‌କୁ ଖୋସାମତ କରି ସେ ହୋଇଛି ଝାଡୁଦାର । ଆଉ ଧାନ ଦାସ... ?

ସେ ମୋଟେ ଫେରିଲା ନାହିଁ । ଜେଲ୍‌ର ଉଂଚା ଉଂଚା ପଥର ପାଚେରୀ ଭିତରେ ତାର କି ଅବସ୍ଥା ହେଲା, ସେ କଥା କେହି ଠିକ୍ କହି ପାରିଲେ ନାହିଁ । କିଏ କେତେ ପ୍ରକାରେ କହିଲା । ଏବେ ଆଉ ଧାନ ବୋଉ ଧାନ କଥା କାହାରିକୁ ପଚାରେ ନାହିଁ; କିନ୍ତୁ ଧାନ ଦିନେ ଫେରି ଆସିବ, ଏ ଆଶା ତାର ମଉଳି ନାହିଁ । ସେଥିପାଇଁ ସବୁଦିନେ ଠାକୁରାଣୀଙ୍କ ପାଇଁ ସେ ମାଳ ଗୁନ୍ଥେ । ଖରା ବର୍ଷା ଶୀତ ସବୁ ଋତୁରେ ଠାକୁରାଣୀ ନାମଧେୟ ସିନ୍ଦୁରମୟ ପଥର ଖଣ୍ଡିକ ଉପରେ ଧାନ ବୋଉର ଫୁଲମାଳଟି ଶୋଭା ପାଉଥାଏ ।

'ମନ୍ତ୍ରୀ ଆସିବେ' 'ମନ୍ତ୍ରୀ ଆସିବେ' ବୋଲି ଗାନ୍ଧିନଗର ଓରଫ୍ ହାଡି ସାହୀରେ ସକାଳୁ ଯେଉଁ ଆୟୋଜନ ଚାଲିଥିଲା, ସଂଜବେଳକୁ ତାହା ଚୂଡ଼ାନ୍ତରେ ପହଂଚିଲା । ନବଘନ ଶେଷଥର ପାଇଁ ଘୋଡ଼ାଗାଡ଼ି ଭିତରୁ ପାଟି କରିଗଲା – 'ଭାଇ ଓ ଭଉଣୀମାନେ, ମନ୍ତ୍ରୀ ଆସିଗଲେ । ଆପଣମାନେ ଠାକୁରାଣୀଙ୍କ ବରଗଛ ମୁଳେ ରୁଣ୍ଡ ହୁଅନ୍ତୁ ।'

ଓଡ଼ିଶାର ମାନ୍ୟବର ଜଙ୍ଗଲ ବିଭାଗ ମନ୍ତ୍ରୀ ଶ୍ରୀ ରାଧିକାଚରଣ ଦାସଙ୍କ ନେଳି ରଂଗର କାର୍‌ଟି ଠାକୁରାଣୀଙ୍କ ବରଗଛ ମୂଳେ ଆସି ପହଂଚିବା କ୍ଷଣି ମହା-ଜନତା ପାର୍ଟିର ସଭାପତି ଗିରିଧାରୀ ବାହିନୀପତି ଗାନ୍ଧିନଗରର ଅଧିବାସୀମାନଙ୍କ ପକ୍ଷରୁ ଏକ ପ୍ରକାଣ୍ଡ ଫୁଲମାଳ ମନ୍ତ୍ରୀଙ୍କ ଗଳାରେ ଲମ୍ୱାଇ ଦେଲେ । ସଙ୍ଗେ ସଙ୍ଗେ ମନ୍ତ୍ରୀ ମହୋଦୟ ଯୋଡ଼ହସ୍ତରେ ଜନତାକୁ ନମସ୍କାର କଲେ । ଜନତା ମଧ୍ୟ କରତାଳି ଦ୍ୱାରା ମନ୍ତ୍ରୀଙ୍କୁ ସ୍ୱାଗତ କଲେ । ମନ୍ତ୍ରୀଙ୍କ କାର୍ ଭିତରୁ ଭାଗୀରଥ ମହାପାତ୍ର ଓ ଜୟ ହନୁମାନ ଅଗ୍ରବାଲା ହସ ହସ ମୁହଁରେ ବାହାରି ଆସି ଜନତାଙ୍କୁ ଅଭିବାଦନ ଜଣାଇଲେ ।

ଠାକୁରାଣୀଙ୍କ ବରଗଛ ମୂଳେ ସଭା ହେବ ବୋଲି ଆଗରୁ ସବୁ ବ୍ୟବସ୍ଥା କରା ଯାଇଥିଲା । କେଉଁଠାରୁ ସାତ ଆଠଟି ଖଟ ଅଣା ଯାଇ ସଭାମଂଚ ପ୍ରସ୍ତୁତ ହୋଇଥିଲା । ବରଗଛ ଡାଳରୁ ହାତଟଣା ରିକ୍‌ସା ଛବି ଥିବା ଏକ ବିରାଟ କାଗଜପଟା ଝୁଲୁଥିଲା । ହାତଟଣା ରିକ୍‌ସା ଛବି ତଳେ ଲେଖାଥିଲା – ଭାଗୀରଥ ମହାପାତ୍ରଙ୍କୁ ଭୋଟ୍ ଦିଅନ୍ତୁ । ସଭାମଂଚରେ ମାଇକ୍ ଖଂଜା ହୋଇଥିଲା ଓ ସଭା ପରେ ପବ୍ଲିକ୍ ରିଲେସନ୍ ଡିପାର୍ଟମେଣ୍ଟ୍ ପକ୍ଷରୁ ଚଳଚ୍ଚିତ୍ର ପ୍ରଦର୍ଶନ ହେବ ବୋଲି ପବ୍ଲିକ୍ ରିଲେସନ୍ ଅଫିସର୍ କେଲୁ ମହାନ୍ତି ସଦଳବଳେ ଉପକରଣ ସହ ଜିପ୍ ଗାଡ଼ିରେ ଆସି କେତେବେଳୁ ପହଂଚି ସାରିଥିଲେ ।

ମନ୍ତ୍ରୀ ରାଧିକାଚରଣ ତାଙ୍କ ସ୍ୱଭାବ ସୁଲଭ ହସ ହସ ମୁଖରେ ପ୍ରଥମେ ସମବେତ ଜନତା ମଧ୍ୟରୁ କାହାରି କାହାରି ସଂଗେ ଆଳାପ କରିବାକୁ ଲାଗିଲେ । ତାଙ୍କ ଡାହାଣ ପାର୍ଶ୍ୱରେ

ଭଗୀରଥ ମହାପାତ୍ର ଉପସ୍ଥିତ ରହି ଜଣ ଜଣ କରି ଗାନ୍ଧିନଗରର ବାସିନ୍ଦାମାନଙ୍କୁ ଚିହ୍ନାଇ ଦେଇଥିଲେ । ପ୍ରଥମେ ଭଗୀରଥଙ୍କ ଦୃଷ୍ଟି ପଡ଼ିଲା ଘନିଆ ଉପରେ । ଘନିଆକୁ ପାଖକୁ ଡାକି ଭଗୀରଥ କହିଲେ, 'ଘନ ନାୟକ ଗାନ୍ଧି ନଗରର ଜଣେ ବିଶିଷ୍ଟ ବ୍ୟକ୍ତି । ସତ୍ୟାଗ୍ରହରେ ଯୋଗଦେଇ ଜେଲ୍ ଯାଇଥିଲେ ।' ରାଧିକାଚରଣ ଘନ ନାୟକଙ୍କୁ ଆଲିଙ୍ଗନ କଲେ । କହିଲେ 'ଦେଖନ୍ତୁ ଘନବାବୁ, ଆମେ ଯେଉଁଥିପାଇଁ ସ୍ୱାଧୀନତା ଆଣି ଥିଲେ, ତାହା ଏ ଯାଏଁ ହାସଲ ହୋଇନାହିଁ । ଆପଣଙ୍କ ପରି କର୍ମୀମାନେ ଆଜି ଆଗେଇ ଆସିଲେ ଭଗୀରଥ ବାବୁ ଜୟଯୁକ୍ତ ହୋଇ ପାରିବେ ।'ଏହା କହି ମନ୍ତ୍ରୀ ମହୋଦୟ ତାଙ୍କ ବେକରୁ ଫୁଲମାଳ ବାହାର କରି ଘନ ନାୟକ ଗଳାରେ ଲମ୍ଭାଇ ଦେଲେ । ଏ ଅପୂର୍ବ ଦୃଶ୍ୟରେ ସ୍ଥାନଟି ସମବେତ ଜନତାର କରତାଳିରେ କମ୍ପି ଉଠିଲା ।

ଗାନ୍ଧି ମହାତ୍ମାଙ୍କ ଡାକରେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ଜେଲ୍ ଯାଇଥିବା ଘନ ନାୟକ ପୁଣି ଯେମିତି କୋଡ଼ିଏ ବର୍ଷ ପଛକୁ ଫେରିଗଲା । ମନ୍ତ୍ରୀ ତାକୁ ଆଲିଙ୍ଗନ କଲାବେଳେ ମନ୍ତ୍ରୀଙ୍କ ଦେହରୁ ବାହାରୁଥିବା ଅତର ବାସ୍ନାରେ ସେ ଅଭିଭୂତ ହୋଇ ପଡ଼ିଥିଲା । ପରମ ଉତ୍ସାହରେ ସେ କହିଲା, 'ହଜୁର୍, ଆମେ ସବୁବେଳେ ମହା ଜନତା ପାର୍ଟିକୁ ଭୋଟ୍ ଦେଇ ଆସିଚୁ । ଆମ ଦେଶରୁ ଗୋରା ସାହେବମାନଙ୍କୁ ମହା ଜନତା ପାର୍ଟି ତଡ଼ିଚି । ଆମେ ହରିଜନମାନେ ମହା ଜନତା ପାର୍ଟିକୁ ଭୋଟ ଦେବୁ ।'

ମନ୍ତ୍ରୀ ରାଧିକାଚରଣ ଘନ ନାୟକଙ୍କ ପିଠି ଥାପୁଡ଼ାଇ ଅଳ୍ପ ଦୂରରେ ଠିଆ ହୋଇଥିବା ହରିଜନ ଯୁବତୀଟିକୁ ଡାକିଲେ । ସତର ଅଠର ବର୍ଷର ସେଇ ଯୁବତୀଟି ଲାଜରେ ସଂକୁଚିତ ହୋଇ ଠିଆ ହୋଇଥିଲା । ସେ ପିନ୍ଧିଥିବା ଲୁଗାଟି ଏତେ ଛୋଟ ଥିଲା ଯେ ତାର ଶରୀରର ସମସ୍ତ ଅଂଶ ସେଥିରେ ଆବୃତ୍ତ ହୋଇ ପାରୁନଥିଲା । ମନ୍ତ୍ରୀ କିପରି ଦେଖାଯାନ୍ତି ବୋଲି କୁତୁହଳରେ ନିକଟକୁ ଲାଗି ଆସିଲା ବେଳେ ସେ କିନ୍ତୁ ଏଭଳି ବିପଦର ଆଶଙ୍କା କରି ନଥିଲା ।

ମନ୍ତ୍ରୀ ଯୁବତୀଟିର ହାତ ମୁଠାକୁ ଧରି ପଚାରିଲେ 'ତୁମର ନାଆଁ କ'ଣ ?'

ଯୁବତୀଟି ଉତ୍ତର ଦେଲା, 'ଦରମରି ।'

ମନ୍ତ୍ରୀ ପଚାରିଲେ, 'ତୁମେ କଣ କରୁଛ ?'

'ଡାକ୍ତରଖାନାରେ କାମ କରୁଚି ।'

'ଭଲ କଥା । ଆମ ଓଡ଼ିଶାରେ ବର୍ତ୍ତମାନ ନର୍ସମାନଙ୍କର ବଡ ଅଭାବ । ତୁମ ପରି ଝିଅମାନେ ଆଗେଇ ଆସିବା ସୁଖର କଥା ।'

ଭଗୀରଥ ମନ୍ତ୍ରୀଙ୍କ ତ୍ରୁଟି ସଂଶୋଧନ କରିଥିଲେ, 'ଆଜ୍ଞା, ସେ ସୁଇପର କାମ କରୁଥିବ ।'

ମନ୍ତ୍ରୀ ସ୍ମିତ ହସି ମୁଣ୍ଡ ହଲାଇଲେ ।

ଗାନ୍ଧିନଗରର ଅଧିବାସୀଙ୍କ ସହିତ କିଛି ସମୟ ଆଳାପ କଲା ପରେ ମନ୍ତ୍ରୀ ମହୋଦୟ

ସଦଳବଳେ ସଭାମଂଚ ଉପରେ ବସିଲେ । ଏହା ମଧ୍ୟରେ ସ୍ଥାନଟି ବେଶ୍ କୋଳାହଳମୟ ହୋଇ ସାରିଥିଲା । ଏପରିକି କେଉଁଠୁ କେମିତି ଖବର ପାଇ ଗୋଟିଏ ଦୁଇଟି ଖିଲିପାନ ଦୋକାନୀ ସେମାନଙ୍କ ପସରା ଆଣି କିଛି କିଛି କିଣା ବିକା ଆରମ୍ଭ କରି ଦେଇଥିଲେ । ଦୁଇଟି ହରିଜନ ବାଳିକା ମନ୍ତ୍ରୀ ଓ ଭଗୀରଥଙ୍କ ଗଳାରେ ଗୋଟିଏ ଲେଖାଏଁ ଫୁଲମାଳ ଲମ୍ୱାଇ ଦେଲା ପରେ ସଭାକାର୍ଯ୍ୟ ଆରମ୍ଭ ହେଲା ।

ପ୍ରଥମେ ସାତ ଆଠଟି ବାଳକ ବାଳିକା କୋମଳ କଣ୍ଠରେ ମନ୍ତ୍ରୀଙ୍କ ଉଦ୍ଦେଶ୍ୟରେ ସ୍ୱାଗତ ଗୀତିକା ଗାନକଲେ -

ଅତିଥି ହେ ତୁମେ ଆସିଚ ଆଜି
ଆମ କୁଟୀରେ,
ଆନନ୍ଦ ଲହରୀ ଯାଇଛି ଖେଳି
ସବୁରି ଘରେ ।
ଜୀବନରୁ ବଡ଼ ମଣିଚ ତୁମେ
ଜନମ ଭୂଇଁ,
କେତେ ସେବା ତ୍ୟାଗ କରିଚ ତୁମେ
ଭାରତ ପାଇଁ ।

ସ୍ୱାଗତ ଗୀତିକା ପରେ ଗାନ୍ଧି ନଗରର ବାସିନ୍ଦାମାନଙ୍କ ପକ୍ଷରୁ ଗିରିଧାରୀ ବାହିନୀପତି ମାନପତ୍ର ପଢ଼ିବାକୁ ଲାଗିଲେ ।

ମାନ୍ୟବର ଜଙ୍ଗଲ ବିଭାଗ ମନ୍ତ୍ରୀ ଶ୍ରୀଯୁକ୍ତ ରାଧିକାଚରଣ ଦାସ ମହୋଦୟ !

ଆପଣଙ୍କର ଶୁଭାଗମନରେ ଆଜି ଗାନ୍ଧିନଗରର ଜନତା ହର୍ଷୋତ୍‌ଫୁଲ୍ଲ । ଆପଣଙ୍କ ପରି ତ୍ୟାଗୀ, କର୍ତ୍ତବ୍ୟ ପରାୟଣ, ଦରିଦ୍ର ଜନତାର ପରମ ବନ୍ଧୁଙ୍କର ଆଗମନକୁ ଗାନ୍ଧିନଗରର ଅଧିବାସୀଗଣ ବହୁ କାଳରୁ ଅପେକ୍ଷା କରି ରହିଥିଲେ । ଆଜି ସେହି ପବିତ୍ର ମୁହୂର୍ତ୍ତଟି ଉପସ୍ଥିତ । ଆପଣଙ୍କ ସ୍ୱାଗତ ପାଇଁ ଏଠାରେ ଗାନ୍ଧିନଗରର ଆବାଳବୃଦ୍ଧବନିତା ସମବେତ ହୋଇଛନ୍ତି । ଆପଣ ସେମାନଙ୍କ ହୃଦୟର ଅନାବିଳ ଭକ୍ତି ଅର୍ଘ୍ୟ ଗ୍ରହଣ କରନ୍ତୁ ।

ହେ ମହାତ୍ମନ୍ । ଆପଣଙ୍କ ପରି ଦୟା ଓ କରୁଣାର ପ୍ରତିମୂର୍ତ୍ତିଙ୍କ ଆଗମନରେ ପୁରୀ ସହରର ଏହି ଅବହେଳିତ ହରିଜନ ଜାତିର ହୃଦୟରେ ଆଶାର ସଂଚାର ହୋଇଅଛି । ଇଂରେଜମାନଙ୍କ ଶାସନ କାଳରେ ଗାନ୍ଧିନଗରର ଉନ୍ନତି ପାଇଁ କୌଣସି ଦୃଷ୍ଟି ଦିଆ ଯାଇ ନଥିଲା । ଆମ୍ଭମାନଙ୍କ ଲୋକପ୍ରିୟ ସରକାରଙ୍କ ଉଦ୍ୟମରେ ଅଧୁନା ଏହି ଅଂଚଳରେ ବହୁ ପ୍ରଗତି ସାଧିତ ହୋଇ ସାରିଲାଣି । ପରମ ଆନନ୍ଦର ବିଷୟ ଏହି ଯେ, ହରିଜନ ଭାଇଭଉଣୀମାନେ ବର୍ତ୍ତମାନ ସମାଜର ଅନ୍ୟମାନଙ୍କ ସହିତ ସମକକ୍ଷ ହେବାକୁ ଉଦ୍ୟମ ଆରମ୍ଭ କରି ଦେଲେଣି । ମହାଶୟ ! ଗାନ୍ଧିନଗରରେ ଗୋଟିଏ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ସ୍ଥାପନ

କରିବା ପାଇଁ ବହୁକାଳରୁ ଉଦ୍ୟମ ହୋଇ ଆସିଥିଲେ ମଧ୍ୟ ତାହା ଏ ଯାଏଁ କାର୍ଯ୍ୟକାରୀ ହୋଇ ପାରିନାହିଁ । ଏଠାରେ ସ୍ମରଣ କରାଯାଇ ପାରେ ଯେ ଗତ ସାଧାରଣ ନିର୍ବାଚନ ସମୟରେ ଆମ୍ଭମାନଙ୍କର ଲୋକପ୍ରିୟ ମୁଖ୍ୟମନ୍ତ୍ରୀ ମାନ୍ୟବର ଗୋବର୍ଦ୍ଧନ ଚୌଧୁରୀ ଗାନ୍ଧିନଗରରେ ଏହି ବିଦ୍ୟାଳୟ ନିଶ୍ଚିତ ଭାବରେ ସ୍ଥାପନ କରାଯିବ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଦୁଃଖର ବିଷୟ, ତାହା ଏ ଯାଏଁ କାର୍ଯ୍ୟକାରୀ ହୋଇପାରି ନାହିଁ । ଆମ୍ଭେମାନେ ବିନୟର ସହ ଏଥିପ୍ରତି ଆପଣଙ୍କ ଦୃଷ୍ଟି ଆକର୍ଷଣ କରୁଛୁ । ଏତଦ୍‌ବ୍ୟତୀତ ଗାନ୍ଧିନଗରରେ ଗୋଟିଏ ପାଠାଗାର ସ୍ଥାପନ ପାଇଁ ଆପଣଙ୍କ ସହଯୋଗ ପ୍ରାର୍ଥନା କରୁଛୁ । ମହାଶୟ ! ଆପଣ ଯେ କେବଳ ସ୍ୱାଧୀନତା ଆନ୍ଦୋଳନର ଜଣେ ମହାନ ସୈନିକ ଥିଲେ, ସେତିକି ନୁହେଁ, ଦେଶର ସ୍ୱାଧୀନତା ପରେ ପ୍ରଥମେ ପଶୁପାଳନ ବିଭାଗର ଉପମନ୍ତ୍ରୀ ଓ ପରେ ଜଙ୍ଗଲ ବିଭାଗର ମନ୍ତ୍ରୀ ଭାବରେ ଆପଣ ଦେଶର ସେବା କରି ଚାଲିଛନ୍ତି । ହରିଜନମାନଙ୍କ ପ୍ରତି ଯେ ଆପଣଙ୍କର ଗଭୀର ସହାନୁଭୂତି ଅଛି, ଏଥିରେ ସନ୍ଦେହ ନାହିଁ । ଗାନ୍ଧିନଗରର ଏହି ନ୍ୟାର୍ଯ୍ୟ ଦାବୀ ପ୍ରତି ଆପଣ ଦୃଷ୍ଟିପାତ କଲେ ଆମ୍ଭେମାନେ ଉପକୃତ ହେବୁ ।

ଗିରିଧାରୀ ବାହିନୀପତି ମାନପତ୍ରଟି ପାଠକରିସାରି ଅତି ସନ୍ତର୍ପଣରେ ମନ୍ତ୍ରୀଙ୍କ ମୁହଁକୁ ଅନାଇଲେ । ବିଜୁଳି ଆଲୋକରେ ମନ୍ତ୍ରୀଙ୍କ ପୃଥୁଳ ଶରୀରଟି ତାଙ୍କୁ କେଜାଣି କାହିଁକି ପୃଥୁଳତର ଦେଖାଗଲା । ମନ୍ତ୍ରୀ ପରମ ସନ୍ତୋଷରେ ପାନଖିଲ ଚାକୁଳି କରୁଥିଲେ । ଗିରିଧାରୀଙ୍କ ପରେ ଭଗୀରଥ କ'ଣ କହିବେ ବୋଲି ଠିଆ ହେଲେ, କିନ୍ତୁ ହଠାତ୍ ଲୋକ ଗହଳି ଭିତରେ କିଛି ଗୋଟାଏ ଅଘଟଣ ଆରମ୍ଭ ହୋଇଗଲା । ଭଗୀରଥ ଜନତାକୁ ଶୃଙ୍ଖଳା ରକ୍ଷା କରିବାକୁ ଯେତେ ଅନୁରୋଧ କଲେ ମଧ୍ୟ ପ୍ରବଳ ପାଟିତୁଣ୍ଡ ଭିତରେ ତାହା ନିଷ୍ଫଳ ହୋଇପଡ଼ିଲା । ଉପସ୍ଥିତ ଜନତା ଛତ୍ରଭଙ୍ଗ ଦେଇ ଏଣେ ତେଣେ ଧାଇଁବାକୁ ଲାଗିଲେ । ଅକସ୍ମାତ ବିଜୁଳି ଆଲୁଅ ସବୁ ଲିଭିଗଲା ଏବଂ ଚାରିଆଡ଼େ ବାଲି ଓ ଟେକାମାନ ବୃଷ୍ଟି ହେବାକୁ ଲାଗିଲା । କେହି କେହି 'ଷଣ୍ଢ' 'ଷଣ୍ଢ' ବୋଲି ପାଟି କରୁଥିବା ଶୁଣାଗଲା । ହଠାତ୍ କେତୋଟି ତାଳଫୋଟକା ଫାଟିବା ପରି ଶବ୍ଦରେ ପରିସ୍ଥିତି ଆହୁରି ଭୟଙ୍କର ହୋଇପଡ଼ିଲା ।

ମନ୍ତ୍ରୀ ରାଧିକାଚରଣ କେତେବେଳେ ତାଙ୍କ କାର୍‌ରେ ସେଠାରୁ ପଳାୟନ କରି ସାରିଥିଲେ । ପ୍ରାୟ ଅଧଘଣ୍ଟାକ ପରେ ପୁଣି ଆଲୋକବତୀ ସବୁ ଜଳି ଉଠିବାରୁ ଦେଖାଗଲା, ଅଳ୍ପ ସମୟ ଆଗରୁ ଯେଉଁଠାରେ ବିପୁଳ ଜନତା ସମବେତ ହୋଇଥିଲେ, ତାହା ମଶାଣି ପରି ନିର୍ଜ୍ଜନ ହୋଇପଡ଼ିଛି । ଚାରିଆଡ଼େ ଭଙ୍ଗାଇଟା ଓ ପୋଡ଼ା ତାଳଫୋଟକାମାନ ବିଛେଇ ପଡ଼ିଛି । ଠାକୁରାଣୀଙ୍କ ବରଗଛ ମୂଳେ ଗୋଟିଏ ପ୍ରକାଣ୍ଡ କଳାଷଣ୍ଢ ଶୋଇରହି ଧୀରେ ଧୀରେ ପାକୁଳି କରୁଛି । ଷଣ୍ଢଟିର ଦେହସାରା ମାଟି ଲାଗିଛି ଓ ତାର ଗୋଟିଏ ଶିଙ୍ଗ ଭାଙ୍ଗିଯାଇ ସେଥିରୁ କଞ୍ଚାରକ୍ତ ମେଂଚା ମେଂଚା ହୋଇ ତା ମୁହଁ ଉପରକୁ ବୋହି ଆସିଛି ।

ନୂତନ ମିଷ୍ଟାନ୍ନ ଭଣ୍ଡାରରେ ସଂଜବେଳକୁ ଗହଳିଟା ଟିକିଏ ଅଧିକ ମନେ ହୁଏ । ମୋଚିସାହୀର ଏଇ ଦୋକାନଟି ସମୁଦ୍ର କୂଳରୁ ବେଶୀ ଦୂର ନୁହେଁ । ତେଣୁ ସମୁଦ୍ର କୂଳକୁ ବୁଲି ବାହାରିବା ବାଟରେ କେହି କେହି କପେ ଚା' କିମ୍ବା ସାମାନ୍ୟ ଜଳଖିଆ ପାଇଁ ସାଧାରଣତଃ ଏଇଠାରେ ହିଁ ଅଟକି ଥାନ୍ତି । ଏଇ ଦୋକାନର ଚା' ଓ ରସଗୋଲାର ଖ୍ୟାତି କ୍ରମଶଃ ସାରା ପୁରୀ ସହରରେ ବ୍ୟାପି ଯାଇଛି । ପ୍ରଥମେ ଯେତେବେଳେ ହରିଦତ୍ତ କଲିକତାରୁ ଆସି ଏଠାରେ ଦୋକାନ ଖୋଲିଲା, ସେତେବେଳେ କୁଆଡ଼େ ପୁରୀର ସ୍ଥାନୀୟ ଲୋକେ ବେଶୀ ତା ଦୋକାନକୁ ଆସୁ ନଥିଲେ । ବଙ୍ଗୀୟ ଭଦ୍ରବ୍ୟକ୍ତି ଓ ଭଦ୍ରମହିଳାମାନଙ୍କ ଉପରେ ତାକୁ ନିର୍ଭର କରିବାକୁ ପଡୁଥିଲା । କଲିକତୀ ରସଗୋଲା ଓ ସନ୍ଦେଶକୁ ସ୍ଥାନୀୟ ଲୋକେ ହେୟ ଦୃଷ୍ଟିରେ ଦେଖୁଥିଲେ । ଚା'ର ମଧ୍ୟ ବିଶେଷ ଚାହିଦା ନଥିଲା । ସାଧାରଣ ଲୋକେ ପୁରୀ ବଡ଼ଦେଉଳରେ ପ୍ରସ୍ତୁତ ମିଷ୍ଟାନ୍ନକୁ ଯେ କେବଳ ପସନ୍ଦ କରୁଥିଲେ, ତା ନୁହେଁ, ଅନ୍ୟ ଯେ କୌଣସି ମିଷ୍ଟାନ୍ନ ତାଠାରୁ ନିକୃଷ୍ଟ ବୋଲି ସେମାନଙ୍କର ଧାରଣା ଥିଲା । ହରିଦତ୍ତ ବିଚରା ଈଶ୍ୱର-ବିଶ୍ୱାସୀ ଲୋକ । ପୁରୀ ମନ୍ଦିରକୁ ଯାଇ ସେ ଜଗନ୍ନାଥଙ୍କ ଭୋଗପାଇଁ ପ୍ରସ୍ତୁତ ହେଉଥିବା ଜାତି ଜାତିକା ମିଷ୍ଟାନ୍ନର ପ୍ରକାର ଓ ସ୍ୱାଦରେ ଅଭିଭୂତ ହୋଇପଡ଼ିଥିଲା । ବିଶୁଦ୍ଧ ଘିଅରେ ପ୍ରସ୍ତୁତ ବଡ଼ଦେଉଳର ମିଷ୍ଟାନ୍ନ ଯେଉଁଠାରେ ପ୍ରଚୁର ପରିମାଣରେ ମିଳେ, ସେଠାରେ କଲିକତୀ ନୂତନ ମିଷ୍ଟାନ୍ନ ଭଣ୍ଡାରର ଭବିଷ୍ୟତ କ'ଣ ?

କିନ୍ତୁ ଅବସ୍ଥା ବଦଳିଗଲା । କେବଳ ପଣ୍ଡା ପଡ଼ିଆରୀଙ୍କୁ ଛାଡ଼ି ଦେଲେ ସହରର ଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ କାହାରି ମଧ୍ୟରେ ବଡ଼ ଦେଉଳରେ ପ୍ରସ୍ତୁତ ମିଷ୍ଟାନ୍ନର ଆଉ ପ୍ରଚଳନ ନାହିଁ । ଚା'ମଧ୍ୟ କ୍ରମଶଃ ଏକ ଦୈନିକ ଆବଶ୍ୟକତାରେ ପରିଣତ ହୋଇଛି । ହରିଦତ୍ତର ସେଦିନର ସେଇ ପୁରୁଣା ଭଙ୍ଗା ଚାଳଘରଟି କୋଠାଘର ହୋଇଛି । ଟିଣ ଚୌକୀରେ ବସୁଥିବା ହରିଦତ୍ତ ଦାମିକା ଶାଗୁଆନ୍ ଚେୟାର ଉପରେ କୁଶନ୍ ପକାଇ ବସୁଛି; ସମୟ ବଦଳିଛି ।

ଏହା ଭିତରେ ମୋଚିସାହୀରେ ଆଉ କେତୋଟି ଚା'ଦୋକାନ ବି ଖୋଲିଛି । କିନ୍ତୁ ହରିଦତ୍ତର ବ୍ୟବସାୟ ଏ ଯାଏଁ ମାନ୍ଦା ପଡ଼ିନାହିଁ । ସମୁଦ୍ର କୂଳକୁ ବୁଲି ବାହାରିଥିବା ବିଦେଶୀ ଭଦ୍ରବ୍ୟକ୍ତିମାନଙ୍କ କଥା ଭିନ୍ନ; କିନ୍ତୁ ସ୍ଥାନୀୟ ବହୁ ଲୋକଙ୍କ ପାଇଁ ଗଲା କେତେବର୍ଷ ହେଲା ନୂତନ ମିଷ୍ଟାନ୍ନ ଭଣ୍ଡାର ଏକ ବନ୍ଧୁମିଳନ ସ୍ଥଳୀରେ ପରିଣତ ହୋଇଯାଇଛି । ସମୁଦ୍ରରୁ ଅଳ୍ପ ଦୂରରେ ଅପେକ୍ଷାକୃତ ପରିଷ୍କୃତ ଓ ଶାନ୍ତ ଏଇ ଅଂଚଳଟିରେ ସନ୍ଧ୍ୟା କଟାଇବା ପାଇଁ ଉଭୟ ତରୁଣ ଓ ବୃଦ୍ଧ ସମାନ ଭାବରେ ଆକୃଷ୍ଟ ହୋଇ ଆସୁଛନ୍ତି । ସମୁଦ୍ର ବିହାରରେ ବାହାରିଥିବା ତରୁଣୀମାନଙ୍କ ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ ରୂପଲୋଭୀ ତରୁଣମାନେ ଏଠାରେ ଦଳ ଦଳ ହୋଇ ବୁଲିବାର ଦୃଶ୍ୟ ଯେପରି ସ୍ୱାଭାବିକ ମନେ ହୁଏ, ବୃଦ୍ଧମାନେ ଇତସ୍ତତଃ ଆଳାପ ଆଲୋଚନା କରିବା ବା ନୂତନ ମିଷ୍ଟାନ୍ନ ଭଣ୍ଡାରରେ ବସି ଚୁପ୍ ଚାପ୍ ଚା' ପାନ କରିବାର ଦୃଶ୍ୟ ସେଇପରି ପରିଚିତ ଲାଗେ ।

ତିରିଶି ବର୍ଷର ପୁରୁଣା ନୂତନ ମିଷ୍ଟାନ୍ନ ଭଣ୍ଡାରର ପୁରୁଣା ପରିବେଶ ସବୁଦିନେ ନୂତନ ହିଁ ରହିଆସିଛି । ସହରର ଯେଉଁ ଅନ୍ଦି କନ୍ଦିରେ ଯାହା ଘଟେ, ସବୁର ଆଲୋଚନା ହୁଏ ଏଇଠାରେ । ଏଇଠାରେ କୁଆଡ଼େ ପୁରୀର ସାମ୍ବାଦିକମାନେ ପ୍ରତି ସନ୍ଧ୍ୟାରେ ସେମାନଙ୍କ ସମ୍ବାଦପତ୍ର ପାଇଁ ସମ୍ବାଦ ସଂଗ୍ରହ କରିଥାନ୍ତି । ଛାତ୍ର, ଅଧ୍ୟାପକ ଓ ପ୍ରଶାସକମାନେ ଏଇଠାରେ ଚା' କପ୍ ଓଠ ପାଖକୁ ନେଉ ନେଉ ତାର୍କିକ ଆଲୋଚନା କରନ୍ତି । କେବେ କେବେ ସେମାନଙ୍କ ଆଲୋଚନାକୁ ଶୁଣିବା ପାଇଁ ଅନ୍ୟମାନଙ୍କ ମଧ୍ୟରେ ହରିଦତ୍ତ ବି ମୋଟା ଚଷମା କାଚତଳୁ ଅନାଇ ଦିଏ । ପର ମୁହୂର୍ତ୍ତରେ କିନ୍ତୁ ପୁଣି ସେ ଆଖି ଫେରାଇ ନିଏ ତଳକୁ । ଗରାଖମାନଙ୍କଠାରୁ ପଇସା ରଖିବା, ପଇସା ଗଣିବା ଓ ବଳକା ପଇସା ଫେରାଇବା ତାର ତିରିଶି ବର୍ଷର ଅଭ୍ୟାସ । ତାର୍କିକ ଆଲୋଚନା ସାଙ୍ଗକୁ ଗୁଲିଖଟି ବି ବେଶ୍ ଜମେ ଏଠି - ସେଥିପାଇଁ ମଧ୍ୟ ଠିକଣା ଲୋକେ ଏକାଠି ହୁଅନ୍ତି ।

ମୁରାରୀ ଦାସ ଗୋଟିଏ କୋଣରେ ବସି ଚୁପ୍ ଚାପ୍ ଅନାନ୍ତି । ସେ ତ ବେଶୀ କଥା କହନ୍ତି ନାହିଁ । ତାଙ୍କ ସାଙ୍ଗେ ଗପ କରିବାକୁ ଲୋକ ବି ମିଳନ୍ତି କମ୍ । ହରିଦତ୍ତର ବାଁ ପାଖରେ ମୁରାରୀ ବସନ୍ତି - ସବୁଦିନେ ଗୋଟିଏ ଜାଗାରେ । ଟିକିଏ ଅନ୍ଧାରୁଆ ସେଇ ଜାଗାଟିରେ ପ୍ରାୟ ଆଉକେହି ବସନ୍ତି ନାହିଁ । ବେଳେ ବେଳେ ନୂତନ ମିଷ୍ଟାନ୍ନ ଭଣ୍ଡାର ଖାଲି ପଡ଼ିଥିଲା ବେଳେ ହରିଦତ୍ତ ଓ ମୁରାରୀ ଦାସ, ଦୁଇବନ୍ଧୁ ବସି କଣ ଚୁପ୍ ଚାପ୍ ହେଉଥାନ୍ତି । ବିଗତ ତିରିଶି ବର୍ଷର ବନ୍ଧୁତା ଏ ପରିଣତ ବୟସରେ ସତେ ଯେମିତି ଆହୁରି ଘନିଷ୍ଠତର ହୋଇ ଆସିଥିଲା । ମୁରାରୀ ଦାସ ପାଖରେ ଥିଲେ ହରିଦତ୍ତକୁ ପୁଣି ତିରିଶି ବର୍ଷ ପଛକୁ ଫେରିଗଲା ଭଳି ଲାଗେ । ମୁରାରୀ ଦାସ ତ ନୂତନ ମିଷ୍ଟାନ୍ନ ଭଣ୍ଡାରକୁ ଦୋକାନ ବୋଲି ଭାବନ୍ତି ନାହିଁ - ଭାବନ୍ତି ଘର ବୋଲି । ଏ ଯେତେ ଲୋକ ଆସୁଛନ୍ତି, ଯାଉଛନ୍ତି - ମୁରାରୀ ଦାସଙ୍କୁ ଛାଇ ପରି ଦିଶନ୍ତି । ନିମ୍ନ ପ୍ରାଥମିକ ଶିକ୍ଷକ ଚାକିରିରୁ ଅବସର ନେଲା ପରେ

ପିଲାମାନଙ୍କ ଆଗରେ ବକର ବକର ହେବାର ଅଭ୍ୟାସ ତାଙ୍କର ଭାଙ୍ଗିଗଲାଣି । ବେଳେ ବେଳେ ତାଙ୍କୁ ଲାଗୁଛି, ସେ ଯେମିତି ଛାତ୍ରଟିଏ ପାଲଟି ଯାଇଛନ୍ତି । ଅନ୍ୟମାନେ ଗପ କରୁଛନ୍ତି - କେତେ ବଡ଼ ବଡ଼ ବିଷୟରେ ଆଲୋଚନା କରୁଛନ୍ତି - ସେ ବୋକାଙ୍କ ଭଳି ଶୁଣୁଛନ୍ତି । ଯେତେ ଯେତେ ନୂଆ ନୂଆ କଥା ନୂଆ ନୂଆ ଲୋକଙ୍କ ଠାରୁ ସେ ଶୁଣୁଛନ୍ତି, ତାଙ୍କ କଥା କହିବା ଅଭ୍ୟାସ ସେତେ ସେତେ କମି ଯାଉଛି । ବୟସତ ଦିନକୁ ଦିନ ବଢୁଛି- ମୁଣ୍ଡ ଚନ୍ଦା ହେଲାଣି କେଉଁଦିନୁ-ମୁହଁ ଉପରେ ବୁଢ଼ୀଆଣି ଜାଲ ପରି ଗାର, କୁଜା ହୋଇ ଚାଲୁଛନ୍ତି-କିନ୍ତୁ ଦିନକୁ ଦିନ ସେ ଅନୁଭବ କରୁଛନ୍ତି, ସେ ଯେମିତି କିଛି ଜାଣିନାହାନ୍ତି ! ସାରା ଜୀବନ ଶିକ୍ଷାଦାନ କରି ସାରିବା ପରେ ସେ ଏବେ ବୁଝିଛନ୍ତି, ଆଉ ତାଙ୍କର ଦାନ କରିବାର କିଛି ନାହିଁ-ଖାଲି ଗ୍ରହଣ କରିବାର କଥା । ବେଳେ ବେଳେ ଲାଗୁଛି, ସବୁ ଯେମିତି କେଉଁଠି କଣ ବିଭ୍ରାଟ ହୋଇ ଯାଉଛି ! ସେ ଯାହା କହି ଆସିଛନ୍ତି, ଯାହା କରିବା ଉଚିତ ବୋଲି ବଡ଼ ବଡ଼ଙ୍କ ଠାରୁ ଶାସ୍ତ୍ରରୁ ଶୁଣିଛନ୍ତି ବା ପଢ଼ିଛନ୍ତି, ସବୁ ଯେମିତି ଭୁଲ୍ ବୋଲି ତାଙ୍କୁ କେହି କହି ଦେଉଛି । ନିଜ ଭିତରେ କ'ଣ ଅଣ୍ଡାଳି ହୋଇ ମୁରାରୀ ଦାସ ସଂଜ ଆଳତି ବେଳେ କିଛି ନ ବୁଝିବାଭଳି ଜଗନ୍ନାଥଙ୍କ ବଡ଼ ବଡ଼ ଗୋଲ୍ ଆଖି ଦୁଇଟାକୁ ଚାହିଁ ରହିଛନ୍ତି ଅନେକ ବେଳ-ଆଖି ଦୁଇଟା କି ପ୍ରକାଣ୍ଡ-ମୁରାରୀଙ୍କୁ ଡର ଲାଗିଛି । ସେ ଛାଟିପିଟି ହୋଇ ପଶ୍ଚିମ ଦ୍ୱାର ଦେଇ କେମିତି ଝାଳନାଳ ହୋଇ ଆସି ପହଂଚିଛନ୍ତି ନୂତନ ମିଷ୍ଟାନ୍ନ ଭଣ୍ଡାରରେ । ତାଙ୍କ ପରିଚିତ ଚୌକିଟାରେ ଲଥ୍ କରି ବସି ପଡ଼ି କହିଛନ୍ତି - 'ନଟବର, ଗିଲାସେ ପାଣି ଦିଅ । ବଡ଼ ଶୋଷ ।'

ଆଜି ବି ମୁରାରୀ ଦାସ ସଂଜବେଳେ ନୂତନ ମିଷ୍ଟାନ୍ନ ଭଣ୍ଡାରରେ ବସି ଉପସ୍ଥିତ ଭଦ୍ରବ୍ୟକ୍ତିମାନଙ୍କର ଆଲୋଚନା ଶୁଣୁଥିଲେ । ଏବେ କେତେଦିନ ହେଲା ଦୋକାନରେ ଲୋକଗହଳି ଅନୁପାତରେ ଦୋକାନର ବିକ୍ରି ପରିମାଣ ବଢ଼ି ନଥିଲେ ବି ହରିଦତ୍ତ ଦୋକାନର ସରଗରମ ବାତାବରଣରେ ଟିକିଏ ଉତ୍ସାହିତ ହୋଇ ପଡ଼ିଛି ।

ଏବେ ତ କେତେଦିନ ହେଲା ନିର୍ବାଚନ ଚର୍ଚ୍ଚାର ସବୁଠାରୁ ପ୍ରକୃଷ୍ଟ କ୍ଷେତ୍ର ହୋଇଛି ନୂତନ ମିଷ୍ଟାନ୍ନ ଭଣ୍ଡାର । ଆଜି କିନ୍ତୁ ଆଲୋଚନାରେ ଉତ୍ତେଜନା ପ୍ରକାଶ ପାଉଥିଲା ସବୁଠାରୁ ଅଧିକ । ଦୋକାନର ଗୋଟିଏ କୋଣରେ ବସି ଚା' ଖାଉ ଖାଉ ନବଘନ ମୁରାରୀଙ୍କୁ କହିଲା, 'ମଉସା, ଯେଉଁମାନେ କାଲି ଗାନ୍ଧିନଗରରେ ମନ୍ତ୍ରୀଙ୍କ ସଭାରେ ଗଣ୍ଡଗୋଳ କଲେ, ଜନତା ସେମାନଙ୍କୁ ଠିକ୍ ଚିହ୍ନେ ।'

ଗତକାଲିର ନିର୍ବାଚନ ସଭା ଓ ମନ୍ତ୍ରୀ ରାଧିକାଚରଣଙ୍କ ହଟହଟା ହିଁ ଥିଲା ଆଜିର ମୁଖ୍ୟ ଆଲୋଚନାର ବିଷୟ । ଉପସ୍ଥିତ ଭଦ୍ରବ୍ୟକ୍ତିମାନେ ଅନୁଭୂତି ବର୍ଣ୍ଣନା କରିବା ସଂଗେ ସଂଗେ କେଉଁମାନେ ସଭାରେ ଗଣ୍ଡଗୋଳ କରିଥାଇ ପାରନ୍ତି, ତାହାର ରହସ୍ୟ ଭେଦ କରିବାକୁ ଚେଷ୍ଟା କରୁଥିଲେ । ନବଘନର ପାଖେ ପାଖେ ଛାଇପରି ରହିଥିବା ମାଧବ

ପାଟିକରି କହିଲା; 'ଅର୍ଜୁନ ବାବୁ ଏ ଯାଏଁ ଗୋଟିଏ ବି ସଭା କରି ନାହାନ୍ତି । ତାଙ୍କର ସେଥିପାଇଁ ସାହସ ନାହିଁ । ଗୁଣ୍ଡା ଲଗାଇ ସେଇ କାଲି ସଭାଟାକୁ ଭଣ୍ଡୁର କରିଦେଲେ ।'

ଉପସ୍ଥିତ ସମସ୍ତେ ମାଧବ ଆଡ଼େ ଅନାଇଲେ । ଏହି ସମୟରେ କାହାର ପ୍ରତିବାଦ ଶୁଣାଗଲା – 'ତୁମେ ବୁଝି ବିଚାରି କଥା କୁହ ।'

ସମସ୍ତଙ୍କ ଦୃଷ୍ଟି ମାଧବଠାରୁ ଯାଇ ଏଇ ପ୍ରତିବାଦକାରୀଙ୍କ ଉପରେ ପଡ଼ିଲା । ପ୍ରତିବାଦକାରୀ ଥିଲେ ଜଣେ ମଧ୍ୟବୟସ୍କ ବ୍ୟକ୍ତି । ତାଙ୍କ ଚେହେରା ଦେଖିଲେ ଜଣା ପଡୁଥିଲା, ସେଠାରେ ଉପସ୍ଥିତ ସମସ୍ତଙ୍କ ଅପେକ୍ଷା ସେ ଥିଲେ ଅଧିକ ସ୍ୱାସ୍ଥ୍ୟବାନ୍ । ସେ ସାମାନ୍ୟ ମଇଳା ଧୋତି ଓ ପଂଜାବି ପିନ୍ଧିଥିଲେ । ତାଙ୍କ କପାଳରେ ସିନ୍ଦୂର କଲିଟିଏ ଭଲ ମାନୁଥିଲା । ଜଳଖିଆ ଖାଇବା ବନ୍ଦ କରି କ୍ରୋଧକଷାୟିତ ନୟନରେ ସେ ମାଧବ ଆଡ଼େ କିଛି ସମୟ ଅନାଇବା ପରେ କହିଲେ, 'ମୋ ନାଁଆ ବିଶୁନି ପଶୁପାଳକ । ତୁମେମାନେ ଯାହା କରୁଛ, କରିଯାଅ । ନିର୍ବାଚନ ସଇଲେ ତୁମର ଆମର ଫଇସଲା ।'

ପୁରୀ ସହରରେ ବିଶୁନି ପଶୁପାଳକ ଅପରିଚିତ ନୁହନ୍ତି; କିନ୍ତୁ ନୂତନ ମିଷ୍ଟାନ୍ନ ଭଣ୍ଡାରରେ ଯେଉଁମାନେ ଉପସ୍ଥିତ ଥିଲେ ସେମାନଙ୍କ ଭିତରୁ ଅନେକେ ବିଶୁନିଙ୍କ ନାମ ସହିତ ପରିଚିତ ଥିଲେ ହେଁ ତାଙ୍କୁ ଆଗରୁ ଦେଖି ନଥିଲେ । ସମସ୍ତଙ୍କ ଦୃଷ୍ଟି ତାଙ୍କ ଉପରେ ପଡ଼ିଥିବା ଦେଖି ବିଶୁନି ଯେପରି ବେଶୀ ଉତ୍ସାହିତ ହୋଇ ପଡିଲେ । ନିଶରେ ଆଙ୍ଗୁଠି ଚଳାଇ ସେ ପାଟିକରି ଉଠିଲେ, 'ଅର୍ଜୁନ ଗୋଛିକାର ଏଥର ଅଲବତ ଜିଣିବେ । ଭଗୀରଥ ବାବୁ ଗଲା ପାଞ୍ଚବର୍ଷ ଭିତରେ ପୁରୀ ସହରର ଜନସାଧାରଣଙ୍କ ପାଇଁ କିଛି କରି ନାହାନ୍ତି । ତାଙ୍କ କୋଠାଘର କିଳାପୋତା ଟଙ୍କାରେ ତିଆରି ।'

ମାଧବ ହଠାତ୍ ସ୍ୱର ନରମାଇ କହିଲା, 'ପଶୁପାଳକେ, ଆମ ଆମ ଭିତରେ ଏମିତି କଥା କଟାକଟିରେ ଫାଇଦା କ'ଣ ? ଜନସାଧାରଣ ଯାହାକୁ ଠିକ୍ ମନେ କରିବେ, ଭୋଟ୍ ଦେବେ ।'

ବିଶୁନି କିନ୍ତୁ ଏଥିରେ ଶାନ୍ତ ହେଲେ ନାହିଁ । ନିମିକି ଚୋବାଉଥିବା ଅବସ୍ଥାରେ ଓଜନିଆ ସ୍ୱରରେ କହିଲେ, 'ଆହେ ରଖ ହେ ତୁମର ଭଲଲୋକି ! ଗଦାଧର ବାବୁଙ୍କ ଦୋକାନ ଆଗରେ ଗଣ୍ଡଗୋଳ କଲାବେଳେ ଏଇ ଭଲଲୋକପଣିଆ କୁଆଡ଼େ ଥିଲା ? ଆମେ ତୁମପରି ଭଡ଼ାଟିଆମାନଙ୍କୁ ଭଲ କରି ଜାଣୁ ।

ମାଧବ ବସିବା ସ୍ଥାନରୁ ଉଠିପଡି ତରବର ହୋଇ ଆଶାବାଡିଟି ଧରି ପକାଇ ଚଢ଼ା ଗଳାରେ ପାଟିକରି ଉଠିଲା, 'କ'ଣ କହିଲ, ଭଡ଼ାଟିଆ ?'

'ହଁ-ହଁ-ଭଡ଼ାଟିଆ !' ବିଶୁନି ବି ଉଠି ଠିଆ ହୋଇପଡ଼ିଲେ ।

'ଆମେ ଭଡ଼ାଟିଆ ହେଲେ ତମେ ଗୁଣ୍ଡା !'

ବିଶୁନିଙ୍କ ପକ୍ଷରେ କିନ୍ତୁ 'ଗୁଣ୍ଡା' ବିଶେଷଣ ପ୍ରୟୋଗ ସହ୍ୟ କରିବା ଅସମ୍ଭବ

ଥିଲା । ଆଖି ପିଛୁଳାକେ ନୂତନ ମିଷ୍ଟାନ୍ନ ଭଣ୍ଡାରର ଉପସ୍ଥିତ ସମସ୍ତ ଗରାଖମାନଙ୍କ ସମ୍ମୁଖରେ ବିଶୁନି ମାଧବ କାନମୁଣ୍ଡାରେ ଦୁଇଟି ଭୁଷି ଚଢ଼ାଇ ଦେଲେ । ବିଚରା ମାଧବ ହାତରୁ ଆଶାବାଡ଼ି ଖସିପଡ଼ିଲା । ସେ ତଳେ ପଡ଼ି ଯାଉଥିବା ବେଳେ ନବଘନ କୌଣସି ପ୍ରକାରେ ତାକୁ ଧରିନେଲା ସତ; କିନ୍ତୁ ଚେୟାର୍ ଉପରେ ସେ ପ୍ରାୟ ଅଚେତ୍ ଅବସ୍ଥାରେ ପଡ଼ିଗଲା । ଉପସ୍ଥିତ୍ ଗରାଖମାନଙ୍କ ପାଇଁ ଘଟଣାଟି ଥିଲା ଅପ୍ରତ୍ୟାଶିତ । ସେମାନଙ୍କ ଭିତରୁ କେତେଜଣ ମାଧବ ଆଡ଼କୁ ଧାଇଁଗଲେ, ଆଉ କେତେ ଜଣ 'ପାଣି' 'ପାଣି' ବୋଲି ଚିତ୍କାର କରିବାକୁ ଲାଗିଲେ; ମାତ୍ର ଅଧିକାଂଶ ଏଇ ଗଣ୍ଡଗୋଳର ପରିଣତି ସଂପର୍କରେ ଆଶଙ୍କା କରି ସେଠାରୁ ଚୁପ୍‌ଚାପ୍ ଚାଲିଗଲେ ।

କିଛି ସମୟ ପରେ ମାଧବ ପ୍ରକୃତିସ୍ଥ ହୋଇ ପୁରୀରେ ପ୍ରଚଳିତ ଅସଭ୍ୟ ଭାଷାରେ ବିଶୁନି ଓ ତାଙ୍କର ପୂର୍ବପୁରୁଷମାନଙ୍କୁ ଗାଳି ଦେବାକୁ ଲାଗିଲା । ହରିଦତ୍ତ ବିଚରା ଯେତେ ବିନୀତ ହୋଇ ଅନୁରୋଧ କଲେ ବି ତାହା ଶୁଣିବା ପାଇଁ ମାଧବର ଧୈର୍ଯ୍ୟ ନଥିଲା । ଦୋକାନ ବାହାରେ କେତେଜଣ ଭଦ୍ରଲୋକ ଠିଆ ହୋଇ କ'ଣ ସବୁ ଆଲୋଚନା କରୁଥିଲେ । ମାଧବର ଗାଳି ଶୁଣିବା ପାଇଁ ଦୋକାନ ଭିତରେ ଅସହାୟ ହରିଦତ୍ତ ଓ ମୁରାରୀ ଦାସଙ୍କ ବ୍ୟତୀତ ଆଉ କେହି ନଥିଲେ । କହିବା ବାହୁଲ୍ୟ, ଯାହାଙ୍କ ଉଦ୍ଦେଶ୍ୟରେ ଏପରି ପ୍ରଚଣ୍ଡ ଗାଳି ଉଦ୍‌ଗାରିତ ହେଉଥିଲା, ସେ କେତେବେଳୁ ସେଠାରୁ ଚାଲି ଯାଇଥିଲେ ।

ସିଂହଦ୍ୱାରଠାରୁ ଅଳ୍ପ ଦୂରରେ ପରିଚିତ ପାନ ଦୋକାନଟି ପାଖରେ ଠିଆହୋଇ ଭଗୀରଥ ମହାପାତ୍ର ଲୋକଗହଳି ଲକ୍ଷ୍ୟ କରୁଥିଲେ । ସଂଜ ଆଳତି ଦର୍ଶନ ପାଇଁ ଜଗନ୍ନାଥ ମନ୍ଦିରରେ ସବୁଠାରୁ ବେଶି ଭିଡ଼ ହୁଏ ଏତିକି ବେଳେ । କେବେ କେମିତି ସୁବିଧା ପାଇଲେ ଭଗୀରଥ ଏଠାରେ ଆସି ଏମିତି ଠିଆ ହୁଅନ୍ତି । ପାନ ଚୋବାଇ ଚୋବାଇ କିଛି ସମୟ ଲୋକ ଗହଳି ଓ ସନ୍ଧ୍ୟାର ଶାନ୍ତ ଧାର୍ମିକ ପରିବେଶ ଅନୁଭବ କରନ୍ତି । କେତେଜଣ ବନ୍ଧୁଙ୍କ ସହିତ ଦେଖା ବି ହୋଇଯାଏ ଆଳାପ ଆଲୋଚନା ଜମେ । ରାତି ଟିକିଏ ବେଶୀ ହେଲେ ସେ ଫେରନ୍ତି, କେବେ କେବେ ମହାପ୍ରସାଦ କିଣି ନିଅନ୍ତି ଘରକୁ, କାଂଚନ ଦେବୀଙ୍କୁ ଖୁସି କରିବା ପାଇଁ ।

ନିର୍ବାଚନ ପ୍ରଚାରରେ ବ୍ୟସ୍ତ ରହି ଅନେକ ଦିନ ହେଲା ଭଗୀରଥ ଏଆଡ଼େ ଆସିପାରି ନଥିଲେ । ଆଜି ତାଙ୍କୁ ଏଠାରେ ବେଶ୍ ହାଲୁକା ଲାଗୁଥିଲା । ନିର୍ବାଚନ କୋଳାହଳଠାରୁ ଏ କୋଳାହଳ ଥିଲା ଏକାନ୍ତ ଭିନ୍ନ । ଦଳ ଦଳ ପୁରୁଷ ନାରୀ ଦେଉଳ ଭିତରକୁ ଯାଉଥିଲେ, ପୁଣି ଦେଉଳ ଭିତରୁ ବାହାରି ଆସୁଥିଲେ । ଭଗୀରଥଙ୍କୁ ଲାଗିଲା, ସେମାନେ ହିଁ ପ୍ରକୃତରେ ସୁଖୀ । ସେମାନଙ୍କ ସବୁ ଦୁଃଖ ଅଭିମାନ ଜଗନ୍ନାଥଙ୍କୁ ଜଣାଇ ଦେଲେ ସେମାନେ ଯେମତି ନିଶ୍ଚିନ୍ତ । ସେମାନେ ଆସୁଛନ୍ତି, ଯାଉଛନ୍ତି–ସବୁଦିନେ ସେଇ ଏକା ଦୃଶ୍ୟ–କେଉଁ ଦୂର ଅତୀତରୁ କେଜାଣି, ପିମ୍ପୁଡ଼ିଧାର ପରି ଏମିତି ମଣିଷର ଧାର ଛୁଟି ଆସୁଛି ଏଠାକୁ । ଆକାଶଉଞ୍ଚ ଦେଉଳ ଚାରି ପାଖେ ଦେଶୀ ବିଦେଶୀ ମଣିଷର ଧାର–ସେମାନେ କ'ଣ ଖୋଜୁଛନ୍ତି ଯୁଗ ଯୁଗ ଧରି ? ଏତେ ବଡ଼ ଦେଶର ଏତେ କିସମର ଲୋକଙ୍କୁ ଏକାଠି କରୁଛି ଏଇ ଦେଉଳ–କଣ ଅଛି ଏଇ ପଥରଗଢ଼ା ଦେଉଳରେ ?

ଭଗୀରଥ ମହାପାତ୍ର ବଡ଼ ଦେଉଳକୁ ପ୍ରାୟ ଯାଆନ୍ତି ନାହିଁ । ଯଦି କେବେ ଯାଆନ୍ତି, କାଂଚନ ଦେବୀଙ୍କ ଅନୁରୋଧରେ । କାଂଚନ ଦେବୀ କିନ୍ତୁ ବଡ଼ ଦେଉଳରେ ପଶିଲେ

ଛୋଟ ବଡ଼ ସବୁ ଠାକୁରଙ୍କ ପାଖରେ ମୁଣ୍ଡିଆ ମାରି ମାରି ଘଣ୍ଟା ଘଣ୍ଟା ବିତାନ୍ତି । କାଶୀବିଶ୍ୱନାଥଙ୍କଠାରୁ ଆରମ୍ଭ କରି କାକ ଚତୁର୍ଭୁଜ ଯାଏ, କେହି ବାଦ୍ ପଡ଼ନ୍ତି ନାହିଁ । ସେଥିରେ ପୁଣି କାହା ପାଖରେ ଘିଅ ଦୀପ ବସିବ, କାହା ପାଖେ ଜଣାଣ ବୋଲା ହେବ, କାହାକୁ ମାଳ ଲାଗି କରାହେବ, ତାହା ମଧ୍ୟ ପୂର୍ବରୁ ନିର୍ଦ୍ଦିଷ୍ଟ । ବିମଳାଙ୍କୁ ମନ୍ଦାର ମାଳ ଲାଗି କରିବା ଯେମତି ଜରୁରୀ, ଲକ୍ଷ୍ମୀଙ୍କ ଜଗମୋହନରେ କିଛି ସମୟ ବସିବା ସେମିତି ଦରକାରୀ । ଭଗୀରଥ ନାସ୍ତିକ ନୁହନ୍ତି, କିନ୍ତୁ ଦେଉଳରେ ଏତେ ସମୟ ରହିବାକୁ ତାଙ୍କୁ ସମୟ କାହିଁ ?

'ମହାପାତ୍ରେ, ନମସ୍କାର ।' ଅନ୍ୟମନସ୍କ ଭଗୀରଥ ଅଭ୍ୟାସ ବଶତଃ ପ୍ରତି ନମସ୍କାର କରି ଦେଖିଲେ, ତାଙ୍କ ସମ୍ମୁଖରେ ଅଧର ଦୟିତାପତି ଠିଆ ହୋଇଛନ୍ତି । ଦୟିତାପତି ଦେଉଳରୁ ଫେରୁଛନ୍ତି ନିଶ୍ଚୟ । ପରିଧେୟ ଈଷତ୍ ମଇଳା ଗୋଟିଏ ଧୋତି, କାନ୍ଧରେ ପାଚିଲା ଗାମୁଛା । ବାଁ ହାତରେ ଅଭଡ଼ା କୁଡୁଆଟିଏ ଉପରକୁ ଟେକି ଧରିଛନ୍ତି, ଡାହାଣ ହାତରେ ଓଳିଏ ଡାଲି । ଅଭଡା ଓ ଡାଲିର ବାସ୍ନା ଭଗୀରଥଙ୍କ ନାକରେ ବାଜିଲା । ଦୟିତାପତିଙ୍କ ପଛେ ପଛେ ତାଙ୍କର ଆଠ ଦଶ ବର୍ଷର ଗୋଟିଏ ପୁଅ । ଦୟିତାପତିଙ୍କ ମୁଖ ପ୍ରସନ୍ନ ।

'ଆଉ ଖବର କ'ଣ ?' ଭଗୀରଥ ପଚାରିଲେ । ଦୟିତାପତି କହିଲେ, 'ମାହାପ୍ରୁଙ୍କ ସକାଳ ଧୂପ ଉଠିଲା !'

ଭଗୀରଥ କିନ୍ତୁ ଅନ୍ୟ କିଛି ଖବର ଚାହୁଁଥିଲେ । ସ୍ୱର ନରମାଇ କହିଲେ, 'ନାଇଁ ମ, ଆମ କଥା ମନେ ଅଛିଟି ? ତମ ସାଇ ଆଡ଼େ ଦିଥର ଗଲିଣି । ନବଘନ କହୁଥିଲା, ତମ ସାଇରୁ ଅର୍ଜୁନ ଗୋଟିଏ ବି ଭୋଟ ପାଇବ ନାହିଁ । ଆଉ ଭାଇ, ଏତେବେଳେ ଟିକିଏ-'

'କି କଥା ଯେ-କି କଥା ଯେ । ଆପଣ ଆମର ପୁରୁଣା ନେତା । ଆପଣଙ୍କୁ ଭୋଟ ନଦେଇ ସେ ମେଂଚଡ ଟୋକାଟାକୁ ଭୋଟ୍‌ଦବୁ ?'- ଦୟିତାପତି ଚଢ଼ା ଗଳାରେ କହିଲେ- 'କିନ୍ତୁ ଆଜ୍ଞା, ଗରିବ ଗୁହାରି ଶୁଣା ହେଲା ନାଇଁ । ଏତେ ସରକାରୀ ଟଙ୍କା କିଏ କୁଆଡେ ବୋହି ନଉଚନ୍ତି । ଆମ ଗୋସାଣିଯାତ ପାଇଁ କିଛି ଟଙ୍କା ଯୋଗାଡ଼ ହଉ ନାଇଁ । ସେତିକି କରିଦେଲେ ଆଜ୍ଞା, ଆସ ସାଇରୁ ପୁଣି ଜାକଜମକରେ ସମ୍ପାତି ବାହାରିବ । ଏଡେ ବଡ ଯାତ, ଯାହା କହନ୍ତୁ ବଡ଼ ମାନ୍ଦାଳିଆ ଧରିଲାଣି । ଯେ ଟୋକାଏ ଦି' ଅକ୍ଷର ପଢ଼ିଲେ, ଆଉ ସାଇ କାମରେ ମନ ଦଉ ନାହାନ୍ତି ।'

ଭଗୀରଥ କହିଲେ, 'ବୁଝିଲ ଦୟିତାପତିଏ, ଓଡ଼ିଆ ଜାତିର ସଂସ୍କୃତି ଏଇ ଗୋସାଣି ଯାତ ହିଁ ବଂଚାଇ ରଖିଛି । ସେଥିପାଇଁ ସରକାରୀ ସାହାଯ୍ୟ ଯେମିତି ହେଲେ ଆଣିବାକୁ ହେବ ।'

ଅଧର ଦୟିତାପତି ଏଥିରେ ଉତ୍ସାହିତ ହୋଇପଡ଼ିଲେ । କହିଲେ, 'ଆପଣ ନିଜେ

କହୁନାହାନ୍ତି, ଆମର ସେ ଗୋସାଣି ଯାତ ସେ ସାଇଯାତ, ଆଉ ଅଛି ? ସେ ନାଗା, ସଟରା, ସନ୍ୟାସୀ ମେଢ଼ ଆଉ କାହିଁ ? ଆଗର ସେ ଜେଗାଘର, ସେ ପହିଲିମାନମାନେ କାହାନ୍ତି ?

ଭଗୀରଥ ଦୟିତାପତିଙ୍କୁ ପୂରାପୂରି ସମର୍ଥନ କଲେ । ଦୟିତାପତି କହିଲେ, 'ହଉ ଆଜ୍ଞା, ଗରିବ ମେଲାଣି ନଉ ।' ଦୟିତାପତି ହାତରେ ଅଭଡ଼ା କୁଡୁଆ, ଡାଲି ଓଳି ଧରି ଦୋଳମଣ୍ଡପ ସାହୀ ଭିତରେ ଅଦୃଶ୍ୟ ହୋଇଗଲେ ।

ସିଂହ ଦ୍ୱାରର ଗେଟିଏ କଡ଼ରେ-ଯେଉଁଠି ଧାଡ଼ି ଦୋକାନରେ ଜଗନ୍ନାଥଙ୍କ ବାଳଭୋଗ ସାମଗ୍ରୀ ବିକ୍ରି ହୁଏ-ଦଳେ ଲୋକ ବସି ଏକନିଷ୍ଠ ଭାବରେ ଗିନି ଓ ଖୋଳକରତାଳ ବଜାଇ ବଜାଇ ଚିତ୍କାର କରୁଥିଲେ - 'ଜଗାକାଳିଆ ଦଗା ଦେଲା କାହିଁକି, ମୋ ଦୁଃଖ ତାକୁ ଲଗା ନାହିଁକି ?' ସିଂହଦ୍ୱାରର ଲୋକ ଗହଳି ଓ ହାଉଜାଉ ଭିତରେ ବି ସେମାନଙ୍କ ଚିତ୍କାର ଡୁବି ଯାଉ ନଥିଲା । ରାତି ଯେତେ ଯେତେ ବେଶୀ ହେଉଥିଲା, ଏହି ଭକ୍ତମାନେ ସେତେ ସେତେ ଅଧିକ ଉତ୍ସାହରେ ଚିତ୍କାର କଲା ଭଳି ମନେ ହେଉଥିଲା । ହଠାତ୍ କାହିଁକି ଭଗୀରଥଙ୍କର ଇଛା ହେଲା, ସେହି ଭକ୍ତମାନଙ୍କ ମେଳରେ ବସି ମନଇଛା ଖଂଜଣି ପିଟନ୍ତେ ଓ ଜୀବନର ସବୁ ମାନ ଅଭିମାନ, ସବୁ ଅଭିଯୋଗ ସେଇ ଚକାଡୋଳାଙ୍କ ଉଦ୍ଦେଶ୍ୟରେ ଅର୍ପଣ କରି ଦିଅନ୍ତେ ! ଭକ୍ତମାନଙ୍କ ପ୍ରତି ତାଙ୍କର ଈର୍ଷା ହେଲା । ମନେ ପଡ଼ିଲା ବାପାଙ୍କ କଥା । ତମ୍ବା ପରି ଦେହର ରଙ୍ଗ, ଚନ୍ଦାମୁଣ୍ଡ; କାନ୍ଧରେ ଶୁଭ୍ର ଉପବୀତ, ବେକରେ ରୁଦ୍ରାକ୍ଷ ମାଳି । ପ୍ରତି ସନ୍ଧ୍ୟାରେ କଚେରୀରୁ ଫେରି ଜଗନ୍ନାଥଙ୍କ ସଂଜଆଳତି ଦେଖିବାକୁ ଆସନ୍ତି । କି ଖରା, କି ବର୍ଷା କେବେ ଦିନେ ସେଥିରେ ବ୍ୟତିକ୍ରମ ହେବା ଭଗୀରଥଙ୍କ ସ୍ମରଣ ହେଲା ନାହିଁ । ବାପା ବି ଦିନେ ଦିନେ ଏମିତି ସିଂହଦ୍ୱାରରେ ହରିନାମ କୀର୍ତ୍ତନରେ ମଜ୍ଜି ଯାଉଥିଲେ । ଘରକୁ ଫେରୁଥିଲେ ରାତି ଅଧକୁ । ବୋଉ ମିଂଜି ମିଂଜି ଲଣ୍ଠନଟି ପାଖରେ କାନ୍ଥକୁ ଆଉଜି ସେମିତି ବସିଥିବ ପଥର ମୂର୍ତ୍ତି ପରି । ସାରା ସାହୀଟା ଶୂନ୍‌ଶାନ୍ ଲାଗୁଥିବ । କେବଳ ମଝିରେ ମଝିରେ ନଅର କାଳୀଙ୍କ ଦେଉଳର ସେଇ ବୁଢ଼ା ପୂଜାରୀର ଘାଗଡା ସ୍ୱର ଶୁଭୁଥିବ । ବୁଢ଼ାକୁ ରାତିରେ ନିଦ ନହେଲେ ସେ ସଂସ୍କୃତ ସ୍ତୋତ୍ର ସବୁ ବଡ ପାଟିକରି ଗାଏ । ରାତି ଯେତେ ବେଶୀ ହୁଏ, ସମଦ୍ର ଗର୍ଜନ ସେତେ ସେତେ ବଢ଼ିବାକୁ ଲାଗେ । ଭଗୀରଥ ପାଠ ପଢ଼ିସାରି କେବେ ପଖାଳ କେବେ ଗରମ ଭାତ ଖାଇ ଶୋଇ ପଡ଼ିଥାନ୍ତି । କେବେ ଦିନେ ଦିନେ ତାଙ୍କୁ ନିଦ ହୋଇ ନଥାଏ । ମାଆ ପୁଅ ବସି ବସି ଢୁଳୋଉଥାନ୍ତି । ଦୂରରୁ ବାପାଙ୍କ କାଶ ଶୁଭେ- ।

ଭଗୀରଥଙ୍କ ଆଖି ଜକେଇ ଆସିଲା । ପିଲାଦିନର ସ୍ମୃତି ସବୁ ଆକାଶର ତାରାପରି କେତେ ଚିହ୍ନା ଅଥଚ କେତେ ସୁଦୂର । ଆଜି ଓ ସେଦିନ ଭିତରେ କେତେ ତଫାତ୍ ! ଅଥଚ ସେ ତ ସେଇ ଭଗୀରଥ ମହାପାତ୍ର-ପୁରୁଣା ନଅର ଗଳିର ସେଇ ଭଗି । ଆଜିର

ଜନନେତା ଆଡ୍‌ଭୋକେଟ୍ ଭଗୀରଥ ମହାପାତ୍ର ଓ ନଅର ଗଳିର ଭଗି ମଧ୍ୟରେ କ'ଣ ତଫାତ୍ କିଛି ନାହିଁ ? ହୁଏତ ଅଛି । ନଅଳ ଗଳିର ସେଇ ପୁରୁଣା ନୂଆଣିଆଁ ଚାଳଘର ଓ ସମୁଦ୍ରକୂଳର ପ୍ରକାଣ୍ଡ ଦୁଇ ମହଲା କୋଠା ଭିତରେ ତଫାତ୍ ନ ରହିବ କିପରି ? ସମୟ ବଦଳିଛି । ସମୁଦ୍ରର ଲହଡ଼ିସବୁ କୂଳରେ ମଥା କୋଡ଼ି ଯେତେ କାନ୍ଦିଲେ ବି ସମୟକୁ ଦଣ୍ଡେ ଅଟକାଇ ପାରି ନାହାନ୍ତି । ସେଇ ସମୟ ଢେଉରେ ସିଏ ବା କିଏ-ସାମାନ୍ୟ ପତ୍ରଟିଏ-ଅଥଳ ପାଣି ଭିତରେ ଭାସି ଭାସି ଚାଲିଛନ୍ତି । ସେ କୁଆଡୁ ଆସିଲେ ଜାଣି ନାହାନ୍ତି । କୁଆଡ଼େ ଭାସିଯିବେ ଜାଣି ନାହାନ୍ତି । ସେ ଖାଲି ଭାସୁଛନ୍ତି-ଭାସୁଛନ୍ତି । ଯେତେବେଳେ ଆଖି ଖୋଲୁଛି-ଦେଖୁଛନ୍ତି, ଚାରିଆଡ଼ ଫାଙ୍କା ଫାଙ୍କା ଉପରେ ଫାଙ୍କା ଆକାଶ-କେହି କୁଆଡ଼େ ଦେଖା ଯାଉ ନାହାନ୍ତି - ସେ ଏକୁଟିଆ ଅଥଳ ପାଣିରେ ଭାସି ଯାଉଛନ୍ତି ।

ବହୁ ଦିନର ଅବ୍ୟବହୃତ ପୁରୁଣା ରାଲେ ସାଇକେଲ ଖଣ୍ଡକ ଚଢ଼ି ଆଗେ ଆଗେ ଚାଲିଥିଲେ ଭଗୀରଥ । ପଛରେ ସାଇକେଲ ଆରୋହୀମାନଙ୍କର ଛୋଟ ଏକ ଶୋଭାଯାତ୍ରା । ସାଇକେଲ ଶୋଭାଯାତ୍ରାରେ ଥିଲେ ମହା ଜନତା ପାର୍ଟିର ସଭାପତି ଗିରିଧାରୀ, କର୍ମୀ ନବଘନ, ଜୟ ହନୁମାନ, ଘନିଆ ନାୟକ, ରାବଣା ଦୋରା ଓ କେତେ ଜଣ କଲେଜ ଛାତ୍ର । ଉଦ୍‌ଦ୍ୱିଆ ଖରାବେଳେ ସେମାନେ ସହର ପରିକ୍ରମାରେ ବାହାରିଥିଲେ । ସମସ୍ତଙ୍କ ସାଇକେଲ ହାଣ୍ଡଲରେ ହାତଟଣା ରିକ୍‌ସା ଛବି ଥିବା ପୋଷ୍ଟର । ଭଗୀରଥ ହାତ ଟେକି ଚିତ୍କାର କରୁଥିଲେ- 'ଆମର ଦାବୀ' ଅନ୍ୟମାନେ ଉତ୍ତର ଦେଉଥିଲେ- 'ସମାଜବାଦ' । ଚିତ୍କାର କରି କରି ସେମାନଙ୍କ ତଣ୍ଟି ବସି ଯାଇଥିଲା । ଝାଳରେ ଦେହର ଜାମା ତିନ୍ତି ଯାଇଥିଲା; ତଥାପି ସେମାନେ ହଟି ଯାଉ ନଥିଲେ । ସେମାନେ 'ସମାଜବାଦ' ପ୍ରତିଷ୍ଠା କରିବାକୁ ସତେ ଯେମିତି ବଦ୍ଧ ପରିକର ! ରାସ୍ତାରେ ଧୂଳି ଉଡାଇ ସେମାନେ ଛୁଟି ଥିଲେ । ସେମାନଙ୍କ ଚିତ୍କାର ସେମାନଙ୍କ ପଛେ ପଛେ ଗୋଡ଼ାଉଥିଲା ।

ପ୍ରତି ସାହୀ ମୁଣ୍ଡରେ ସେମାନେ ଅଟକୁ ଥିଲେ କିଛି ସମୟ ପାଇଁ । ପ୍ରଥମେ ସେମାନେ ହାଡି ସାହୀରୁ ଆରମ୍ଭ କଲେ ସେମାନଙ୍କ ସହର ପରିକ୍ରମା । ହାଡି ସାହୀରେ ଭଗୀରଥ କ୍ଷୁଦ୍ର ଭାଷଣଟିଏ ଦେଇ କହିଲେ, 'ଭାଇ ଓ ଭଉଣୀମାନେ, ଏଇଠୁ ମୁଁ ଆରମ୍ଭ କରୁଛି ମୋ ନିର୍ବାଚନ ଅଭିଯାନ । ଏଥର ନିର୍ବାଚନ ପରେ ଆମ ପାର୍ଟି ନିଶ୍ଚୟ ସମାଜବାଦ ପ୍ରତିଷ୍ଠା କରିବ ଓ ସମାଜବାଦ ପ୍ରତିଷ୍ଠା ହେଲେ ତାର ସୁଫଳ ପ୍ରଥମେ ଆପଣମାନେ ହିଁ ପାଇବେ । ଆମ ସମାଜ ଗୋଟାଏ ପୁରୁଣା ଅଧାଭଙ୍ଗା କୋଠାପରି । ତାକୁ ଭାଙ୍ଗି ନୂଆ କରି ଗଢ଼ିବାକୁ ହେବ । ଏଇ ନୂତନ ସୌଧର ମୂଳଦୁଆ ହେବେ ଆପଣମାନେ ।' ଏହାପରେ ପ୍ରଥମେ ଘନ ନାୟକ ଓ ପରେ ଅନ୍ୟମାନେ ପ୍ରବଳ କରତାଳି ଦେଲେ । ନବଘନ ଠାକୁରାଣୀଙ୍କ ବରଗଛ ମୂଳେ ପଡିଥିବା ପଥରଖଣ୍ଡ ଉପରେ ଠିଆ ହୋଇ କହିଲା, 'ଦେଖନ୍ତୁ ଭାଇମାନେ, ସେଦିନ ଯେଉଁମାନେ

ଆମ ନିର୍ବାଚନ ସଭାରେ ଷଣ୍ଢ ପୂରାଇ ଦେଲେ, ସେମାନେ ସମାଜବାଦର ଶତ୍ରୁ । ସେମାନେ ଗାନ୍ଧିନଗରର କୌଣସି ଉନ୍ନତି କରାଇଦେବେ ନାହିଁ । ଖଟିଖିଆ ପାର୍ଟି ସେଇମାନେ ଗଢ଼ିଛନ୍ତି । ମୋର ବିଶ୍ୱାସ, ସେମାନଙ୍କ ପାର୍ଟି ଆପଣଙ୍କ ଗାନ୍ଧିନଗରରୁ ଖଣ୍ଡିଏ ହେଲେ ଭୋଟ୍ ପାଇବ ନାହିଁ ।' ଏହାପରେ ପୁଣି କରତାଳି ହେଲା । ଗିରିଧାରୀ ଚିତ୍କାର କଲେ, 'ଆମେ ଚାହୁଁ... ।'ଜନତା ଉତ୍ତର ଦେଲେ, 'ସମାଜବାଦ' । ବହୁ ସମୟ ଏପରି ସ୍ଲୋଗାନ୍ ଦିଆଯିବା ପରେ ଶୋଭାଯାତ୍ରାଟି ସିଂହଦ୍ୱାର ଆଡ଼େ ମୁହାଁଇଲା ।

ଶୋଭାଯାତ୍ରା ସିଂହଦ୍ୱାରରେ ପହଂଚିଲା ବେଳକୁ ସୂର୍ଯ୍ୟ ଠିକ୍ ମୁଣ୍ଡ ଉପରେ । ପ୍ରଚଣ୍ଡ ଗ୍ରୀଷ୍ମରେ ସହରଟି ଯେପରି ଝାଉଁଳି ପଡ଼ିଥିଲା । ଯେଉଁ ବଡ଼ଦାଣ୍ଡ ସକାଳ ସଂଜରେ ଲୋକ ଗହଳିରେ ଫାଟି ପଡୁଥାଏ, ତାହା ମଧ୍ୟ ନିଛାଟିଆ ଖାଁ ଖାଁ ଲାଗୁଥିଲା । ଉଜ୍ଜ୍ୱଳ ସୂର୍ଯ୍ୟ କିରଣରେ ବଡ଼ ଦେଉଳଟି ଅଧିକ ତେଜିୟାନ୍ ଅଧିକ ବୃହତ୍ ମନେ ହେଉଥିଲା । କେତେ ଜଣ ପଛିମା ବାବାଜୀ ଗରୁଡ଼ ସ୍ତମ୍ଭ ପାଖରେ ବସି କ୍ଳାନ୍ତ ସ୍ୱରରେ ତଥାପି କ'ଣ ସବୁ ଭଜନ ବୋଲୁଥିଲେ । ଏଇ ମାତ୍ର ବୁହା ହୋଇ ଯାଇଥିବା ଗୋଟିଏ ଅହିଅ ମାଇପିର କୋକେଇ ପଛେ ପଛେ ଗୋଡ଼େଇଥିବା କେତୋଟି ଭିକାରୀ ପିଲା ରାସ୍ତାରୁ ଗୋଟାଇଥିବା ପଇସା ଓ କଉଡ଼ି ପାଇଁ ପରସ୍ପର ମଧ୍ୟରେ ଝଗଡ଼ା କରୁଥିଲେ ଓ ଅସଭ୍ୟ ଭାଷାରେ ପରସ୍ପରକୁ ଗାଳି ଦେଉଥିଲେ ।

ଭଗୀରଥ ସାଇକେଲ୍, ଖଣ୍ଡକ ଗୋଟିଏ କଂସାରୀ ଦୋକାନରେ ଆଉଜେଇ ଲକ୍ କରି ଗୋଟିଏ ବେଂଚ୍ ଉପରେ ବସି ପଡ଼ିଲେ । କାଲି ସଂଜବେଳେ ଏଇ ସିଂହଦ୍ୱାରରେ ଠିଆହେଲେ ମନକୁ ପ୍ରଶାନ୍ତି ଘୋଟି ଆସୁଥିଲା, ଆଜି କିନ୍ତୁ ଏଇ ଉତପ୍ତ ମଧ୍ୟାହ୍ନରେ ନିର୍ବାଚନ ପ୍ରଚାର ପାଇଁ ଆସି ଏଠି ସେ ନିତାନ୍ତ ନିଃସହାୟ ମନେ କରୁଥିଲେ । ନିର୍ବାଚନ ପ୍ରଚାରର ଅନ୍ୟାନ୍ୟ କର୍ମୀମାନେ କ୍ଳାନ୍ତି ମେଣ୍ଟାଇବା ପାଇଁ ନିକଟସ୍ଥ ପାନଦୋକାନରୁ ପଇଡ଼ ଓ ସରବତ୍ ଖାଉ ଖାଉ ସହରର ଆଉ କେଉଁ ଅଞ୍ଚଳକୁ ଯିବାକୁ ହେବ, ଆଲୋଚନା କରୁଥିଲେ । ରାବଣା ଦୋରା ସରବତ୍ ଗିଲାସରୁ ଅଧେ ପିଇ, ଗିଲାସଟିକୁ ହାତରେ ଧରି, ପାଟି କରୁଥିଲା- 'ଆମର ସାଇକୁ ଯେମିତି ହେଲେ ଯିବା ନା ! ସେ ସାଲା ନରସିଂଗା ହାରାମି ଅଛି । ତାକୁ ଦୁଇ ଟଙ୍କା ଦେଲି । ଆଜି କହୁଚି କ'ଣ ନା ତୋ ବାବୁଙ୍କୁ ଭୋଟ୍ ଦେବି ନାଇଁ । ତୋ ବାବୁ କିଳାପୋଡେଇ ଟଙ୍କାରେ କୋଠା ବନେଇଚି । ବାବୁ ଭୋଟ୍ ପାଇଲେ ନରସିଂଗାକୁ ଥାନାକୁ ପଠାଇବାର ଅଛି ।'

ଭଗୀରଥଙ୍କ ମୁଖମଣ୍ଡଳ ଘୃଣାରେ ସଂକୁଚିତ ହୋଇ ଆସିଲା । ଗତ ଦଶବର୍ଷ ରାଜନୀତି କରିବା ପରେ ଜନସାଧାରଣଙ୍କ ଚରିତ୍ର ସଂପର୍କରେ ତାଙ୍କର ସ୍ପଷ୍ଟ ଧାରଣା ହୋଇ ସାରିଥିଲା । ପିଲାଦିନୁ ଧର୍ମ, ନ୍ୟାୟ ଓ ଆଦର୍ଶ ପ୍ରଭୃତି ଶବ୍ଦ ଶୁଣି ପ୍ରଥମ ଯୌବନରେ ସେ ମଧ୍ୟ ଦିନେ ହୋଇ ପଡ଼ିଥିଲେ ଆଦର୍ଶବାଦୀ । ସାମନ୍ତ ଚନ୍ଦ୍ରଶେଖର କଲେଜରେ ଛାତ୍ର ଥିବା ସମୟରେ ସେ ମଧ୍ୟ ଆଜିର ଅଧ୍ୟାପକ, ସେଦିନର ଛାତ୍ରନେତା ଗୋଲୋକବିହାରୀ ମିଶ୍ରଙ୍କ ବକ୍ତୃତା ଶୁଣି ସମାଜରେ ବିପ୍ଳବ କରିବାକୁ ଶପଥ କରିଥିଲେ । ତାଙ୍କ ଆଗରେ ନାଚି ଉଠିଥିଲେ ଚିହ୍ନାଜଣା

କଙ୍କାଳସାର ମଣିଷସବୁ- ନଅର ଗଳିର ଘରପାଖରେ ରହିଥିବା ତାଙ୍କରି ଭାଇବନ୍ଧୁ ପଡ଼ୋଶୀମାନେ । ସେମାନେ ଅନ୍ଧାରରେ ଭଗୀରଥଙ୍କ କାନ ପାଖେ ଚୁପ୍ ଚୁପ୍ କରି କହିଥିଲେ - 'ବାବୁ, ଆମ କଥା ବୁଝିବାକୁ କ'ଣ କେହି ନାହିଁ ? ଦେଶ ସ୍ୱାଧୀନ ହେବ ହେବ କହୁଥିଲ, ଦେଶ ସ୍ୱାଧୀନ ହେଲା । ଆମେ ଭୋଟ୍ ଅଧିକାର ପାଇଲୁ । କାହିଁ ଆମ ଘରେ ତ ଯୋଉ ଓଳିଏ ଚୁଲି ଜଳୁଥିଲା, ସେଇ ଓଳିଏ ଜଳୁଛି । କାହିଁ, ଆମେ ତ ଯୋଉ ଗାମୁଛା ପିନ୍ଧୁଥିଲୁ ସେଇ ଗାମୁଛା ପିନ୍ଧୁଛୁ । ଦେହ ବାଧିକି ପଡ଼ିଲେ ଆମକୁ ଓଷଦ ଟୋପାଏ ମିଳୁ ନାହିଁ । ଆମ ପିଲେ ପଇସା ଅଭାବରୁ ଆମରି ପରି ମୂର୍ଖ ରହୁଛନ୍ତି । ଆମ କଥାତ କାହାରି ମନେ ନାହିଁ ।

ନା-ନା-ସମାଜକୁ ବଦଳାଇବାକୁ ହେବ । କଲେଜଛାତ୍ର ଭଗୀରଥ ବି.ଏ. ଉପାଧି ପାଇ ଯେଉଁ ଦିନ ଅନ୍ୟ ପାଞ୍ଚ ଜଣଙ୍କ ସଙ୍ଗେ ସମାନ ଆସନରେ ବସିଲେ, ସେଦିନ କିନ୍ତୁ ସେ ଅନ୍ୟ ପାଞ୍ଚଜଣଙ୍କ ପରି ଟଙ୍କା ବା କ୍ଷମତାର ସ୍ୱପ୍ନ ଦେଖି ନଥିଲେ । ସେ ସ୍ୱପ୍ନ ଦେଖୁଥିଲେ ଆଦର୍ଶ-ଆଦର୍ଶ । ନଅର ଗଳିର ମୋହରିର ଚକ୍ରପାଣି ମହାପାତ୍ରଙ୍କ ପୁଅ ଭଗୀରଥ ବି.ଏ. ପାଶ୍ କରି ଚାକିରି କଲେ ନାହିଁ । ସ୍ୱାଧୀନ ବ୍ୟବସାୟ ଓ ଓକିଲାତି କରିବାକୁ ସ୍ଥିର କରି କଟକ ଗଲେ ଓକିଲାତି ପଢ଼ିବାକୁ । ଓକିଲାତି ଆରମ୍ଭ କରୁ କରୁ ବିବାହ-ତାପରେ ଜଂଜାଳ, ଜଂଜାଳ-ସେଥିରେ ପୁଣି ଏଇ ରାଜନୀତି ! ଆଃ ଆଜିର ରାଜନୀତି ଯାହା ହେଲାଣି ! ଭଗୀରଥ ତାଙ୍କ ଦୃଷ୍ଟିରେ ବଡ଼ ଦେଉଳକୁ ଅନାଇଲେ । ନୀଳଚକ୍ର ଉପରେ ପତିତପାବନ ବାନା ତାଙ୍କୁ ବିଦ୍ରୁପ କଲାପରି ଫର ଫର ଉଡୁଥିଲା ।

ଜୟ ହନୁମାନ୍ କେତେବେଳେ ନିର୍ବାଚନ ପ୍ରଚାର ଆରମ୍ଭ କରି ଦେଇଥିଲେ - 'ଭଉଣୀ ଓ ଭାଇମାନେ, ଅଭି ଅସଲ ସମୟ ଆସିଗଲା । ଆପଣମାନେ ଜଗନ୍ନାଥଙ୍କ ସାମ୍ନାରେ ହଲପ୍ କରନ୍ତୁ - ମହା ଜନତା ପାର୍ଟିର ନେତା ଦେଶସେବକ ଭଗୀରଥ ମହାପାତ୍ରଙ୍କୁ ଭୋଟ୍ ଦେଇ ଜୟଯୁକ୍ତ କରାଇବେ । ବିରୋଧୀ ଲୋକ ବହୁତ ବାଜେ କଥା କହିବେ । ସେମାନେ ଗଣତନ୍ତ୍ରର ଦୁଷ୍ମନ । ସେମାନଙ୍କ କଥାରେ କଦାପି ଭୁଲନ୍ତୁ ନାହିଁ । ହାତଟଣା ରିକ୍ସା ଚିହ୍ନରେ ମୋହର ମାରି ଆପଣଙ୍କ ପ୍ରିୟ ଚାଷୀ ମୂଲିଆର ସାଥୀ ଭଗୀରଥ ମହାପାତ୍ରଙ୍କୁ ଭୋଟ୍ ଦିଅନ୍ତୁ ।

ଜୟ ହନୁମାନଙ୍କ ବକ୍ତୃତା ଶୁଣିବାକୁ କ୍ରମେ କେତେକ ଲୋକ ଜମା ହୋଇ ପଡ଼ିଲେ । ଭଗୀରଥ ମଧ ତାଙ୍କ କ୍ଳାନ୍ତ ମୁଖରେ ହାସ୍ୟ ଫୁଟାଇ ଯୋଡ଼ ହସ୍ତରେ ଉପସ୍ଥିତ ଜନସାଧାରଣଙ୍କୁ ଭୋଟ୍ ପାଇଁ ନିବେଦନ କଲେ । ସେତେବେଳକୁ ହାତଟଣା ରିକ୍ସା ଛବି ଥିବା ଏକ ପ୍ରକାଣ୍ଡ ପୋଷ୍ଟର ଧରି ଛୋଟା ମାଧବ କେଉଁଠୁ ଆସି ଭଗୀରଥଙ୍କ ଦେହକୁ ଘଷି ହୋଇ ଠିଆ ହୋଇଥିଲା । ଭଗୀରଥଙ୍କ ବକ୍ତୃତା ସରି ଆସିଲା କ୍ଷଣି ସେ ପାଗଳ ପରି ଡାହାଣ ହାତ ଉପରକୁ ଟେକି ପାଟି କରି ଉଠିଲା- 'ଭୋଟ୍ ଦେବ କେଉଁଠି ?' ଉପସ୍ଥିତ କର୍ମୀ ଓ କଲେଜ ଛାତ୍ରମାନେ ପାଟି କରି ଉଠିଲେ - 'ରିକ୍ସା ଚିହ୍ନ ଯେଉଁଠି ।' ବହୁ ସମୟ ଯାଏ ବାରମ୍ବାର ଏଇ ସ୍ଲୋଗାନ୍ ଦିଆଗଲା । ଉପସ୍ଥିତ ଜନସାଧାରଣଙ୍କ ମଧ୍ୟରୁ କେତେଜଣ ମଧ ସ୍ଲୋଗାନ୍

ଦେବାରେ ଯୋଗ ଦେଲେ । ନିଛାଟିଆ ସିଂହଦ୍ୱାର ନିର୍ବାଚନ ପ୍ରଚାରରେ ହଠାତ୍ ଯେପରି ଚେଇଁ ଉଠିଲା ।

ସିଂହଦ୍ୱାର ପରେ ଦୋଳମଣ୍ଡା ସାହୀ, ବାଲି ସାହୀ ଓ ବାସେଲୀ ସାହୀରେ ନିର୍ବାଚନ ପ୍ରଚାର କରିସାରି ନଅର ଗଳିରେ ପହଂଚିଲା ବେଳକୁ ମୁହଁ ସଂଜ । ନୂତନ ମିଷ୍ଟାନ୍ନ ଭଣ୍ଡାରରେ ସାମାନ୍ୟ ଜଳଯୋଗ ପରେ ଶୋଭାଯାତ୍ରା ନୂତନ ଶକ୍ତି ସଂଚୟ କରି ନଅର ଗଳିରେ ପହଂଚିଲା । ଏଇ ନଅର ଗଳିରେ ଭଗୀରଥଙ୍କ ଶୈଶବ ଓ ଯୌବନ କଟିଥିଲା । ନଅର ଗଳିର ପ୍ରତି ଘର, ପ୍ରତି ମଣିଷ, ଏପରି କି ରାସ୍ତା କଡ଼ରେ ପଡ଼ିଥିବା ପ୍ରତି ପଥର ଖଣ୍ଡ ସହିତ ଭଗୀରଥଙ୍କ ଅତୀତର ସ୍ମୃତି ଜଡ଼ିତ ଥିଲା । ଏମିତି ବହୁ ମୁହଁସଂଜରେ ସାହୀ ପିଲାମାନଙ୍କ ସଂଗେ ଡୁ ଡୁ, ବୋହୁ-ବୋହୁକା ଖେଳିବାର ସ୍ମୃତି ତଥାପି ଅମୂଲ୍ୟ ସ୍ମୃତି ପରି ହୃଦୟରେ ସଂଚିତ ଅଛି । ଅନ୍ଧାରୁଆ ସାହୀ ଦାଣ୍ଡରେ ମଇଳା ହାଫ୍ ପ୍ୟାଣ୍ଟ୍ ପିନ୍ଧି ଧୂଳି ଧୂସରିତ ହୋଇ ଖେଳୁଥିବାବେଳେ କଚେରୀଫେରନ୍ତା ବାପାଙ୍କ ସ୍ୱର ଶୁଣି ଧାଇଁ ଯାଇ ସିଧା ହାଣ୍ଡିଶାଳରେ ବୋଉ ପାଖରେ ସେ କେତେଥର ଆତ୍ମଗୋପନ କରିଛନ୍ତି । ଦରିଦ୍ର ବାପା ବୋଉ ଏକମାତ୍ର ସନ୍ତାନ ଉପରେ କେତେ ସ୍ନେହ ଢାଳି ନାହାନ୍ତି । ସବୁ ସ୍ନେହ ମମତା ଶୈଶବର ମଧୁର ସ୍ମୃତିରେ ଜଡ଼ିତ ଏଇ ଅନ୍ଧାରୁଆ ଗଳି- । ତାଙ୍କ ଘର ବି ତାଙ୍କର ହୋଇ ନାହିଁ । ଗତ ନିର୍ବାଚନ ବେଳେ ଅବସ୍ଥା ଚକ୍ରରେ ପଡ଼ି ମାତ୍ର ଅଢ଼େଇ ହଜାର ଟଙ୍କାରେ ଘରଟିକୁ ସେ ବିକ୍ରିକରି ଦେଇଛନ୍ତି ।

ସବୁଠାରୁ ଆଗେ ଆଗେ ଆଶାବାଡ଼ି ଖଡ଼ ଖଡ଼ କରି ଚାଲିଥିଲା ମାଧବ । ସ୍ଲୋଗାନ୍ ଦେଇ ଦେଇ ସେତେବେଳକୁ ତା ତଣ୍ଟି ବସି ଯାଇଥିଲା । ତଥାପି ସେ ମୁଷ୍ଟିବଦ୍ଧ ଡାହାଣ ହାତ ଉପରକୁ ଛିଂଚାଡ଼ି ଚିତ୍କାର କରୁଥିଲା – 'ଭୋଟ୍ ଦେବ କେଉଁଠି ?' ଶୋଭାଯାତ୍ରାର ଅନ୍ୟମାନେ ମିଳିତ ଭାବରେ ଉତ୍ତର ଦେଉଥିଲେ – 'ରିକ୍ସା ଚିହ୍ନ ଯେଉଁଠି' । ମାଧବ ପୁଣି ଉତ୍ସାହିତ ହୋଇ କହୁଥିଲା – 'ଚାଷୀ ମୂଲିଆର ସାଥୀ ।' ଅନ୍ୟମାନେ ଉତ୍ତର ଦେଉଥିଲେ- 'ଭଗୀରଥ ମହାପାତ୍ର' । ପୁରୁଣା ରାଲେ ସାଇକେଲ ଖଣ୍ଡକ ଗଡ଼ାଇ ଗଡ଼ାଇ ନୀରବରେ ଚାଲିଥିଲେ ଭଗୀରଥ ମହାପାତ୍ର । ତାଙ୍କରି ସାହୀରେ ତାଙ୍କରି ପାଇଁ ଚାଲିଥିବା ଏଇ ନିର୍ବାଚନ ପ୍ରଚାର ତାଙ୍କୁ କୌଣସି ଏକ ବିୟୋଗାନ୍ତକ ନାଟକର ଶେଷ ଦୃଶ୍ୟ ପରି ମନେ ହେଉଥିଲା । ଦ୍ୱିତଳ ପ୍ରାସାଦ ଓ ପ୍ରଚୁର ବ୍ୟାଙ୍କ ବାଲାନ୍ସ ଅଧିକାରୀ ଭଗୀରଥଙ୍କୁ ଚାଷୀ ମୂଲିଆର ସାଥୀ କୁହାଯିବା, ସେ ବେଶ୍ ଉପଭୋଗ କରୁଥିଲେ । ନିର୍ବାଚନ ରାଜନୀତିରେ ସାଧୁତା ଓ ସଚ୍ଚୋଟତା ତାଙ୍କର ପୁରୁଣା ରାଲେ ସାଇକେଲ ଖଣ୍ଡକ ପରି । ଚମତ୍କାର ଆମ୍ବାସାଡର୍ କାର୍ ଥାଇ ବି ପୁରୁଣା ରାଲେ ସାଇକେଲ ଖଣ୍ଡକରେ ବୁଲି ଭୋଟ୍ ପାଇଁ ପ୍ରଚାର କରିବା ନିର୍ବାଚନୀ ସାଧୁତା, ଭଗୀରଥ ତାହା ଠିକ୍ ବୁଝିଥିଲେ ।

ଏହା ମଧ୍ୟରେ ଦାଣ୍ଡରେ ଖେଳୁଥିବା ଛୋଟ ଛୋଟ ପିଲାମାନେ ଶୋଭାଯାତ୍ରାକାରୀଙ୍କୁ ଘେରି ଯାଇଥିଲେ । ନିର୍ବାଚନ ପ୍ରଚାର ଶୁଣିବାକୁ ନୁଆଁଣିଆ ଚାଳଘର ପିଣ୍ଡା ଉପରେ ମାଇପିମାନେ

ଜମି ଯାଇଥିଲେ । ନବଘନ ଓ ଗିରିଧାରୀ ଘର ଘର ବୁଲି ପ୍ରଚାର ପତ୍ର ବାଣ୍ଟିବାରେ ଲାଗି ପଡ଼ିଥିଲେ । ଭଗୀରଥ ମଧ୍ୟ ହାତ ଯୋଡ଼ି ପରିଚିତ ଭୋଟରମାନଙ୍କୁ ନିଜ ସପକ୍ଷରେ ଭୋଟ୍ ଦେବାପାଇଁ ନିବେଦନ କରୁଥିଲେ ।

ପ୍ରଥମେ ଭଗୀରଥ ଭୋଟପାଇଁ ଯାହାକୁ ନିବେଦନ କଲେ, ସେ ହେଉଚି ବିନ ମହାରଣା । ଭଗୀରଥ ତାକୁ ପିଲାଦିନୁ ଚିହ୍ନନ୍ତି । ଏହା ଭିତରେ ସେ ଅନେକ ବୁଢ଼ା ହୋଇଯାଇଚି । ଗାଲ ଭିତରକୁ ପଶି ଯାଇଚି, ବୁଢ଼ାକୁ ଆଉ ଭଲ ଶୁଭୁ ନାହିଁ । ଚିତାଲାଗି ଅମାବାସ୍ୟା ଗୋଟିଏ ଦିନ, ଯେତେବେଳେ ବିନର ଖୋଜାପଡ଼େ । ଭଗୀରଥ କେତେ ଥର ଏଇ ବିନ ଘରକୁ ଯାଇଛନ୍ତି । କେଡ଼େ ଚଞ୍ଚଳ ସେ ଛବି ଆଙ୍କିପାରେ, ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ପ୍ରଥମେ ସେ ପ୍ରତି କବାଟରେ ଚୂନ ଲଗାଇ ଦେଇ ଯାଏ । ତା'ପରେ ତୂଳୀରେ ଆଙ୍କିଦିଏ ଗଣେଶ, କାର୍ତ୍ତିକ, ଭୈରବ । ଅନ୍ୟ ସମୟରେ ବିନ ପଟଚିତ୍ର ଆଙ୍କି ପେଟ ପୋଷେ । ଜାତିରେ ଚିତ୍ରକାର । ବିନ କହିଲା, 'ବାବୁ ନିଜେ କାହିଁକି ଆଇଲେ । ତମେ ତ ସାଇ ଲୋକ । ତମକୁ ନଦେଇ ଆଉ କାହାକୁ ଭୋଟ୍ ଦବୁ ।'

ପଛରୁ ନବଘନ କହିଲା, 'ବୁଝିଲ ମଉସା, ବାବୁ ଏଥର ଆସେମ୍ବଲିକି ଗଲେ ଚିତ୍ରକାରଙ୍କ ପାଇଁ ଲଢ଼ିବେ । ତମେମାନେ ହେଲ ଓଡ଼ିଆ ଜାତିର ଗୌରବ । ଯେତେଦିନ ଯାଏ ତମମାନଙ୍କ ଉନ୍ନତି ନ ହୋଇଚି, ଜାତି ପଛରେ ପଡ଼ିଛି ବୋଲି ଜାଣ ।'

ବିନ କହିଲା, 'ବଡ଼ ବଡ଼ ବାବୁମାନେ ତ ଆଇଚ । ସବୁତ ଜାଣ । ମୁଁ କ'ଣ କହିଲେ ଛୋଟ ତୁଣ୍ଡରେ ବଡ଼ କଥା ହବ । ଆଉ ବାବୁ ପେଟ ପୋଷି ହେଉନାଇଁ । ବେଳକୁ ବେଳ ଅଭାବ ବଢ଼ୁଚି । ହଉ, ମୋର ବା ଆଉ କେତେ ଦିନ !'

ମାଧବ ପଛରୁ ପାଟି କଲା, 'ମଉସା, ଡେରି ନାହିଁ । ହେଲେ ସମାଜବାଦ ଆଣିବାକୁ ହବ ।'

ଜୟ ହନୁମାନ କହିଲେ, 'ମଉସା ସମଝ୍‌ଦାର ଲୋକ । ହାତଟଣା ରିକ୍‌ସା ଚିହ୍ନରେ ମୋହର ଦେବେ ।'

ଭଗୀରଥ ବାବୁ ପାଖ ଘରକୁ ଗଲେ । କବାଟ ଖଡ଼ଖଡ଼ କରି କହିଲେ, 'ନୋକନି ଅଛୁ କି-' । ନୋକନି ଭଗୀରଥଙ୍କ ପିଲାଦିନର ସାଙ୍ଗ । ଏକାଠି ନିମ୍ନ ପ୍ରାଥମିକ ସ୍କୁଲରେ ପଢୁଥିଲେ । ଭଗୀରଥ ପାଠ ପଢ଼ିଲେ, ଲୋକନାଥ ପୂଜାପଣ୍ଡା ଓରଫ୍ ନୋକନି ପାଠ ନପଢ଼ି ଜାଗା ଘରେ କୁସ୍ତି କରିବା, ଗୋବରା ଚଢ଼େଇ ପୋଷିବାରେ ମନଦେଲା । ଭଗୀରଥ କଲେଜରେ ଯୋଗଦେଲାବେଳକୁ ନୋକନି ଭଲ ବନାଟି ବୁଲେଇ ନାଁଆ କରି ସାରିଥିଲା । ଥରେ ଦି'ଥର ବି ସାହୀ ନାଆକ ହୋଇଥିଲା । ଏବେ ସେ ଯାତ୍ରୀ ଗୁମାସ୍ତା ।

ନୋକନି ଓଦା ସର ସର ଗାମୁଛା ଖଣ୍ଡେ ପିନ୍ଧି ବାହାରି ଆସିଲା । ତା ପଛେ ପଛେ ଡିବିଟିଏ ଧରି ତା ଭାରିଯା । ନୋକନି କହିଲା, 'ଭଗୀବାବୁ, ଆମ ପାଖକୁ ନ ଆସିଥିଲେ

କ'ଣ ଚଳି ନଥାନ୍ତା ? କ'ଣ କରିବି, ଏଇନେ ଜାଗରପଦାରୁ ଆସୁଚି । ପୋଖରୀପାଣି ଯାଇ ହାତମାଟି କରୁଚି, ସିଏ କହିଲା, ନିଜେ ଭଗୀବାବୁ ଆଇଚନ୍ତି । ସେମିତି ଧାଇଁଛି ।'

ଭଗୀରଥ କହିଲେ, 'ନୋକନି, ତୁ ତ ଯେମିତି ହେଲେ ମୋତେ ଭୋଟ୍ ଦେଇଥାନ୍ତୁ, ସେଥିପାଇଁ ମୁଁ ଆସିନାହିଁ । ସାଇରୁ ଯେମିତି ଖଣ୍ଡିଏ ହେଲେ ଭୋଟ୍ ଖଟିଖିଆ ପାର୍ଟି ନ ପାଏ !'

ନୋକନି ଦୃଢ଼ ଭାବରେ କହିଲା, 'ବାୟା ହେଲେ ଆଜ୍ଞା । ଅର୍ଜୁନ ଗୋଟାଏ ନେତା ହେବାକୁ ମଣିଷ ହୋଇଗଲାଣି ।'

ଏମିତି ଘର ପରେ ଘର । ସବୁଠି ଭୋଟ୍ ମିଳିବାର ପ୍ରତିଶ୍ରୁତି । ନଅର ଗଳିର ତ ସମସ୍ତେ ଭଗୀରଥଙ୍କ ଚିହ୍ନା । ଆଜି କିନ୍ତୁ ବହୁଦିନ ପରେ ତାଙ୍କୁ ଏଇ ଚିହ୍ନାଜଣା ଲୋକମାନେ କେମିତି ଅପରିଚିତ ଲାଗୁଥିଲେ । ନଅର ଗଳିର ଘରସବୁ ସେମିତି ଆଗ ଅପେକ୍ଷା ଆଉରି ନୁଆଁଣିଆ ହୋଇଯାଇଥିଲା, ଲୋକେ ସେମିତି ଆଉରି ଦରିଦ୍ର, ଆଉରି ମଳିନ ଦିଶୁଥିଲେ !

ଭଗୀରଥ ତାଙ୍କ ସଂପର୍କୀୟ ଜଣେ ଦାଦାଙ୍କ ଘରକୁ ଗଲେ । ନଅର ଗଳି ଛାଡ଼ିବା ପରେ ବୋଧହୁଏ ଆଉ କେବେ ସେ ଏ ଆଡ଼େ ଆସି ନଥିଲେ । ସଂକୀର୍ଣ୍ଣ ମଇଳା ଘର ଭିତରୁ କେମିତି ଗୋଟାଏ ଗନ୍ଧ ବାହାରୁଥିଲା । ଭଗୀରଥଙ୍କୁ ଲାଗିଲା, ସେ ଯେମିତି ପୁଣି ଥରେ ତାଙ୍କ ଅତୀତକୁ ଫେରିଯାଇଛନ୍ତି । ଆଜୀବନ ଶ୍ୱାସରୋଗୀ ତାଙ୍କର ଦାଦା ପ୍ରେତପୁରୀର କଙ୍କାଳ ପରି ଦିଶୁଥିଲେ । ଖୁଡ଼ୀଙ୍କ ଦୁଇ ଗୋଡ଼ ଗୋଦର । ସେ ମସିଣା ପକାଇ ଦେଲେ । ଦାଦା କୁଶଳ ପଚାରିଲେ । ଭଗୀରଥ ଭାବିଲେ, ସେମାନେ ହୁଏତ ସେମାନଙ୍କ ଦୁଃଖ ଦାରିଦ୍ର୍ୟର କାହାଣୀ କହି ବସିବେ । ସେମାନେ ତାହା କହିଲେ ନାହିଁ । ଏଇ ନୁଆଁଣିଆ ଚାଳଘର ପରି ସେମାନଙ୍କ ଦୁଃଖ ଦାରିଦ୍ର୍ୟ ସେମାନଙ୍କ ବ୍ୟାଧି କେବେଠୁ ଆପଣାର ହୋଇ ଯାଇଚି । ଦାଦା କହିଲେ, 'ବାବୁ, ପୁଣି ଭୋଅଟରେ ଠିଆ ହୋଇଚ, ଶୁଣିଲି । ଜଗନ୍ନାଥ ଜିତାପଟ କରିବେ । ଆସେମ୍ଲି ଚାଲିଲାବେଳେ ତମ ବକ୍ତୃତା ସମାଜରେ ବାହାରେ । ଥରେ ଫଟ ବାହାରିଥିଲା । ଯାହା ହଉ, ଚକ୍ରା ଭାଇନାଙ୍କ ନାଁଆ ରଖିଲ । ଖାଲି ଏତିକି ଦୁଃଖ ରହିଗଲା, ଭାଇନା ଥିଲେ ଦେଖିଥାନ୍ତେ ।'

ଭଗୀରଥ ପିଲାଦିନେ ଦାଦାଙ୍କୁ ଭାରି ଡରୁଥିଲେ । ଦାଦା ଥିଲେ ପୁରୀ ଦେଉଳରେ ସିପାହୀ । ମାଟିଆ ଜାମା ପ୍ୟାଣ୍ଟ୍ ପିନ୍ଧି, ହାତରେ ଗୁଆ କୋରଡ଼ା ଧରି ସିଂହଦ୍ୱାର ପାଖରେ ସେ ଠିଆ ହୋଇଥିବାର ଦୃଶ୍ୟ ଏବେବି ତାଙ୍କର ସ୍ପଷ୍ଟ ମନେ ଅଛି ।

ଖୁଡ଼ୀ ଆଣି ଦେଲେ ପିତଳ ଡାଟିଆରେ ଡାଟିଆଏ ଚା', ଅଦା ବାସ୍ନା । ଭଗୀରଥ ଚା ଖାଇଲେ । କହିଲେ, 'ନଅର କାଳୀଙ୍କ ପାଖରେ ଭୋଟ୍‌କେନ୍ଦ୍ର । ତମେ ଓ ଦାଦା ଯେମିତି ହେଲେ ଯିବ । ହାତଟଣା ରିକ୍ସା ଚିହ୍ନରେ ମୋହର ମାରିବ ।'

ଦାଦା କହିଲେ – 'ନିଶ୍ଚୟ ଯିବି । ମୋ ପୁତୁରା ଠିଆ ହୋଇଚି, ଯିବି ନାଇଁ ?'

ଭଗୀରଥ ଉଠିଲେ । ଆଜିର ନିର୍ବାଚନ ପ୍ରଚାର ଏଇଠାରେ ଶେଷ ହେଲା । ଘଣ୍ଟାରେ ସାଢ଼େ ସାତଟା । ଆଠଟାରେ ତାଙ୍କ ଘରେ ମହା ଜନତା ପାର୍ଟିର ଜରୁରୀ ମିଟିଂ ।

ନିର୍ବାଚନର ପରିଣତି ସଂପର୍କରେ ଭଗୀରଥ ଯେତେ ଚିନ୍ତିତ ନଥିଲେ, କାଂଚନ ଦେବୀ ଥିଲେ ତା'ଠାରୁ ବେଶି । ନିର୍ବାଚନ ପଡୁଛି ଆସନ୍ତା ଗୁରୁବାରେ-ଆଜି ହେଲାଣି ଶନିବାରେ -ମଝିରେ ଦିନ ବୋଲି ଚାରିଟା । ସାରା ସହର ଉଠୁଛି ପଡୁଛି । ଭଗୀରଥଙ୍କୁ ଆଉ ଖାଇବାକୁ ଶୋଇବାକୁ ବେଳ ନାହିଁ । ସବୁବେଳେ ଘରେ ଲୋକ-କିଏ ନିର୍ବାଚନର କର୍ମୀ, କିଏ ସାମ୍ବାଦିକ, କିଏ ବା ଓକିଲ ବନ୍ଧୁ । ଷ୍ଟୋଭ୍‌ରେ ଦିନରାତି ଚା କେଟଲୀ ବସୁଛି । ପୂଜାରୀ ବିଚରାକୁ ମୁହୂର୍ତ୍ତେ ବି ଛୁଟି ମିଳୁନାହିଁ । ତେବେ ନିର୍ବାଚନରେ ବାବୁ ଜିତିଲେ ସେ ଆଠଦିନ ପାଇଁ ଘରକୁ ଯିବ ବୋଲି ମା'ଙ୍କ ଠାରୁ ପ୍ରତିଶ୍ରୁତି ପାଇଛି । କାଂଚନ ଦେବୀ ଶୋଇବା ଘରେ ଏକୁଟିଆ ବସି ଖୋଲା ଆକାଶକୁ ଅନାଇଥିଲେ । ରାତି ଅନେକ ହେଲାଣି । ଡ୍ରଇଁ ରୁମ୍‌ରେ ମହା ଜନତା ପାର୍ଟିର ମୁଖ୍ୟ କର୍ମକର୍ତ୍ତାମାନଙ୍କର କ'ଣ ଗୁପ୍ତ ଆଲୋଚନା ସଭା ବସିଛି । ଭିତରକୁ ଯିବାକୁ କାହାରିକୁ ଅନୁମତି ନାହିଁ । ବେଳେବେଳେ ଯାହା କଲିଙ୍ଗ୍ ବେଲ୍ ବାଜିଲେ ପୂଜାରୀ ଭିତରକୁ ଯାଉଛି-ଚା'ପାଣି କିମ୍ବା ସିଗାରେଟ୍ ଦେଇସ ଆସୁଛି । ତା'ପରେ ସେ ଆସି ଏରୁଣ୍ଡିବନ୍ଧ ପାଖରେ ଗାମୁଛାଟିଏ ପକାଇ ଢୁଳାଉଛି ।

ଝରକାପାଖେ ଠିଆହେଲେ ସମୁଦ୍ର ଦିଶୁ ନାହିଁ – ସମଦ୍ର ଗର୍ଜନ କାନରେ ବାଜୁଛି । ଦୂରରେ ସମୁଦ୍ର ଓ ଆକାଶ ମିଶି ଯାଇଛି-ସବୁ ଦିଶୁଛି ଧୂଆଁଳିଆ । କାଂଚନ ଦେବୀ ବାଲ୍‌କୋନି ଉପରେ ଠିଆହେଲେ । ଥଣ୍ଡା ପବନ ତାଙ୍କ ଶାଢ଼ି ଭିତରେ ସଂଚରିଗଲା, ଦେହ ଶୀତେଇ ଉଠିଲା । ଉପରେ ସୁନ୍ଦର ଆକାଶ-ଜହ୍ନର ଏ ଯାଏଁ ଦେଖାନାହିଁ; କିନ୍ତୁ ଈଷତ୍ ଜହ୍ନ ଆଲୁଅରେ ଝାଉଁବଣ ତୋଫା ଦେଖାଯାଉଛି । ଆଉ କିଛି ସମୟ ଗଲେ ସମୁଦ୍ର ପାଣି ନୀଳ ରଙ୍ଗର ଗାଲିଚାଟିଏ ପରି ଦେଖାଯିବ-ଆଃ, କେଡ଼େ ଦୁଷ୍ଟ ଏଇ ପବନ ? କାଂଚନ ଦେବୀ ନିଜ ଶାଢ଼ିକୁ ସମ୍ଭାଳି ନେଲେ । କେଜାଣି କାହିଁକି ଦେହ ବାରମ୍ବାର ଶୀତେଇ ଉଠୁଛି । ଭଗୀରଥଙ୍କ ଉପରେ ଅକାରଣେ ଅଭିମାନ ହେଉଛି । ଏମିତି ମଣିଷ ଇଏ ଦିନେ ହେଲେ ପାଖରେ

ବସି ହସି କଥା କହିବାକୁ ତାଙ୍କୁ ସମୟ ନାହିଁ । ଚାହୁଁ ଚାହୁଁ ବାହା ହେବାର ଦଶବର୍ଷ ବିତିଗଲା । ଏଇ କାଲିପରି ଲାଗୁଛି । କ'ଣ ଦେଖି ବାପା ୟାଙ୍କ ହାତରେ ଝିଅକୁ ଟେକି ଦେଇଥିଲେ କେଜାଣି ? ନଅର ଗଳିର ସେଇ ଅନ୍ଧାରୁଆ ଦୁଇ ବଖରା ଘର, ଛୋଟ ଅଗଣାଟି, ଲମ୍ବା ବାଡ଼ି । ଓକିଲ ବନବିହାରୀ ମିଶ୍ରଙ୍କ ଝିଅ ହୋଇ ବି ସେ ଶାଶୁଘରକୁ ଆସି କୂଅରୁ ପାଣି କାଢ଼ିଲେ, ଶାଶୁଙ୍କ ଗୋଡ଼ ଘଷିଲେ । ସବୁ କାମ ନିଜ ହାତରେ କଲେ । ସେତେବେଳେ ତ ଇଏ ନୂଆ ହୋଇ ଓକିଲାତି ଆରମ୍ଭ କରିଥାନ୍ତି । ସାଇକେଲ୍ ଠେଲି କଚେରୀ ଯାଉଥାନ୍ତି । ଏତେ ପୁରୁଣା ଓକିଲ ଥାଉଁ ଥାଉଁ ୟାଙ୍କୁ ପଚାରେ କିଏ । ମାସକୁ ଦୁଇଶହ ଟଙ୍କା ବି ରୋଜଗାର ହେଉ ନଥାଏ । ବାପା ମଝିରେ ମଝିରେ ଝିଅ ହାତରେ ହାତଖର୍ଚ୍ଚ ନାଆଁରେ କିଛି କିଛି ଟଙ୍କା ଦେଇ ଯାଉ ନଥିଲେ ଇଏ ଚଳି ପାରୁଥାନ୍ତେ କି ନା ସନ୍ଦେହ । ସେତେବେଳେ ସେ କିନ୍ତୁ ବହୁତ ପରିଶ୍ରମ କରୁଥିଲେ । ସକାଳୁ ଯା'ନ୍ତି ସିନିଅର ଓକିଲ ପାଖକୁ । ଦଶଟାରେ ଫେରି କ'ଣ ଦିଟା ଖାଇ ସଂଜଯାଏଁ କଚେରୀ । ପୁଣି ରାତିରେ ସିନଅର ଓକିଲ ପାଖେ କାମ । ଦିନଟିଯାକ ଶାଶୁଙ୍କ ପାଖେ ବସି ବସି ସେ କାଟନ୍ତି । ବାପାଙ୍କ ଉପରେ ମନେ ମନେ ଚିଡ଼ନ୍ତି । ତକିଆରେ ମୁହଁ ମାଡି କାନ୍ଦନ୍ତି । କାହାକୁ ବା କହିବେ । ଯାହା ଆଗରେ ସବୁ କହନ୍ତେ, ଯାହାକୁ ସେ ଜୀବନରେ ସବୁଠାରୁ ବେଶି ଭଲ ପାଉଥିଲେ, ଦେବୀ ମୂର୍ତ୍ତିପରି ସେଇ ତାଙ୍କର ବୋଉକୁ ସେ କେବେଠୁଁ ହରାଇ ସାରିଥିଲେ ।

କାଂଚନ ଦେବୀଙ୍କୁ ବଡ଼ ଏକୁଟିଆ ଲାଗିଲା । ତାଙ୍କର ମନେହେଲା, ପିଲାଟି ଦିନରୁ ଯେମିତି ସବୁବେଳେ ଏକୁଟିଆ ହୋଇ ରହିଆସିଛନ୍ତି । ତାଙ୍କ ମନକଥା କେହି କେବେ ବୁଝି ନାହାନ୍ତି କି ବୁଝିବାକୁ ଚେଷ୍ଟା କରି ନାହାନ୍ତି । ପିଲାଦିନେ ସେ ଖୁବ୍ ଭଲ ପଢୁଥିଲେ-ପରେ ଅବଶ୍ୟ ମାଟ୍ରିକ୍‌ରେ ଦ୍ୱିତୀୟ ଶ୍ରେଣୀ ପାଇଲେ -କିନ୍ତୁ ସପ୍ତମ, ଅଷ୍ଟମ ଶ୍ରେଣୀରେ ସିଏତ କ୍ଲାସ୍‌ରେ ପ୍ରଥମ ହେଉଥିଲେ । ସପ୍ତମରେ ପଢ଼ିଲାବେଳେ ତାଙ୍କ ବାଲିସାଇ ମାଇନର ସ୍କୁଲରୁ ସେଇ ତ ଏକା ବୃତ୍ତି ପାଇ ସ୍କୁଲର ନାଆଁ ରଖିଥିଲେ; କିନ୍ତୁ ମାଟ୍ରିକ ପରେ ବାପା ତାଙ୍କୁ ଆଉ ପଢ଼ାଇଲେ ନାହିଁ । ତାଙ୍କ ସାଙ୍ଗମାନେ କଲେଜରେ ପଢ଼ିଲେ । ସୁରମା ଡାକ୍ତରୀ ପାଶ୍ କରି କଟକରେ କୋଉ ଡାକ୍ତରକୁ ବାହା ହୋଇ ପ୍ରାକ୍ଟିସ୍ କରୁଛି । ସୁହାସିନୀ କେଉଁ କଲେଜରେ ଓଡ଼ିଆ ଅଧ୍ୟାପିକା ହୋଇଛି । ସେମାନଙ୍କ ସଙ୍ଗେ ଦେଖାହେଲେ କାଂଚନ ଦେବୀଙ୍କୁ ଲାଜ ଲାଗେ । ସେମାନଙ୍କଠାରୁ ସେ କେତେ କମ୍ ପଢ଼ିଛନ୍ତି ଭାବିଲେ ବାପାଙ୍କ ଉପରେ ରାଗ ହୁଏ ।

ଇଏ ବି କୋଉ ଭଲ ଲୋକ ! ବାହା ହୋଇ କ'ଣ କେହି ପଢୁନାହାନ୍ତି ? ଭାଗ୍ୟଲକ୍ଷ୍ମୀ ତ ପୁଣି ପଢ଼ିଲା; କିନ୍ତୁ କାଂଚନ ଦେବୀ ପଢ଼ିବାକୁ କହିବାରୁ ସେ ଖାଲି ହସିଲେ । ହେଇ ସେ କ'ଣ ବଡ଼ ପାଟିରେ କହୁଛନ୍ତି । ଦିନସାରା ନିର୍ବାଚନ ପ୍ରଚାରରେ ସାହୀ ସାହୀ ବୁଲୁଥିଲେ । ରାତି ଆସି ଦଶଟା ହେଲାଣି । ଖିଆପିଆରେ ଠିକଣା ନାହିଁ । ସେଥିରେ ପୁଣି

ଗରମ ଗରମ ବକ୍ତୃତା ଦିଆଯାଉଛି । କାଂଚନ ଦେବୀଙ୍କର ମନେ ପଡ଼ିଲା–ଆଉ ମୋଟେ ଚାରିଦିନ । ଏଥର କିନ୍ତୁ ଯଦି ସେ ଜିଣନ୍ତି, ଯେମିତି ହେଲେ ଉପମନ୍ତ୍ରୀ ହେବେ । ଗତ ପାଞ୍ଚ ବର୍ଷ ଭିତରେ ସତର ଥର ମନ୍ତ୍ରିମଣ୍ଡଳରେ ନୂଆ ନୂଆ ଲୋକ ନିଆ ହେଲେ । ଶେଷଯାଏଁ ଅପେକ୍ଷା କରି କରି ତାଙ୍କ ପାଳି ପଡିଲା ନାହିଁ । ସବୁବେଳେ ମୁଖ୍ୟମନ୍ତ୍ରୀ ଗୋବର୍ଦ୍ଧନ ଚୌଧୁରୀଙ୍କର ଗୋଟିଏ କଥା- 'ଭଗୀରଥ ବାବୁ, ତୁମେ ଯୁବକ । ତମେ ବ୍ୟସ୍ତ ହେବାର କ'ଣ ଅଛି । ତମ ଆଗରେ ବିରାଟ ଭବିଷ୍ୟତ ପଡ଼ିଛି ।' ଏଥର କିନ୍ତୁ ତାଙ୍କୁ ମନ୍ତ୍ରୀ କିମ୍ବା ଅତି କମ୍‌ରେ ଉପମନ୍ତ୍ରୀ ପଦଟିଏ ନ ମିଳିଲେ ସେ ଛାଡ଼ିବେ ନାହିଁ । କାଲି ତ ସିଏ କହୁଥିଲେ, 'ଏଥର ମନ୍ତ୍ରିମଣ୍ଡଳରେ ନିଆ ନଗଲେ ଦରକାର ହେଲେ ସେ ଖଟିଖିଆ ଦଳରେ ମିଶି ଯିବେ ।'

ପୂଜାରୀର କାଶ ଶୁଣି କାଂଚନ ଦେବୀ ଉଠି ଠିଆହେଲେ । ପଚାରିଲେ କ'ଣ କିରେ ?

'ବାବୁ ଖବର ଦେଇଛନ୍ତି, ଆପଣ ଖାଇ ନିଅନ୍ତୁ । ବାବୁ କର୍ମୀମାନଙ୍କ ସଂଗେ କୋଉ ହୋଟେଲ୍‌ରେ ଖାଇବେ ।'

କାଂଚନଦେବୀ କିଛି କହିଲେ ନାହିଁ । ଦିନ ବୋଲି ଆଉ ଚାରିଟା । ଯାହାହେଉ ସେ କେମିତି ନିର୍ବାଚନ ଜିଣନ୍ତୁ । ବାଲ୍‌କୋନି ଉପରୁ ଲକ୍ଷ୍ୟ କଲେ, ମହା ଜନତା ପାର୍ଟିର ମୁଖିଆ ମୁଖିଆ ନେତା ଓ କର୍ମଚାରୀମାନେ ତାଙ୍କ ଘର ପାହାଚରୁ ରାସ୍ତା ଉପରକୁ ଓହ୍ଲାଇ ଯାଉଛନ୍ତି । ସେ ପ୍ରାୟ ସମସ୍ତଙ୍କୁ ଚିହ୍ନନ୍ତି । ଜୟ ହନୁମାନ ଅଗ୍ରବାଲା ହାତ ହଲାଇ ଗିରିଧାରୀଙ୍କୁ କ'ଣ କହୁଛି । ନବଘନ ରାବଣା ଦୋରା କାନ୍ଧରେ ହାତ ପକାଇ ଫୁସ୍‌ଫୁସ୍ ହୋଇ କ'ଣ ବୁଝାଉଛି । ଆଉ କେତେଜଣ କର୍ମୀ ନିଜ ନିଜ ଭିତରେ କ'ଣ କଥା ଭାଷା ହେଉଛନ୍ତି ଓ ସିଗାରେଟ୍ ଖାଉଛନ୍ତି । ସବୁଠାରୁ ପଛରେ ଓହ୍ଲାଇଲେ ଭଗୀରଥ । ତା'ପରେ ସମସ୍ତେ ନିଃଶବ୍ଦରେ ସମୁଦ୍ର କୂଳର କେଉଁ ହୋଟେଲ୍ ଆଡ଼େ ଚାଲିଲେ । ସେମାନେ ଅଦୃଶ୍ୟ ହୋଇ ଯିବା ଯାଏଁ କାଂଚନ ଦେବୀ ସେମାନଙ୍କୁ ଅନାଇ ରହିଥାନ୍ତି ।

ଭଗୀରଥ ସେଦିନ ଘରକୁ ଫେରିଲେ ବହୁତ ଡେରିରେ-ରାତି ପ୍ରାୟ ଦୁଇଟାରେ । କାଂଚନ ଦେବୀ ସେ ଯାଏଁ ଶୋଇ ନଥିଲେ । ସ୍ୱାମୀଙ୍କୁ ଶୋଇବାଘରେ ନିରୋଳାରେ ଦେଖି କେଜାଣି କାହିଁକି ତାଙ୍କର ମନେହେଲା, ସେ ଯେପରି ବର୍ଷ ବର୍ଷ ଧରି ତାଙ୍କୁ ଦେଖି ନଥିଲେ । ସେ ତାଙ୍କୁ ନିରେଖି ଅନେଇଲେ-ସତେ ଯେମିତି ଭଗୀରଥଙ୍କ ବୟସ ଯା ଭିତରେ ଅନେକ ବଢ଼ି ଯାଇଛି ! ଦେହର ରଙ୍ଗ କଳା ପଡ଼ିଯାଇଛି, ମୁହଁ ଉପରେ ବୟସର କେତୋଟି ରେଖା । ଏମିତିକି କାନ ପାଖରେ କେତୋଟି ବାଳ ଧଳା ହୋଇ ଯାଇଛି । କାଂଚନ ଦେବୀ ଶିହରୀ ଉଠିଲେ ।

ଭଗୀରଥ କ୍ଳାନ୍ତ ମୁହଁରେ ହସ ଫୁଟାଇ କହିଲେ, 'କ'ଣ ଦେଖୁଛ ?" କାଂଚନଦେବୀ ତଥାପି ଅବାକ୍ ହୋଇ ସ୍ୱାମୀଙ୍କ ମୁହଁକୁ ଅନାଇଥିଲେ । କହିଲେ, 'ତୁମେ ବୁଢ଼ା ହୋଇ ଯାଇଛ ।'

ଭଗୀରଥ କହିଲେ, 'ରାଜନୀତି କଲେ ନିଜ ଦେହର କଣ ଯତ୍ନ ନେବାକୁ ସମୟ ମିଳେ ?' କାଂଚନ ଦେବୀଙ୍କ ମନଟା ହଠାତ୍ କାହିଁକି ଦବି ଯାଇଥିଲା । ତାଙ୍କୁ ଲାଗୁଥିଲା, ଏ ପ୍ରକାଣ୍ଡ କୋଠାଘର, ଏତେ ବ୍ୟାଙ୍କ୍ ବାଲାନ୍‌ସ, ଏମ୍.ଏଲ୍.ଏ.ପଦ-ସବୁ ଯେମିତି ବୃଥା । ତାଙ୍କର କିଛି ଦରକାର ନାହିଁ, ବରଂ ଭଲଥିଲା ସେଇ ନଅର ଗଳିର ଛୋଟ ଅନ୍ଧାରୁଆ ଚାଳଘର । ସେତେବେଳେ ସେ ନିଜକୁ ଏତେ ଏକୁଟିଆ, ଏତେ ଅସହାୟ ଭାବୁ ନଥିଲେ । ଘରେ ତ ଶାଶୁଥିଲେ, କେଡେ ସ୍ନେହୀ ମଣିଷ । ସାହୀର ମାଇପିମାନେ ସବୁବେଳେ ଆସି ଗହଳି କରୁଥିଲେ । ଭଗୀରଥ ଏତେ କର୍ମବ୍ୟସ୍ତ ନଥିଲେ । ଦିନ ରାତି ଚିନ୍ତାରେ ଏମିତି ଅସ୍ଥିର ହେଉ ନଥିଲେ ।

ଭଗୀରଥ କହିଲେ, 'ଅବସ୍ଥା ଭଲ ଜଣା ପଡୁନାହିଁ । ଯେମିତି ଜଣାଯାଉଛି, ଶେଷରେ ଏଇ ଘରଟା ହିଁ କାଳ ହେବ । ଗିରିଧାରୀ କହୁଥିଲା, ଏ ଘର କିଳାପୋତା ଟଙ୍କାରେ ତିଆରି

ବୋଲି; ଗଦାଧର ପ୍ରଚାର ପତ୍ର ବାଣ୍ଟୁଛି । ମୋ ବ୍ୟାଙ୍କ୍ ବାଲାନ୍‌ସ ବି ସେମାନେ କେମିତି ଜାଣିସାରିଲେଣି । ଆଜିକାଲି ବ୍ୟାଙ୍କ୍ ବାଲାଙ୍କୁ ଆଉ ବିଶ୍ୱାସ ନାହିଁ ।

ଭଗୀରଥଙ୍କ ଆଖିରୁ ଯେମିତି ନିଦ୍ରା ବିଦାୟ ନେଇ ଯାଇଥିଲା । ସେ ନାଇଟ୍ ଗାଉନ୍ ପିନ୍ଧି ବିଛଣାରେ ଶୋଇବା ପରିବର୍ତ୍ତେ ଚେଆର୍ ଉପରେ ବସି ସିଗାରେଟ୍‌ରେ ନିଆଁ ଧରାଇଲେ । ତାଙ୍କ ପାଖକୁ ଲାଗି ବସିଥିଲେ କାଂଚନ ଦେବୀ । କାଂଚନ ଦେବୀ ହଠାତ୍ ଅନୁଭବ କଲେ-ତାଙ୍କର ଦେହରେ କ୍ରମେ ଯେତିକି ଯେତିକି ଚର୍ବି ଜମୁଛି, ଭଗୀରଥ ଯେମିତି ସେହି ଅନୁପାତରେ ପତଳା ହୋଇ ଆସୁଛନ୍ତି । ତାଙ୍କୁ କାନ୍ଦ ଲାଗିଲା । ନାଃ-ଆଉ ଆଶା ନାହିଁ ! ବାହା ହେବାର ଦଶବର୍ଷ ପୂରିଗଲା, ଆଉ କେବେ ସେ ମାଆ ହେବେ ? ଶାଶୁ ଥିଲାବେଳେ ସବୁଦିନ ସଂଜବେଳେ ଶ୍ୟାମାକାଳୀଙ୍କ ଦେଉଳକୁ ଯାଉଥିଲେ ସେଇ ଗୋଟିଏ ମାନସିକ ନେଇ -ମରିବା ଆଗରୁ ନାତି ମୁହଁ ଦେଖିଯିବେ । ଶ୍ୟାମାକାଳୀ ମନ୍ଦିରର ବୁଢ଼ା ପୂଜାରୀ ତ ସବୁଦିନେ ସେଇ ଗୋଟିଏ କଥା କହେ- 'ମା ମନସ୍କାମନା ପୂରଣ କରିବେ । ମା'ଙ୍କୁ ଚୁଆ, ସିନ୍ଦୂର କଳା କାଛେଣୀ ଲାଗି କର। ।' ବୁଢ଼ୀ କେତେଥର ମା'ଙ୍କୁ ଚୁଆ, ସିନ୍ଦୂର ଲାଗି କରିଥିବେ । ପ୍ରତି ମଙ୍ଗଳବାର ଦିନ ସେ ନିର୍ଜଳା ଉପାସ କରୁଥିଲେ । ସଂଜବେଳେକୁ ଶ୍ୟାମାକାଳୀଙ୍କ ପ୍ରସାଦ ଟିକିଏ ଯାହା ସେବା କରୁଥିଲେ । ତଥାପି ଶ୍ୟାମାକାଳୀ ଡାକ ଶୁଣିଲେ ନାହିଁ । ଶାଶୁ ମରିବାର ପାଞ୍ଚବର୍ଷ ପୂରିଗଲା । ଶ୍ୟାମାକାଳୀ ତଥାପି ଡାକ ଶୁଣୁ ନାହାନ୍ତି ।

'କ'ଣ ଏମତି ସବୁ ଭାବୁଛ ? ଶୋଇବ ଯାଅ ।' ଭଗୀରଥ କହିଲେ । କାଂଚନ ଦେବୀ ପ୍ରାୟ କାନ୍ଦ କାନ୍ଦ ସ୍ୱରରେ ଉତ୍ତର ଦେଲେ, 'ନାଇଁମ ଭାବିବି ଆଉ କ'ଣ । କେମିତି ଆଉ ଦିନ ଚାରିଟା କଟିବ, ସେଇକଥା ଭାବୁଛି । ତେବେ ଏସବୁ ରାଜନୀତିରେ କ'ଣ ଲାଭ ? ଶାନ୍ତି, ସୁଖ କିଛି ନାହିଁ ଜୀବନରେ । ସେଥିରେ ପୁଣି କିଏ କେତେ ପ୍ରକାର ନିନ୍ଦା ଦେଉଛନ୍ତି, ଭାବିଲେ ଆଶ୍ଚର୍ଯ୍ୟ ଲାଗେ ।'

ଭଗୀରଥ କହିଲେ, 'ଗୋଧି ଚମଡ଼ାର ଖୋଳ ନ ଗଳେଇଲେ କେହି ରାଜନୀତି କରିବାକୁ ବାହାରେ ? ଆମ ଲୋକଙ୍କର ନୈତିକତା ଯାହା, ସେଥିରେ ମହାତ୍ମା ବି ରାଜନୀତିରେ ଯୋଗ ଦେଲେ ଦସ୍ୟୁ ପାଲଟି ଯିବ । ଯେଉଁମାନେ ଆଜି ମୋତେ ନିନ୍ଦା କରୁଛନ୍ତି, ମୁଁ ଭୋଟ୍ ପାଇ ମନ୍ତ୍ରୀ ହେଲେ ଦେଖିବ, ସେଇମାନେ ପ୍ରଥମେ ମୋର ସମ୍ବର୍ଦ୍ଧନା ସଭା କରିବେ । ଏଇ ନବଘନ କଥା ଦେଖୁଛ ତ ! ମାତ୍ର ଦୁଇମାସ ତଳେ ସେ ଥିଲା ଖଟିଖିଆ ଦଳର ଜିଲ୍ଲା ଶାଖାର ସଂପାଦକ । ଦୁଇଟି ଶହେଟଙ୍କିଆ ନୋଟ୍ ତାକୁ ଆଜି ମୋର ପ୍ରଧାନ ପ୍ରଚାରକରେ ପରିଣତ କରିଛି । ଏସବୁ ପ୍ରଚାରକଗୁଡ଼ାକ ଟଙ୍କା ଲୋଭରେ କାମ କରୁଛନ୍ତି । ଆଜି ପୁରୀ ହୋଟେଲରେ ବେଶ୍ ମୋଟା ବିଲ୍‌ଟାଏ ହେଲା । ରାବଣାଦୋରା ଏତେ ପିଇ ଦେଲା ଯେ ତାକୁ ଗୋଟିଏ ରିକ୍‌ସାରେ ଗିରିଧାରୀ ସଂଗେ ପାର୍ଟି ଅଫିସ୍‌କୁ ପଠାଇଦେଲି ।

ଭଗୀରଥ ସିଗାରେଟ୍ ଶୋଷି ଶୋଷି ଚଟାଣ ଉପରେ ଇତଃସ୍ତତ ହେବାକୁ ଲାଗିଲେ । କାଂଚନ ଦେବୀଙ୍କୁ କେଜାଣି କାହିଁକି ଭୟ ଲାଗୁଥିଲା । ସମୁଦ୍ରର ପ୍ରଚଣ୍ଡ ଘୁ ଘୁ ଶବ୍ଦ ସତେ ଯେମିତି ତାଙ୍କ ଭୟକୁ ଆହୁରି ବଢ଼ାଇ ଦେଉଥିଲା । ତାଙ୍କୁ ଲାଗିଲା, ସାରା ପୁରୀ ସହର ଅଚେତନ । କେବଳ ତାଙ୍କରି ଘରେ ଆଲୁଅ ଜଳୁଛି । ତାଙ୍କ ଘରଟି ଯେମିତି ଗୋଟିଏ ଦ୍ୱୀପ ! ସେ ଓ ତାଙ୍କ ସ୍ୱାମୀ ଯେମିତି ସମସ୍ତଙ୍କଠାରୁ ଅଲଗା । ସମସ୍ତେ ଶୋଇ ଥିବାବେଳେ କେବଳ ସେଇ ଦୁଇଜଣ ହିଁ ଚେଇଁ ରହିଛନ୍ତି ।

କାଂଚନଦେବୀ ସେଇ ଗୋଟିଏ କଥା ହିଁ ଦୋହରାଇଲେ, 'ମୋତେ ଏସବୁ କାହିଁକି ଭଲ ଲାଗୁନାହିଁ । ଏତେ ଧନ ସଂପତ୍ତିରେ କାହାର କ'ଣ ହେବ ? ଗଲା ପାଞ୍ଚ ବର୍ଷ ଭିତରେ ତମେ ଏତେ ଟଙ୍କା ବ୍ୟାଙ୍କ୍‌ରେ ରଖିଛ, ମୋଟର ଗାଡ଼ି କିଣିଛ, କୋଠାଘର ତିଆରି କରିଛ, ସବୁଆଡ଼େ ତୁମର ନାଁ ବ୍ୟାପିଛି । କିନ୍ତୁ ମୋତେ ଲାଗୁଛି, ତମେ ବେଳକୁ ବେଳ ଚିନ୍ତାରେ, ଅଶାନ୍ତିରେ ଛଟପଟ ହେଉଛ । ତମ ଦେହତ କଳାକାଠ ପଡ଼ିଗଲାଣି । ମୋତେ ବି କାହିଁକି ଭାରି ଏକୁଟିଆ ଲାଗୁଚି । ଯା ଅପେକ୍ଷା ନଅର ଗଳିରେ ଆମେ ଭଲ ଥିଲେ ।'

ଭଗୀରଥ କାଂଚନ ଦେବୀଙ୍କ ହୃଦୟର ଶୂନ୍ୟତା ଅନୁଭବ କଲେ । ରାଜନୀତିର କୋଳାହଳ ଭିତରେ ସେ ଯେମିତି ନିଜର ନୀରବ ମୁହୂର୍ତ୍ତ ଗୁଡ଼ିକୁ ଡୁବାଇ ଦେଇଥିଲେ । ତାଙ୍କୁ ବି ହଠାତ୍ ଲାଗିଲା, ସେ ଯେମିତି କେଉଁଠି କ'ଣ ହଜାଇ ଦେଇଛନ୍ତି, ଖୋଜି ଖୋଜି ପାଉ ନାହାନ୍ତି । ଗଲା ପାଂଚ ବର୍ଷ ଭିତରେ ଏମ୍.ଏଲ୍.ଏ. ରହି ସେ ନିଜର ଟଙ୍କା ଓ ପ୍ରତିପତ୍ତି ଯେତିକି ବଢ଼ାଇଛନ୍ତି, ଯେମିତି ସେତିକି ସେତିକି ଦରିଦ୍ର ହୋଇ ଯାଇଛନ୍ତି । କେଉଁଠି କ'ଣ ଅଭାବ ରହି ଯାଇଛି । ତାଙ୍କ ହୃଦୟ ବି ହାହାକାର କରି ଉଠିଲା । ସେ କହିଲେ, 'ଏଥର ଜିତିଲେ ମନ୍ତ୍ରିମଣ୍ଡଳରେ ରହିବା ନିଶ୍ଚିତ । ଗତଥର ଗୋବର୍ଦ୍ଧନ ବାବୁ ମତେ ଠକି ଦେଲେ । ଏଥର କିନ୍ତୁ ସେମିତି କରିପାରିବେ ନାହିଁ ।

ସ୍ୱାମୀ ମନ୍ତ୍ରୀ ହେବେ ବୋଲି ଗତ ପାଞ୍ଚ ବର୍ଷ ଭିତରେ କାଂଚନ ଦେବୀ ଅନେକଥର ଶୁଣିଛନ୍ତି । ଜଂଗଲ ମନ୍ତ୍ରୀ ରାଧିକାଚରଣଙ୍କର ସ୍ତ୍ରୀ ତାଙ୍କର ଲବଙ୍ଗ । ତାଙ୍କଠାରୁ ସେ ଶୁଣିଛନ୍ତି, ମନ୍ତ୍ରୀମାନଙ୍କର କେତେ କ୍ଷମତା । ଥରେ ମନ୍ତ୍ରୀ ଗାଦିରେ ବସିଲେ ଜୀବନରେ ଆଉ ଅଭାବ ରହିବ ପାହିଁ । ରାଧିକାଚରଣ ବାବୁ ଆଗରୁ ଜଙ୍ଗଲ ବିଭାଗର କିରାଣୀ ଥିଲେ । ପରେ ସେଇ ବିଭାଗରେ ମନ୍ତ୍ରୀ ହେବା ପରେ ତାଙ୍କ ପୁତୁରାମାନଙ୍କୁ ଜଙ୍ଗଲ ସବୁ ଠିକା ଦେଇ ଲକ୍ଷ ଲକ୍ଷ ଟଙ୍କାର ମାଲିକ ହେଲେଣି । ଭୁବନେଶ୍ୱରରେ ସେ ଯେଉଁ କୋଠା ତିଆରି କରିଛନ୍ତି, ତାହା ଦୁଇ ହଜାର ଟଙ୍କାରେ କଲିକତାର କୋଉ କମ୍ପାନୀକୁ ଭଡ଼ା ଦିଆଯାଇଛି । ସବୁଦିନେ ତ ତାଙ୍କର ଖବରକାଗଜରେ ବକ୍ତୃତା ବାହାରେ । ସ୍ତ୍ରୀ ବି ସବୁବେଳେ ପାଖେ ପାଖେ । ଯେତେବେଳେ ଦେଖିବ, ରାଧିକାଚରଣ ବାବୁଙ୍କ ଘର ସାମ୍ନାରେ ସାତ ଆଠଟା କାର୍ ।

ମନ୍ତ୍ରୀଙ୍କ ଦର୍ଶନ ପାଇଁ ସାମ୍ବାଦିକ ଓ ବ୍ୟବସାୟୀମାନେ ଘଣ୍ଟା ଘଣ୍ଟା ଧରି ଅପେକ୍ଷା କରିଥାନ୍ତି ।

ଭଗୀରଥ ଯେମିତି ମନ୍ତ୍ରୀ ହୋଇ ଯାଇଛନ୍ତି, କାଂଚନ ଦେବୀ ସେହିପରି ତାଙ୍କ ଆଡ଼କୁ ଅନାଇଲେ । ଭଗୀରଥ କହିଲେ, 'ଏଥର ଠିକ୍ ସମୟ ଆସିଗଲା । ଅମୋଘ ଅସ୍ତ୍ର ପ୍ରୟୋଗ କରିବାକୁ ହେବ । ଜୟ ହନୁମାନ କାଲି ଦଶ ହଜାର ଟଙ୍କା ଦେବ । ଆମ ପାର୍ଟି ସରକାର ଗଢ଼ିଲେ ତାର ଚିନି, କିରୋସିନି ଡିଲରଶିପ୍‌ଟା ନ କଟିଲେ ହେଲା ।'

କାଂଚନ ଦେବୀ ଚମକି ଉଠିଲା ପରି କହିଲେ, 'ମଲା, କାଉ କା କା କଲାଣି । ସକାଳ ହେଇଗଲା ନା କ'ଣ !'

ଭଗୀରଥ ବାହାରକୁ ଅନାଇଲେ । ସକାଳର କୋମଳ ଆଲୋକରେ ସମୁଦ୍ରଟା ଦିଶୁଥିଲା ଶାନ୍ତ-ନିସ୍ତରଙ୍ଗ ।

ସକାଳ ହେଉ ହେଉ ବିଶୁନି ପଶୁପାଳକ ମେଂଚାଏ ପ୍ରଚାରପତ୍ର ଧରି ନୂତନ ମିଷ୍ଟାନ୍ନ ଭଣ୍ଡାର ପାଖରେ ଖଟିଖିଆ ଦଳ ପ୍ରାର୍ଥୀ ଅର୍ଜୁନ ଗୋଛିକାରଙ୍କ ପାଇଁ ପ୍ରଚାର ଆରମ୍ଭ କରି ଦେଇଥିଲେ । ପ୍ରଚାରପତ୍ରଗୁଡ଼ିକ ଯେମିତି ଏଇ ମାତ୍ର ଛାପାଖାନାରୁ ଆସିଥିଲା, କଳା ବଲ ବଲ ଅକ୍ଷରଗୁଡ଼ିକ ସ୍ପଷ୍ଟ ପଢ଼ି ହେଉ ନଥିଲା । ସେଥିରେ ପୁଣି ବର୍ଣ୍ଣ ଅଶୁଦ୍ଧି ମୂଳରୁ ଶେଷ ଯାଏଁ ପୂରି ରହିଥିଲା, ବିଶୁନି କିନ୍ତୁ ଗଡ଼ ଜିଣିବା ପରି ଅତ୍ୟନ୍ତ ଉଲ୍ଲାସର ସହିତ ନୂତନ ମିଷ୍ଟାନ୍ନ ଭଣ୍ଡାର ଆଡ଼େ ମୁହାଁଇଥିବା ଗରାଖମାନଙ୍କୁ ସେଥିରୁ ଖଣ୍ଡେ ଖଣ୍ଡେ ବଢ଼ାଇ ଦେଇ କହୁଥିଲେ, 'ଆଜ୍ଞା, ଯାକୁ ପଢ଼ିଲେ ଭଗୀରଥ ବାବୁଙ୍କ ଅସଲି ରୂପ ଜାଣିବା ହେବେ ।'

ସକାଳର ଗରମ ଚା'ପରି ଏଇ ପ୍ରଚାର ପତ୍ର ମଧ୍ୟ ଗରାଖମାନଙ୍କୁ ହଠାତ୍ କିଛି ଉତ୍ତେଜନା ଯୋଗାଇଦେଲା । ଗତ କେତେ ଦିନ ହେଲା କ୍ରମାଗତ ସେଇ ଏକା କଥା ଶୁଣି ଶୁଣି ଯେଉଁମାନେ ମାନ୍ଦା ଅନୁଭବ କରୁଥିଲେ, ଆଜିର ପ୍ରଚାରପତ୍ର ଦେଖି ସେମାନଙ୍କ ଭିତରୁ କେହି କେହି ଉତ୍ସାହିତ ହୋଇ କହିବାର ଶୁଣାଗଲା – 'ଯାହା ହେଉ, ପୁଣି ଜମିଲା !' ହଠାତ୍ ଯେମିତି ଖଟିଖିଆ ଦଳର ନିର୍ବାଚନ ପ୍ରଚାର ମହା ଜନତା ଦଳକୁ ପଛରେ ପକାଇଦେଲା ! ଖଟିଖିଆ ଦଳର ନେତା ଗଦାଧର ସାଧାରଣତଃ ନୂତନ ମିଷ୍ଟାନ୍ନ ଭଣ୍ଡାର ଆଡେ ନ ଆସୁଥିଲେ ମଧ୍ୟ ଆଜି ସକାଳୁ କେଜାଣି କାହିଁକି ପହଞ୍ଚି ଯାଇଥିଲେ ।

କିଛି ସମୟ ପରେ ଦେଖାଗଲା, ସମସ୍ତଙ୍କ ହାତରେ ଖଣ୍ଡିଏ ଖଣ୍ଡିଏ ସେଇ ପ୍ରଚାରପତ୍ର । ସକାଳର ଆଲୋଚନାଟା ମଧ୍ୟ ସେଇ ପ୍ରଚାରପତ୍ରକୁ କେନ୍ଦ୍ର କରି ଜମି ଉଠିଲା । ବିଶୁନିଙ୍କ ଭାଇ ରଘୁନି ପଶୁପାଳକ ପାଟିରେ ଦୁଇଟା ସିଂଗଡ଼ା ଏକା ସଂଗେ ପୂରାଇ କହିଲେ, 'ଆଏ, ଭଗୀରଥଙ୍କୁ ମୁଁ ପିଲାଦିନରୁ ଜାଣେ । ତାଙ୍କ ନନା ଚକ୍ରୁ ମହାପାତ୍ରେ ଆମ ଦାଦାଙ୍କ ସଂଗେ ଘଣି ଥିଲେ । ଚକ୍ରୁ ମହାପାତ୍ରେ ଆମ ବାବାଙ୍କଠୁ

କେତେ ଥର ଧାର ଉଧାର ନେଇଥିବେ । ବୁଢ଼ାର କିଛି ବୋଲି କିଛି ନଥିଲା । ଦଶ ତୁଠିଆ ଖଣ୍ଡେ ପିନ୍ଧି ବୁଢ଼ା ଖାଲି ନଅର କାଳୀଙ୍କ ଦେଉଳରୁ ଶ୍ୟାମାକାଳୀଙ୍କ ଦେଉଳ, ଶ୍ୟାମାକାଳୀଙ୍କ ଦେଉଳରକୁ ନଅର କାଳୀ ଦେଉଳ ହେଉଥିବ । ତାଙ୍କ ପୁଅ ଭଗି ଗରିବ ଗୁରୁବାଙ୍କ ପଇସାରେ କୋଠା ବାଡ଼େଇ ନେତା ବନିଚି !

ବିଶୁନି ପ୍ରଚାରପତ୍ରଯାକ ବାଣ୍ଟିସାରି ନୂତନ ମିଷ୍ଟାନ୍ନ ଭଣ୍ଡାରରେ ଚା'ଖାଇବାରେ ଯୋଗ ଦେଇଥିଲେ । ବିଶୁନି ଓ ରଘୁନି ଦୁହିଁଙ୍କ ଉପସ୍ଥିତିରେ ଅନ୍ୟ ଗରାଖମାନେ ଯେ ଭଗୀରଥଙ୍କ ସପକ୍ଷରେ କିଛି କହି ପାରନ୍ତେ, ତା ନୁହେଁ । ଦୁହିଁଙ୍କ ଚେହେରା ଏକା ପରି । ଜେଗା ଘରେ କୁସ୍ତି କରି ଦୁହେଁ ଚେହେରା ବନାଇଛନ୍ତି । ଦୁହିଁଙ୍କ କାନ୍ଧରେ ନାଲି ଗାମୁଛା, ନାକ ତଳେ ଦି'ପଟ ଲମ୍ବା ଲମ୍ବା ନିଶ । ଦୁହିଁଙ୍କ ମୁଣ୍ଡରେ ନାଲି ସିନ୍ଦୂର କଲି ।

ଆଜି ସକାଳୁ ଦୁଇ ଭାଇଙ୍କୁ ଏମିତି ଏକାଠି ଦେଖି ହରିଦତ୍ତ ବିଚରା ଟିକିଏ ବିଚଳିତ ହୋଇ ପଡ଼ିଲା । ଭାଗ୍ୟକୁ ମାଧବ ତଥାପି ସେ ଯାଏଁ ଆସି ନଥିଲା । ସେମାନେ କେମିତି ଶୀଘ୍ର ଦୋକାନ ଛାଡ଼ି ଯାଆନ୍ତୁ, ହରିଦତ୍ତ ମନେ ମନେ ଜଗନ୍ନାଥଙ୍କ ପାଖରେ ଏହାହିଁ ପ୍ରାର୍ଥନା କରୁଥିଲା ।

ବିଶୁନି କହିଲେ, 'ଆଜ୍ଞା, ମହା ଜନତା ଦଳ ଗାଦିକୁ ଆସିବା ଦିନୁ ଆମେ ଗରିବ ଗୁରୁବାମାନେ ବଡ ଦହଗଂଜ ହେଲୁଣି । ଏ ସରକାର ଜେଗା ଘରମାନଙ୍କୁ ଗୋଟିଏ ବି ପଇସା ଦେଉନି । ସବୁଆଡ଼େ ଭେଜାଲ୍, ଆଜ୍ଞା ! ଖାଣ୍ଟି ନିତିଆନି ଟୋପେ ମିଳୁନି । ମୋ ଭାଇ ଏବର୍ଷ ଓଡ଼ିଶା ଚଂପିଅନ୍ ହୋଇଥିଲା, ଆପଣମାନେ ଜାଣିଥିବେ । ସମାଜରେ ତା ଫଟ ବାହାରିଥିଲା । ସିଏ ଆଜ୍ଞା ଘିଅ ଟୋପେ ନ ପଡ଼ିଲେ ଭାତଗୁଣ୍ଡା ଛୁଏଁନି । ମିଛ କହିବେ ଆଜ୍ଞା, ମୁଁ ଯେତେ ଚେଷ୍ଟା କଲି, ଖାଣ୍ଟି ଘିଅ ସେରେ ଯୋଗାଡ଼ କରି ପାରିଲିନି । ସବୁଆଡ଼େ ଭେଜାଲ୍, ଆଜ୍ଞା, ଭେଜାଲ୍ । ଏ ସରକାରକୁ ନ ହଟାଇଲେ ଖାଣ୍ଟି ଜିନିଷ ଆଉ ଦେଖିବାକୁ ମିଳିବନି । ଖାଣ୍ଟି ଜିନିଷ ପେଟରେ ନ ପଡ଼ିଲେ ଦେହ ମିହନ୍ତ କରି ଫାଇଦା କ'ଣ ?'

ଉପସ୍ଥିତ ଗରାଖମାନଙ୍କ ଭିତରୁ କେତେ ଜଣ ବିଶୁନି ପଶୁପାଳକଙ୍କ କଥାର ଗୁରୁତ୍ୱ ବୁଝିଲା ପରି ଜଣାପଡୁଥିଲେ । ଆଉ କେତେ ଜଣ ଚୁପ୍‌ଚାପ୍ ନିଜ ନିଜର ଚା' ଜଳଖିଆ ଖାଇ ପରସ୍ପର ଭିତରେ କ'ଣ ସବୁ ଆଲୋଚନା କରିବାରେ ବ୍ୟସ୍ତ ଥିଲେ ।

ବିଶୁନି କହି ଚାଲିଥିଲେ, 'ଆଜ୍ଞା, ମହା ଜନତା ପାର୍ଟିର ନେତା ଭଗୀରଥ ସେଦିନ ଗଦାଧର ବାବୁଙ୍କ ଦୋକାନରେ ହରତାଳ କଲେ । ଆପଣମାନେ ଜାଣନ୍ତି, ବାହାରକୁ ସେ କହୁଛନ୍ତି, ମଦ ଖାଅ ନାହିଁ । ମଦ ଖାଇବା ମହାପାପ । ଏଣେ କିନ୍ତୁ ରାତିରେ ସେ ନିଜେ ଗଦାଧର ବାବୁଙ୍କ ଦୋକାନରୁ ବୋତଲ ବୋତଲ ମଦ କିଣନ୍ତି । ମୁଁ କ'ଣ କହିବି? ଗଦାଧର ବାବୁଙ୍କୁ ପଚାରିବା ହୁଅନ୍ତୁ ।'

ଗଦାଧର ବାବୁ ଏ ଯାଏଁ ସବୁରି ଅଲକ୍ଷ୍ୟରେ ବସି ପାନ ଚୋବାଉଥିଲେ । ଧୋବ ଫର ଫର ଧୋତି ପଂଜାବି ଭିତରୁ ପଥରବନ୍ଧା ଦାନ୍ତ ଦୁଇପାଟି ଚିପି ଚିପି ସେ କହିଲେ, 'ଆଜ୍ଞା, ଏଇ ଦେଖନ୍ତୁ କେସ୍‌ମେମୋଗୁଡ଼ିକ ନେଇ ଆସିଛି । ଏଇଥିରୁ ଆପଣମାନେ ଜାଣିପାରିବେ ଭଗୀରଥବାବୁ କେଉଁ କେଉଁ ତାରିଖରେ ମୋ' ଦୋକାନରୁ ମଦ କିଣିଛନ୍ତି ।'

ଗଦାଧର ବାବୁ ଏହା କହି ସତକୁ ସତ କେତୋଟି ଧଳା କାଗଜ ଉପରକୁ ଟେକି ଧରିଲେ । ଉପସ୍ଥିତ ଲୋକମାନଙ୍କ ମଧ୍ୟରୁ କେତେଜଣ କ୍ୟାସ୍ ମେମୋ ଗୁଡ଼ିକୁ ଦେଖିବା ପାଇଁ ଗଦାଧରବାବୁଙ୍କ ପାଖକୁ ଲାଗିଗଲେ ।

ବିଶୁନି ଉତ୍ସାହିତ ହେଲା ପରି କହିଲେ, 'ଦେଖିବା ହୁଅନ୍ତୁ ଅବଧାନ, ନେତା ବୋଲାଉଥିବା ଭଗୀରଥଙ୍କ ଅସଲ ରୂପ । ଆଜ୍ଞା ଖାଲି ସେତିକି ନୁହେଁ, କହିବେ ଯଦି ଜଗନ୍ନାଥଙ୍କ ଧଣ୍ଡାମାଳ ଛୁଇଁ ହଲପ କରି କହିବି, କେତେଥର ଭଗୀରଥବାବୁଙ୍କୁ ନୋଳିଆ ସାହୀରେ ଦେଖିଚି । ହଇଏ, ତମେ ଜେଣ୍ଟଲ୍‌ମ୍ୟାନ୍ ବୋଲାଉଚ ! ତମେ ସେଠି ନୋଳିଆମାନଙ୍କ ସଂଗେ ବସି ତାଡ଼ି ପିଇବ । ଛିଃ-ଛିଃ ! ତମ ବାପେ ଚକ୍ରୁ ମହାପାତ୍ରେ କେତେ ଧାର୍ମିକ ଲୋକ ଥିଲେ । ତମେ ତେଲେଙ୍ଗାଙ୍କ ଭୋଟ୍ ପାଇବ ବୋଲି ତାଙ୍କ ସଂଗେ ତାଡ଼ି ପିଇବ ।'

ଗଦାଧର ପାଳି ଧରିବା ପରି କହିଲେ, 'ଆଜ୍ଞା, ଭଗୀରଥ ବାବୁଙ୍କୁ ଆମେ ପୁରୀ ସହରର ଭୋଟ୍‌ଦାତାମାନେ ଗତଥର ଆସେମ୍ବ୍ଲିକୁ ପଠାଇଥିଲେ । ଗତ ପାଞ୍ଚବର୍ଷ ଭିତରେ ସେ ଆମ ଜନସାଧାରଣଙ୍କ ପାଇଁ କ'ଣ କରିଛନ୍ତି, ଆଜି ତାହାର ଜବାବ ଦିଅନ୍ତୁ । ପାଂଚବର୍ଷ ଭିତରେ ଥରେ ବି ସେ ଲୋକଙ୍କ ଅବସ୍ଥା ବୁଝି ନାହାନ୍ତି । ନିଜର ଘର ନଥିଲା ବୋଲି ସମୁଦ୍ର କୂଳରେ ପ୍ରକାଣ୍ଡ କୋଠା କରିଛନ୍ତି । ନିର୍ବାଚନ ଚିହ୍ନ ସିନା ହାତଟଣା ରିକ୍‌ସା, ତାଙ୍କର କିନ୍ତୁ ଏବେ ଦୁଇଟା ମଟରଗାଡ଼ି । ଲକ୍ଷ ଲକ୍ଷ ଟଙ୍କା ବ୍ୟାଙ୍କ୍‌ରେ ଜମାଇଛନ୍ତି ଆଜ୍ଞା, ଲକ୍ଷ ଲକ୍ଷ ଟଙ୍କା ! ଏଣେ କିନ୍ତୁ ଆପଣଙ୍କୁ ଦେଖାଇବାକୁ ପୁରୁଣା ସାଇକେଲ ଖଣ୍ଡକରେ ଚଢ଼ି ସାହୀ ସାହୀ ବୁଲୁଛନ୍ତି । ଏ ଲୋକଦେଖାଣିଆ ଢଙ୍ଗରେ ଭୁଲନ୍ତୁ ନାହିଁ । – ଏତିକି ମୋର ଅନୁରୋଧ ।'

କେହି କେହି ଚା' ଖାଇ ଉଠି ଚାଲି ଯାଉଥିଲେ, ପୁଣି ନୂଆ ଗରାଖମାନେ ଆସି ସେମାନଙ୍କ ସ୍ଥାନ ଅଧିକାର କରୁଥିଲେ । ବିଶୁନି ନୂଆ ଲୋକମାନଙ୍କୁ ପ୍ରଚାରପତ୍ର ଖଣ୍ଡିଏ ଧରାଇ ଦେଉଥିଲେ । ତା ପରେ ସେ ଓ ଗଦାଧର ଆରମ୍ଭ କରୁଥିଲେ ବକ୍ତୃତା । ଆଶ୍ଚର୍ଯ୍ୟର କଥା, ଭଗୀରଥଙ୍କ ପ୍ରଚାରକଙ୍କ ଭିତରୁ କେହିଜଣେ ବି ଏ ଯାଏଁ ଦେଖା ନଥିଲେ । ତେଣୁ ସେମାନଙ୍କ କଥାର ପ୍ରତିବାଦ କରିବାକୁ କେହି ନଥିଲେ । ସେମାନେ ବେଶ୍ ସ୍ୱଚ୍ଛନ୍ଦରେ ନିର୍ବାଚନ ପ୍ରଚାର ଚଳାଇଥିଲେ;-ସେମାନଙ୍କ ପ୍ରାର୍ଥୀ ଅର୍ଜୁନ ଗୋଛିକାରଙ୍କ ସପକ୍ଷରେ ଯେତେ ନୁହଁ, ଭଗୀରଥଙ୍କ ବିପକ୍ଷରେ ତା'ଠାରୁ ବେଶି ।

କେହି ଜଣେ ପତଳାଲୋକ ଚିଁ ଚିଁ ସ୍ୱରରେ ଅର୍ଜୁନ ଗୋଛିକାରଙ୍କୁ ଭୋଟ୍ ଦେବାପାଇଁ ନିବେଦନ କରୁଥିଲା- 'ଥରେ ତ ଭଗୀରଥ ବାବୁଙ୍କୁ ଆସେମ୍ଲିକୁ ପଠାଇ ଦେଖିଲେ, ସେ କ'ଣ କଲେ । ଏଥର ଅର୍ଜୁନ ବାବୁଙ୍କୁ ପଠାଇ ଦେଖାଯାଉ, କ'ଣ କରୁଛନ୍ତି ।'

କଥାଟା ଯେମିତି ଅନେକଙ୍କ ମନକୁ ପାଇଲା । ଗୈରିକ ବସନ ପରିହିତ ଜଣେ ବଙ୍ଗାଳୀ ବାବାଜୀ ପଢୁଥିବା ଖବରକାଗଜ ଉପରୁ ମୁଣ୍ଡ ଟେକି କହିଲେ, 'ଠିକ୍ କଥା ମାଶୟ ଠିକ୍ କଥା ! ନତୁନ୍ ନତୁନ୍ ଲୋକ ପଠାଇବା ଦରକାର । ତା'ନହେଲେ କେମିତି ଲୋକ୍, ଜାନିବା କେମ୍‌ତି ?'

ଏତିକି କହି ସେ ପୁଣି ତାଙ୍କର ଖବର କାଗଜ ପଢ଼ା ଆରମ୍ଭ କରିଦେଲେ । ମୁରାରି ଦାସଙ୍କ ପରି ଏଇ ଲଣ୍ଡିତମସ୍ତକ ବାବାଜୀ ମଧ୍ୟ ନୂତନ ମିଷ୍ଟାନ୍ନ ଭଣ୍ଡାରର ଜଣେ ନିତିଦିନିଆ ଗରାଖ । ସବୁଦିନେ ସେ ଆସନ୍ତି, ଚୁପ୍ ଚାପ୍ ବସି ଖବରକାଗଜ ପଢ଼ନ୍ତି, ପୁଣି କେତେବେଳେ ସବୁରି ଅଲକ୍ଷ୍ୟରେ ଉଠି ଚାଲିଯାନ୍ତି । କଦବା ସେ ଅନ୍ୟମାନଙ୍କ ଆଲୋଚନାରେ ଭାଗ ନିଅନ୍ତି । କଥା କହନ୍ତି କମ୍ । ତାଙ୍କ କଥା ଶୁଣି ଅନ୍ୟମାନେ କ'ଣ କହନ୍ତି, ତାହା ଶୁଣିବାକୁ ତାଙ୍କର ଆଗ୍ରହ ନଥାଏ । ଆଜି ବି ନିର୍ବାଚନ ସଂପର୍କରେ ମତ ପ୍ରକାଶ କରି ସେ ଖରବରକାଗଜ ପଢ଼ାରେ ଲାଗି ଗଲେ । ଅନ୍ୟମାନଙ୍କ କଥା ଶୁଣିବାଟା ଯେ ଆବଶ୍ୟକ, ଭାବିଲେ ନାହିଁ ।

ବିଶୁନି ପଶୁପାଳକ ବାବାଜୀଙ୍କୁ ସମର୍ଥନ କରି କହିଲେ, 'ବାବାଜୀ ମାହାର୍ଜେ ଠିକ୍ କହୁଛନ୍ତି । ଆମର ନୂଆ ନୂଆ ଲୋକ ପଠାଇବା କଥା ।'

ଠିକ୍ ଏତିକି ବେଳେ ଆଶା ବାଡି ଖଣ୍ଡକ ଖଡ୍ ଖଡ୍ କରି ମାଧବ ପହଞ୍ଚିଗଲା । ହଠାତ୍ ବିଶୁନି ପଶୁପାଳକଙ୍କ ସହତ ମୁହାଁମୁହିଁ ହୋଇ ଯିବାରୁ ସେ ଟିକିଏ ଇତସ୍ତତଃ ହୋଇ ବାବାଜୀ ମହାଶୟଙ୍କ ନିକଟରେ ବସି ପଡ଼ିଲା ଏବଂ ବିକୃତ ବଙ୍ଗଳାରେ ବାବାଜୀଙ୍କୁ ପଚାରିଲା, 'ଆର୍ କି ଖବର୍ ?'

ବାବାଜୀ ଖବର କାଗଜ ଉପରୁ ମୁହଁ ନଟେକି କହିଲେ, 'ଖାଲି ତ ନିର୍ବାଚନ ଖବର୍ । ଆର୍ କି ?'

ସେଦିନ କିନ୍ତୁ ହରିଦତ୍ତର ଅଶଙ୍କା ଅମୂଳକ ପ୍ରମାଣିତ ହେଲା । ମାଧବ ଆସିବା ପରେ ପରେ କେଜାଣି କାହିଁକି ବିଶୁନି ଓ ରଘୁନି ଉଠି ଚାଲିଗଲେ । ହରିଦତ୍ତ ମୁରାରି କାନ ପାଖେ ଚୁପ୍ ଚାପ୍ କହିଲା, 'ଓଃ-ଆଜି ସଖାଲୁ ସଖାଲୁ ଗୋଟାଏ ରିଷ୍କ କଟିଗଲା !'

ଶ୍ୟାମାକାଳୀଙ୍କ ଦେଉଳର ଗୋଟିଏ କୋଣରେ ଦୁଇ ହାତ ଯୋଡ଼ି ଠିଆ ହୋଇଥିଲେ ଭଗୀରଥ । ଠାକୁରାଣୀଙ୍କ ଆଗରେ କାଠ ରୁଖାଟି ଉପରେ ପୁଲାଙ୍ଗ ତେଲର ଦୀପଟି ମିଂକି ମିଂକି ଜଳୁଥିଲେ ବି ଦେଉଳ ଭିତରଟି ବେଶ୍ ଅନ୍ଧାରୁଆ ଦିଶୁଥିଲା । କେବଳ ଯାହା ଠାକୁରାଣୀଙ୍କ ପିତଳ ଆଖି ଦୁଇଟି ଅନ୍ଧାର ଭିତରୁ ଦପ୍ ଦପ୍ ହେଉଥିଲା । ଦେଉଳଟି ଭିତରେ ଆଉ କେହି ନଥିଲେ । ବୁଢ଼ା ପୂଜାରୀ ସବୁଦିନ ପରି କାନ୍ଥକୁ ଆଉଜି ବସି ଢୁଳାଉଥିଲା । ମଝିରେ ମଝିରେ ଘାଗଡ଼ା ପାଟିରେ ସେ କ'ଣ ପଦେ ଲେଖାଏଁ ଭଜନ ବୋଲୁଥିଲା । ପୁଣି କେତେବେଳେ ମଶା ଆଡ଼େଇବା ପାଇଁ ନିଜ ଦେହରେ ନିଜେ ଚଟକଣି ଖାଉଥିଲା । ଚାରିଆଡ଼େ କେମିତି ଗୋଟାଏ ଖାଁ ଖାଁ ଭାବ । ଯେଉଁମାନେ ସଂଜବେଳେ ଠାକୁରାଣୀଙ୍କୁ ଦର୍ଶନ କରିବାକୁ ଆସିଥିଲେ, ସେମାନେ ଜଳାଇଥିବା ଦୀପସବୁ କେତେବେଳୁ ଲିଭି ଯାଇଥିଲା । ଏଇ ମାତ୍ର ଲିଭିଥିବା କେତୋଟି ଦୀପରୁ ମୋଡ଼ି ମୋଡ଼ି ହୋଇ ଉଠୁଥିବା ଧୂଆଁ କେମିତି ରହସ୍ୟମୟ ଭୟାନକ ଦିଶୁଥିଲା । ଧୋତି ଓ କମିଜି ପିନ୍ଧି ଏମିତି ଏଠି ନିରୋଳାରେ ଠିଆ ହୋଇଥିଲେ ଭଗୀରଥ । ଅନ୍ଧାରରେ ତାଙ୍କ ମୁହଁର ଭାବଭଙ୍ଗୀ ଜାଣିବା ସହଜ ନଥିଲା । କେବଳ ମଝିରେ ମଝିରେ ଅସ୍ପଷ୍ଟ ସ୍ୱରରେ ଉଚ୍ଚାରଣ କରୁଥିଲେ- 'ମାଆ, ଏ ବିପଦରେ ତୁହି ଭରସା ।'

ବିପଦ କିନ୍ତୁ ହଟିଯିବା ପରି ମନେ ହେଉ ନଥିଲା । ଶ୍ୟାମାକାଳୀଙ୍କ ଆଖି ଦୁଇଟି ଦେଖି ଭଗୀରଥଙ୍କୁ ଭୟ ଲାଗୁଥିଲା । ସତେ ଯେମିତି ସେ ପିତଳ ଆଖି ଦୁଇଟି ତାଙ୍କୁ ବାରମ୍ବାର ଚେତାଇ ଦେଉଥିଲା-ସେ ଦୋଷୀ ! ଭଗୀରଥ ମଧ୍ୟ ସେଇଆ ଅନୁଭବ କରୁଥିଲେ । ସେ ଭାବୁଥିଲେ, ସାରା ସହରରେ ଆଜି ତାଙ୍କ ବିରୁଦ୍ଧରେ ଯେଉଁ ଅଭିଯୋଗ ମୁଣ୍ଡଟେକିଛି, ସେ ଅଭିଯୋଗ କ'ଣ ମିଥ୍ୟା ? ସେ କ'ଣ ନିଜର ସଚ୍ଚୋଟପଣିଆ ବଳରେ ଆଜି ଏତେ ସୁନ୍ଦର କୋଠାଘର ତୋଳାଇଛନ୍ତି । ଏତେଟଙ୍କା ବ୍ୟାଙ୍କ୍ ବାଲାନ୍ସ ରଖିଛନ୍ତି । ଏ କୋଠାଘର-

ଏ ବ୍ୟାଙ୍କ୍ ବାଲାନ୍‌ସରୁ ବା ସେ ପାଇଛନ୍ତି କ'ଣ ? କାଂଚନ ଦେବୀଙ୍କ କଥା ମନେ ପଡ଼ିଲା । ସଁତେତ-ଭଲ ଥିଲା ସେଇ ନଅର ଗଳିର ଅନ୍ଧାରୁଆ ଚାଳଘର । ତାଙ୍କର ସେଇ ନୁଆଁଣିଆ ଛୋଟ ଚାଳଘରଟିର ଅନ୍ଧାରିଆ କୋଠରୀରେ ଯେମିତି କାହାର ସ୍ନେହ ମମତା ଦେହକୁ ମନକୁ ଛୁଇଁ ଯାଉଥିଲା । ଆଜି ସିନା ସେ ବୁଝୁଛନ୍ତି, ସେମାନେ ଥିଲେ ଦରିଦ୍ର । ସମାଜର ଯେଉଁମାନେ ଧନୀ, ଦୁଇ ମହଲା ତିନି ମହଲା କୋଠାଘରେ ରହନ୍ତି, ମୋଟର ଚଢ଼ନ୍ତି, ଯେଉଁମାନଙ୍କ ଘରେ ରେଫ୍ରିଜରେଟର୍, ରେଡ଼ିଓ - ସେମାନଙ୍କୁ ଦେଖି, ସେମାନଙ୍କ ସହିତ ନିଜକୁ ତୁଳନା କରି, ଆଜି ସେ ବୁଝୁଛନ୍ତି ତାଙ୍କ ପିଲା ଦିନେ ସେ କେମିତି କିଛି ପାଇ ନଥିଲେ, ସବୁଥିରୁ ଥିଲେ ବଂଚିତ, କିନ୍ତୁ ସେଦିନ ତ ସେ ଏତେ କଥା ବୁଝି ନଥିଲେ । ତାଙ୍କ ଘର ନଅର ଗଳିରେ ଗୋଟିଏ ବୋଲି କୋଠାଘର ନଥିଲା । ଦୁଇ ପଟେ ଦୁଇ ଧାଡ଼ି ଚାଳଘର, ମଝିରେ କଚ୍ଚା ସରୁ ରାସ୍ତା । ଗୋଟିଏ ମୁଣ୍ଡେ ନଅର କାଳୀଙ୍କ ଦେଉଳ, ଆର ମୁଣ୍ଡେ ଅତି ପୁରୁଣା ଅତି ଗହୀରିଆ ନଅର ପୋଖରୀ । ପିଲାଦିନୁ ସେ ଶୁଣି ଆସିଛନ୍ତି, ପୁରୀ ରାଜାଙ୍କର ନଅର ଆଗେ କୁଆଡ଼େ ସେଇଠି ଥିଲା । ସେଇ ପୋଖରୀରେ ରାଣୀ ଓ ରାଜପରିବାରର ଅନ୍ୟାନ୍ୟ ସ୍ତ୍ରୀମାନେ କୁଆଡ଼େ ସ୍ନାନ କରୁଥିଲେ । ତେବେ ସେ ସବୁ ଥିଲା ଶୁଣାକଥା । ଭଗୀରଥ ଦେଖିଲାବେଳକୁ -ନଅରର ଚିହ୍ନ ବର୍ଣ୍ଣ କେଉଁଠି ନଥିଲା । ଥିଲା ଖାଲି ପୁରୁଣା ପୋଖରୀଟା-ସେଥିରେ କେଉଁକାଳର ଅବ୍ୟବହୃତ ସ୍ଥିର ପଚାସଢ଼ା ପାଣି, ତା ଉପରେ  ନେଳି ମାଡ଼ି ଯାଇଥିଲା । ପିଲାଦିନେ ନଅର ପୋଖରୀ ପାଖରେ କେତେ ଡୁ ଡୁ ବୋହୁ ବୋହୁକା ଖେଳ । ନଅର ପୋଖରୀଠାରୁ ସମୁଦ୍ର କୂଳ ଯାଏଁ ଖାଲି ଗୋଟିଏ ପରେ ଗୋଟିଏ ବାଲିବନ୍ତ । ସୂର୍ଯ୍ୟ ବୁଡ଼ିଗଲାବେଳେ ବାଲି ଉପରେ ସୂର୍ଯ୍ୟ କିରଣ କେମିତି ଲାଲ୍ ଦେଖାଯାଏ । ଅଳ୍ପ କେତେଦିନ ହେଲା ନଅର ପୋଖରୀ ପୋତା ହୋଇ ଯାଇଛି । ଯେଉଁଠି ଥିଲା ଧୁ ଧୁ ବାଲି ପଡ଼ିଆ, ସେଠି କେତେ ନୂଆ ନୂଆ ଘର ମୁଣ୍ଡଟେକି ଠିଆ ହୋଇଛି । ଆଉ, ଏଇ ପରିବର୍ତ୍ତନ ଭିତରେ ସତେ ଯେମିତି ହଜି ଯାଇଛି ଭଗୀରଥଙ୍କର ସେଇ ଅତି ପ୍ରିୟ ଶୈଶବ, ତାଙ୍କର ସେଇ ଲୋଭନୀୟ ଅତୀତ ।

ଭଗୀରଥ କିଛି ବୁଝି ନ ପାରିବା ପରି ଠାକୁରାଣୀଙ୍କ ଦପ୍ ଦପ୍ ଜଳୁଥିବା ପିତଳ ଆଖି ଦୁଇଟିକୁ ଅନାଇଥିଲେ । ଆପେ ଆପେ ପାଟିରୁ ବାହାରି ଆସିଲା ଅସ୍ପଷ୍ଟ ସ୍ୱର- 'ମାଆ', 'ମାଆ'- । ପ୍ରଥମେ କେବେ ସେ ଏ ଦେଉଳ ଭିତରକୁ ଆସିଥିଲେ, ତାଙ୍କର ମନେ ନାହିଁ କିନ୍ତୁ ବୁଢ଼ୀମା ସଂଗେ ପିଲାଦିନେ ସେ ଏ ଦେଉଳକୁ କେତେଥର ଯେ ଆସିଥିବେ, ଠିକଣା ନାହିଁ । ବୁଢ଼ୀମା ଠାକୁରାଣୀଙ୍କ ପାଇଁ ମାଳ ଗୁନ୍ଥି ଆଣିଥାନ୍ତି, ଠାକୁରାଣୀଙ୍କ ଆଗେ ଘିଅ ଦୀପ ବସାନ୍ତି । ନାତିକୁ କହନ୍ତି - 'ମାଆଙ୍କୁ ମୁଣ୍ଡିଆ ମାର୍ । କହ- 'ମତେ ପାଠ ଦିଅ ।' ଭଗୀରଥ ସେଇଆ କରୁଥିଲେ । ମୁଣ୍ଡିଆ ମାରି କହୁଥିଲେ- 'ମା' ଶ୍ୟାମାକାଳୀ, ମତେ ପାଠ ଦେ, ମତେ ପାଠ ଦେ ।'

ଦେଉଳ ଭିତରେ ହଠାତ୍ ଗୋଟିଏ ନାରୀ ମୂର୍ତ୍ତି । ଭଗୀରଥ ଚମକି ପଡ଼ିଲେ । କେଜାଣି କାହିଁକି ଟିକିଏ ପଛକୁ ଘୁଞ୍ଚିଗଲେ । ସ୍ତ୍ରୀ ଲୋକଟି ଚୁପ୍‌ଚାପ୍ ଘିଅ ଦୀପ ଜାଳିଲା । ଦେଉଳର ଗୋଟିଏ କୋଣରେ ଠିଆ ହୋଇଥିବା ଭଗୀରଥଙ୍କୁ ସେ ଯେମିତି ଦେଖି ନଥିଲା । ଘିଅ ଦୀପ ଜଳାଇ ସେ ତଳେ ଲମ୍ବହୋଇ ସାଷ୍ଟାଙ୍ଗ ପ୍ରଣିପାତ କଲା । ତା'ପରେ ଠିଆ ହୋଇ ଅସହାୟ ଶିଶୁ ପରି କହିବାକୁ ଲାଗିଲା – 'ମାଆ ଲୋ ମାଆ ! କେବେ ମୋ କଥା ବୁଝିବୁ ? ମୋ କଥା କ'ଣ ଜମା ମନେ ପଡୁନାହିଁ ? କେବେ ଆଉ ତାଙ୍କ ଦିହ ଭଲ ହେବ ? ସବୁ ଓଷଦ ତ କଲି । କିଛି ହେଲା ନାଇଁ । ଖାଲି ତୋରି ପାଦୁକ ଟୋପିଏ ଲେଖାଏଁ ଦଉଛି । ମାଆ ଲୋ–ତୁ ନ ଚାହିଁଲେ ଭାସିଯିବି । ମାଆ ଲୋ ମାଆ– !'

ସ୍ତ୍ରୀ ଲୋକଟି ଏତିକି କହି ବେଶ୍ ତର ତର ହୋଇ ଚାଲିଗଲା । ଭଗୀରଥ ଯେମିତି ସ୍ତ୍ରୀ ଲୋକଟିକୁ ଆଗରୁ କେଉଁଠି ଦେଖିଥିଲେ । ମନେ ପକାଇବାକୁ ଚେଷ୍ଟା କରି ମନେ ପକାଇ ପାରିଲେ ନାହିଁ । ସ୍ତ୍ରୀ ଲୋକଟି ଯେ କେତେ ନିର୍ବୋଧ, ସେ କଥା ଭାବି ସେ ଆଶ୍ଚର୍ଯ୍ୟ ହେଲେ । ହୁଏତ ତା ସ୍ୱାମୀଙ୍କର କୌଣସି ଦୁରାରୋଗ୍ୟ ବ୍ୟାଧି ହୋଇଛି । ଭଲ ହେଉନାହିଁ । ସ୍ତ୍ରୀଲୋକଟି ଶେଷରେ ଔଷଧ ବଦଳରେ ଠାକୁରାଣୀଙ୍କ ପାଦୁକ ଉପରେ ଭରସା ରଖିଛି । ତାଙ୍କୁ ଲାଗିଲା, ଶ୍ୟାମାକାଳୀ ଯେମିତି ସେ ସ୍ତ୍ରୀ ଲୋକଟିର ବୋକାମି ପାଇଁ ହସୁଛନ୍ତି ! ଚନ୍ଦନ ଓ ସିନ୍ଦୁରବୋଳା ତାଙ୍କ ମୁହଁଟି ଯେମିତି ହସରେ ଫାଟି ପଡ଼ିବ !

ଶ୍ୟାମାକାଳୀ ତାଙ୍କ ନିଜ ଅପରାଧ ପାଇଁ ତାଙ୍କ ଉପରେ ଚିଡୁ ନାହାନ୍ତି ତ ? – ଭଗୀରଥଙ୍କୁ ଭୟ ଲାଗିଲା । ପିଲାଦିନେ ଏଇ କଳା ଏରୁଣ୍ଡି ବନ୍ଧ ଉପରେ 'ମା ପାଠ ଦେ, ପାଠ ଦେ' କହି ମୁଣ୍ଡ ବାଡ଼େଇ ବାଡ଼େଇ ସେ ଯେଉଁ ବିଦ୍ୟାଲାଭ କଲେ, ତାର ସେ କି ସଦ୍ ବ୍ୟବହାର କରିଛନ୍ତି ? କେଜାଣି କେମିତି ପିଲାଦିନୁ ସେ ହୋଇପଡ଼ିଲେ ଆଦର୍ଶବାଦୀ । ମହାପୁରୁଷମାନଙ୍କ ଜୀବନୀ ପଢ଼ିଲେ ତାଙ୍କ ଦେହ ଶୀତେଇ ଉଠୁଥିଲା, ଆଖିରୁ ଲୁହ ଗଡ଼ି ପଡୁଥିଲା । ତାଙ୍କରି ପରି କେତେ ମହାପୁରୁଷ ଦୁଃଖ ଦାରିଦ୍ର୍ୟ ସଂଗେ ଲଢ଼େଇ କରିବାର ରୋମାଂଚକର କାହାଣୀ ସବୁ ପଢ଼ି ତାଙ୍କୁ ଲାଗୁଥିଲା, ସେମାନଙ୍କ ପରି ସେ ବି ଦିନେ ହେବେ ଜଣେ ମହାପୁରୁଷ, ଦୁଃଖୀ ଦରିଦ୍ରଙ୍କ ଆଖିରୁ ଲୁହ ପୋଛିବେ । ଘର କାନ୍ଥରେ ସେ ଟାଙ୍ଗିଥିବେ ଗାନ୍ଧି, ଗୋପବନ୍ଧୁ, ବିବେକାନନ୍ଦଙ୍କ ଫଟୋ । ଗାନ୍ଧିଙ୍କ ସଂପର୍କରେ ଲେଖା କେତେ ବହି ସେ ପଢ଼ିଥିବେ, ଗାନ୍ଧିବାଦ ବିଷୟରେ ଘଣ୍ଟା ଘଣ୍ଟା ଧରି ବନ୍ଧୁମାନଙ୍କ ସଂଗେ ଆଲୋଚନା କରିଥିବେ । ଗାନ୍ଧିଜୟନ୍ତୀ ଦିନ ପାହାନ୍ତାରୁ ଲୋକସଂପର୍କ ବିଭାଗର ମାଇକ୍‌ରୁ 'ରଘୁପତି ରାଘବ ରାଜାରାମ୍' ରେକର୍ଡ ପ୍ରଚାରିତ ହେବାମାତ୍ରେ, ସେ ନିତ୍ୟକର୍ମ ସାରି ପହଂଚି ଯାଉଥିଲେ ସମୁଦ୍ର କୂଳରେ ଗାନ୍ଧିଘାଟ ନିକଟରେ । ସେତେବେଳେ ସେ ସାମନ୍ତ ଚନ୍ଦ୍ରଶେଖର କଲେଜରେ ପଢୁଥାନ୍ତି । ମନରେ ନଥାଏ ଅର୍ଥଚିନ୍ତା– ସମାଜର ଧନୀ କ୍ଷମତାଶାଳୀମାନଙ୍କ ସଂଗେ ପ୍ରତିଦ୍ୱନ୍ଦ୍ୱିତା କରିବାର କଳ୍ପନା ବି ନଥାଏ ମନରେ । ସେ ସ୍ଥିର

କରିଥାନ୍ତି- ସେ ଚାକିରି କରିବେ ନାହିଁ, କରିବେ ସ୍ୱାଧୀନ ବ୍ୟବସାୟ ଓକିଲାତି । ଭାରତର ସବୁ ବଡ଼ ବଡ଼ ନେତା ତ ଓକିଲାତି କରୁଥିଲେ । ଓକିଲାତି କରି ସେ ଧାଇଁବେ ନାହିଁ ପଇସା ପଛରେ । ସମାଜରୁ ଶୋଷଣ ଅତ୍ୟାଚାର ଲୋପ କରିବା ହେବ ତାଙ୍କର ଲକ୍ଷ୍ୟ । ସେ କଳ୍ପନା କରୁଥିଲେ, ସେ ଚାଲିଛନ୍ତି ଆଗେ ଆଗେ, ତାଙ୍କ ପଛେ ପଛେ ଅଗଣିତ ଭୋକିଲା ମଣିଷ, ଫୁଙ୍ଗୁଳା ଦେହ, ମୁଣ୍ଡବାଳ ଫୁରୁ ଫୁରୁ, ପେଟ ପଶିଯାଉଛି ପିଠିରେ, ଆଖିରେ ଆଖୁ ବାଜୁଛି, ପାଟି ଖନିମାରି ଯାଉଛି । ସେ ସେଇମାନଙ୍କ ନେତା । ସେମାନଙ୍କୁ ସେ ଦେଖୁଥିଲେ ସବୁଠାରେ- ରାସ୍ତା କଡ଼ରେ ସେମାନେ ଭିକ ମାଗୁଛନ୍ତି, ଉଦୁଦିଆ ଖରାବେଳେ ଝାଳ ନାଳ ହୋଇ ଯାତ୍ରୀମାନଙ୍କୁ ରିକ୍‌ସାରେ ବୋହି ନେଉଛନ୍ତି, କଳକାରଖାନାରେ କୋଇଲା ସଙ୍ଗେ ପୋଡ଼ି ହେଉଛନ୍ତି, ବାଲିରେ ନିଜ ଛାତିର ଲହୁ ଢ଼ାଳି ସବୁଜ ଫସଲ ଫଳାଉଛନ୍ତି । ସେମାନଙ୍କ ନେତା ସେ -ଭଗୀରଥ ମହାପାତ୍ର । ସେ କଳ୍ପନା କରୁଥିଲେ, ସେ ବି ସେମାନଙ୍କ ପରି ରହିବେ, ସେଇମାନଙ୍କର ସୁଖଦୁଃଖରେ ଜଣେ ହୋଇ ଠିଆ ହେବେ ।

ସେତେବେଳେ ଦେହ ମନ କେଡ଼େ ଫୁର୍ତ୍ତି ଲାଗୁଥିଲା । ସଭାସମିତି ଆଲୋଚନାରେ ସେ ତ ଥିଲେ ସବୁଠାରେ ଆଗୁଆ । ଓଡ଼ିଆ ଇଂରାଜୀରେ ଅନର୍ଗଳ ବକ୍ତୃତା ଦେବାରେ କେହି ତାଙ୍କୁ ବଳି ଯାଉ ନଥିଲେ । ତଣ୍ଟି ଫଟାଇ ସେ ଚିତ୍କାର କରୁଥିଲେ- 'ସମାଜବାଦ ! ସମାଜବାଦ ! ସମାଜବାଦ ବିନା ସ୍ୱାଧୀନତା ଏକ ପ୍ରହସନ, ଏକ ଭାଣ୍ଡାମି ! ରାଜନୈତିକ ସ୍ୱାଧୀନତା ପାଇଁ ଭାରତୀୟମାନେ ଯେମିତି ତ୍ୟାଗ ବରଣ କରିଛନ୍ତି, ତା'ଠାରୁ ଶହେ ଗୁଣ ତ୍ୟାଗ ବରଣ କରିବାକୁ ହେବ ସମାଜବାଦ ପାଇଁ ।'

ସେତେବେଳେ କେହି ସହପାଠୀ ତାଙ୍କ କାନ ପାଖେ କହିଥିଲା, - 'ତୁ ଗୋଟାଏ ବିପ୍ଳବୀ ହେବୁ ।' କିଏ କହିଥିଲା - 'ଭଗୀରଥଟା କମ୍ୟୁନିଷ୍ଟ୍ ।' ସେ କିନ୍ତୁ କାହାକୁ କିଛି କହୁ ନଥିଲେ । ଖାଲି ହସି ଦେଉଥିଲେ । ତାଙ୍କୁ ଲାଗୁଥିଲା, ସେ ଅନ୍ୟମାନଙ୍କଠାରୁ ଭିନ୍ନ । ଅନ୍ୟମାନେ ତାଙ୍କୁ ବୁଝିବେ କିପରି ? ଅନ୍ୟମାନଙ୍କ ପ୍ରତି ତାଙ୍କ ମନରେ ଦୟା ଆସିଥିଲା ସେଦିନ ।

ଦେଉଳର ଗୋଟାଏ କୋଣରେ କ'ଣ ଫଡ୍ ଫଡ୍ ହେବାର ଶୁଣି ଭଗୀରଥ ପ୍ରକୃତିସ୍ଥ ହେଲେ । ଏତେ ସମୟ ହେଲା କ'ଣ ସବୁ ଭାବୁଛନ୍ତି ସେ ? ଆଉ ତିନୋଟି ଦିନ ପରେ ନିର୍ବାଚନ । କେତେ ସମୟ ସେ ରହିଲେଣି ଦେଉଳ ଭିତରେ ?

ନିଦୁଆ ପାଟିରେ ବୁଢ଼ା ପୂଜାରୀ ସେପାଖୁ ପାଟିକଲା- 'ହ୍ୟାପ ପାରାଗୁଡ଼ା ସବୁବେଳେ ଏଇଠି ଛୁଆ ଦେଲେ !'

ଭଗୀରଥଙ୍କୁ ଲାଗିଲା, ରାତି ଅନେକ ହୋଇଯାଇଚି । ଜୟ ହନୁମାନ, ନବଘନ, ଗିରିଧାରୀ ସଂଜବେଳେ ତାଙ୍କ ଘରକୁ ଆସି ତାଙ୍କ ପାଇଁ ଅପେକ୍ଷା କରି କରି ଫେରି ଯାଇଥିବେ । କାଂଚନଦେବୀ ମଧ ଚିନ୍ତିତା ହୋଇ ପଡ଼ିବେଣି । ନିର୍ବାଚନର ମହା କୋଳାହଳ

ଭିତରୁ ରକ୍ଷା ପାଇବା ପାଇଁ ଆଜି କିନ୍ତୁ ସେ ସଂଜବେଲୁ ଲୁଚି ପଳାଇ ଆସଛନ୍ତି ଏଠାକୁ । ଦିନ ପରେ ଦିନ ସେଇ ଆଲୋଚନା, ସେଇ ଭୋଟ୍ ଭିକ୍ଷା, ଆବେଦନ ନିବେଦନ । ସଂଜବେଲଙ୍କୁ ଆଜି ମନେ ହେଲା,ସେ ଯେମିତି ପାଗଳ ହୋଇଯିବେ ! ଏକ ପ୍ରକାଣ୍ଡ ବିସ୍ଫୋରଣରେ ଯେମିତି ତାଙ୍କର ସବୁ ଶିରା, ସବୁ ଧମନୀ ଫାଟି ଛିନ୍‌ଭିନ୍ ହୋଇ ଯିବ ! କେଜାଣି କାହିଁକି ସେ ପଳାଇ ଆସିଥିଲେ ତାଙ୍କ ଅତି ପରିଚିତ ଏଇ ଦେଉଳ ଭିତରକୁ । ଅନେକ ଦିନ ଧରି ସେ ଯେ କିପରି ଏଠାକୁ ଆସି ନଥିଲେ, ଭାବି ତାଙ୍କୁ ଆଶ୍ଚର୍ଯ୍ୟ ଲାଗିଲା ।

ଭଗୀରଥ ଶ୍ୟାମାକାଳୀଙ୍କୁ ପ୍ରଣାମ କଲେ, ଠାକୁରାଣୀଙ୍କ ଆଗରେ ଥୁଆ ହୋଇଥିବା ବଡ଼ ତମ୍ବାଥାଳିରୁ ସିନ୍ଦୂର ଟୋପାଏ କାଣିଆଙ୍ଗୁଠି ଟିପରେ ଆଣି ବେକତଳକୁ ଲଗାଇଲେ । ପୁଣି ଥରେ କହିଲେ- 'ମାଆ, ତୁଇ ଭରସା, ତୁଇ ଭରସା -' ତା'ପରେ ବାହାରକୁ ଆସିଲେ ।

ବାହାରେ ସେଇ ଗୋଟିଏ ଜାଗାରେ ସଂଜବେଲୁ ସେମିତି ବସିଥିବା ବୁଢ଼ା ପୂଜାରୀ ଭଗୀରଥଙ୍କୁ ଦେଖି ବିଳିବିଳେଇଲା ପରି କହିଲା, 'ସରକାର୍; ଏଯାଏଁ ଯାଇ ନାହାନ୍ତି ?'

ଭଗୀରଥ ପଚାରିଲେ, ବେଳ କେତେ ହେଲା ?

ବୁଢ଼ା କହିଲା, 'କାଇଁ ବନା ମହାସୁଆର ତ ଆସିନି । ଗୁରୁଘର ଆଜି ଭଅଣ୍ଡରେ ଖଟଣି ଥିଲା । ମହାସୁଆର ଏ ବାଟେ ଗଲାବେଳେ ମତେ ଡାକଟାଏ ଦିଏ । ....ବସିବା ହୁଅନ୍ତୁ ସରକାର୍ । ଠିଆ ହେଲେ କାହିଁକି ?'

ଭଗୀରଥ କହିଲେ, 'ନାଇଁ, ଡେରି ହୋଇଗଲାଣି । ଆଉ ତିନୋଟି ଦିନ ଗଲେ ଭୋଟ୍ । ଶ୍ୟାମାକାଳୀ ଯାହା କରିବେ । ମଉସା, ରାତିରେ ତମର କ'ଣ ସେଇ ଗୁରୁଘରେ ଖିଆପିଆ ?'- ଭଗୀରଥ କ'ଣ ଭାବି ବୁଢ଼ା ପାଖରେ ବସି ପଡ଼ିଲେ ।

ବୁଢ଼ା ସଳଖି ହୋଇ ବସି କହିଲା, ହଅ-ରାତିରେ ତ ସେଇ ଗୁରୁଘରୁ ପାରୁଶଟାଏ ମିଳେ । ଚାଳିଶି ବରଷ ହୋଇଗଲା । ତାଙ୍କରି ଦୟାରୁ ରାତିରେ ଅନ୍ନ ଫୁଂଜିଏ ମିଳେ । ଦିନରେ ହେଲେ ଭଲ, ନହେଲେ ଭଲ । ପରବା ନାଇଁ । ଆଉ ତ ସେ ଘିଅନ୍ନ, ଡାଲି, ମହୁର, ବେସର, ଶାଗ, ରାଇତା, ଖଟା, ରସାବଳୀ ନାହିଁ ! ଆଉ ଦରିଦ୍ର କାଳରେ ଗୁରୁଘର ଯାହା କରୁଚି, ଆଉ କେହି କରିବେ ନାଇଁ ।

ହେତୁ ପାଇଲା ଦିନୁ ଭଗୀରଥ ଶ୍ୟାମାକାଳୀ ଦେଉଳର ଏ ବୁଢ଼ା ପୂଜାରୀକୁ ଦେଖି ଆସିଛନ୍ତି । ସେ ପିଲା ଥିଲାବେଳେ ବୁଢ଼ା ଯେମିତି ଦେଖା ଯାଉଥିଲା, ଏବେ ବି ତ ସେମିତି ଦିଶୁଚି । ଏ ବୁଢ଼ାର ଯେ କେବେ ପିଲାଦିନ ଥିବ କିମ୍ବା କେବେ ଯେ ସେ ହୋଇଥିବ ସୁନ୍ଦର ହୃଷ୍ଟପୁଷ୍ଟ ଯୁବକ, ଏକଥା କେହି ବିଶ୍ୱାସ କରିପାରନ୍ତି ନାହିଁ । ଏ ଯେମିତି ବୁଢ଼ା ହୋଇ ଜନ୍ମ ହୋଇଚି ଓ ସେଥିପାଇଁ 'ବୁଢ଼ା'ବିଶେଷଣଟା ତା' ନାଆଁର ଗୋଟାଏ ଅଂଶ ହୋଇ ଯାଇଛି !

ଆଜି ବୁଢ଼ା ପାଖରେ ବସି ନିକଟରୁ ଅନାଇବାବେଳେ ଭଗୀରଥଙ୍କୁ ବୁଢ଼ା ପୂଜାରୀ ମଣିଷ ପରି ନ ଦିଶି ଦିଶୁଥିଲା ଗୋଟାଏ ଜନ୍ତୁପରି ! ପିଲାଦିନେ ଖାଲି ଏଇ ବୁଢ଼ା ପୂଜାରୀର ଘାଗଡ଼ା ସ୍ୱରଟା ଶୁଣି ସେ କେତେଥର ଡରିଛନ୍ତି । ସମୁଦ୍ରର ଘୁ ଘୁ ସାଂଗକୁ ବୁଢ଼ା ପୂଜାରୀର ନିଦୁଆ ଘାଗଡ଼ା ସ୍ୱର ମିଶି ଶୀତରାତି ଗୁଡ଼ାକରେ ଯେମିତି ତାଙ୍କୁ ଡରାଉଥିଲା ! ଖୁବ୍ ସକାଳୁ ଶେତେଙ୍ଗାରେ ଗାଧୋଇ ସାହୀ ଦାଣ୍ଡରେ କ'ଣ ସବୁ ଗୁଣୁ ଗୁଣୁ ଶ୍ଳୋକ ବୋଲି ସେ ଯାଏ । କେବେ ହାତରେ ଧରିଥାଏ ଛଞ୍ଚାଟିଏ । ଭଗୀରଥଙ୍କର ଏ ଦୃଶ୍ୟ ଅତି ପରିଚିତ ।

ଭଗୀରଥ ପଚାରିଲେ, 'ଏଇଠି ତ ସବୁବେଳେ ରହୁଚ ?'

ବୁଢ଼ା କହିଲା, 'ହଁ – ଆଉ କୁଆଡେ ଯିବି ? ମୋ ସାଙ୍ଗମାନେ କିଏ କୁଆଡ଼େ ମରି ହଜି ଗଲେଣି । ଭୋର୍‌ରୁ କଦମ୍ବଗଡ଼ରେ ନିତ୍ୟକର୍ମ କରିବାକୁ ଯାଏ । ବେଳେବେଳେ ପତି ମହାପାତ୍ରେ ଟାଣିନେଲେ ବଡ଼ ଆଖେଡ଼ା ନଇଲେ କୋଇଲି ବୈକୁଣ୍ଠରେ ଘଡ଼ିଏ ବସିବା କଥା । ଆଉ ସବୁବେଳେ ଏଇଠି । ଆମ ବେଳା ତ ସଇଲା ।'

ଭଗୀରଥ ଉଠିଲେ । ଶୀଘ୍ର ଶୀଘ୍ର ପାଦ ପକେଇ ଦେଉଳ ବେଢ଼ା ବାହାରକୁ ଆସିଲେ ।

ସଂଜ ବୁଡୁ ବୁଡୁ ମୁରାରୀ ଦାସ ଈଷତ୍ ମଇଳା ଧୋତି ପଂଜାବି ପିନ୍ଧି, କାନ୍ଧରେ ତାଙ୍କର ବହୁ ଦିନର ସଂଚିତ ମଠା ଚାଦର ଖଣ୍ଡିକ ପକାଇ ହାତୀମୁଣ୍ଡିଆ ବାଡ଼ିଟି ଧରି ଶାମ ଗୋଛିକାରଙ୍କ ଘରକୁ ବାହାରିଥିଲେ । ପୁରୀ ସହରର ଜଣେ ଅତି ପୁରୁଣା ବାସିନ୍ଦା ଭାବରେ ତାଙ୍କୁ ନିଜ ସାହୀ, ପୁଣି ପାଖ ଆଖର ସାହୀମାନଙ୍କରୁ ମଝିରେ ମଝିରେ କାହାର ଶୁଭ ଅଶୁଭ କାର୍ଯ୍ୟରେ ନିମନ୍ତ୍ରଣ ଆସେ । ପନ୍ଦର ବର୍ଷ ତଳେ ଭାରିଯା ମରିଯିବା ପରେ ଚାକରାଣୀ ଶୁକ ଛଡା ମୁରାରୀ ଦାସଙ୍କ ଘରେ ଆଉ କେହି ନଥିଲେ । ଜଗନ୍ନାଥେ କୁଆଁ କୁଆଁ ଶବ୍ଦ ନ ଶୁଣାଇବା ଦୁଃଖ କେବେଠୁ ଦେହସୁହା ହୋଇ ଯାଇଥିଲା । ତେବେ, ଏ ଯୁଗରେ ନିଜଂଜାଳୀ ହେବା ଭଲ । ସରକାରୀ କାମ ଥିବାବେଳେ ବେଳ ଅଣ୍ଟୁ ନଥିଲା । ଚାକିରି ଗଲା ଦିନୁ ନିକମା ଲାଗେ । ବସି ବସି ଦିନ କଟେ ନାହିଁ । ନୂତନ ମିଷ୍ଟାନ୍ନ ଭଣ୍ଡାରରେ ବସି ବସି ଫାଙ୍କା ଆଖିରେ ଲୋକମାନଙ୍କ ଗତିବିଧି ଲକ୍ଷ୍ୟ କରିବା କଥା । ସାଙ୍ଗ ବୋଲି ତ ହରିଦତ୍ତ । ପାଖକୁ ପାଖ ବସି ତା'ରି ସଂଗେ ଏଣୁତେଣୁ ଅଦରକାରୀ ବିଷୟରେ ଗପସପ ।

ଖରାବେଳେ ଭାତ ଦି'ଟା ଖାଇ ମୁରାରୀ ମସିଣାରେ ଗଡୁଗଡୁ ସମାଜ ପଢ଼ନ୍ତି । ଆଖିକୁ ନିଦ ଆସିଯାଏ । ଉଠିଲାବେଳକୁ ବେଳ ଗଡ଼ି ଯାଇଥାଏ । ଚା'ଟିକିଏ ଖାଇ ଗୋଟିଏ ଗୋଟିଏ ମୋତିବାବୁଙ୍କ ଘଣ୍ଟା ଦୋକାନକୁ ବାହାରନ୍ତି । ସମାଜରେ ପଢ଼ିଥିବା ବିଷୟ ସେଠି ଆଲୋଚନା ହୁଏ । ସେଠୁ ଯାଆନ୍ତି ବଡ଼ ଦେଉଳରେ ସଂଜ ଆଳତି ଦେଖିବାକୁ । ସଂଜ ଆଳତି ଦେଖି ହରିଦତ୍ତର ଦୋକାନ ଦେଇ ଘରକୁ ଫେରନ୍ତି । କେବେ ଚଂଚଳ, କେବେ ଡେରିରେ । ଚଂଚଳ ଆସିଲେ ଖୁସି ହେବାକୁ କେହି ନାହିଁ । ଡେରିରେ ଆସିଲେ କେହି କହିବାକୁ ନାହିଁ 'କାହିଁକି ଡେରି ହେଲା'ବୋଲି । ଏକୁଟିଆ ମଣିଷ । କେହି ନାହିଁ ଆଗକୁ ପଛକୁ । ଶ୍ୟାମଘନ କେତେଥର ଲଗାଇଲେ, ଲେଖା ଯୋଖାରେ ପୁତୁରାଟିଏ ତ ଅଛି । ତାକୁ ଆଣି ପୁଅ କର । ସିଏ 'ଦେଖିବା ଦେଖିବା' କହି ଦିନ କାଟୁଥିଲେ ।

ଦିନେ ଶୁଣିଲେ, ପୁତୁରା କୁଆଡୁ ଗୋଟାଏ ରିଫିଉଜି ବଙ୍ଗାଳୁଣୀକୁ ମନକୁ ମନ ବାହା ହୋଇ ରହିଲାଣି । ମୁରାରୀ ଏ ଖବର ପାଇବା ଦିନୁ ଆଉ ପୋଷିଆ ପୁଅ କରିବା କଥା ଚିନ୍ତା କରିନାହାନ୍ତି । ଯେତେ ଯାହା କଲେ ପୋଷିଆପୁଅ ତ ଆଉ ନିଜ ପୁଅ ହୋଇଯିବ ନାହିଁ ! ଯାଉ- ବୁଡ଼ି ଯାଉ ଚୈତନ ଦାସଙ୍କ କୂଳ ! ମୁରାରୀଙ୍କର ବେଳେ ବେଳେ ଭାଗ୍ୟ ଉପରେ ଅଭିମାନ ହୁଏ । ବାପା ଚୈତନ ଦାସଙ୍କ କଥା ମନେପଡେ । ଏଡ଼େ ବଡ଼ ଧାର୍ମିକ ଲୋକ ଚୈତନ ଦାସ; ଜଗନ୍ନାଥେ ତାଙ୍କ କୂଳ ବୁଡ଼ାଇଦେଲେ !

କେତେ ଅଭିମାନ କେତେ ଦୁଃଖ ମୁରାରୀ ଦାସ ତାଙ୍କ ଅନ୍ଧାରୁଆ ମନ ଭିତରେ ସଂପତ୍ତି ପରି ସାଇତି ରଖିଥିଲେ, ସେ କଥା କେହି ଜାଣନ୍ତି ନାହିଁ । ସବୁ ତ ସେ ଖୋଲି କାହାରି ଆଗରେ କହନ୍ତି ନାହିଁ । ଯାହା ଆଗରେ ସବୁ ଖୋଲି କହୁଥିଲେ, ସେ ଯେମିତି ଆଉ କିଛି ନ ଶୁଣିବ ବୋଲି ତାଙ୍କୁ ଠକି ଦେଇ ଚାଲିଗଲା । ସେଇ ତାଙ୍କର ସ୍ତ୍ରୀ, ଗଲା ମାସରେ ମରିବାର ପନ୍ଦର ବର୍ଷ ପୂରିଗଲା ।

ଆଜି କାହିଁକି ପୁରୁଣା ଦିନର ସ୍ମୃତିଗୁଡ଼ିକ ତୁହାକୁ ତୁହା ମନେ ପଡୁଥିଲା । କେତେ ହଜି ଯାଇଥିବା ମୁହଁ ଆଖି ଅଗରେ ଭାସି ଉଠୁଥିଲା, କେତେ ଲିଭି ଯାଇଥିବା କଥା କାନରେ ବାଜି ଯାଉଥିଲା । କେତେ ଦୃଶ୍ୟ, କେତେ ଘଟଣା, କେତେ ସ୍ୱର ମିଶି ମନ ଭିତରେ କେମିତି ଗୋଟାଏ କରୁଣ ମୂର୍ଚ୍ଛନା ସୃଷ୍ଟି କରୁଥିଲେ । ଏ ବୟସରେ ବି ମୁରାରୀ ଦାସଙ୍କର ଇଚ୍ଛା ହେଉଥିଲା, ପିଲାଙ୍କ ପରି ବଡ଼ପାଟିରେ ରାହା ଧରି କାନ୍ଦନ୍ତେ; ଯେମିତି ସେ କାନ୍ଦୁଥିଲେ ଦାଣ୍ଡରେ ମୁଆଁବାଲା ବେଣ୍ଟ ମୁଆଁ ବିକି ଗଲାବେଳେ, ଆଜିଠାରୁ ଷାଠିଏ ବର୍ଷ ତଳେ । ସେତେବେଳେ କିନ୍ତୁ ତାଙ୍କୁ କାଖେଇ ଆଖିରୁ ଲୁହ ପୋଛି ଦେଉଥିଲା ଜଣେ । ତା ମୁହଁ ଆଜି ସଫା ମନେପଡୁ ନାହିଁ- ଭାବିଲେ ଖାଲି ଦିଶି ଯାଉଚି ଛାଇ ଛାଇଆ ନାରୀ ମୂର୍ତ୍ତିଟାଏ- ସ୍ନେହ ମମତାର ଅବତାର - ସେଇ ତାଙ୍କର ବୋଉ । କୁଆଡ଼େ ଗଲାଣି ସେ କେବଠୁ ?

ମୁରାରୀ ଦାସଙ୍କ ଗତି ଆପେ ଆପେ ଶିଥିଳ ହେଲା, ବାଡ଼ିର ଠକ୍ ଠକ୍ ଶବ୍ଦ ଶୁଣାଗଲା ଅନିୟମିତ । କେତେବେଳେ ସେ ଯାଉଥିଲେ ଜୋର୍‌ରେ ପାଦ ପକେଇ, ପୁଣି କେତେବେଳେ·ପ୍ରାୟ ଠିଆ ହୋଇ ଯାଉଥିଲେ ।

ସାହୀମାନଙ୍କରେ ଧୂଳିଧୂସର ପିଲାମାନେ ଖେଳର ଧୂମ୍ ଲଗାଇ ଥିଲେ । ଦଳେ ପିଲା ପାଟି କରୁଥିଲେ - 'ଏତେ ଏତେ ପାଣି !' ଆଉ ଦଳେ କହୁଥିଲେ, 'ଗଉର୍ ଗଉର୍ ରାଣୀ' ।

ଶ୍ୟାମ ଗୋଛିକାରଙ୍କ ବୋଉଙ୍କ ଦଶାହ ଭୋଜିକୁ ଗଲାବେଳେ ମୁରାରୀ ଭାବୁଥିଲେ, ସିଏ ବି ଦିନେ ଏମିତି ତାଙ୍କ ସାହୀ ଦାଣ୍ଡରେ ପାଟି କରୁଥିଲେ- 'ଏତେ ଏତେ ପାଣି !' ଆଉ କିଏ ସବୁ ଥିଲେ ସେଦିନ ତାଙ୍କ ପିଲା ଦିନର ଖେଳ ସାଥୀ ? ଭାବିଲେ ସେମାନଙ୍କ ମୁହଁ ମନେ ପଡୁନାହିଁ । ମନ ଉପରେ ବିସ୍ମୃତିର ଶିଉଳି ମାଡ଼ିଗଲାଣି । ଏବେ ତ ତାଙ୍କର

ଭ୍ରମ ହେଲାଣି । ଅନେକ ଥର ଚିହ୍ନାଲୋକଙ୍କୁ ଚିହ୍ନି ପାରୁ ନାହାନ୍ତି, ଅଚିହ୍ନା ଲୋକଙ୍କୁ ଚିହ୍ନା ଲୋକ ଭାବି ଡାକି ଦେଉଛନ୍ତି ।

ହଁ-ସମୟ କ'ଣ କାହାପାଇଁ ଅଟକେ ? ଏଇ କାଲି ପରି ଲାଗୁଚି । ସିଏ ନୂଆ ହୋଇ ଶିକ୍ଷକ ଚାକିରୀ ପାଇଥାନ୍ତି । ମାର୍କଣ୍ଡସାହୀ ନି.ପ୍ରା. ସ୍କୁଲରେ ଆରମ୍ଭ ହୋଇଥାଏ ଚାକିରୀ । ସେତିକିବେଳେ ଦାମ ଗୋଛିକାରଙ୍କ ଅବସ୍ଥା ଥାଏ ଅତି ସ୍ୱଚ୍ଛଳ । ପଙ୍ଗତ ପରି ପଙ୍ଗତଟାଏ କରିଥିଲେ ସେ । କାନ୍ତି, ଝିଲି, ମରିଚିଲଡୁ, ଖଜା, ଗଜା, ଜଗନ୍ନାଥବଲ୍ଲଭ-ପୁରୀ ଦେଉଳର କୋଉ ପିଠା ସେ ନ କରିଥିଲେ ନୁହେଁ । ଦାମ ଗୋଛିକାରେ କେବେଠୁ ମଲେଣି । ଆଜି ସେ ଯାଉଛନ୍ତି ତାଙ୍କ ସ୍ତ୍ରୀଙ୍କ ଦଶାହ ଭୋଜି ଖାଇବାକୁ । ତାଙ୍କ ଦିନ ତ ଆଉରି ସରି ନାହିଁ ।

ଠାଏ ଠାଏ ପିଲାମାନେ ସେମାନଙ୍କ ଖେଳ ଭିତରେ ବି ଦିନ ରାତି ଶୁଣୁଥିବା ନିର୍ବାଚନୀ ସ୍ଲୋଗାନ୍ ସବୁ ଦୋହରାଉଥିଲେ । କିଏ କହୁଥିଲା- 'ଭୋଟ୍ ଦେବ କେଉଁଠି ।' ଆଉ କିଏ ଉତ୍ତର ଦେଉଥିଲା - 'ରିକ୍ସା ଚିହ୍ନ ଯେଉଁଠି ।' କିଏ କହୁଥିଲା- 'ଗୋଛିକାରେ ମାଇଲେ ଟାଙ୍ଗ୍ ।' ଉତ୍ତର ଆସୁଥିଲା- 'ଭଗୀରଥ ଚିତ୍‌ପଟାଙ୍ଗ୍ ।' ପିଲାମାନେ ଖେଳୁଥିଲେ ଓ ଅର୍ଥ ନ ବୁଝି ତଣ୍ଟି ଫଟାଇ ନିର୍ବାଚନୀ ସ୍ଲୋଗାନ୍‌ମାନ ଦେଉଥିଲେ ।

କେବେ ଏ ନିର୍ବାଚନ ଶେଷ ହେବ ? ଏଇ କେତେଦିନ ହେଲା ସେମିତି ଆଉ କିଛି ନାହିଁ-ଯୁଆଡ଼େ ଗଲେ ତ ଖାଲି ସେଇ ଗୋଟାଏ କଥା । ଏ ପାଲା ସରିବାକୁ ତଥାପି ଦୁଇଦିନ ବାକି । ସକାଳୁ କିଏ ସବୁ ଆସିଥିଲେ ମୁରାରୀଙ୍କ ଘରକୁ । ନବଘନ, ରାବଣା ଦୋରାକୁ ସେ ଚିହ୍ନନ୍ତି । ଆଉ ଜଣେ କିଏ ମାରୱାଡ଼ି ବି ଆସିଥିଲା । କ'ଣ କହୁଥିଲା ତା ନାଆଁ - ହନୁମାନ ଅଗ୍ରୱାଲା । ସେମାନେ କ'ଣ ସବୁ କହିଲେ, ମନେ ପଡୁନାହିଁ । ଦୁଇଟି କଥା ମନେପଡୁଛି-ରିକ୍ସା ଚିହ୍ନରେ ଭୋଟ୍ ଦେବ । ସମାଜବାଦ ନ ଆସିଲେ ଦେଶର ଅବସ୍ଥା ବଦଳିବ ନାହିଁ । ମୁରାରୀ ସେମାନଙ୍କୁ କ'ଣ ସବୁ କହିଲେ, ସେମାନେ ବି ତାଙ୍କୁ କେତେ କ'ଣ ବୁଝାଇଲେ । ରାବଣା ଦୋରା ଅଧା ତେଲୁଗୁ ଅଧା ଓଡ଼ିଆରେ ଅନର୍ଗଳ ବୁଝାଉଥାଏ- 'ଦେଶର ହାଲତ୍ ଯାହା ହେଲାଣି ନା, ମହା ଜନତା ପାର୍ଟିକୁ ଭୋଟ୍ ନ ଦେଲେ ଏପଟୁ ପାକିସ୍ତାନ ସେପଟୁ ଚୀନ୍ ମାଡ଼ି ଆସିବେ । ଭଗୀରଥବାବୁ ଏଥର ଭୋଟ୍ ପାଇ ମନ୍ତ୍ରୀ ହେଲେ ସମାଜବାଦ ଆଣିବେ ।'

ମୁରାରୀ ଦାସ ଭାବିଲେ, ସେ ଜନ୍ମ ହୋଇଥିଲାବେଳେ ଦେଶରେ ଥିଲେ ପ୍ରବଳ ପ୍ରତାପୀ ଗୋରା ସରକାର । ଖାଲି ଭାରତ ନୁହେଁ, ସାରା ପୃଥିବୀ ସେମାନେ ଅଧିକାର କରି ବସିଥିଲେ । ଇଂରେଜ ସାମ୍ରାଜ୍ୟରୁ ସୂର୍ଯ୍ୟ ଅସ୍ତ ହେଉ ନଥିଲା । ତାଙ୍କ ଦିହକ ଇଂରେଜ ସରକାର ଅମଳରେ କଟିଲା । ଦେଶ ସ୍ୱାଧୀନ ହୋଇ ଗୋରାମାନଙ୍କ ହାତରୁ ଆମ ଲୋକଙ୍କ ହାତକୁ ଶାସନ କ୍ଷମତା ଆସିବା ଏଇ ଏବ କଥା । କ୍ଷମତା ପାଇ କିଏ କେତେ ବଡ଼

ହେଲେ । ଯେଉଁମାନେ ଦିନେ ଗୋରା ଅମଳରେ ଲାଠିମାଡ଼ ଖାଇଥିଲେ କି ଜେଲ୍ ଯାଇଥିଲେ, ସେମାନେ ସ୍ୱାଧୀନ ଭାରତରେ ହେଲେ ନେତା, ମନ୍ତ୍ରୀ, ଏମ୍.ଏଲ୍.ଏ. । ଥରେ ମନ୍ତ୍ରୀକି ଏମ୍.ଏଲ୍.ଏ. ହେଲେ କି କ୍ଷମତା, କି ସଂପତ୍ତି ! ଏଇ ଭଗୀରଥ କଥା ତ ଆଖି ଆଗରେ । ଚକ୍ରପାଣି ମହାପାତ୍ରଙ୍କ ପୁଅ ଭଗି । ଗରିବ ହେଲେ ବି ଚକ୍ରପାଣି ଥିଲେ ସଚ୍ଚୋଟ ମଣିଷ । ମୁରାରୀ ସ୍ୱର୍ଗଦ୍ୱାର ନି.ପ୍ରା. ସ୍କୁଲରେ ଶିକ୍ଷକ ଥିବା ବେଳେ ଘରକୁ ଫେରିବା ବାଟରେ ବେଳେ ବେଳେ ଚକ୍ରପାଣିଙ୍କ ସଂଗେ ଦେଖା ହୋଇ ଯାଉଥିଲା । କଚେରୀରେ ମୋହରୀର କାମ କରି କଷ୍ଟେମଷ୍ଟେ ସଂସାର ଚଳାଉ ଥିଲେ ସେ । ପୁଅଟିକୁ ମଣିଷ କରିବା ତାଙ୍କର ଥିଲ ଗୋଟିଏ ବୋଲି ଆଶା । ଭଗୀରଥ ଓକିଲ ହେଲା, ବଡ଼ ଲୋକ ଘରେ ବାହା ହେଲା, ତାପରେ ଆସେମ୍ଲି ମେମ୍ବର । ଏବେ ତ ସମୁଦ୍ରକୂଳେ ଏଡ଼େ ବଡ଼ କୋଠା – ଉପରକୁ ଚାହିଁଲେ ମୁଣ୍ଡ ବୁଲାଇ ଦେବ । ମଟର ଗାଡ଼ି କିଣିଚି । ଥରେ ଆସେମ୍ବଲି ମେମ୍ବର ହେଲେ ଆଉ କ'ଣ ଅଭାବ ? ଏଥର ବି ଭୋଟ୍‌ରେ ଠିଆ ହୋଇଚି । ରାବଣା ଦୋରା କଥା ମନେପଡ଼ିଲା । ଏଥର ଭଗୀରଥ ମନ୍ତ୍ରୀ ହେବେ । ଭଲ କଥା । କିଏ କେତେ ମନ୍ତ୍ରୀ ହେଉଛନ୍ତି । ଯେଉଁମାନେ ରଜା ଥିଲେ, ସେମାନେ ତ ଏବେ ମନ୍ତ୍ରୀ ହେବାକୁ ଧରାପରା । ଚକ୍ରପାଣି ମହାପାତ୍ରଙ୍କ ପୁଅଟି ମନ୍ତ୍ରୀ ହୋଇଯାଉ !

ଆଗରେ ଶାମ ଗୋଛିକାରଙ୍କ କୋଠାଘର । ମୁରାରୀଙ୍କ ଭାବନାରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । କେଡ଼େ ଜଣାଶୁଣା କେଡ଼େ ଆପଣାର ଏଇ ସ୍ଥାନଟି । ହେଇ, ସେପାଖେ ମାର୍କଣ୍ଡ, କେଉଁ କାଳର ପୁରୁଣା ପୋଖରୀ, ଅନ୍ଧାରରେ ପାଣି ଦେଖାଯାଉ ନାହିଁ । ତଳକୁ ତଳ ମାଙ୍କଡ଼ା ପଥରର ପାହାଚ, ଓହ୍ଲାଇ ଓହ୍ଲାଇ ପୋଖରୀକୁ ଗଲେ ରହସ୍ୟମୟ ପାତାଳ ପୁରୀରେ ପହଂଚିବା ପରି ଲାଗେ । ମୁରାରୀ ଦେଖିଲେ, କିଛି କେଉଁଠି ବଦଳି ନାହିଁ । ସିଏ ମାର୍କେଣ୍ଡେଶ୍ବର ନି.ପ୍ରା. ସ୍କୁଲ୍‌ରେ ଶିକ୍ଷକ ଥିଲାବେଳେ ଯାହା ଯେଉଁଠି ଥିଲା, ସବୁ ସେମିତି ଅଛି । ସ୍କୁଲର ହଳଦିଆ ଘର, ଆଗରେ ବାଲି ପଡ଼ିଆ ସେମିତି ପଡିଛି । କେତେ ପୁଅଝିଅ ଏହାରି ଉପରେ ଖେଳି, କୁଦି, ନାଚି ଗୀତ ଗାଇ ଗଲେଣି । ସ୍କୁଲ କଡ଼କୁ ଠିଆ ହୋଇଥିବା ଚଂପା ଗଛଟା ଚିହ୍ନା ଲୋକ ପରି ମୁରାରୀଙ୍କୁ ଅନାଇଚି । ଯେମିତି କହୁଚି, 'ତମେ ବୁଢ଼ା ହୋଇ ଗଲଣି, ଦାସେ ।' ମୁରାରୀ ବି ଯେମିତି କହୁଛନ୍ତି, 'କିରେ ତତେ ପରା ମୁଁ ପୋତିଥିଲି ସେଠି, ପାଣି ଦେଇ ବଢ଼ାଇଥିଲି । ତୋ ଦେହରେ ଯେତେବେଳେ ନୂଆ ନୂଆ ଫୁଲ ଫୁଟୁଥିଲା, କେତେ ସୁନ୍ଦର ବାସୁଥିଲା, ସେତିକିବେଳେ ମୋର ବଦଳି ହୋଇଗଲା । ବୁଢ଼ା ହୋଇ ଗଲୁଣି ତୁ ବି ।'

ମୁରାରୀ ହାତୀମୁଣ୍ଡିଆ ବାଡ଼ିଟି ଠକ୍ ଠକ୍ କରି ଶାମ ଗୋଛିକାରଙ୍କ ପିଣ୍ଡା ଉପରକୁ ଉଠିଲେ । ଶାମ ଗୋଛିକାରଙ୍କ ଘରର ଚଉଡ଼ା ଛଅହାତ, ଘରଟି ଦି'ମହଲା । ପଥର ପିଣ୍ଡା । ପୁରୁଷେ ଉଚ୍ଚ ପିଣ୍ଡା ଉପରେ ଆଉ କେତେଜଣ ଜାକିଜୁକି ହୋଇ ବସିଥିଲେ । ପିଣ୍ଡାର ଗୋଟିଏ କଡ଼କୁ ଡେ ଲାଇଟ୍‌ଟିଏ ଜଳୁଥିଲା । ପିଣ୍ଡା ତଳେ ଅଇଁଠା ଖଲିପତ୍ର ସବୁ ପଡ଼ିଥିଲା । ତାହାକୁ ଘେରିଥିବା ପାଞ୍ଚ ଛଅଟି କୁକୁର ଓ ଗୋଟିଏ କାଳିଆ ବୁଲାଷଣ୍ଢ ଯେତେ ଘଉଡ଼େଇଲେ ବି ସେଠାରୁ ଯାଉ ନଥିଲେ । ଡେ-ଲାଇଟ୍ ଆଲୁଅରେ ସାହୀର ଅଧାଅଧି ଆଲୋକିତ ହୋଇଥିଲା । କେତୋଟି ଛୋଟ ପିଲା ନିକଟସ୍ଥ ନଳାରେ ବସି ନିତ୍ୟକର୍ମ କରୁ କରୁ ପ୍ରସନ୍ନ ଚିତ୍ତରେ ଉଜ୍ଜ୍ୱଳ ଡେ ଲାଇଟ୍ ଆଡ଼େ ଅନାଇ ଥିଲେ ।

ମୁରାରୀ ଦାସ ପିଣ୍ଡା ଉପରକୁ ଆସି ମୁଣ୍ଡଟା ଟିକିଏ ତଳକୁ କରି ବସିଥିବା ଲୋକମାନଙ୍କ ମୁହଁକୁ ଅନାଇଲେ । ପ୍ରାୟ ସମସ୍ତେ ତାଙ୍କର ଚିହ୍ନାଜଣା । ବାଡ଼ିଟି କାନ୍ଥକୁ ଆଉଜେଇ ସେ ପଡ଼ିଥିବା ସତରଂଜି ଉପରେ ଲଥ୍ କରି ବସି ପଡ଼ିଲେ ।

ପଙ୍ଗତ ହେବାକୁ ଡେରି ଥିଲେ ବି କେଉଁଠି ଡକରା ଥିଲେ ମୁରାରୀ ଦାସଙ୍କ ପରି ଆଉ କେତେଜଣ ଏମିତି ବହୁତ ଆଗରୁ ଆସି ପହଂଚିଥାନ୍ତି । ଆଜି ବି ସେମିତି କେତେଜଣ ପହଂଚି ଯାଇଥିଲେ । ମୁରାରୀ ଚକାମାଡ଼ି ପକାଇ ବସି କହିଲେ, 'ଶ୍ୟାମଘନ, ତମର ଆଉ ଆଜିକାଲି ଦେଖାନାହିଁ !'

ଶ୍ୟାମଘନ ମୁରାରୀଙ୍କ ଆଡ଼କୁ ହାତଟା ଲମ୍ବାଇ ଆଣି କହିଲେ, 'ଘେନିବା ହୁଅନ୍ତୁ' । ମୁରାରୀ ଶ୍ୟାମଘନଙ୍କ ହାତରୁ ପାନଖିଲଟି ନେଇ ପାଟିରେ ପକାଇ ଡାହାଣହାତ ଆଙ୍ଗୁଠିରେ କାନକୁ ସ୍ପର୍ଶ କଲେ । କହିଲେ, 'କାଆଲି ପରି ଲାଗୁଚି । ଶାମ ଗୋଛିକାରଙ୍କ ବାହାଘର ଭୋଜି ଖାଇବାକୁ ଆସିଥିଲି ଆଉ ଆଜି... ।'

ଶ୍ୟାମଘନ ପାକୁଆ ପାଟିରେ ପାନ ଚୋବାଉ ଚୋବାଉ ମୁହଁକୁ କେମିତି ବିକୃତ କରି କହିଲେ, 'ଦାସେ, ଆମବେଳା ଆସି ସଇଲା । ବ୍ରହ୍ମଚାରୀଟି ଚାଲିଗଲା, ଶୁଣିଥିବ ।'

ମୁରାରୀ ବ୍ରହ୍ମଚାରୀର ଚାଲିଯିବା ଖବର ପାଇ ନଥିଲେ । ବଡ଼ ପାଟିରେ କହିଲେ, 'ଚାଲିଗଲା ! କେବେ ?'

ଶ୍ୟାମଘନ କହିଲେ, 'ଏଇତ ଆଜିକି ତିନିଦିନ ହେଲା, ନୋକନି ତ ମାଲଭାଇ । ସେଠି ବସିଚି ।'

ନୋକନି ଓରଫ୍ ଲୋକନାଥ ପୂଜାପଣ୍ଡା ଯେମିତି କ'ଣ କହିବ କହିବ ହେଉଥିଲା । କହିଲା, 'ବଡ଼ ତକଲିପି ହେଲା ଆଜ୍ଞା ! ଦିହଟାଯାକ ତ ଖାଲି ଘା ମାଡ଼ିଗଲା । ଅଫିମ ଟିକିଏ ଚାହା ଟିକିଏ ଖାଇ ବ୍ରହ୍ମା ଜାଗାରେ ପଡ଼ି ପଡ଼ି ମଲା ।'

ଶ୍ୟାମାକାଳୀଙ୍କ ବୁଢ଼ା ପୂଜାରୀ ନୋକନି ମୁହଁରୁ କଥା ଛଡାଇ ନେଲା ପରି କହିଲା, 'ଆରେ ମରି ନାଇଁ ଯେ ତରିଗଲା । କେଡ଼େ ଯୁଆନ ଥିଲା ସେ । ଯିଏ ନ ଦେଖିଚି, କ'ଣ ଜାଣିବ ? ଯେମିତି ଯୁଆନ, ସେମିତି ଭାଙ୍ଗୁଆ, ସେମିତି ସଉକୀ । ସିଏ ମୁଁ ସଙ୍ଗାତ ବଇଥେଲୁ । ଏଇ ହାତରେ କେତେ କଲିକତୀ ବହୁରୁଚି ମଡ଼େଇଚି । ବ୍ରହ୍ମଚାରୀ ସରା ସରା ଭାଙ୍ଗ ପାଣିପରି ପିଇ ଦବ । ଏକାଥରେ ଗୋଟିଏ କୁଡୁଆ ଅଭଡ଼ା ଖାଇବାବାଲା । ତାଡ଼େ ଚଢ଼େଇନେଦା ତା ପେଟକୁ ନିଅଣ୍ଟ । ଛାଡ଼...କଲବଲ ହେଇ ମଲା । ସହଜେ ପିଣ୍ଡରୁ ପ୍ରାଣ ଛାଡ଼ିଲା ନାଇଁ । ସବୁ କଥେ, ଭାଗ୍ୟ କଥେ ।'

ନୋକନି କହିଲା, 'ମଉସା, ଯାହା କହିଲ, ସତ । ମୋ ପିଲାଦିନେ ମୁଁ ଦେଖିଚି, ଶ୍ୟାମାକାଳୀଙ୍କ ପାଖେ ଯାହାର ଶଙ୍ଖୁଡ଼ି ଭୋଗ ହେଲେ ବ୍ରହ୍ମଚାରୀଙ୍କୁ ଆଗ ଡକରା । ଏଡ଼େ ବଡ ଶିଳ ପଡ଼ିଥିବ, ଭାଙ୍ଗ ବଟା ହେଉଥିବ, ଗୀତ ବୋଲା ଚାଲିଥିବ, ପଖୌଜ ମାଡ଼

ଚାଲିଥିବ । ବୋଲିବାଣୀରେ କିଏ ବଳେଇ ଯିବାକୁ ନାଇଁ । ମଉଜୀ ଲୋକ । ପଶାପାଲୀ ଉପରେ ବସିଥିଲେ ଖାଇବା ପିଇବା କଥା ପଚାରେ କିଏ ?'

ଆଲୋଚନାଟା ଆସ୍ତେ ଆସ୍ତେ ଜମୁଥିଲା । ମୁରାରୀ ଦାସ, ଶ୍ୟାମଘନ, ବୁଢ଼ା ପୂଜାରୀଙ୍କ ପରି ବୁଢ଼ାମାନଙ୍କ ସାଙ୍ଗକୁ ଲୋକନାଥ ପୂଜାପଣ୍ଡା, ରଘୁନାଥ ପଶୁପାଳକ, ବିଶ୍ୱନାଥ ପଶୁପାଳକଙ୍କ ପରି ଟୋକାମାନେ ଯୁଟିଥିଲେ । ଉଜ୍ଜ୍ୱଳ ଡେ ଲାଇଟ୍ ଆଲୁଅରେ ସମସ୍ତେ ଯେମିତି ଟିକିଏ ତେଜି ହୋଇ ବସିଥିଲେ । ରାମ ଗୋଛିକାରଙ୍କ ସାନ ଝିଅ କାଚ ପ୍ଲେଟ୍‌ରେ ଧାନଖିଲ ଓ ଗୁଣ୍ଡି ମେଂଚାଏ ଥୋଇ ଦେଇ ଗଲା । ସେମାନେ ଖଣ୍ଡିଏ ଖଣ୍ଡିଏ ପାନ ପାଟିରେ ପକାଇଲେ ।

ବୁଢ଼ା ପୂଜାରୀ କହିଲା, 'ତମେ ପିଲାଗୁଡ଼ାକ ନୋକନି । ଏ ମହରଗ ବେଳାରେ ତ ଭାତ ସାଂଗକୁ ନୁଣ ମିଳୁନି, ମଉଜ କ'ଣ କରିବ । ତୋ ବାପା ପହଣ୍ଡା ଥିଲେ କହନ୍ତା । ମୋଠୁ ଦଶ ବରଷ ବଡ଼ ସିଏ । ଜଗନ୍ନାଥ ପହଣ୍ଡି ବେଳେ ଜନ୍ମ ହୋଇଥିଲା ବୋଲି ତା ନାଁ ପହଣ୍ଡା । ଭୀମ ପରି ଚେହେରା । କଦମଗଡ଼ ଜେଗାରେ ଦଣ୍ଡ ବୈଠକ ମାରିବା, ମୁଦ୍ଗର ବୁଲାଇବା ମୁଁ ଦେଖିଚି । ଘରେ ତ ରହେ ନାଇଁ କେବେ, ସବୁବେଳେ ଜେଗା ଘରେ । ତା' ବେଳେ ସିଏ ସବୁଠୁ ବଡ଼ ଭାଙ୍ଗୁଆ । କୋଉ ମେଣ୍ଢା ନଢ଼େଇ, ଆଖଡ଼ା ପିଲା ନାଚରେ ପହଣ୍ଡା ନଥିବ, ଏମିତି ନାଇଁ ।'

ନିଜ ବାପର ପ୍ରଶଂସା ଶୁଣି ନୋକନି ଟେକି ହୋଇ ବସିଲା ।

ଶ୍ୟାମଘନ, କହିଲେ 'ସେମିତି ଲୋକ ଆଉ କାହାନ୍ତି ? ସାଇ ଯାତରେ ଦେଖିବ ପହଣ୍ଡାକୁ । ତରବାରୀ ଚଳାଉଥିଲେ ଆଖି ଖୋସି ହୋଇଯିବ, ରାମରଙ୍ଗ ବୋଲି ହୋଇ ନିଝାମ ଝାଡୁଥିଲେ ଦେଖଣାହାରୀ ତାଟେକା ହୋଇ ଅନାଇଥିବେ । ତାପରି ଆଉ ନାଗା ବାନ୍ଧିବ କିଏ ? ତା ନାଗା ପାହୁଲ, ନାଗା ଆଖି, ଆଉ କାହାର ହବ !'

ନୋକନି କହିଲା, 'ବାପା ମରିବାର କୋଡ଼ିଏ ବର୍ଷ ହେଲାଣି । ଆମ ଘରେ ଭାଡି ଉପରେ ସେମିତି ତାଙ୍କର ସେଇ ନାଗା ବନ୍ଧେଇବା ସଜ ଥୁଆ ହୋଇଚି । ସେଇ ଛୁରି, ବର୍ଚ୍ଛା, ଫାର୍ଶା, ଢୋଲ, ଫୁଲି ସବୁ ଥୁଆ ହୋଇଚି ।'

ଏତିକିବେଳେ ଆଗପଛ ହୋଇ ଚାରିଜଣ ବୋଝିଆ ମୁଣ୍ଡରେ ମହାପ୍ରସାଦ ବୋଝମାନ ଧରି ପହଂଚିଗଲେ । ନୋକନି ସଂଗେ ସଂଗେ ଉଠିଆସି ସେମାନଙ୍କ ମୁଣ୍ଡରୁ ବୋଝ ଓହ୍ଲେଇ ଦେଲା । ବୋଝିଆମାନେ ବୋଝସବୁ ଥୋଇଦେଇ ଗାମୁଛାରେ ସେମାନଙ୍କ ଦେହରୁ ଝାଳ ପୋଛିବାରେ ଲାଗିଲେ । ଜଣେ ତା କର୍କଶ ଗଳାରେ କହିଲା, ' ଚାରିଟା ବାଇହାଣ୍ଡି, ବାର ହାଣ୍ଡି ଡାଲି ତରକାରୀ । ଆଉ ଦି' ବୋଝ ଆସୁଚି ।'

ରାମ ଗୋଛିକାରଙ୍କ ଘର ଭିତରକୁ ମହାପ୍ରସାଦ ବୁହା ହୋଇଗଲା । ମହ ମହ ବାସ୍ନାରେ ସ୍ଥାନଟି କଂପୁଥାଏ । ବିଶୁନି ପଶୁପାଳକ ପଚାରିଲେ, 'ଆରେ ସୁଆର କିଏ ?'

'ଜଣେ ବୋଝିଆ କହିଲା, 'ହରି ମହାସୁଆର । ପାରାକର ଆଉ ଜଣେ କହିଲା,

'ଗୋଛିକାରେ ତ ସବୁ ଖଟଣିକି କିଣି କରି ଦେଇଥିଲେ ।'

ରାମ ଗୋଛିକାର ନିଜେ ଏତିକିବେଳେ ବାହାରକୁ ଆସିଲେ । ସେ ଲଣ୍ଡା ହୋଇଥିଲେ, ନୂଆ ଧୋତିଟିଏ ପିନ୍ଧିଥିଲେ । ବେଶ୍ ମାଂସଳ ଗୋରା ଚେହେରା । ମୁରବୀଙ୍କ ପରି ଦିଶୁଥିଲେ । କହିଲେ, 'ଘଣ୍ଟେ ହେଲା ସକାଳଧୂପ ଉଠିଲାଣି । ରାଧାମାଧବ ଚାଲି ପକେଇ ଆସୁଥିଲ କି-'

ବୋଝିଆମାନେ ପ୍ରତିବାଦ କଲେ । ଜଣେ କହିଲା, 'କଅଣ ଏମିତି କହିବା ହଉଚନ୍ତି ଅବଧାନ୍ । ଯେମିତି ମାଲ ବାହରିଚି–ତୀର ମାରୁଗେ ନେଇ ଆସୁଚୁ ।'

ଗୋଛିକାରେ ବିରକ୍ତିରେ ସେମାନଙ୍କୁ ପଇସା ବଢ଼ାଇ କହିଲେ, 'ହଉ ହଉ ନେଲ ତମ ବୋଝମୁଲ !' ଗୋଛିକାରଙ୍କ ଆଙ୍ଗୁଠିରେ ସୁନା ମୁଦିସବୁ ଆଲୁଅରେ ଟିକ୍ ଟିକ୍ ଦିଶୁଥିଲା ।

'କେତେ ଦେଉଛନ୍ତି ଅବଧାନ୍' ଜଣେ ବୋଝିଆ କହିଲା, 'ଜଣପିଛା ପାଁସୁକା କଥା ଛିଣ୍ଡିଚି ।'

ଏହା ପରେ କିଛି ସମୟ ଚାଲିଲା ଯୁକ୍ତିତର୍କ । ଏକ ପକ୍ଷରେ ରାମ ଗୋଛିକାରେ, ଅନ୍ୟ ପକ୍ଷରେ ବୋଝିଆମାନେ । ଶେଷରେ ଟଙ୍କାଟେ ଲେଖାଏଁ ନେଇ ବୋଝିଆମାନେ ଖାଲି ବେତାଟିମାନ ମୁଣ୍ଡରେ ଥୋଇ ମନକୁ ମନ ଗର ଗର ହୋଇ ଫେରିଲେ ।

ସେତେବେଳକୁ ରାତି ପ୍ରାୟ ଆଠଟା ହୋଇଥିଲା । କ୍ରମଶଃ ଜଣକ ପରେ ଜଣେ ଲୋକ ଆସି ଜୁଟୁଥିଲେ । ନୋକନି ପିଣ୍ଡା ଉପରୁ ତଳକୁ ଓହ୍ଲାଇ ଆସି ପଙ୍ଗତ ପାଇଁ ପହଂଚୁଥିବା ଲୋକମାନଙ୍କୁ 'ଆସିବା ହୁଅନ୍ତୁ, ଛାତ ଉପରେ ବ୍ୟବସ୍ଥା ହୋଇଚି' କହି ଛାତ ଉପରକୁ ବାଟ ଦେଖାଉଥିଲା । ଯୋଉଠି ପଙ୍ଗତ ପାଇଁ ଡକରା ହେଲେ ଆପେ ଆପେ ସେ ବେଭାରୀ ହୁଏ । ଭଲ ପରଷୁଣୀ ବୋଲି ପୁରୀ ସହରରେ ତାର ନାଁ ଅଛି । ପାକେଲା ଗାମୁଛା ଅଣ୍ଟାରେ ଭିଡ଼ି ସେ ମହାପ୍ରସାଦ ପରଶି ଗଲା ବେଳେ ତାକୁ ତାରିଫ୍ ନ କରିବ, ଏମିତି କେହିନାହିଁ ।

ଆସି ପହଂଚୁଥିଲେ ଜଣକ ପରେ ଜଣେ । ଯେଝା ସମୟରେ ଯିଏ ଆସିବା କଥା । ଦେଉଳର ଭୋଗ ଉଠିବା ସମୟତ ଠିକଣା ନଥାଏ; ତଥାପି ଯେଉଁମାନେ ପଙ୍ଗତକୁ ଯିବା କଥା, ସେମାନେ ପ୍ରାୟ ବୁଝି ନିଅନ୍ତି, କୋଉ ଭୋଗରେ ଖଟଣି ଦିଆଯାଇଛି ଓ ସେହି ଅନୁସାରେ ଆସି ପହଂଚନ୍ତି ।

ମୁରାରୀ ଦାସ, ଶ୍ୟାମଘନ, ବୁଢ଼ା ପୂଜାରୀ, ରଘୁନି, ବିଶୁନି ବି ପିଣ୍ଡାରୁ ଉଠି ଛାତ ଉପରକୁ ଗଲେ । ନୋକନି କହିଲା, 'ଆଉ ଡେରି କାହିଁକି ? ଲୋକ ହୋଇ ଗଲେଣି । ପ୍ରଥମ ପଙ୍ଗତ ବଢ଼ିଯାଉ । ସ୍ଥାନ ସଂକୀର୍ଣ୍ଣ ।'

ରାମ ଗୋଛିକାରଙ୍କ ପୁରୁଣା କୋଠାଘରର ଛାତ ଉପରେ ଲଗାଲଗି ହୋଇ ନିମନ୍ତ୍ରିତ ଅତିଥିମାନେ ବସିଲେ । ମୁରାରୀଙ୍କ ପାଖକୁ ବସିଲେ ଶ୍ୟାମଘନ, ତାଙ୍କ ପାଖକୁ କୁଆଡୁ ଆସି ବସି ପଡ଼ିଲା ମାଧବ, ଆଶା ବାଡ଼ିଟା ପଛକୁ ଥୋଇ । ଅତିଥିମାନେ ବସି ସାରିବା ପରେ ଅଧର ଦଇତାପତି ଗୋଟିଏ ହାତରେ ଏକ ପ୍ରକାଣ୍ଡ ତମ୍ବା ଡାଳ ଓ ଅନ୍ୟ ହାତରେ ମେଂଚାଏ ଭାଙ୍ଗ

ଧରି ପହଂଚିଗଲେ । ଜଣ ଜଣ କରି ପଚାରିଗଲେ, 'ଟିକିଏ ହଉ ।' କେହି ବିନା ଦ୍ୱିଧାରେ କେହି ସାମାନ୍ୟ ବଳାତ୍କାରରେ ଟେଳେ ଲେଖାଏଁ ନିଗୁଦି ପାଟିରେ ପକାଇ ଢୋକେ ଲେଖାଏଁ ପାଣି ପିଇଲେ ।

ମାଧବ ନିଗୁଦିଟେଳା ପାଟିରେ ପକାଇ ସାରି କହିଲା, 'ଦଇତାପତିଏ, ଇଯେ ହେଲା ନାହିଁ । ଏଥିରେ କ'ଣ ଆଖି କଇଁଚିକାକୁଡ଼ିଆ ବୂଲିବ ?'

ବିଶୁନି ମାଧବ ଆସିବା ବେଳୁ ତାକୁ କଣେଇ କଣେଇ ଚାହୁଁଥିଲେ । ନୂତନ ମିଷ୍ଟାନ୍ନ ଭଣ୍ଡାରରେ ତାଙ୍କୁ ଯେ ମାଧବ 'ଗୁଣ୍ଡା' କହିଥିଲା, ଏ କଥା ସିଏ ଏଯାଏଁ ଭୁଲି ନଥିଲେ । ମାଧବ ଆଡ଼କୁ ନ ଚାହିଁ ତାକୁ ଶୁଣେଇ ଶୁଣେଇ ବିଶୁନି କହିଲେ, 'ଆରେ ପଂଚକୋଶୀ କ'ଣ ଭାଙ୍ଗ ଖାଇବେ । ଶିଳଧୂଆ ପାଣି ଟିକିଏ ଶୁଂଘେଇ ଦେଲେ ପାରା ମାରଗେ ନେଉଟିବେ ।'

ଏ ମନ୍ତବ୍ୟରେ ଅଧର ଦଇତାପତିଙ୍କ ସମେତ ଉପସ୍ଥିତ ସମସ୍ତେ ହୋ ହୋ ହସି ଉଠିଲେ । ମାଧବ ଯେ ଖୋଦ୍ ପୁରୀ ସହରିଆ ନୁହେଁ, ତା ବାପ ଅଠରନଳା ପାଖର ଗୋଟିଏ ଗାଁରୁ ଆସି ସହରରେ ଘର କରିଥିଲେ, ଏକଥା ଯେଉଁମାନଙ୍କୁ ଜଣାଥିଲା, ସେମାନେ ମାଧବ ଆଡ଼କୁ ଟିକିଏ ଅବଜ୍ଞାରେ ଅନାଇଲେ ।

ମାଧବକୁ କିନ୍ତୁ ଅପମାନଟା ବଡ଼ ବାଧିଲା । ତା ବାପ ଅଠରନଳାରୁ ଆସିଚି ସତ, ସିଏ କିନ୍ତୁ ଏଇ ପୁରୀ ସହରରେ ବଢ଼ିଚି । ଯମୁନା ଗାଧୁଆଠାରୁ ସାଇଯାତ ଯାଏଁ, ପୁଣି ମେଣ୍ଢା ଲଢ଼େଇଠାରୁ ଗୋଟି ପୁଅ ନାଚ ଯାଏଁ, ସବୁଠି ମାଧବ ରହି ଆସିଚି । ଥରେ ବାଜି ପକେଇ ଚଳନ୍ତା ରେଳ ଗାଡ଼ିରୁ ଡେଇଁ ପଡ଼ି ପିଲାଦିନୁ ଗୋଟିଏ ଗୋଡ଼ ସେ ହରାଇଥିଲା । ସେଇଦିନୁ ଆଶାବାଡ଼ିଟି ହିଁ ତାର ହରାଇଥିବା ଗୋଡ଼ର କାମ ଦେଉଚି । ତା ନହେଲେ ସିଏ ବି କୁସ୍ତି କସରତରେ ଯୋଗ ଦେଇଥାନ୍ତା । ନିଜେ କୁସ୍ତି ନ କରି ପାରିଲେ ବି କୁସ୍ତି ପ୍ରତିଯୋଗିତା ବେଳେ ତାର ସବୁଠୁ ବେଶୀ ଉତ୍ସାହ । ସହରର ପହିଲିମାନ୍‌ମାନଙ୍କ ସହ ତାର ବେଶ୍ ଦୋସ୍ତି । ସେମାନଙ୍କ ସଙ୍ଗେ କୁସ୍ତିର କାଇଦା ବିଷୟରେ -ଘଣ୍ଟା ଘଣ୍ଟା ଗପିଲା ବେଳେ ଯିଏ ତା କଥା ଶୁଣିବ, ଭାବିବ, ମାଧବ ନିଶ୍ଚୟ ଗୋଟାଏ ବଡ଼ ପହିଲିମାନ୍ ହୋଇଥିବ ।

ନୋକନି କଦଳୀପତ୍ର ବିଡ଼ାକ ଧରି ସମସ୍ତଙ୍କ ଆଗରେ ଗୋଟିଏ ଗୋଟିଏ ପକାଇ ମାଧବ ଆଗକୁ ଆସିଲାବେଳେ ମାଧବ କହିଲା, 'ନୋକନି ଭୋଟ ବେଳ ଯେ । ଖଟିଖିଆମାନଙ୍କର ବି ଭାଙ୍ଗ ଭୋଜନର ଅଭାବ ନାଇଁ ।'

ମାଧବ କଥାରେ ସବୁଆଡ଼େ ହାସ୍ୟରୋଳ ଖେଳିଗଲା ନାହିଁ ସତ, କିନ୍ତୁ ବିଶୁନି କଥାଟି ଠିକ୍ ବୁଝିପାରିଲେ । ସିଏ ଅର୍ଜୁନ ଗୋଛିକାର ପାଇଁ ପ୍ରଚାର କରୁଥିବାରୁ ମାଧବ ତାଙ୍କୁ ଏମିତି ଇଲେଇଡି କରୁଚି । ସେ ତାଙ୍କ ପାକେଲା ଗାମୁଛାରେ ମୁହଁଟା ପୋଛି ନେଇ ଥରେ ମାଧବ ଆଡ଼କୁ ଚାହିଁ ତା ପରେ ପାଖରେ ବସିଥିବା ତାଙ୍କ ଭାଇ କାନରେ କ'ଣ ଚୁପ୍ ଚୁପ୍ କହିଲେ ।

ମୁରାରୀ ଦାସ ମାଧବ ପାଖରେ ବସିଥିବାରୁ ବିଶୁନି ଓ ମାଧବ ମଧ୍ୟରେ ଚାଲିଥିବା ଏ

ବାକ୍ୟ ବିନିମୟ ତାଙ୍କ ଦୃଷ୍ଟି ଏଡ଼ାଇ ପାରି ନଥିଲା; ପୁଣି ଅଳ୍ପ ଦିନ ତଳେ ନୂତନ ମିଷ୍ଟାନ୍ନ ଭଣ୍ଡାରରେ ବିଶୁନି ମାଧବକୁ ଯେପରି ମାଡ଼ ମାରିଥିଲେ, ତାହା ମୁରାରୀ ନିଜେ ଦେଖିଥିଲେ । ଘଟଣାଟି କାଳେ ଅପ୍ରୀତିକର ହୋଇ ପଡ଼ିବ, ଏଇ ଆଶଙ୍କାରେ ସେ ମାଧବକୁ କହିଲେ, 'ଆରେ, ଏ ଭୋଟ୍ ପାଇଁ ତମେ ସବୁ ଏମିତି ମାତିଚ କାହିଁକି ? -ପାଞ୍ଚ ବର୍ଷରେ ସିନା ଥରେ ଭୋଟ୍, ସବୁବେଳେ ତ ପୁଣି ଭାଇ ଭାଇ ପରି ଏକାଠି ରହିବ ? ନା ନାଇଁ ?'

ମାଧବ ମୁରାରୀ ଦାସଙ୍କୁ ସମର୍ଥନ କଲାପରି ମୁଣ୍ଡ ହଲାଇଲା ।

ଶ୍ୟାମଘନ କହିଲେ, 'କାହିଁକି କହୁଚନ୍ତି ଏ ଟୋକାଙ୍କ କଥା । ମୋ ପୁଅ କଥାରୁ ତ ମୁଁ ଦେଖୁଚି । ସକାଳୁ ଯାଉଚି କୁଆଡ଼େ ଯେ ଫେରୁଚି ରାତି ଅଧକୁ । କାଲି ରାତିରେ ତ ମୋଟେ ଆସିଲା ନାଇଁ । ସକାଳୁ ଆସିଲା । ମହା ଜନତା ପାର୍ଟି କାମରେ କ'ଣ ଲାଗିଚି ।'

ମୁରାରୀ କହିଲେ, 'ଆଏ, ତାକୁ ଦେଖିଲିଣି କେତେଥର । ଭଗୀରଥ ପାଇଁ ଭୋଟ୍ ପ୍ରଚାର କରୁଚି ।'

ଶ୍ୟାମଘନ କହିଲେ, 'ଦାସେ, ମୁଁ କ'ଣ ଖବର ପାଉନାଇଁ ? ସବୁ ଖବର ପାଉଚି । ଛାଡ଼, ମୋ ଭାଗ୍ୟ' – ତା ପରେ ଚୁପ୍ ଚୁପ୍ ମୁରାରୀଙ୍କ କାନ ପାଖେ କହିଲେ, 'ମୁଁ ତାକୁ ବୁଝାଇଲି-ହଇରେ, ତତେ ଇଥିରୁ କ'ଣ ମିଳିବ ? ଆପଣା ସ୍ୱାର୍ଥରେ ଲାଗିଛନ୍ତି ସମସ୍ତେ । ଯିଏ ଭୋଟ୍ ପାଇବ, ସିଏ କେମିତି ଦି ପଇସା ଖାଇବ, ବଡ଼ ଲୋକ ହେବ, ଏଇ କଥା ଭାବୁଚି । ଆମ ପରି ଲୋକ ସେ କାଦୁଅରେ ପଶିବ କିଆଁ, ଗୋଡ଼ ଧୋଇବ କିଆଁ ?

ଶ୍ୟାମଘନ ମୁରାରୀଙ୍କ ମୁହଁର ଏତେ ପାଖକୁ ମୁହଁ ଲଗାଇ କଥା କହୁଥିଲେ ଯେ ତାଙ୍କ ପାଟିରୁ ଛେପ ଆସି ମୁରାରୀଙ୍କ ଗାଲ ଉପରେ, ପଡୁଥିଲା । ମୁରାରୀ କହିଲେ, 'ଠିକ୍ କଥା ଠିକ୍ କଥା ।'

ପରଷୁଣୀମାନେ ଏହା ଭିତରେ କଦଳୀପତ୍ର ଉପରେ ମହାପ୍ରସାଦ ବାଢ଼ି ସାରିଥିଲେ । ନୋକନି ହାତରେ ଘିଅ ବଢ଼ାଟାଏ ଧରି ସେଥିରେ ଡାହାଣ ହାତ ଆଙ୍ଗୁଠି ସବୁ ବୁଡାଇ ତରତର ହୋଇ ପ୍ରତି ପତ୍ର ଉପରେ ଘିଅ ଟୋପାଏ ଲେଖାଏଁ ଛିଂଚି ଦେଇଗଲା । ବୁଢ଼ା ପୂଜାରୀ ଘାଗଡ଼ା ସ୍ୱରରେ ସମସ୍ତଙ୍କୁ ଶୁଣାଇ କହିଲା, 'ହାତ ଚାଲୁ ।'

କେହି ଜଣେ ବଡ଼ ପାଟିରେ ଗାଇଉଠିଲେ, 'ନୀଳାଞ୍ଚଳ ନିବାସାୟ ନିତ୍ୟାୟ ପରମାତ୍ମନେ...' ଓ ତାଙ୍କ ଶ୍ଲୋକ ଆବୃତ୍ତି ସରିବା ଆଗରୁ ନିମନ୍ତ୍ରିତ ଅତିଥିମାନେ ମହାପ୍ରସାଦ ଭୋଜନ ଆରମ୍ଭ କରିଦେଇଥିଲେ ।

ହାଡ଼ି ସାହୀର ଘର ସବୁ ହୁତ୍ ହୁତ୍ ଜଳି ଯାଉଥିଲା, ଦରିଦ୍ର ମେହେନ୍ତରମାନଙ୍କ ନୁଆଁଣିଆ ଚାଳଘରସବୁ । ସାପ ଜିଭପରି ଲହ ଲହ ନାଲି ନିଆଁ ଉତ୍ସାହିତ ହେଲାପରି ଉପରକୁ ଉଠୁଥିଲା । ଧୂଆଁରେ ଅକାଶଟା ଛାଇ ହୋଇ ଯାଇଥିଲା । ସାରା ବସ୍ତିଟିର ଲୋକେ ଠାକୁରାଣୀଙ୍କ ଚଉତରା ପାଖରେ ହୋହୋ ଚିତ୍କାର କରୁଥିଲେ । ମାଇପିମାନେ ଆରମ୍ଭ କରିଦେଇଥିଲେ ବାହୁନା-ଲହରେଇ ଲହରେଇ ସେମାନେ କାନ୍ଦୁଥିଲେ । ମାଆମାନଙ୍କ କାନ୍ଦ ଦେଖି ଛୋଟ ପିଲାମାନେ ବି ରାହା ଧରିଥିଲେ । ବଡ଼ପିଲାମାନେ ଅବାକ୍ ହୋଇ ଅନାଇ ଦେଖୁଥିଲେ-ସେମାନଙ୍କ ଘରସବୁ କେମିତି ଜଳି ପାଉଁଶ ହୋଇ ଯାଉଚି, ରଡ଼ନିଆଁ ହୋଇ ଚାଳ ସବୁ ତଳକୁ ଖସି ପଡୁଛି-ବାଉଁଶ ମଡ଼ ମଡ଼ ଫୁଟୁଚି, କେତେ ପ୍ରକାର ବିକଟାଳ ଗନ୍ଧ ନାକରେ ବାଜୁଚି । ବଡ଼ମାନେ ପାଗଳ ପରି ଏଆଡ଼େ ସେଆଡ଼େ ଧାଇଁଛନ୍ତି । ବାଲ୍‌ଟି ବାଲ୍‌ଟି ପାଣି ଆଣି ନିଆଁ ଉପରେ ଫିଙ୍ଗୁଛନ୍ତି । ନିଆଁ କିନ୍ତୁ ଥଟ୍ଟା କଲାପରି ଉଠୁଚି ଉପରକୁ ଉପରକୁ । ନାଲି ନିଆଁ ଧାସରେ ଚଉତରା ଉପର ଠାକୁରାଣୀ ଭୟଙ୍କର ଦିଶୁଛନ୍ତି । ମେହେନ୍ତର ସ୍ତ୍ରୀ ଓ ପୁରୁଷମାନେ ଦିଶୁଛନ୍ତି ବିକଟାଳ, ପ୍ରେତମୂର୍ତ୍ତି ପରି ।

ଜଳି ଯାଉଚି ଚାଳଘର ସବୁ । ଗାନ୍ଧିନଗର ଜଳି ଯାଉଚି ।

ଦୂରରୁ ଏ ଦୃଶ୍ୟ ଉପଭୋଗ କରୁଥିଲେ ନବଘନ ଓ ବିଶୁନି; ଗାନ୍ଧିନଗରଠାରୁ ଅଧମାଇଲିଏ ଦୂରରେ ଗୋଟିଏ ଅନ୍ଧାରୁଆ ସ୍ଥାନରେ ଠିଆ ହୋଇ ସେମାନେ ବିଡ଼ିରେ ନିଆଁ ଧରାଇଲେ । ସେମାନେ ଚୁପ୍‌ଚାପ୍ କଥା ହେଉଥିଲେ ଓ ଚୁମୁଟାଚୁମୁଟି ହୋଇ ହସୁଥିଲେ । ସେମାନେ ଘରପୋଡ଼ିର ଜଳନ୍ତା ନିଆଁରେ ସମସ୍ତଙ୍କୁ ଦେଖି ପାରୁଥିଲେ, ସେମାନଙ୍କୁ କିନ୍ତୁ କେହି ଦେଖି ପାରୁନଥିଲେ । ବିଶୁନି କାନ୍ଧ ଉପରେ ପକାଇଥିବା ଗାମୁଛାଟା ସଳଖି ନେବାପାଇଁ କାନ୍ଧଟାକୁ ଦି'ଥର ଝାଙ୍କି ଦେଇ କହିଲେ, 'ଦେଖିମ ସେ ଘନିଆ ହାଡ଼ିକି ! ମନ୍ତ୍ରୀ ଆସିବା ଦିନ ତା'ର ଯୋଉ ଗୁମର । କଅଣ ନା ସମାଜବାଦ ପାଇଁ ଭଗୀରଥକୁ ଭୋଟ୍ ଦବ ।

ଦଉଥା ଭୋଅଟ ! ପିଲା ମାଇକିନା ଧରି ବଡ଼ଦାଣ୍ଡରେ ଠିଆହେଲେ ସମାଜବାଦ କ'ଣ ବୁଝିବୁ ।'

ନବଘନ ହୋ ହୋ ହୋଇ ହସିଲା । କହିଲା, ' ଏ ପାନକ ନ ପାଇଥିଲେ ଶଳେ ଚେଙ୍କି ନଥାନ୍ତେ । କିବେ, ତମେ ତ ମଇଳା ସଫା କରିବା ଲୋକ । ତମେ କ'ଣ ବୁଝିବ ରାଜନୀତି, ସମାଜବାଦ, ନିର୍ବାଚନ ! ମହା ଜନତା ପାର୍ଟି ଜିଣିଲେ ହାରିଲେ ତମର କି ଫାଇଦା ? ସେ ଦିନ ସଭା କରି ମନ୍ତ୍ରୀଙ୍କୁ ସମ୍ବର୍ଦ୍ଧନା କରିବା ତମର କ'ଣ ଦରକାର ଥିଲା ? ମୁଁ ଯଦି ଷଣ୍ଢଟାକୁ ସଭାରେ ନ ପୂରାଇଥାନ୍ତି- ।'

ବିଶୁନି ନବଘନକୁ ତାରିଫ କରି କହିଲେ, 'ଯାହା କହ ମାହାର୍କେ, ମାତ୍ କରିଦେଲ ସେଦିନ । ରାଜନୀତି ଆଉ ମାଧବ ପରି ଖଣ୍ଡିଖିଆଙ୍କ ଦେହି ହବ ନାହିଁ । ସଭାରେ ଷଣ୍ଢ ପୂରାଇବା କଥାଟା ତମ ମୁଣ୍ଡକୁ ଢୁକିଲା ବୋଲି ନା !'

ନବଘନ ଗାଈ ଘାସ ଚାକୁଳେଇଲା ପରି ପାନ ଚୋବାଉ ଚୋବାଉ କହିଲା, 'ରାଜନୀତି ସହଜ କଥା ନୁହେଁ, ପୁଷ୍ପାଲକେ । ଖଣ୍ଡାଧାରରେ ଚାଲିବା କଥା । ମୋରି କଥା ଦେଖ । ବାହାରକୁ ଲୋକେ ଜାଣିବାରେ ମୁଁ ମହା ଜନତା ପାର୍ଟିର କର୍ମୀ; କିନ୍ତୁ ଅସଲରେ ମୁଁ ଖଟିଖିଆ ପାର୍ଟି ପାଇଁ ଜାନ୍ ଦେଇଦେବାକୁ ବି ମୋର ପରବାୟ ନାହିଁ । ତମେ ତ ଜାଣ । ଭଗୀରଥଠୁ ଟଙ୍କା ପକେଇ ଅର୍ଜୁନ ଗୋଛିକାରଙ୍କ ପାଇଁ କାମ କରିବା ରାଜନୀତି, ବୁଝିଲ ?'

ଏତିକିବେଳେ ଟିଂ-ଟିଂ ଶବ୍ଦ କରି ଗୋଟାଏ ଦମକଳ ସେଇ ବାଟ ଦେଇ ଗଲା । ଟିଂ-ଟିଂ ଶବ୍ଦରେ ବିଶୁନି ଓ ନବଘନ ଚମକି ପଡ଼ିଲେ । ବିଶୁନି କହିଲା, 'ଏଥର ଆସୁଥାଉ ଦମକଳ । ସବୁ ସଫା ହୋଇ ସାରିଚି ।'

ସତକୁ ସତ ସେତେବେଳକୁ ହାଡ଼ିସାହୀ ପୋଡ଼ି ଛାରଖାର ହୋଇ ସାରିଥିଲା । ବସ୍ତିଟା ଯାକର ମେହେନ୍ତର ରାସ୍ତା ଉପରେ ନିଃସହାୟ ହୋଇ ସେମାନଙ୍କ ଘର ଓ ସଂସାରର ପାଉଁଶ କୁଡ଼କୁ ଅନାଇଥିଲେ । ସେମାନଙ୍କୁ ସାନ୍ତ୍ୱନା ଦେଲାପରି ଦମକଳବାଲା ଲମ୍ବା ଟିଉବ୍ ସବୁ ରାସ୍ତା ଉପରେ ଲମ୍ବାଇ ଦେଇ ସେମାନଙ୍କ ପୋଡ଼ାଘରମାନଙ୍କ ଉପରକୁ ପାଣି ସ୍ପ୍ରେ କରିବାରେ ଲାଗି ପଡ଼ିଲେ ।

ବିଶୁନି କହିଲେ, 'ନବଘନ, ମୁଁ ଏଥର ଯାଏ । ଏଯାଏଁ ଭାଙ୍ଗ ହୋଇନି । ସାଙ୍ଗମାନେ ଜେଗାରେ ଅନେଇ ଥିବେ । ତମେ ତ କହୁଚ, ହାଡ଼ିସାହୀ ଆଡ଼େ ଟିକିଏ ବୁଲିଯିବ ।'

ଏହାପରେ ନବଘନ ହାଡ଼ିସାହୀ ଆଡ଼େ ଆସିଲା । ସେତେବେଳକୁ ପାଖଆଖରୁ ଅନେକ ଲୋକ ହାଡ଼ିସାହୀରେ ଜମି ଯାଇଥିଲେ । -ତେବେ ନବଘନର ଆସିବା ପ୍ରତି ସମସ୍ତଙ୍କର ଦୃଷ୍ଟି ପଡ଼ିଲା । ନିର୍ବାଚନ ଆରମ୍ଭ ହେବା ଦିନୁ ଭଗୀରଥଙ୍କ ପାଇଁ ନବଘନ ଯେପରି ପ୍ରଚାର କରୁଥିଲା, ସେଥିରୁ ମହା ଜନତା ପାର୍ଟିର ଜଣେ ସଚ୍ଚା କର୍ମୀରୂପେ ନବଘନ

ସହରରେ ପରିଚିତ ହୋଇ ସାରିଥିଲା । ନବଘନ ଶୀଘ୍ର ଶୀଘ୍ର ପାଦ ପକେଇ ପ୍ରଥମେ ବସ୍ତିଟା ଯାକ ଥରେ ବୁଲି ଆସିଲା । ତା'ପରେ ଦୀର୍ଘ ନିଶ୍ୱାସଟାଏ ପକାଇ ଠାକୁରାଣୀଙ୍କ ଚଉତରା ଉପରେ ଘନ ନାହାକ ପାଖରେ ବସିପଡ଼ିଲା ।

ଘନ ନାହାକର ସ୍ତ୍ରୀ ସ୍ୱାମୀର ପାଦତଳକୁ ବସି ସୁକୁ ସୁକୁ ହୋଇ କାନ୍ଦୁଥିଲା । ତାର ପିଲା ଯୋଡ଼ିକ ମାଆ ପାଖରେ ବସି କିଛି ନ ବୁଝିବା ପରି ଏଣେତେଣେ ଅନାଉଥିଲେ । ନବଘନ ନେତା ପରି କହିଲା, 'ମାଉସୀ, ବ୍ୟସ୍ତ ହୁଅନାହିଁ । ଅତି ଶୀଘ୍ର ସରକାରୀ ସାହାଯ୍ୟ ଆସି ପହଂଚିବ । ଆଉ ଚାଳଘର ନୁହେଁ, ଏଥର ଏଠାରେ ଟାଇଲିଘର ସବୁ ତିଆରି ହେବ । ଏବେ ସ୍କୁଲ ପିଲାମାନେ ପଢୁଛନ୍ତି-କରିବ ଟାଇଲି ଘର, ନିଆଁକୁ ନଥିବ ଡର । ସତ କଥା, ଟାଇଲି ଘର ହେଲେ ନିଆଁକୁ ଆଉ କି ଡର ?'

ଘନ ନାହାକର ସ୍ତ୍ରୀ ଟାଇଲି ଘରର ଉପକାରିତା ବୁଝିଲା କି ନାହିଁ କେଜାଣି, ସୁକୁ ସୁକୁ କାନ୍ଦ ବନ୍ଦ କରି ନବଘନ ମୁହଁକୁ ଅନାଇଲା । ନବଘନ କହି ଚାଲିଥାଏ, 'ହରିଜନ ଭାଇମାନଙ୍କ ପାଇଁ କାଲିଠାରୁ ଆମେ ମହା ଜନତା ପାର୍ଟି ପକ୍ଷରୁ ସାହାଯ୍ୟ ସଂଗ୍ରହ କରିବୁ । ହରିଜନ ମାଆ ଭଉଣୀମାନେ ରହିବେ କେଉଁଠି, ଖାଇବେ କ'ଣ ? ଯେଉଁମାନେ ସେଦିନ ସାଧାରଣ ସଭାରେ ଷଣ୍ଢ ପୂରାଇଥିଲେ, ସେମାନେ ହିଁ ଆଜି ଗାନ୍ଧିନଗରରେ ନିଆଁ ଲଗାଇଛନ୍ତି । ସେମାନଙ୍କୁ ଭଲ ଭାବରେ ଆମେ ଜାଣୁ ।'

'କିଏ ସେମାନେ ?' କେହି ଜଣେ ପଚାରି ଦେଲା । ସେତେବେଳକୁ ହାଡ଼ିସାହୀରେ ଘରପୋଡ଼ି ଖବର ପାଇ ଆଖ ପାଖ ସାହୀରୁ ଅନେକ ଲୋକ ଘଟଣାସ୍ଥଳରେ ପହଂଚି ଯାଇଥିଲେ । ଏପରିକି 'ଚାବୁକ' ଓ 'ମାଙ୍କଡସା' ପରି ବିଶିଷ୍ଟ ଓଡ଼ିଆ ସମ୍ବାଦପତ୍ରମାନଙ୍କର ସାମ୍ବାଦିକମାନେ ମଧ୍ୟ ସମ୍ବାଦ ସଂଗ୍ରହ ପାଇଁ ଇତସ୍ତତଃ ହେବାର ଦେଖାଯାଉଥିଲା ।

ନବଘନର କଥା କହିବା ଭଙ୍ଗୀରେ ନିଶ୍ଚୟ କିଛି ଚମତ୍କାରିତା ଥିଲା । କାରଣ ଠାକୁରାଣୀଙ୍କ ଚଉତରା ପାଖରେ କ୍ରମଶଃ ଲୋକ ଭିଡ଼ ହେବାକୁ ଲାଗିଲା । 'ମାଙ୍କଡସା' ଦୈନିକ ସମ୍ବାଦପତ୍ରର ସାମ୍ବାଦିକ ଅତି ବିଶ୍ୱସ୍ତ ବନ୍ଧୁପରି ନବଘନର କାନ ପାଖକୁ ମୁହଁ ନେଇ ପାଟିରୁ ଦମକାଏ ଦୁର୍ଗନ୍ଧମୟ ପବନ ବାହାର କରି କହିଲେ, 'କିଏ ସେମାନେ ?'

ଘନ ନାହାକ ଆଡ଼େ ନବଘନ ମୁହଁ ବୁଲାଇ ନେଇ କହିଲା, 'ସେମାନଙ୍କୁ ସର୍ବସାଧାରଣଙ୍କ ଆଗରେ ଏଥର କଇଫତ୍ ଦବାକୁ ହେବ । ସେଥିପାଇଁ ସମୟ ଆସିଚି । ଏଇ ଗାନ୍ଧିନଗରର ଦରିଦ୍ର ପ୍ରଜାଗଣଙ୍କ ପାଇଁ ଦରକାର ହେଲେ ସେମାନଙ୍କୁ ଫାଶୀ ଖୁଣ୍ଟରେ ଟାଙ୍ଗିଦେଲେ ବି ଦୋଷ ନାହିଁ ।'

ନବଘନର କଥାର ଦୃଢ଼ତା ଅନେକଙ୍କୁ ସ୍ପର୍ଶ କଲା । ଦୁଇ ହାତ ଯୋଡି ଉପରକୁ ଟେକି ଘନ ନାହାକ କହିଲା, 'ଆଜ୍ଞା ଆମେ ଛାର ମେହେନ୍ତର ନୋକ । ଆମ ଘର ପୋଡ଼ିଦେଲ । ଆମର ଅପରାଧ ?'

ନବଘନ ଯେମିତି ଏଇ କଥା କେତେପଦ ଶୁଣିବ ବୋଲି ଅପେକ୍ଷା କରିଥିଲା । ଏଥର ସେ ବସିବା ଜାଗାରୁ ଉଠି ଠିଆହୋଇ ପଡ଼ିଲା । କହିଲା, 'ଆପଣମାନଙ୍କର ଅପରାଧ, ଆପଣମାନେ ଚାହାନ୍ତି ସମାଜବାଦ । ଆପଣମାନେ ଚାହାନ୍ତି ଚାଷୀ ମୂଲିଆର ସାଥୀ ଭଗୀରଥ ମହାପାତ୍ର ହୁଅନ୍ତୁ ଆପଣମାନଙ୍କର ପ୍ରତିନିଧି ।'

'ଚାବୁକ' ଓ 'ମାଙ୍କଡସା' ପତ୍ରିକାର ସାମ୍ବାଦିକମାନେ ଖଣ୍ଡିଏ ଖଣ୍ଡିଏ କାଗଜ ବାହାର କରି ପେନ୍‌ସିଲ୍‌ରେ କ'ଣ ସବୁ ଟିପି ପକାଉଥିଲେ ।

ସବୁରି ଅଲକ୍ଷ୍ୟରେ ସେଠି କେତେବେଳେ ପହଂଚି ଯାଇଥିବା ମାଧବ ଆଶାବାଡ଼ିଟା ସମ୍ଭାଳି ନେଉ ନେଉ ପାଟିକରି ଉଠିଲା, 'ହାଁ- କଥା ସେଇଠି, କଥା ସେଇଠି । ଆପଣମାନେ ମହା ଜନତା ପାର୍ଟିକୁ ଭୋଟ୍ ଦେବେ ଜାଣି ଖଟିଖିଆ ପାର୍ଟି ଏମିତି କରିଚି । ତଥାପି ଭାଇ, ଦବି ଯାଆନ୍ତୁ ନାହିଁ । ଜାନ୍ ଗଲେ ବି ଆମର ସେଇ ଗୋଟିଏ କଥା-ସମାଜବାଦ ।'

ମାଧବ ପଛକୁ କେହି ଜଣେ ଗେଡ଼ା, ନାଲିଜାମା ଓ ଧଳା ଟୋପି ପିନ୍ଧା ଲୋକ ପାଳି ଧରିବା ପରି କହି ଉଠିଲା, 'ସେଇ କଥା-ସେଇ କଥା-ସମାଜବାଦ ।' ନବଘନ ପରିଚିତ ସ୍ୱର ଶୁଣି ଅନାଇଲା ଲୋକଟି ଆଡ଼େ । ଦେଖିଲା ଠିକଣା ଜାଗାରେ ମାଧବ ପାଖକୁ ରାବଣା ବି ପହଂଚି ଯାଇଚି ।

ସହରରେ କେଉଁ ଦିନ କିଛି ଚାଂଚଲ୍ୟକର ଘଟଣା ଘଟିଲେ ତା ପରଦିନ ନୂତନ ମିଷ୍ଟାନ୍ନ ଭଣ୍ଡାରରେ ଲୋକଗହଳି ଟିକିଏ ବଢ଼ିଯିବା ସ୍ୱାଭାବିକ । ଗେରୁଆ ବସନ ପରିହିତ ଲଣ୍ଡିତମସ୍ତକ ବଙ୍ଗାଳୀ ବାବାଜୀ ଆସିବା ସମୟର ଘଣ୍ଟାଏ ଆଗରୁ ଆସି କୌଣସି ବଙ୍ଗଳା ଖବରକାଗଜ ପଢ଼ିବାରେ ଲାଗିଯାନ୍ତି । ବାବାଜୀଙ୍କ ସବୁ କଥାରେ ବିଶ୍ୱାସ କରୁଥିବା ଓ ସମ୍ମତି ଜଣାଉଥିବା ପାତଳା, ଚିଁ ଚିଁ ସ୍ୱରରେ କଥା କହୁଥିବା ଲୋକଟି ବି ତାଙ୍କ ପଛେ ପଛେ ଆସି ପହଂଚି ଯାଏ । ମୁରାରୀ ଦାସ ତ ହୋଟେଲ୍ ଖୋଲିବା ପରେ ପରେ ଆସି ପହଂଚନ୍ତି । ତାଙ୍କ ଆସିବା ସମୟର ବ୍ୟତିକ୍ରମ ନାହିଁ । ଅବଶ୍ୟ ଯିବା ସମୟ ବେଳେ ବେଳେ ଏପଟ ସେପଟ ହୋଇଯାଏ । ହରିଦତ୍ତ ଅଟକାଇ ଦିଏ । କହେ, 'ବ୍ୟସ୍ତ କାହିଁକି, କେଏ ଅପେକ୍ଷା କରିଚି ?'

ସବୁଦିନେ ସେଇ ପରିଚିତ ପରିବେଶ, ନିୟମିତ ଗରାଖମାନଙ୍କ ପରିଚିତ କଣ୍ଠସ୍ୱର, ଆଲୋଚନା, ଯୁକ୍ତିତର୍କ, ଚା' ଆଣିବା ପାଇଁ ନଟବରକୁ ଆଦେଶ, ପୃଥୁଳ ହରିଦତ୍ତର ସ୍ଥିତପ୍ରଜ୍ଞ ରୂପ ଓ ପଇସାଗଣା । ସବୁଦିନେ ଏକା ଦୃଶ୍ୟ । କେଉଁ ଘଟନାର ଆଲୋଚନାରେ କିଏ କିପରି ମତାମତ ଦେବ, କ'ଣ କହିଲେ କିଏ ଉତ୍ତେଜିତ ହେବ, ତା ମଧ୍ୟ ଆଗରୁ କହିବା କଠିନ ନୁହେଁ ।

ଗତକାଲିର ଘରପୋଡ଼ି ଘଟଣା ପରେ ନୂତନ ମିଷ୍ଟାନ୍ନ ଭଣ୍ଡାରରେ ଲୋକ ଗହଳି ଖୁବ୍ ବଢ଼ିଯାଇଛି । ଗରାଖମାନଙ୍କ କଣ୍ଠସ୍ୱର ଅଧିକ ଜୋର୍‌ରେ ଶୁଣାଯାଉଛି । ସକାଳୁ ସକାଳୁ ସହରର ବହୁବ୍ୟକ୍ତି ଆସି ଜୁଟି ଯାଇଛନ୍ତି । ଦୋକାନ କଡ଼ରେ ପ୍ରାୟ ଦୁଇ ଡଜନ ସାଇକେଲ୍ ଡେରା ହୋଇଛି । କେହି ସକାଳୁ ସକାଳୁ ସମୁଦ୍ର କୂଳେ ବୁଲି ଫେରିବା ବାଟରେ, କେହି ବା ଚା'କପେ ଖାଇବା ପାଇଁ ଏଠାରେ ଆସି ପହଂଚି ଯାଇଛନ୍ତି । ଗରମ ଚା' ସାଙ୍ଗକୁ ଗରମାଗରମ ଖବର । ଛୋଟ ସହରଟିକୁ ଉଷ୍ମତା ଓ ଉତ୍ତେଜନା ଯୋଗାଇବା ଯେପରି ନୂତନ ମିଷ୍ଟାନ୍ନ ଭଣ୍ଡାରର ମୁଖ୍ୟ କାର୍ଯ୍ୟ !

ଗଦାଧର ତାଙ୍କ ଚଷମା କାଚକୁ ରୁମାଲ୍‌ରେ ପୋଛୁ ପୋଛୁ କହିଲେ, 'ରାଜନୀତିରେ ମତଭେଦ ହୁଏ, ଆଲୋଚନା ସମାଲୋଚନା ହୁଏ, ଗାଳିଗୁଲଜ ବି ହୁଏ; କିନ୍ତୁ ଯା ବୋଲି ଆମର ଦରିଦ୍ର ହରିଜନ ଭାଇମାନଙ୍କ ଘରେ ନିଆଁ ଲଗାଇଦେବା କୋଉ ରାଜନୀତି ? ସକାଳୁ ଉଠି ଗାନ୍ଧିନଗର ଆଡ଼େ ଯାଇଥିଲି । ସବୁ ଘର ଜଳି ପାଉଁଶ ହୋଇ ଯାଇଚି । ସମସ୍ତେ ଆକାଶକୁ ଅନାଇ ବସିଛନ୍ତି !'

ବିଶୁନି ପଶୁପାଳକ କିଛି ନ ଜାଣିବା ପରି ଆରମ୍ଭ କଲେ- 'ଇୟେ ଯାହାହେଲା, ଧର୍ମ ସହିବଟି ! କିହୋ, ହାଡ଼ିସାହୀଟା ଧୂ ଧୂ ଜଳିଗଲା । ଦମକଳବାଲା ଗଲେ କୁଆଡେ ? ଯୋଉ ଦଳ ନିଆଁ ଲଗେଇଲେ ସରକାର ତ ତାଙ୍କରି । ଦମକଳ ଆସନ୍ତେ କେମିତି ? ସବୁ ଘର ଜଳିଗଲା ପରେ ଲୋକ ଦେଖାଣିଆକୁ ଦମକଳ ଆସିଲା । ଯାହା କହ, ଏ ସରକାର ପକ୍କା ଜାଲମ୍ ଜାଣିବ ।'

ରଘୁନି ବିଶୁନିଙ୍କ ପାଖରେ ବସି ଭାଇଙ୍କ କଥାକୁ ସମର୍ଥନ କରି ମୁଣ୍ଡ ହଲାଇଥିଲା ।

'ମାଙ୍କଡସା'ର ସ୍ଥାନୀୟ ପ୍ରତିନିଧି କ'ଣ ଗୋଟାଏ ସାପ୍ତାହିକ ପତ୍ରିକାର ପୃଷ୍ଠା ଓଲଟାଉ ଓଲଟାଉ କହିଲେ, 'ପୁଷ୍ଟାଳକେ, ଦମକଳବାଲା ଯେ ଡେରିରେ ଆସିଛନ୍ତି, ଏ କଥା ସତ୍ୟ । ଆପଣ ଆମକୁ ଲିଖିତ ଅଭିଯୋଗ ଦେଲେ ଆମେ ତାହାକୁ ନିଶ୍ଚୟ ପ୍ରକାଶ କରିବୁ ।'

ବିଶୁନି କହିଲେ, 'ଆଏ, ଆଉ ସେଥିରେ ଫାଇଦା କ'ଣ ? ସବୁ ତ ଜଳି ପାଉଁଶ ହୋଇଗଲା । ତେବେ ପୁରୀବାସୀ ଇଆର ଜରୁର୍ ଜବାବ୍ ଦେବେ ।'

ରଘୁନି ବି ଭାଇଙ୍କ ମୁହଁରୁ କଥା ଛଡ଼ାଇ ନେଲାପରି କହିଲା, 'ଜରୁର ଜବାବ ଦେବେ । ଜଗାବଳିଆଙ୍କ ଜେଗା ଇୟେ । ଇଠି ପତିତପାବନଙ୍କ ଗରବ ଗଂଜନ ବାନା ଉଡୁଛି । ମହା ଜନତା ପାର୍ଟିର ଗର୍ବ ଜରୁର୍ ଭାଙ୍ଗିବ ।'

'ମାଙ୍କଡସା' ପ୍ରତିନିଧି ସ୍ୱର ନରମାଇ କହିଲେ, 'ପୁଷ୍ଟାଳକେ, କଥାଟା ଭୁଲ୍ ବୁଝୁଛନ୍ତି କାହିଁକି ? ଖବର କାଗଜରେ ଅଭିଯୋଗଟା ବାହାରିଲେ ଭବିଷ୍ୟତରେ ଦମକଳବାଲା ସାବଧାନ ହେବେ । ଆଜି ହାଡ଼ିସାହୀରେ ନିଆଁ ଲାଗିଲା, କାଲି ତମସାହୀରେ ଲାଗିବ ।'

ନିଜ ସାହୀରେ ନିଆଁ ଲାଗିବା କଥାଟା ଶୁଣି ରଘୁନାଥ ପୁଷ୍ଟାଳକ ଓରଫ୍ ରଘୁନି ଟେବୁଲ୍ ଉପରେ ଦୁମ୍ କରି ହାତଟା ପିଟିଦେଇ କହିଲା, 'ଆଏ ଯାଅ ହେ ! ଆମ ସାଇ ନାଆଁ ହରଚଣ୍ଡୀ ସାଇ । ଆମ ସାଇରେ ନିଆଁ ଲଗେଇଦବ, ଏମିତି ପୁଅ ଜନମ ହୋଇ ନାହାନ୍ତି । ସାଇ ପାଇଁ ଜାନ୍ ଚାଲିଯାଉ ।'

ରଘୁନି ହଠାତ୍ ଉତ୍ତେଜିତ ହୋଇ ପଡ଼ିବାରୁ 'ମାଙ୍କଡସା' ପ୍ରତିନିଧିଙ୍କ ମୁହଁ ଭୟରେ କଳା ପଡ଼ିଗଲା । ତଥାପି ଅବସ୍ଥା ସମ୍ଭାଳି ନେବାକୁ ସେ କହିଲେ, ନାଇଁମ, ହରଚଣ୍ଡୀ ସାଇରେ କେହି ନିଆଁ ଲଗେଇ ପାରିବ ନାହିଁ । କଥାକୁ କହୁଥିଲି ନା !'

ଏହାପରେ ବିଶୁନି ରଘୁନି କାନରେ ଚୁପ୍ ଚୁପ୍ କ'ଣ କହିଲେ । କିଛି ସମୟ

ପରେ ବିଶୁନି କହିଲେ, 'ଦବୁ -ଅଭିଯୋଗ ଲିଖିତ ଆକାରରେ ଦବୁ । କିନ୍ତୁ ନାଆଁ ନଦେଇ 'ଆମ୍ଭେ ପୁରୀବାସୀ'ବୋଲି ଲେଖିବୁ ।'

'ମାଙ୍କଡସା' ପ୍ରତିନିଧି ଆଶ୍ୱସ୍ତିସୂଚକ ହସ ହସି ସମ୍ମତି ଜଣାଇଲେ । ଗଦାଧର ଗଳା ଝାଡ଼ି କହିଲେ, 'ଆପଣ 'ମାଙ୍କଡସା' ପରି ସମ୍ବାଦପତ୍ରର ପ୍ରତିନିଧି । ସତକଥା ଲେଖିବା ସାମ୍ବାଦିକର ଧର୍ମ । ଆପଣ କିନ୍ତୁ ନିର୍ବାଚନ ନାମରେ ଯେପରି ଅନ୍ୟାୟ ଚାଲିଛି, ଲେଖୁ ନାହାନ୍ତି ।'

'ଲେଖୁ ନାହିଁ ?'- 'ମାଙ୍କଡସା' ପ୍ରତିନିଧି ଉଚ୍ଚସ୍ୱରରେ ପ୍ରତିବାଦ କଲେ । 'ପୁରୀସହରରେ ନିର୍ବାଚନ ପ୍ରଚାର ଆରମ୍ଭ ହେବା ଦିନଠୁ ଯାହା ଯାହା ଘଟିଛି, ସବୁ ପୁଙ୍ଖାନୁପୁଙ୍ଖ 'ମାଙ୍କଡସା'ରେ ବାହାରେ ଆପଣଙ୍କ ଦୋକାନ ଆଗରେ ଯେଉଁ ସତ୍ୟାଗ୍ରହ ହୋଇଥିଲା, ତାହାର ବିବରଣୀ ଫଟୋ ସହ 'ମାଙ୍କଡସା'ରେ ବାହାରିଥିଲା ।'

ଗଦାଧର ନିଜ ଭୁଲ୍ ବୁଝି ପାରିବା ପରି କହିଲେ, 'ସେ ଯାହାହେଉ, କାଲି ହାଡିସାଇ ପୋଡ଼ିବା କଥାଟା ଯେମିତି ଆପଣଙ୍କ କାଗଜର ପ୍ରଥମ ପୃଷ୍ଠାରେ ବାହାରେ । ମହା ଜନତା ପାର୍ଟି ଯେ ଏପରି କାଣ୍ଡ କରିଛି, ସର୍ବସାଧାରଣଙ୍କର ଏହା ବିଶ୍ୱାସ ।"

ଏହି ସମୟରେ କ୍ଷିପ୍ର ପଦରେ ନବଘନ ଓ ତା ପଛେ ପଛେ ଆଶାବାଡ଼ି ଖଡ଼ଖଡ଼ କରି ମାଧବ ନୂତନ ମିଷ୍ଟାନ୍ନ ଭଣ୍ଡାର ଭିତରେ ପ୍ରବେଶ କଲେ । ସମସ୍ତଙ୍କ ଦୃଷ୍ଟି ସେମାନଙ୍କ ପ୍ରତି ଆକୃଷ୍ଟ ହେବାରୁ ଚାଲିଥିବା ଆଲୋଚନାଟା ସେଇଠି ଅଟକିଗଲା ।

ନବଘନ କୌଣସି କାର୍ଯ୍ୟରେ ଅତିଶୟ ବ୍ୟସ୍ତ ଥିବା ପରି ମନେ ହେଉଥିଲା । ଜାମାର ସବୁ ବୋତାମ ଦେବାକୁ ବି ସେ ସମୟ ପାଇ ନଥିଲା । ଖୁବ୍ ଚିନ୍ତିତ ଓ ବ୍ୟଗ୍ର ଥିବାପରି ସେ ଲଥ୍ କରି ଗୋଟାଏ ଚୌକିରେ ବସିପଡ଼ି ନଟବର ଉଦ୍ଦେଶ୍ୟରେ ପାଟିକଲା, 'ନଟବର, ଚା' ଆଣ ।' ମାଧବ ବି ଧଇଁସଇଁ ହୋଇ ନବଘନ ପଛେ ପଛେ ଆସିଥିଲା । ନବଘନ ପାଖ ଚୌକିରେ ବସିପଡ଼ି ସେ ଟେବୁଲ୍‌ରେ ତା ଆଶାବାଡ଼ିଟା ଆଉଜେଇ ଦେଲା ।

ଏକ ସମୟରେ ବିଶୁନି ଓ ମାଧବଙ୍କ ନୂତନ ମିଷ୍ଟାନ୍ନ ଭଣ୍ଡାରରେ ଉପସ୍ଥିତି ହରିଦତ୍ତ ପକ୍ଷରେ ଥିଲା ଏକାନ୍ତ ଭୟପ୍ରଦ । ସେ ଗରାଖମାନଙ୍କ ପାଇଁ ଚା' ଜଳଖିଆ ବରାଦ ଦେବା ଓ ଗରାଖମାନଙ୍କ ଠାରୁ ପଇସା ଗଣି ରଖିବା ଭିତରେ ବି ମାଧବ ଓ ବିଶୁନିଙ୍କୁ କଣେଇ କଣେଇ ଅନାଉଥାଏ ।

ନବଘନ ସମସ୍ତଙ୍କୁ ଶୁଣେଇ ଅଥଚ ମାଧବ ଆଡ଼କୁ ଅନାଇ କହିଲା 'କଣ କରିବା, ଆଉ କେଡ଼େ ବେଗି ଦେଇଥାନ୍ତା । କେତେ କାମ ପଛକୁ ପକେଇ ଆଗ ଆମ ରସିଦ ବହି ଛାପି ଦେଲା !'

ମାଧବ ଚା' କପ୍‌ରୁ ଚା' ପ୍ଲେଟ୍‌ରେ ଢାଳି ସୁଡ୍ କରି ଚା ଢୋକି କହିଲା, 'ଆଏ ସିଏ କଣ ସେମିତି ଶୁଣିଥାନ୍ତା ! ସେ ପ୍ରେସ୍ ବାଲା ପରା ପହିଲେ ଆମରି ସାଇରେ ଭଡ଼ା

ରହୁଥିଲା । ଚିହ୍ନାଲୋକ ବୋଲି ସବୁକାମ ପଛରେ ପକେଇ ଧଡାସ୍ କିନା ଆମ ରସିଦ ବହି ଛାପି ଦେଲା କି !'

ନବଘନ ଚା' ଖାଇ ପରମ ତୃପ୍ତ ହେଲା ପରି ଭାବ ଦେଖାଇ ଉପସ୍ଥିତ ଭଦ୍ରଲୋକମାନଙ୍କ ଉଦ୍ଦେଶ୍ୟରେ କ୍ଷୁଦ୍ର ଭାଷଣଟିଏ ଆରମ୍ଭ କରିଦେଲା, 'ଦେଖନ୍ତୁ' କିଛି ମନେ କରିବେ ନାହିଁ-ଯଦିଓ ସାହାଯ୍ୟ ଭିକ୍ଷା କରିବାର ସ୍ଥାନ ଏ ନୁହେଁ, ତଥାପି ବାଧ୍ୟ ହୋଇ ସାହାଯ୍ୟଭିକ୍ଷା କରୁଛି । ଗତକାଲି ଗାନ୍ଧିନଗରରେ ନିଆଁ ଲାଗିବା ଫଳରେ ଆମର ହରିଜନ ଭାଇମାନଙ୍କ ଅବସ୍ଥା ଯାହା ହୋଇଛି, ଆପଣମାନେ ଜାଣନ୍ତି । ଆମରି ମାଆ ଭଉଣୀ ଆଜି ମୁଣ୍ଡ ଗୁଂଜିବାକୁ ଜାଗା ନପାଇ ବଡ଼ଦାଣ୍ଡରେ ବସିଛନ୍ତି । ସରକାରୀ ସାହାଯ୍ୟ ଆସିବ ସନ୍ଦେହ ନାହିଁ; କିନ୍ତୁ ସରକାରୀ ସାହାଯ୍ୟ ଆସିବାକୁ ଡେରି ହବ ଇ ହବ । ଅତଏବ ଆମେ ଆମ୍ଭମାନଙ୍କର ସକ୍ଷ୍ୟ ଅନୁସାରେ କିଛି କିଛି ସାହାଯ୍ୟ କରିବା । ସେଥିପାଇଁ ଗାନ୍ଧିନଗର ସାହାଯ୍ୟ ପାଣ୍ଠିର ସଂପାଦକ ହିସାବରେ ମୁଁ ଆପଣଙ୍କୁ ଅନୁରୋଧ କରୁଛି, ଯତ୍‌ସାମାନ୍ୟ ସାହାଯ୍ୟ କରି ହରିଜନ ଭାଇମାନଙ୍କ ସହାୟତା କରନ୍ତୁ ।'

କ'ଣ କହିବ ବୋଲି ମାଧବର ଜିଭ ଯେପରି ଖଲ ଖଲ ହେଉଥିଲା । ସେ ସଂଗେ ସଂଗେ ଦି'ପଦ ଯୋଡ଼ିଦେଲା, 'କିଛି ଭାବିବାର ନାହିଁ । ପଇସାଟିଏ ଦେଲେ ବି ହକ୍ 'ରସିଦ୍' କାଟିଦେବୁ ।' ମାଧବ ପକେଟରୁ ବାହାର କରି ରସିଦ୍ ବହିଟା ଉପରକୁ ଟେକି ସମସ୍ତଙ୍କୁ ଦେଖାଇଲା ।

ବଙ୍ଗାଳୀ ବାବାଜୀ ଏତେବେଳଯାଏଁ ଖବରକାଗଜ ପଢ଼ାରେ ବ୍ୟସ୍ତ ଥିଲେ । ନବଘନର ସାହାଯ୍ୟ ଭିକ୍ଷା କଥାଟା ତାଙ୍କ ମନକୁ କିନ୍ତୁ ଖୁବ୍ ପାଇଲା । ସେ ଖବରକାଗଜରୁ ମୁହଁ ଉଠାଇ ତାଙ୍କ ପାଖରେ ବସିଥିବା ସେଇ ପାତଳା ଚିଁ ଚିଁ ସ୍ୱରରେ କଥା କହୁଥିବା ଲୋକଟିକୁ କହିଲେ, 'ମହାଶୟ, ଏଟା ବଡ଼ ଉତ୍ତମ ପ୍ରସ୍ତାବ । ସରକାରୀ ସାହାଯ୍ୟକୁ ଅପେକ୍ଷା ନକରି ଆଗେ ବେସରକାରୀ ସାହାଯ୍ୟର ବ୍ୟବସ୍ଥା କରିବା ଚାଲ ।'

ନବଘନ କାନରେ କଥାଟା ବାଜିବାରୁ ସେ ଆହୁରି ଉତ୍ସାହିତ ହୋଇପଡ଼ିଲା । କହିଲା, 'ସେଇଥିପାଇଁ ଆମେ 'ଗାନ୍ଧିନଗର ସାହାଯ୍ୟ ପାଣ୍ଠି' ଲାଗି ସାହାଯ୍ୟ ସଂଗ୍ରହରେ ବାହାରିଛୁ । ବାଧ୍ୟବାଧକତା ନାହିଁ । ଯାହା ସକ୍ଷ୍ୟକୁ ଚାହିଁ ଯିଏ ଯାହା ଦେଲା ।'

ମାଧବ ପାଳି ଧରିଲା, 'ଆରେ ଦେଇ ଥିଲେ ପାଇ । ପରର ବିପଦବେଳେ ଠିଆ ହେଲେ ଆମ ଅସୁବିଧାରେ ପାଁଜଣ ଠିଆ ହେବେ । ନା-କହୁ ନାହାନ୍ତି ?'

ଗଦାଧର ଓ ବିଶୁନି ପରସ୍ପରକୁ ଅନାଇ ଚୁପ୍ ଚାପ୍ ହସୁଥିଲେ । ରଘୁନି କହିଲା 'ଭାଇ ଉଠନ୍ତୁ । ପେଟଟା ଗାଉନ୍ଦା ଲାଗୁଚି ।'

ବିଶୁନି ଉଠିଲେ । ରଘୁନି ବି ।

ବିଶୁନି ରଘୁନି ଉଠିଯିବା ପରେ ମାଧବ ଆଶ୍ୱସ୍ତିରେ ନିଃଶ୍ୱାସଟା ମାରିଲା । ଗଦାଧରକୁ

ଶୁଣାଇ ଶୁଣାଇ କହିଲା, 'ଇଏ ଗୋଟାଏ ଜନକଲ୍ୟାଣ କାର୍ଯ୍ୟ । ଇଠି ମହା ଜନତା ପାର୍ଟି ଖଟିଖିଆ ପାର୍ଟି ସବୁ ସମାନ । ସକ୍ଷ୍ୟକୁ ଚାହିଁ ଦି'ପ୍‌ସା ଦେଲେ ହରିଜନ ଭାଇମାନେ ପାଇବେ ।'

ସତକୁ ସତ ନବଘନ ଓ ମାଧବଙ୍କ ଆବେଦନ ବୃଥା ହେଲା ନାହିଁ । ଏହା ଭିତରେ କୌଣସି କୌଣସି ଭଦ୍ରଲୋକ ସେମାନଙ୍କ ଜଳଖିଆ ଖାଇବା ଓ ଆଲୋଚନା କରିବା ଭିତରେ ଗାନ୍ଧିନଗର ସାହାଯ୍ୟ ସମିତିର ସଂପାଦକ ନବଘନ ହାତରେ ଚାରଣା ଆଠଣା ଗୁଂଜିଦେବା ଆରମ୍ଭ କରି ଦେଇଥିଲେ, ନବଘନ ତର ତର ହୋଇ ଖଣ୍ଡିଏ ଛୋଟ ପେନ୍‌ସିଲ୍‌ରେ ରସିଦ୍ କାଟିବାରେ ଲାଗି ପଡ଼ିଥିଲା ।

ସମୁଦ୍ର କୂଳର କୋଠା ଘରଟାକୁ କେନ୍ଦ୍ର କରି ଭଗୀରଥଙ୍କ ନାମରେ ଚାଲିଥିବା ଅପପ୍ରଚାର ଯେତିକି ଯେତିକି ଘନୀଭୂତ ହେଉଥିଲା, ଭଗୀରଥ ଓ ତାଙ୍କ ସମର୍ଥକମାନଙ୍କର ସଭା ସମିତି, ଭାଷଣ ଓ ଲୋକସଂପର୍କ ରକ୍ଷା ସେହି ପରିମାଣରେ ବଢ଼ି ଚାଲିଥିଲା । ଗିରିଧାରୀ, ନବଘନ, ରାବଣା, ମାଧବ ଓ ଆଉ କେତେଜଣ କର୍ମୀଙ୍କ ସହିତ ନିଜେ ଭଗୀରଥ ପୁରୁଣା ରାଲେ ସାଇକେଲ ଖଣ୍ଡକ ଠେଲି ଠେଲି ସହର ଏମୁଣ୍ଡରୁ ସେମୁଣ୍ଡ କେତେ ଥର ଘୂରି ଆସିଥିଲେ । ଚକ୍ରତୀର୍ଥର ନୋଳିଆ ବସ୍ତିଠାରୁ ଲୋକନାଥ ଘାଟ ଯାଏ, ପୁଣି ସ୍ୱର୍ଗଦ୍ୱାରଠାରୁ ମଙ୍ଗଳାଘାଟ ଯାଏ, ନିର୍ବାଚନ ମଣ୍ଡଳୀର ସାତସାହି ବୟାଳିଶି କନ୍ଦି ସବୁଠି ସେ ସମାଜବାଦର ମହତ୍ତ୍ୱ ବୁଝାଇ ହାତଟଣା ରିକ୍ସା ଚିହ୍ନରେ ଭୋଟ ଦେବା ପାଇଁ ଲୋକଙ୍କୁ ନିବେଦନ କରିସାରିଥିଲେ । ପନ୍ଦର ଦିନ ଭିତରେ ଥରକୁ ଥର ତିନିଥର ପୋଷ୍ଟର ମରାଯାଇ ହାତଟଣା ରିକ୍ସା ଓ ଭଗୀରଥଙ୍କ ଯୋଡ଼ହସ୍ତ ହସହସ ମୁଖମଣ୍ଡଳର ଛବି ସହରର କାନ୍ଥ ବାଡ଼ରେ ଛାଇଦିଆ ଯାଇଥିଲା । ଖଟିଖିଆ ପାର୍ଟିର ପ୍ରାର୍ଥୀ ଅର୍ଜୁନ ଗୋଛିକାରଙ୍କ ଅପେକ୍ଷା ଭଗୀରଥଙ୍କ ନିର୍ବାଚନ ପ୍ରଚାର ଯେ ଅଧିକ ହୋଇଥିଲା, ଏହା ସହଜରେ ଜାଣି ହେଉଥିଲା ।

କିନ୍ତୁ ଭଗୀରଥ ସହଜରେ ସନ୍ତୁଷ୍ଟ ହେବା ଲୋକ ନଥିଲେ । ବହୁ ବର୍ଷ ରାଜନୀତି କରି ସେ ବୁଝିଲେ, ଭୋଟରମାନଙ୍କୁ କେବେ ବିଶ୍ୱାସ କରାଯାଇ ନପାରେ । ସେମାନେ ମୁହଁରେ ଯାହା କହନ୍ତି, କାମରେ ତାହା କରନ୍ତି ନାହିଁ । ଯଦି ସେମାନେ ଯାହା କହୁଛନ୍ତି, ସେଇ ଅନୁସାରେ ଭୋଟ୍ ଦିଅନ୍ତି, ତେବେ ତ ସେ ନିଶ୍ଚିତ ଭାବରେ ବିପୁଳ ଭୋଟ୍‌ରେ ଜିଣିବା କଥା, କିନ୍ତୁ ତାଙ୍କ କୋଠାଘରକୁ କେନ୍ଦ୍ରକରି ଯେପରି କୁତ୍ସାରଟନା ଚାଲିଛି ଓ ବିଶୁନି ପଶୁପାଳକ ଯେପରି ହଜାର ହଜାର ପ୍ରଚାର ପତ୍ର ବାଣ୍ଟି ଚାଲିଛନ୍ତି ତାହାର ପ୍ରଭାବ ଯେ ପୁରୀବାସୀଙ୍କ ଉପରେ କ'ଣ ହେବ, କହିବା କଠିନ । ପୁଣି ଅର୍ଜୁନ ଗୋଛିକାରଙ୍କ ନିର୍ବାଚନ

ପ୍ରଚାରରେ ଥିବା ଗଦାଧର ଜଣେ ଅତି ଧୂର୍ତ୍ତ ରାଜନୀତିଜ୍ଞ, ଏଥିରେ ସନ୍ଦେହ ନାହିଁ । ମୋଟା ଫ୍ରେମ୍ ଚଷମା ଭିତରୁ ତାଙ୍କର ବିଲେଇ ଆଖିଭଳି ଜଳୁଥିବା ଆଖି ଦୁଇଟିକୁ ଦେଖିଲେ କେଜାଣି କାହିଁକି ଭୟ ଲାଗେ । ଦିନେଦିନେ ରାତିରେ ଭଗୀରଥ ମୋଟା ଚଷମା କାଚ ଭିତରେ ଜଳୁଥିବା ସେ ଆଖି ଦୁଇଟିକୁ ସ୍ୱପ୍ନରେ ଦେଖି ଭୟରେ ଉଠି ବସି ପଡ଼ିଚନ୍ତି ଓ ତାଙ୍କର ମନେ ହେଇଛି, ତାଙ୍କର ସବୁ ଗୋପନୀୟ କାର୍ଯ୍ୟକଳାପ ତାଙ୍କ ବ୍ୟାଙ୍କ୍ ବାଲାନ୍ସ, ଗରିଧାରୀ ବାହିନୀପତି ଓ ଜୟହନୁମାନ ଅଗ୍ରୱାଲାଙ୍କ ସହିତ ତାଙ୍କର ଭିତିରି ବୁଝାମଣା, ସବୁ ଯେମିତି ସେ ଆଖି ଦୁଇଟି ଲକ୍ଷ୍ୟ କରିଛି ! ଥରେ ଦିଥର କାଂଚନ ଦେବୀ ସ୍ୱାମୀ ଏମିତି ନିଦରୁ ଉଠି ବସିପଡ଼ିବା ଦେଖି ବ୍ୟସ୍ତ ହୋଇ ପଚାରିଛନ୍ତି – 'କ'ଣ ହେଲା ଯେ ?' ଭଗୀରଥ ଅଶ୍ୱାସନା ଦେଇଛନ୍ତି – 'ନା' କିଛି ନାହିଁ । ଶୋଷ ଲାଗୁଚି ।'

ଭଗୀରଥ ଇସ୍ତ୍ରୀକରା ଖଦଡ଼ ଧୋତି ଓ ପଂଜାବି ପିନ୍ଧି କଦମ୍ବଗଡ଼ ଜେଗାର ଉଂଚ ଚଉତରା ଉପରେ ସାହୀର ମୁଖିଆ ଲୋକଙ୍କ ମେଳରେ ବସିଥିଲେ । ଏଇ କେତେଦିନ ହେଲା ଜେଗାଘରମାନଙ୍କରେ ସାହୀର ମୁଖିଆ ମୁଖିଆମାନଙ୍କ ସଂଗେ ଆଲୋଚନା କରି ନିର୍ବାଚନ ଦିନ ସେମାନେ କ'ଣ କରିବେ, ସେଇକଥା ସେମାନଙ୍କୁ ବୁଝାଉଛନ୍ତି । ସଭାସାଙ୍ଗକୁ ଜେଗାଘରେ ରୋଷେଇର ବ୍ୟବସ୍ଥା କରାଯାଉଥିବାରୁ ନିମନ୍ତ୍ରିତ ସମସ୍ତ ମୁଖିଆ ଯଥା ସମୟରେ ଆସି ଉପସ୍ଥିତ ହେବା ଲକ୍ଷ୍ୟ କରାଯାଉଛି । ଆଜି ମଧ୍ୟ ସଂଜ ବୁଡୁ ବୁଡୁ ପାଖଆଖ ସାହୀମାନଙ୍କରୁ ପ୍ରାୟ ତିରିଶି ଜଣ ମୁଖିଆ ଭଗୀରଥଙ୍କୁ ଘେରି ବସିଥିଲେ ।

କଦମ୍ବଗଡ଼ର ସିମେଣ୍ଟ ଚଉତରା ପଡ଼ିଥିବା ସତରଂଜି ଉପରେ ନିମନ୍ତ୍ରିତ ବ୍ୟକ୍ତିମାନେ ବସିଥିଲେ । ଭଗୀରଥଙ୍କ ସାମନାରେ ପେଟ୍ରୋମାକ୍ସ ଲାଇଟ୍‌ଟି ରଖା ଯାଇଥିଲା ଓ ଲାଇଟ୍‌କୁ କେନ୍ଦ୍ରକରି କେତୋଟି ପୋକ ଘୂରୁଥିଲେ । ରାତି ବେଶୀ ହୋଇନଥିଲେ ବି ମାତ୍ରାଧିକ ଭାଙ୍ଗ ଖାଇ ଦେଇଥିବାରୁ କେତେଜଣ ମୁଖିଆ କାନ୍ଥକୁ ଆଉଜି ଘୁମାଉଥିଲେ । ଜେଗାର ରୋଷଘରେ ରୋଷେଇ ଚାଲିଥିଲା ଓ ଫୁଟୁଥିବା ମାଂସତରକାରୀର ତୀବ୍ର ବାସ୍ନାରେ ସ୍ଥାନଟି ମହକୁଥିଲା । ମାଂସ ତରକାରୀର ବାସ୍ନା ସାଂଗକୁ କେଉଁଠି ଫୁଟିଥିବା ଯୁଈ ଫୁଲର ବାସ୍ନା ମଧ୍ୟ ବେଳେ ବେଳେ ପବନରେ ଭାସି ଆସୁଥିଲା ।

ପ୍ରଥମେ ଗିରିଧାରୀ କଥାଟା ଆରମ୍ଭ କଲେ – 'ଆଉ ସେ ସାଇ ଅବସ୍ଥା କ'ଣ ଦୟିତାପତିଏ ?'

ଅଧର ଦୟିତାପତିଂକ ଆଖି ଦୁଇଟା ପାଚକ ନିଶାରେ ମାଡ଼ି ମାଡ଼ି ହୋଇ ପଡୁଥିଲା । ପାଖରେ ବସିଥିବା ତାଂକର ଆଠ ବର୍ଷର ପୁଅ ବାପାଙ୍କ ହାତଟାକୁ ଟାଣି ଦେବାରେ ଅଧର ଦୟିତାପତି ପ୍ରକୃତିସ୍ଥ ହେଲେ । ଓଜନିଆ ସ୍ୱରରେ କହିଲେ – 'ବାଇୟା ହେଲେ ଅବଧାନେ ! ଅର୍ଜୁନଟା ପକ୍‌କା ଗରଦଗୁମାନୀ । ତାକୁ ଆମେ ଜାଣିନୁ ? କାଳିଆ କ'ଣ ତାର ଅଭାବ ରଖିଚି ? କାଇଁ ଦିନେ ଭୋଖିଶୋଷୀଙ୍କ ପାଇଁ ଦି'ପଇସା ଖରଚ କଲା ? ଭୋଟ୍‌ରେ ଠିଆ

ହେଇଚି ଯେ ଦିନେ ସାଇରେ ପାଦ ଦେଲାଣି ? ଆମ ସାଇର ସବୁ ଭୋଟ ଭଗୀରଥବାବୁଙ୍କର । ନା କ'ଣ ଭିତରଛୁ ମହାପାତ୍ରେ ?'

ଭିତରଛୁ ମହାପାତ୍ରେ ପାଳିଧରିବା ପରି କହିଲେ, 'ଇୟେ ଗୋଟେ ପଚାରିବା କଥା । ଅର୍ଜୁନଟା ରାଢ଼ଟାଏ । ହାତ ଟେକି ଦି ପଇସା କହାକୁ ଦବା ମୁଁ ଦିହକରେ ଦେଖିନାହିଁ । ପକ୍‌କା ପମ୍ପାଲ୍‌ଟାଏ । ଫିନ୍ ଫିନ୍ ଲୁଗା ପିନ୍ଧିବା, ଟେରି କାଟିବା, ସୁନାମୁଦି ଚେନ୍ ମାଜିବା-ଇୟା ଛଡ଼ା ଆଉ କୋଉ କାମକୁ ନୁହେଁ ।'

ସଭାର ଗୋଟାଏ କୋଣକୁ ବୁଢ଼ା ପୂଜାରୀ କଳା ଛାଇଟାଏ ପରି ବସିଥିଲା । ତାକୁ ଯେ ଏ ସଭାକୁ ନିମନ୍ତ୍ରଣ କରାଯାଇଥିଲା, ତା ନୁହେଁ । ସଂଜ ହେଲେ ଢେଗାଆଡ଼େ ଘେରେ ବୁଲିଯିବା ତାର ଅଭ୍ୟାସ । ନୋକନି ତାକୁ ଏମିତି ଅଟକାଇ ଦେଇଛି- 'ବସୁନା କାହିଁକି ମଉସା, ଆସିଚ ଯେତେବେଳେ, ଫୁଂକିଏ ହେଇଯାଉ । ଗୁରୁଘରେ ତ ସବୁଦିନେ ସେଇ ବଗଡ଼ା ।'

ମନକୁ ମନ ଗପିଲା ପରି ସେ କହିଲା, 'ପୁରୀ ସହର ଇୟେ । ଏଠି ବାରମାସରେ ତେର ଯାତ । ରଥ, ଝୁଲଣ, ଚନ୍ଦନ, ସାଇଯାତ, ଗୋସାଣୀଯାତ ସାଂଗକୁ ଇଏ ଗୋଟାଏ ନୂଆ ଯାତ-ଭୋଅଟ । ନା କଅଣ କୁସୁନ ?'

କୁସୁନ ବଡ଼ଦେଉଳରେ ଯୋଗାଣିଆ । ବୁଢ଼ାପୂଜାରୀ କଥାକୁ ଜୋରରେ ମୁଣ୍ଡ ହଲାଇ ସେ ସମର୍ଥନ କଲା । କହିଲା, 'ହଁଅଅ ଆଉତ ଦି'ଟା ଦିନ, ସଇଲା ବୋଲ । ପୁଣି ତ ଏଥର ଭଗୀବାବୁ ଆମର ଆସିବେ ।'

ନୋକନି ଭଗୀରଥଙ୍କ ଏକଦା ନିମ୍ନ ପ୍ରାଇମେରୀ ସ୍କୁଲରେ ପାଠ ପଢ଼ିଥିବାରୁ, ଭଗୀରଥଙ୍କୁ ଥଟ୍ଟା କରିବା ଅଧିକାରଟା ଯେପରି ତାର ହିଁ ଥିଲା । କୁସୁନ ମୁହଁରୁ କଥାଟା ଛଡ଼େଇ ନେଲାପରି ସେ କହିଲା, 'ଇଥର ଏସେମ୍ଲିକି ଗଲେ ଗୋଟେ ବଢ଼ିଆ ପଙ୍ଗତ ଯେମିତି ଦବ । ଆଉ ଏ ରୋଷେଇ ହବ ନାଇଁ । ଦେଉଳରେ ଘିଅନ୍ନ, ଡାଲି, ମହୁର, ବେସର, ଶାଗ, ରାଇତା, ଖଟା, ଗୋଟିବାଇଗଣ, ରସାବଳୀ ।'

ବୁଢ଼ା ପୂଜାରୀ ଦି'ଥର ଖେଁ ଖେଁ କାଶି ପ୍ରତିବାଦ କଲାପରି କହିଲା, 'ନୋକନି, ଆରେ ପହଣ୍ଡା ପୁଅ ହେଇ ତୁ ବି ସେମିତି କହୁଚୁ । କିରେ ପିଠାପଣାରେ ସିନା ମଉଜ । ହଅଅ-ଆଉ ସେ ଗୁଆଘିଅ ମିଳୁଚି ଯେ ସେ ଖୁସ୍‌ବୁ ଜାଣିବ । କାନ୍ତି, ଝିଲି, ମାଠପୁଳି, ମାଣ୍ଡୁଅ, ଏଣ୍ଡୁରି, ସୁଆରପିଠା, ହଂସକେଳି, ପାଗଆରିଷା, ମରିଚିଲଡ୍ଡୁ, ପାପୁଡ଼ି, ତ୍ରିପୁରୀ, ଫେଣୀ, ପାରିଜାତକ, ସୁଆରୀ, ଲୁଣିଖୁରମା, ନଡ଼ିଆକେଳି, ଅମାଲୁ, ଚଡ୍ଡେଇନେଦା ।' ମୁଖସ୍ଥ କଲାପରି ଏତକ କହିଦେଇ ବୁଢ଼ା ପୂଜାରୀ ଖେଁ ଖେଁ କାଶିବାକୁ ଲାଗିଲା ।

ଅଧର ଦୟିତାପତି କାନ୍ଧ ଉପରେ ପଡ଼ିଥିବା ପାଚିଲା ଗାମୁଛାରେ ମୁହଁଟା ପୋଛି ପୋଛି କହିଲେ, ମଉସା, ସେ ବେଳା ଆଉ ନାଇଁମ । ସେ ସାଇଯାତ ଆଉ ଅଛି ?

'ସହରୀ ଢାଲମ'ରେ ଯାହା ଲେଖିଚି-

ଛାଡ଼ିଣ ଜଂଜାଳ        ପିଲା ବୁଢ଼ା ମେଳ
ହୋଇ କଲେ ଜଡ଼ଉତ,
ନାଗା ସନିଆସୀ        ସଟରା ତପସୀ
ଫୁର୍ତ୍ତିରେ ବୁଲାଇ ହାତ ।
କଡ଼ିକେ ନିଝାମ        ଝାଡ଼ି ଝମ ଝମ
ଯୋଡ଼ି ପାହୁଲ ପକାଇ,
ବାଡ଼ି ବାଙ୍କ ଛୁରୀ        ଛଡ଼ି ତରୁଆରୀ
ହାଡ଼ି ବାଜାକୁ ସାଜଇ ।
ଖଣ୍ଡ ଖଣ୍ଡ କାଠି        ଚାଂଛି ଘଷି ମାଠି
ପିଟିଲେ ସଟରା ଯାକ,
ଗଳାରେ ଘାଗେଡ଼ା        ମାଳି ଟୋପି ଜୁଡ଼ା
ମୁକୁଳା କାଛାକୁ ଛକ ।
ଏରାପକ୍ଷୀ କେରା-        ଜେରା କାନ୍ଧେ ତୋରା
ତା ତଳକୁ ଓରମାଳ,
ଗୋଇଠି ଉପର        ଚଉଁରୀ ତୋଡ଼ର
ହିନ୍ଦୀ ଗୀତ ଶିଖ ମାଲ ।
ନଳି ଶବଦକୁ        ନକଲେ ନାଗାକୁ
ନିନ୍ଦା ବୋଲି ତୋଳି ଗାଂଜ,
ବାରଦ ପୂରାଇ        ଘୂରାଇ ଘୂରାଇ
ଭିଡ଼େ କଲାକ ଆବାଜ ।

ଦୟିତାପତିଏ ଭାଂଗୁଆ ପାଟିରେ ଲହରେଇ ଲହରେଇ ଗୀତଟି ବୋଲି ସନ୍ତୁଷ୍ଟ ହୋଇ କୁସୁନ ଆଡ଼େ ଅନାଇଲେ । କହିଲେ, 'କ'ଣ ଯୁଆନ, ଏମିତି ଦୋଅଣି ହଢେଇଲା ମାରଗେ ଅନୁଉଚୁ କ'ଣ ? ଦିପଦ ହୋଇଯାଉ ।'

କୁସୁନ ଯେମିତି ଏତିକି ଶୁଣିବାକୁ ତକେଇଥିଲା । ଦୁଇ ହାତରେ ତାଳି ମାରି ଆରମ୍ଭ କରିଦେଲା-

ସରିଲା ଗାଧୁଆ        ସବୁ ସାଂଗ ଠିଆ
ଭାଂଗ ବାଣ୍ଟିଗଲେ ନେଣ୍ଟି,
ଯେତେ ସମରଥ        କଲେ କସରତ
କମର ଭିଡ଼ିଲେ କଟି ।

ବୋଲି ରାମରଙ୍ଗ           କିଏ ମୋଡ଼ି ଭୁଜ
କେ ବୁଲାଇ ବନାପଟା,
ଦେଖାଉଛି ଘର           ଟେକି ମୁଦୁଗର
କେ ବୁଲୁଛି ଚକାଉଠା ।
ଖେଳଇ କେବାଙ୍କ           ଶ୍ରମେ କେ ଅଟଙ୍କ
ବୁଲଇ କେ ଚକ୍ରଦାଣ୍ଡୀ,
କେ ପକାଇ ପେଲା           ଠେଲା ଦେଉଁ ଢେଲା
ବାଜି ଆଣ୍ଠୁ ଗଣ୍ଠି ଛିଣ୍ଡି ।
କେ ଧରି କା ଚୁଟି           ଫିଙ୍ଗି ଖାଉଁ ମାଟି
ବୋଲେ ସେ ନିପ୍ରାସି ଘାତି,
ଯେବେ ମୋଟାମୋଟି           ଲୋକ ହଟିଲାଟି
ପଞ୍ଚାଲୁ ତା ନାମ ଖ୍ୟାତି ।
ପୁଣି ଇନ୍ଦ୍ର ହାତୀ           କଖାରୁ କହନ୍ତି
କେ ବୋଲେ କଳ ବୃଷଭ,
ହେଲୁ ଅଶକତ           ଫେଟୁ ଓଦା କାନ୍ଥ
ଚେମେଡ଼ିଙ୍କ ଦେହ ଦମ୍ଭ ।
କେ ଖେଳେ ବନାଟି           ଚାହିଁ ମିଟି ମିଟି
କେ କାହାକୁ କରେ ଚିଡି
କେ ହୋଇଲେ ଘାଲି           ବାଧା ହେଲା ବୋଲି
ଭାବୁସିରେ ଘଷେ ଛାତି ।
ବେଳ ଚାରିଘଡ଼ି           ଯୁଆନଙ୍କୁ ଭିଡ଼ି
ଆଣିଲା ଖେଳ ଜାଗାରୁ,
ଭାଙ୍ଗ ଶିଳ ପାଖେ           ବସି ଏକ ମୁଖେ
ପୋଛନ୍ତି ଝାଳ ଦେହରୁ ।
ଭିଡ଼େ ବାଟିବାରୁ           ଭାଙ୍ଗେ ନାହିଁ ପାରୁ
ସିଠା ତିନିଥର ମଲା,
ଗଡ଼ତ ପଡ଼ତ           ବେଳେ ଉଚ୍ଚାରିତ
ବହ୍ଲିଆରି ବଉଁ ଭୋଲା ।
କେ ମାହାର୍ଦ୍ଦ ସରା           ସେଥିରେ କି ମାରା
ବୋଲି ସରେ ସରେ ପିଇ,

କେ ମାରେ ହଉଡ଼ି          କିଏ ମୁହଁ ମୋଡ଼ି
                    ବୋଲେ ସାଂଗ ରାଗ ନାହିଁ ।

ଗିରିଧାରୀ ଆଉ ସମ୍ଭାଳି ପାରିଲେ ନାହିଁ । ପାଟି କରି ଉଠିଲେ, 'କୁସୁନ, ଏତିକିରେ ତ ସରି ଯାଉନି । ପୁଣି ଏଇ କଦମ୍ବଗଡ଼ରେ ରୋଷେଇବାସ ହେବ, ସଂଗୀମାନେ ଆସିବେ । ଗୀତ ପଖୋଜମାଡ଼ ହେବ । ଆଜି କିନ୍ତୁ ସେଇ ଅସଲ କଥାଟା ପଡୁ ।'

ସମସ୍ତେ ତାଙ୍କୁ ସମର୍ଥନ କଲେ । କୁସୁନ ଏକା ରାହାକେ ଗୀତ ଗାଇ ଯାଉଥିଲା, ଟିକିଏ ଲାଜେଇ ଗଲାପରି ହୋଇ ଖୋସଣିରୁ ପାନ ଖଣ୍ଡିଏ ପାଟିରେ ପୂରାଇ ପାଟି ଚାକୁଲେଇବାରେ ଲାଗିଲା ।

ଭଗୀରଥ ନିଜେ କଥାଟା ଆରମ୍ଭ କଲେ, 'ଦେଖନ୍ତୁ ଭାଇମାନେ, ଆଉ ଦି'ଟା ଦିନ ପରେ ନିର୍ବାଚନ । ଆମେ ଏଠି କ'ଣ ପାଇଁ ଏକାଠି ହୋଇଥାଇଁ, ଆପଣମାନେ ଜାଣନ୍ତି । ଏଇ ଜେଗାଘର ଦିନେ ଆମ ପୁରୀ ସହରର ଅଧିବାସୀଙ୍କର ସଂସ୍କୃତିର କେନ୍ଦ୍ର ଥିଲା । ଏଇଠି ମାଲମାନେ କୁସ୍ତି କସରତ କରୁଥିଲେ; ସାଇ ଯାତବେଳେ ଏଇଠୁ ପଲଟଣ ବାହାରୁ ଥିଲା, ଏଇଠି ସାଇର ହାନି ଲାଭ ବିଚାର ହେଉଥିଲା, ଭାଇ ଭାଇ ଭିତରେ କଳି ହେଲେ ଏଇଠି ତାର ଫଇସଲା ହେଉଥିଲା । ସେଇଥିପାଇଁ ମୁଁ କେତେଦିନ ହେଲା ଜେଗାଘରମାନଙ୍କରେ ପାଖ ଆଖ ସାଇର ମୁଖିଆ ମୁଖିଆମାନଙ୍କ ସଙ୍ଗେ ଆଲୋଚନା କରୁଛି । ବଡ଼ ଆଖେଡ଼ା, ବାରବାଟୀ, ନରସିଂହବଲ୍ଲଭ, ପାଣ୍ଡଜେଗା, ସଂକଟଜେଗା, ଜମିଖୁଣ୍ଟିଆ, ଫଂଚୁଆତି ଜେଗା–ସବୁଠି ଦିନେ ଦିନେ ସଭା ହୋଇ ଯାଇଛି । ଆଜି ଏଇ ଶେଷ ସଭା । ଆମର ମହା ଜନତା ଦଳ ଯେଉଁ ସମାଜବାଦ କଥାଟି କହୁଛି, ତାର ମୂଳ ଅର୍ଥଟି ବୁଝିଲେ ଆପଣମାନେ ଦେଖିବେ, ଜେଗା ଘର ଭଳି ପ୍ରାଚୀନ ଅନୁଷ୍ଠାନଗୁଡ଼ିକର ଉନ୍ନତି ଅତି ଜରୁରୀ । ଜେଗା ଘରଗୁଡ଼ିକର ଉନ୍ନତି ହେଲେ ସାଧାରଣ ଲୋକଙ୍କର ଉନ୍ନତି ହେବ ଓ ଦେଶରେ ସମାଜବାଦ ପ୍ରତିଷ୍ଠା ହେବ ।'

ପ୍ରଥମେ ମାଧବ ଓ ପରେ ସଭାର ଅନ୍ୟମାନେ କରତାଳି ଦେଇ ଭଗୀରଥଙ୍କୁ ସମର୍ଥନ କଲେ ।

ଭିତରୁ ମହାପାତ୍ରେ ଅଳି କଲାପରି କହିଲେ, 'ଅବଧାନ୍, ଆମ ପୁରୀବାସୀଙ୍କର ଭୋଟ୍‌ରେ ଫେର୍ ଆସେମ୍ଳିକି ଯିବେ । ଫେର୍ ମହା ଜନତା ଦଳ ସରକାର ଗଢ଼ିବ । ଆମ ସେବାୟତ୍ ସଂପ୍ରଦାୟର ଉନ୍ନତି ପାଇଁ ଏଥର ସରକାର କିଛି ନ କଲେ ହେବ ନାଇଁ ।'

ଉପସ୍ଥିତ ସେବାୟତମାନଙ୍କ ମନକୁ କଥାଟି ପାଇଲା । ବିଶ୍ୱନାଥ ପତି ମହାପାତ୍ରେ କହିଲେ, 'ଆପଣମାନେ ତ ସମସ୍ତେ ପୁରୀବାସୀ । ଆମର ଧର୍ମ, ଆମର ସଂସ୍କୃତି ଆଜି ବୈଦେଶିକ ପ୍ରଭାବରେ କିପରି ଲୋପ ହୋଇ ଯାଇଛି, ଆପଣମାନେ ଅଂଗେ ନିଭାଉଛନ୍ତି । ସରକାରୀ ଚାକିରି ଛାଡ଼ି ଭୁବନେଶ୍ୱରରୁ ପୁରୀ ଆସିଲାପରେ ମୁଁ ଦେଖୁଛି, ଯଦି

ଭଗୀରଥବାବୁଙ୍କ ଭଳି ଜନନେତା ବେଳ ଥାଉଁ ଥାଉଁ ସରକାରୀ ସାହାଯ୍ୟର ବ୍ୟବସ୍ଥା ନ କରନ୍ତି, ତେବେ ଆମର ପୁରୁଣା ସଂସ୍କୃତି ଆଉ ବଂଚି ପାରିବ ନାହିଁ । ନେତା, ନାଗା, ସାହୀଯାତ୍ରା ଆଉ ଆଗପରି ହେଉ ନାହିଁ । ବଡ଼ଦେଉଳର ମାଜଣାମୁଣ୍ଡି ଉପରେ ଆଉ ଓଡ଼ିଶୀ ସଂଗୀତ ଆସର ବସୁ ନାହିଁ । ଆମର ପଣ୍ଡା ପଡ଼ିଆରୀମାନେ ଯେଉଁ ଯାତ୍ରୀ ବ୍ୟବସାୟ କରି ଶହ ଶହ ବର୍ଷ ହେଲା ବଂଚି ଆସୁଥିଲେ, ସେ ବ୍ୟବସ୍ଥା ଅଣ-ଓଡ଼ିଆମାନଙ୍କ ହାତକୁ ଚାଲିଯାଉଛି । ହଜାର ହଜାର ବର୍ଷ ହେଲା ଆମ ଦେଉଳର ରତ୍ନଭଣ୍ଡାରରେ ଯେଉଁ ସୁନା, ରୂପା, ହୀରା, ନୀଳା ଅଛି, ତାହାର ପରିମାଣ କେତେ, ତାହା ଅକ୍ଷୁର୍ଣ୍ଣ ଅଛି ନା ଭଣ୍ଡାର-ମେକାପମାନଙ୍କ ଅସାଧୁତା ଫଳରେ ହ୍ରାସ ହୋଇ ଆସୁଛି, ସରକାର ତାହାର ଏଯାଏଁ ଅନୁସନ୍ଧାନ କଲେ ନାହିଁ । ସୁନା କୁଣ୍ଡଳ, ସୁନା ହରିଡ଼ା, କଣ୍ଠିମାଳ, ସୁନା ଶ୍ରୀଭୁଜ, ସୁନା ରାହୁରେଖା, ଅଷ୍ଟରତ୍ନଜଡ଼ିତ ଚିତା, ରତ୍ନବିଭୂଷିତ ଚୂଳ, ସୁନାମାଳି, ପଦକ, କୁରୁଜାତମାଳି, ସୁନାଥାଳି, ସୁନାଖାଡ଼ି - ଏହାର ମୂଲ୍ୟ ଆଧୁନିକ ଯୁଗରେ କଳନା କରିବା କଠିନ । ନୂଆ ସରକାର ଏଇ ରତ୍ନ ଭଣ୍ଡାରର ଉପଯୁକ୍ତ ସଂରକ୍ଷଣ ପାଇଁ ଯଥାଶୀଘ୍ର ବ୍ୟବସ୍ଥା କରିବା ଏକାନ୍ତ ଆବଶ୍ୟକ ।'

ଉଚ୍ଚଶିକ୍ଷିତ ବୋଲି ସେବାୟତ ସଂପ୍ରଦାୟରେ ବିଶ୍ୱନାଥ ପତିମହାପାତ୍ରଙ୍କ ସମ୍ମାନଟା ଯଥେଷ୍ଟ ବେଶି । ତେଣୁ ଉପସ୍ଥିତ ମୁଖିଆମାନେ ତାଙ୍କ କଥାକୁ ଏକାନ୍ତ ମନୋଯୋଗ ସହକାରେ ଶୁଣୁଥିଲେ ।

ଅଧର ଦୟିତାପତି କୃତ୍ୟ କୃତ୍ୟ ଭାବ ଦେଖାଇ କହିଲେ, 'ଆଃ-କଥାଟାଏ କହିଲ ତ ! ଆମ ସହରର ସାଇଯାତ ପୁଣି ଜାକଜମକରେ ବାହାରୁ । ସେଥିପାଇଁ ସରକାରୀ ସାହାଯ୍ୟ ମିଳୁ ।'

ନୋକନି କହିଲା, କାଇଁ କହୁଛନ୍ତି, ସରକାରୀ ଟଙ୍କା କେତେ କୁଆଡ଼େ ପାଣି ମତନ୍ ବୋହିଯାଇଛି । ଆମ ସାଇରେ ଭାଗବତ ଘରଖଣ୍ଡ ସେମିତି ଅଧା ଭଙ୍ଗା ହୋଇ ପଡ଼ିଛି । ନିକୁଛ୍ୟାରେ ଟଙ୍କା ପାଆଁଶ ହେଲେ ମରାମତି ହୋଇ ଯାଆନ୍ତା । ସାଇର ପାଞ୍ଚଲୋକ ଏକାଠି ହେବାକୁ ଆଉ ଜାଗା ନାହିଁ । ସେଇଠୁ ଆମର ଗୋସାଣୀ ଯାତବେଳେ ବୁଢ଼ା ବୁଢ଼ୀ ବାହାରୁଥିଲେ । ଦି ବରଷ ହେଲା ସିଏ ବି ବନ୍ଦ । ସରକାରୀ ଟଙ୍କା କେତେ କିଏ ଖାଇ ଯାଉଛି । ଟଙ୍କା ବିଶାଶହେ ହେଲେ ଆମ ବୁଢ଼ାବୁଢ଼ୀ ବାହାରି ପାରନ୍ତେ ।

ବିଶ୍ୱନାଥ ପତିମହାପାତ୍ରେ କହିଲେ, ନୋକନି, ଅଧର, ସରକାରୀ ସାହାଯ୍ୟ ନ ମିଳିଲେ ଆମର ସଂସ୍କୃତି ଆଉ ବଂଚିପାରିବ ନାହିଁ; କିନ୍ତୁ ଆମେ ଏଠି ଏମିତି କଥାଟା ଆଲୋଚନା କଲେ ହେବ ନାହିଁ । ଆମର ବାରମାସରେ ତେରଯାତ । ସେ ଯାତଗୁଡ଼ାକ ଯେମିତି ସବୁ ବର୍ଷ ଭଲରୂପେ ହୁଏ ସେଥିପାଇଁ ସରକାର ଧ୍ୟାନଦେବା ଦରକାର । ତା'ଛଡ଼ା ଆମର ଯେଉଁ ପ୍ରାଚୀନ ଦେବାଳୟଗୁଡ଼ିକ ଅଛି- ଏଇ ଧର କପାଳ ମୋଚନ, ଯମେଶ୍ୱର,

ଶ୍ରୀଲୋକନାଥ, ନୀଳକଣ୍ଠେଶ୍ୱର, ମାର୍କଣ୍ଡେଶ୍ୱର କିମ୍ବା ଆମର ଯେଉଁ ସବୁ ପୁଷ୍କରିଣୀ ଅଛି, ନରେନ୍ଦ୍ର, ମାର୍କଣ୍ଡ, ଶ୍ୱେତଗଙ୍ଗା-ଏସବୁର ସୁରକ୍ଷା ପାଇଁ ମଧ ସରକାରୀ ସାହାଯ୍ୟ ଲୋଡ଼ା । ତା ଛଡ଼ା ବଡ଼ଦେଉଳର ଚୂନଧଉଳା ପାଇଁ, ରତ୍ନଭଣ୍ଡାର ସଂପତ୍ତିର ଉପଯୁକ୍ତ ତଦାରଖ ପାଇଁ, ସେବାୟତ ସଂପ୍ରଦାୟର ଉନ୍ନତି ବିଧାନ ପାଇଁ ସରକାର ବ୍ୟବସ୍ଥା କରିବା ଆବଶ୍ୟକ ।

ପତିମହାପାତ୍ରଙ୍କ କଥାଟି ସମସ୍ତଙ୍କ ମନକୁ ଏପରି ପାଇଲା ଯେ ଯେପରି ସରକାରୀ ସାହାଯ୍ୟ ମିଳିଯାଇଛି, ଉପସ୍ଥିତ ମୁଖିଆମାନଙ୍କ ମୁହଁରେ ସେହିପରି ପ୍ରସନ୍ନ ଭାବ ଫୁଟି ଉଠିଲା ।

ବୁଢ଼ା ପୂଜାରୀ ଉଠି ଆସୁଥିବା କାଶଟିକୁ କୌଣସିମତେ ଚାପିଦେଇ କହିଲା, 'ଆରେ ନୋକନି, ବିସିକି ପିଲାଦିନୁ ଦେଖି ଆସିଚି । ମୁଁ ଦେଖିବାରେ ତା ଅକଲ ପରି ଅକଲ ଆଉ କାହାରି ନାଇଁ । ମିଛରେ ସିଏ ବଡ଼ ରୋଜଗାରୀ ! ତା କଥା ଶୁଣିଲେ ସରକାରୀ ଟଙ୍କା ଆସିବ ।'

ଗିରିଧାରୀ ବୁଢ଼ା ପୂଜାରୀ କଥା ନ ଶୁଣିବା ପରି କହିଲେ, 'ବର୍ତ୍ତମାନ ଆପଣମାନଙ୍କ ଅନୁମତି ନେଇ ପୁରୀ ସହରର ଏଇ ସର୍ବସାଧାରଣ ସଭାପକ୍ଷରୁ ମୁଁ କେତୋଟି ପ୍ରସ୍ତାବ ଆଣୁଛି । ଆପଣମାନେ ତାହା ସମର୍ଥନ କଲେ ପ୍ରସ୍ତାବଗୁଡ଼ିକୁ ଖବର କାଗଜ ଓ କର୍ତ୍ତୃପକ୍ଷଙ୍କ ନିକଟକୁ ପଠାଇ ଦିଆଯିବ ।'

ପ୍ରଥମ ପ୍ରସ୍ତାବ : ଏହି ସଭା ସରକାରଙ୍କଠାରେ ଦାବୀ କରୁଛି ଯେ ପୁରୀ ସହରର ସାଂସ୍କୃତିକ ଅନୁଷ୍ଠାନସବୁର ବିକାଶ ପାଇଁ ତଥା ପ୍ରାଚୀନ ଦେବାଳୟ ଓ ପୁଷ୍କରିଣୀର ସୁରକ୍ଷା ପାଇଁ ଉପଯୁକ୍ତ ସରକାରୀ ସାହାଯ୍ୟ ମିଳୁ ।

ଦ୍ୱିତୀୟ ପ୍ରସ୍ତାବ : ବଡ଼ ଦେଉଳର ରକ୍ଷଣାବେକ୍ଷଣ ଓ ତହିଁରେ ନିଯୁକ୍ତ ସେବାୟତ ସଂପ୍ରଦାୟର ଉନ୍ନତି ବିଧାନ ପ୍ରତି ସରକାର ଯଥାଯୋଗ୍ୟ ଦୃଷ୍ଟି ଦିଅନ୍ତୁ ।

ତୃତୀୟ ପ୍ରସ୍ତାବ : ପୁରୀ ସହରର ଏହି ସର୍ବସାଧାରଣ ସଭା ଦୃଢ଼ ବିଶ୍ୱାସ କରେ କି ମହା ଜନତା ପାର୍ଟିର ସମାଜବାଦ ନୀତି ଫଳରେ ସହରର ସାଂସ୍କୃତିକ ଓ ଆର୍ଥିକ ଉନ୍ନତି ସମ୍ଭବପର ।

ଚତୁର୍ଥ ପ୍ରସ୍ତାବ : ଏହି ସଭା ସହରର ସମସ୍ତ ଭୋଟର ଭାଇ ଭଉଣୀମାନଙ୍କୁ ଅନୁରୋଧ କରୁଛି ଯେ ସହରର ସର୍ବବିଧ କଲ୍ୟାଣ ପାଇଁ ସେମାନେ ଭଗୀରଥ ମହାପାତ୍ରଙ୍କୁ ହାତଟଣା ରିକ୍‌ସା ଚିହ୍ନରେ ଭୋଟ୍ ଦିଅନ୍ତୁ ।'

ପ୍ରବଳ କରତାଳି ମଧରେ ପ୍ରସ୍ତାବଗୁଡ଼ିକ ପାଶ୍ ହୋଇଗଲା । ରାତି ଅଧିକ ହୋଇଥିବାରୁ ଓ ଉପସ୍ଥିତ ମୁଖିଆମାନେ ଭାଙ୍ଗ ନିଶାରେ ଆଉ ବେଶି ଆଲୋଚନା କରିବାର ବ୍ୟବସ୍ଥାରେ ନଥିବା ଲକ୍ଷ୍ୟକରି ଭଗୀରଥ ପଚାରିଲେ, 'ରୋଷେଇ କେଉଁଯାଏ ଗଲା ?'

ଦୟିତାପତିଏ ସେଇ ସଭା ମଝିରୁ ରୋଷଘର ଆଡ଼େ ଚାହିଁ ପାଟିକରି ଉଠିଲେ,

'ହରିଣ ଭାଇନା, କାମ ବଢ଼ିଲା ?'

ତାଙ୍କ କଥା ନ ସରୁଣୁ ହରିଣଭାଇନା ରୋଷଘର ଭିତରୁ ବାହାରି ଆସି ସଭା ସମ୍ମୁଖରେ ଠିଆ ହୋଇଗଲେ । ସେ କରିଆ ଗାମୁଛା ଖଣ୍ଡିଏ ପିନ୍ଧିଥିଲେ, ତାଙ୍କ ମଇଳା ପଇତାକୁ କାନରେ ସାତ ପ୍ରସ୍ତ କରି ଗୁଡ଼ାଇଥିଲେ । ଅପର୍ଯ୍ୟାପ୍ତ ଝାଳ ବୋହି ତାଙ୍କ ରୋଷ ନିଆଁ ସିଝା ଦେହଟା ଚିକି ଚିକି ଦିଶୁଥିଲା । ସେ ମୋଟା ଗଳାରେ ଅତିଶୟ ନମ୍ରତା ଦେଖାଇ କହିଲେ, 'ସବୁ ରେଡି, ଖାଲି ପତର ପକାଇବା କଥା, କାହିଁକି ଆଉ ଉଛୁର କରିବା ?'

ଉପସ୍ଥିତ ମୁଖିଆମାନେ ଅଶ୍ୱସ୍ତିସୂଚକ ଧ୍ୱନିମାନ କରି ସଭା ଭଙ୍ଗ କଲେ । ନୋକନି, ଅଧର ଓ ମାଧବ ଏଥର ପଙ୍ଗତର ବ୍ୟବସ୍ଥା କରିବାରେ ଲାଗିପଡ଼ିଲେ ।

ମୁଖ୍ୟମନ୍ତ୍ରୀ ଗୋବର୍ଦ୍ଧନ ଚୌଧୁରୀଙ୍କ ଭାଷଣ ଶୁଣିବା ପାଇଁ ନିର୍ଦ୍ଧାରିତ ସମୟର ବହୁ ଆଗରୁ ସିଂହଦ୍ୱାରଠାରେ ଲୋକମାନେ ଜମା ହେବାରେ ଲାଗିଥିଲେ । ଗଲା କେତେମାସ ଧରି ଯେତେ ନିର୍ବାଚନ ପ୍ରଚାର, ସଭା ସମିତି, ଆଲୋଚନା, ଯୁକ୍ତିତର୍କ ଚାଲିଥିଲା, ଆଉ ମାତ୍ର ଅଳ୍ପ କେତେ ଘଣ୍ଟା ପରେ ସେ ସବୁର ସମାପ୍ତି ଘଟିବ । ତେଣୁ ନିର୍ବାଚନର ଠିକ୍ ପୂର୍ବରୁ ମୁଖ୍ୟମନ୍ତ୍ରୀ ତଥା ଓଡ଼ିଶା ରାଜ୍ୟର ଅପ୍ରତିଦ୍ୱନ୍ଦ୍ୱୀ ନେତା ଗୋବର୍ଦ୍ଧନ ସ୍ୱୟଂ ପୁରୀ ସହରରେ ଆବିର୍ଭୂତ ହେଉଛନ୍ତି । ତାଙ୍କ ସଂଗରେ ତାଂକର କେତେ ଜଣ ମୁଖ୍ୟ ସହକାରୀ ତଥା କଟକର ବିଶିଷ୍ଟ ନାଗରିକ ମଧ୍ୟ ଯୋଗ ଦେଉଛନ୍ତି ବୋଲି ନବଘନ ଓ ମାଧବ ଦିନ ସାରା ମାଇକ୍‌ରେ ପ୍ରଚାର କରିଛନ୍ତି ।

ସିଂହଦ୍ୱାରର ଠିକ୍ ସାମ୍ନାରେ କଂସାରୀମାନଙ୍କ ଧାଡ଼ି ଧାଡ଼ି ପିତଳ ଓ କଂସା ଦୋକାନ ନିକଟରେ କେତୋଟି ଖଟ ଦ୍ୱାରା ସଭାମଞ୍ଚ ନିର୍ମାଣ କରାଯାଇଛି । କେତେଜଣ ମେକାନିକ୍ ମଞ୍ଚ ଉପରେ ବାରଲାଇଟ୍ ଝୁଂଜିବାରେ ଲାଗଛନ୍ତି । ନବଘନ ଅତି ଉତ୍ସାହରେ ମାଇକ୍ ପାଖକୁ ଯାଇ ମାଇକ୍ ଠିକ୍ ଅଛି କି ନାହିଁ ପରୀକ୍ଷା କରିବାକୁ ମାଇକକୁ ଫୁ ଫୁ କରି ଫୁଙ୍କୁଛି ଓ ହାଲୋ, ଏକ-ଦୁଇ-ତିନି-ଚାରି ବାରମ୍ବାର କହୁଛି । ମୁଖ୍ୟମନ୍ତ୍ରୀ ମଂଚର ଯେଉଁ ସ୍ଥାନରେ ବସିବା କଥା, ରାବଣା ଶୂନ୍ୟମଂଚର ସେଇ ସ୍ଥାନରେ ବସି ବେଳେ ବେଳେ ହାତଠାରି ଉପସ୍ଥିତ ଲୋକମାନଙ୍କୁ ବସି ପଡ଼ିବାକୁ ନିର୍ଦ୍ଦେଶ ଦେଉଛି ।

ସଭା ଆରମ୍ଭ ହେବାକୁ ତଥାପି ଅନେକ ଡେରି ଅଛି । ମୁରାରୀ ଦାସ ଜଗନ୍ନାଥଙ୍କ ସଂଜ ଆଳତି ଦେଖିବାକୁ ଯିବା ବାଟରେ ଅଟକି ଯାଇଥିଲେ । ସଭାମଂଚରୁ ଅଳ୍ପ ଦୂରରେ କଂସାରୀ ଘନ ମହାଜନ ଦୋକାନ ଆଗରେ ପଡ଼ିଥିବା ବେଂଚ୍ ଉପରେ ବସିପଡ଼ି ଲୋକଗହଳିକୁ ଅନାଉଥିଲେ । ବେଶ୍ ଲୋକଗହଳି-ଗହଳି ଭିତରେ ଚିହ୍ନା ଜଣା ବି କେହି କେହି ଅଛନ୍ତି । ସଭାମଂଚ ଉପରେ ମହା ଜନତା ପାର୍ଟିର ନେତା ଗିରିଧାରୀ, ଜୟହନୁମାନ,

ନବଘନ ଓ ମାଧବ ଇତସ୍ତତଃ ହେଉଛନ୍ତି । ନବଘନ ତ ଆଉ ପିଲାପରି ଦିଶୁନାହିଁ-ଦିଶୁଛି ଜଣେ ପୋଖତ ମୁରବୀ ପରି । ମୁରାରୀ ଦାସଙ୍କୁ କେମିତି ବୋକା ବୋକା ଲାଗିଲା । ସେ ପଂଜାବି ପକେଟ୍‌ରୁ ପାନ ଖଣ୍ଡିଏ କାଢ଼ି ପାଟିରେ ପୂରାଇ ଡାହାଣ କାନକୁ ଛୁଇଁଲେ ।

ନବଘନ ମାଇକ୍ ପାଖକୁ ଯାଇ କହିବା ଆରମ୍ଭ କରିଦେଲା, 'ହ୍ୟାଲୋ-ଏକ-ଦୁଇ-ହଁ ଠିକ୍ ଅଛି । -ପୁରୀ ସହରର ଭାଇମାନେ, ଆପଣମାନେ ଜାଣନ୍ତି, ଆଜି ଆମ୍ଭମାନଙ୍କର ଅତି ପ୍ରିୟ ନେତା ଓଡ଼ିଶାର ମୁଖ୍ୟମନ୍ତ୍ରୀ ମାନ୍ୟବର ଗୋବର୍ଦ୍ଧନ ଚୌଧୁରୀ ଆପଣମାନଙ୍କୁ ଭାଷଣ ଦେବେ । ତାଙ୍କ ସଙ୍ଗେ କଟକର କେତେଜଣ ବିଶିଷ୍ଟ ନାଗରିକ ମଧ୍ୟ ଆସୁଛନ୍ତି । ସେମାନଙ୍କୁ ଭେଟିବାକୁ ସୁଯୋଗ ପାଇଥିବାରୁ ଆଜି ଆମ୍ଭେ ପୁରୀବାସୀ ଗର୍ବିତ । ମୁଖ୍ୟମନ୍ତ୍ରୀ ମହୋଦୟ ବର୍ତ୍ତମାନ ସର୍କିଟ୍ ହାଉସ୍‌ରେ ଅଛନ୍ତି । ଆଉ ମାତ୍ର ଅଳ୍ପ ସମୟ ପରେ ସେ ଏଠାରେ ପହଂଚିଯିବେ । ଆପଣମାନେ ଦୟାକରି ନିଜ ନିଜ ଯାଗାରେ ବସି ପଡ଼ନ୍ତୁ । ବସି ପଡ଼ନ୍ତୁ ଭାଇମାନେ । ହାତଯୋଡ଼ି ଅନୁରୋଧ କରୁଛି । ନ ବସିଲେ ଠେଲାପେଲା ହୋଇ ହନ୍ତସନ୍ତ ହେବେ । ବସି ପଡ଼ନ୍ତୁ-ବସି ପଡ଼ନ୍ତୁ ।'

କେହି କେହି ନବଘନର କଥା ଶୁଣି ସଭାମଂଚ ନିକଟକୁ ଲାଗି ବସି ପଡିଲେ । ଅନେକେ କିନ୍ତୁ ଟିକିଏ ଦୂରରେ ଠିଆ ହୋଇ ରହିଲେ । କିଏ କେଉଁ କାମରେ ଯାଇଥିଲେ, ସଭା ଦେଖି ଅଟକି ଯାଇଛନ୍ତି । ସଭାମଂଚଠାରୁ ଦୂରେଇ ଠିଆହେଲେ ଚାଲିଯିବାକୁ ସୁବିଧା ।

ସିଂହଦ୍ୱାରରେ ସନ୍ଧ୍ୟା ସମୟରେ ଲୋକ ଗହଳିଟା ଅଧିକ ହୋଇଯାଏ । ଧାର୍ମିକ ବ୍ୟକ୍ତିମାନେ ସଂଜ ଆଳତି ଦେଖିବାକୁ ଆସନ୍ତି । ଏମାରମଠ ତଳର ପ୍ରଶସ୍ତ ପଥର ଚଉତରା ଉପରେ ଦଳ ଦଳ ଭିକମଗା ଆସି ଜମା ହୁଅନ୍ତି । ଲକ୍ଷ୍ମୀବଜାରରେ କିଣାବିକାଟା ଏତିକିବେଳେ ବଢ଼ିଯାଏ । ଦଳ ଦଳ ବାବାଜୀ ଗରୁଡ଼ ଖମ୍ବ ପାଖରେ ଗୋଲ୍ ହୋଇ ବସି ଖଂଜଣୀ ପିଟି କୀର୍ତ୍ତନ ଆରମ୍ଭ କରିଦିଅନ୍ତି । ମଳିନ ଆଲୁଅରେ ପରିବେଶଟା ରହସ୍ୟମୟ ଲାଗେ । ତା ସାଂଗକୁ ରାଜନୀତିକ ସଭାସମିତି ହେବାର ଥିଲେ, ନେତାମାନେ ଗଳା ଫଟାଇ ବାରମ୍ବାର ଜଗନ୍ନାଥଙ୍କ ଆଡକୁ ହାତ ଦେଖାଇ ବକ୍ତୃତା ଦେବା ଆରମ୍ଭ କରିଦିଅନ୍ତି ।

ମୁରାରୀ ଦାସ ଗୋପବନ୍ଧୁଙ୍କ ମୂର୍ତ୍ତିଆଡେ ଅନାଇଲେ । ଜଳୁଥିବା ବାଲ୍‌ଲାଇଟ୍ ତଳେ ଅପର୍ଯ୍ୟାପ୍ତ ପୋକ । ମୂର୍ତ୍ତିପାଖରେ ତିନି ଚାରୋଟି ପିଲା ବସି ସଭା ଆଡ଼କୁ ଅନାଇଛନ୍ତି ।

ହଠାତ୍ ନବଘନର ଚିତ୍କାରରେ ମୁରାରୀ ଦାସ ଚମକି ପଡ଼ିଲେ । ନବଘନ ଗର୍ଜନ କରୁଥିଲା, 'ଆସିଗଲେ ଭାଇମାନେ, ଆମ୍ଭ ରାଜ୍ୟର ମୁଖ୍ୟମନ୍ତ୍ରୀ । ବିଶାଳ ଉତ୍କଳର ଅପ୍ରତିଦ୍ୱନ୍ଦ୍ୱୀ ନେତା ଶ୍ରୀଯୁକ୍ତ ଗୋବର୍ଦ୍ଧନ ଚୌଧୁରୀ ଆସିଗଲେ ।'

ଜନତାର କରତାଳି ମଧ୍ୟରେ ମୁଖ୍ୟମନ୍ତ୍ରୀ ସଭାମଂଚକୁ ଉଠିଲେ । ତାଙ୍କ ପଛେ ପଛେ ଭଗୀରଥ, ଗିରିଧାରୀ, ଜୟ ହନୁମାନ ଓ ଅନ୍ୟମାନେ । ଶୁଭ୍ର ଖଦଡ଼ ଧୋତି ପଂଜାବି ପରିହିତ, ଛଅ ଫୁଟରୁ ଅଧିକ ଉଚ୍ଚ, ସୁଗଠିତ ଶରୀର ଗୋବର୍ଦ୍ଧନ ଚୌଧୁରୀ

ଯଥାର୍ଥରେ ମୁଖ୍ୟମନ୍ତ୍ରୀ ପରି ଦିଶୁଥିଲେ ଏବଂ ସେ ସଭାରେ ଆସନ ଗ୍ରହଣ କରିବା ସଂଗେ ସଂଗେ ଜନତା ଅସ୍ୱାଭାବିକ ଭାବରେ ଶାନ୍ତ ହୋଇପଡ଼ିଲା । ପ୍ରଥମେ ସ୍ଥାନୀୟ ବିଧବାଶ୍ରମର କେତେଜଣ ମହିଳା ପ୍ରକାଣ୍ଡ ଫୁଲମାଳମାନ ମୁଖ୍ୟମନ୍ତ୍ରୀ ଓ ମଂଚ ଉପରେ ଆସୀନ ଅନ୍ୟ ବରେଣ୍ୟ ନେତାମାନଙ୍କ ଗଳାରେ ଲମ୍ବାଇଦେବା ପରେ ପ୍ରବଳ ଉତ୍ସାହ ଭିତରେ ସଭାକାର୍ଯ୍ୟ ଆରମ୍ଭ ହେଲା ।

ପ୍ରଥମେ ଗିରିଧାରୀ ବାହିନୀପତି ତାଙ୍କ ସ୍ୱଭାବସୁଲଭ ଢଙ୍ଗରେ ଦେଶର ଏଇ ଘଡ଼ିସନ୍ଧି ମୁହୂର୍ତ୍ତରେ ପୁରୀସହରରେ ଉପସ୍ଥିତ ହୋଇଥିବାରୁ ମୁଖ୍ୟମନ୍ତ୍ରୀ ଗୋବର୍ଦ୍ଧନଙ୍କୁ ସମ୍ବର୍ଦ୍ଧନା ଜଣାଇବା ସଂଗେ ସଂଗେ କଟକ ସହରର ବିଶିଷ୍ଟ ନାଗରିକ ତଥା ମୁଖ୍ୟମନ୍ତ୍ରୀଙ୍କ ଅନ୍ତରଙ୍ଗ କୋଇଲି ଭଗତଙ୍କୁ ସଭାରେ ସଭାପତିତ୍ୱ କରିବାକୁ ଅନୁରୋଧ ଜଣାଇ କହିଲେ, 'କଟକ' ସହରର ବିଶିଷ୍ଟ ନାଗରିକ ଶ୍ରୀଯୁକ୍ତ କୋଇଲି ଭଗତଙ୍କ ବିଷୟରେ କିଛି କହିବା ମୋ ପକ୍ଷରେ ଧୃଷ୍ଟତା ହେବ । ଆମ୍ଭମାନଙ୍କର ନେତା ଗୋବର୍ଦ୍ଧନ ଚୌଧୁରୀଙ୍କ ଡାହାଣ ହାତ ହେଉଛନ୍ତି ଶ୍ରୀଯୁକ୍ତ କୋଇଲି ଭଗତ । ତାଙ୍କୁ ଜଣେ ମହାପୁରୁଷ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କ ନାମରେ ଏବେ 'ମହାତ୍ମା କୋଇଲି ପାଠାଗାର' ଖୋଲାଯାଇଛି ଏବଂ ନିକଟରେ 'ମହାତ୍ମା କୋଇଲି ବାଳିକା ସ୍କୁଲ୍'ର ଭିତ୍ତି ପ୍ରସ୍ତର ପକାଇବେ ସ୍ୱୟଂ ମୁଖ୍ୟମନ୍ତ୍ରୀ । ଆଜି ଏହି ପରୋପକାରୀ ଦାନଶୀଳ ମହାତ୍ମାଙ୍କୁ ପାଇ ଆମ୍ଭେ ପୁରୀବାସୀ ଗର୍ବିତ ।'

ଘନ ଘନ କରତାଳି ମଧ୍ୟରେ ସଭାମଂଚର ପଛରେ ବସିଥିବା କୋଇଲି ଭଗତ ଆଗକୁ ଆସିଲେ ଓ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଲାଗି ଏକ ପ୍ରକାଣ୍ଡ ତକିଆକୁ ଆଉଜି ବସିଲେ । ତାଙ୍କ ପ୍ରସନ୍ନ ମୁଖ ସର୍ବଦା ପାନ ଚୋବାଇବାରେ ବ୍ୟସ୍ତ ଥିଲା । ସେ ମୁଖ୍ୟମନ୍ତ୍ରୀଙ୍କ କାନ ପାଖେ କ'ଣ ଫୁସ୍ ଫୁସ୍ କହିବା ଆରମ୍ଭ କରିଛନ୍ତି, ହଠାତ୍ ଏତିକିବେଳେ ଗୋଟିଏ ହାବେଳି ବାଣ ସୁ ସୁ ହୋଇ ନାଲି ନେଳି ନିଆଁ ଝୁଲର କାରୁକାମ ଦେଖାଇ ଉପରକୁ ଉଠିଲା । ଲୋକେ ଭୟରେ ପାଟିକରି ଉଠି ଯିବାକୁ ବସିଲେ । ନିଜେ ମୁଖ୍ୟମନ୍ତ୍ରୀ ତତ୍କ୍ଷଣାତ୍ ମାଇକ୍ ପାଖକୁ ଆସି କହିଲେ, 'ବସନ୍ତୁ ଭାଇମାନେ । ଖଟିଖିଆ ଦଳର ଗୁଣ୍ଡାମାନେ ଏ ସଭାକୁ ଭଣ୍ଡୁର କରିବାକୁ ବସିଛନ୍ତି । ସେ କଥା ଆଗରୁ ମୁଁ ଖବର ପାଇଥିଲି । ସେଥିପାଇଁ ଆମର ପୋଲିସ୍ ପ୍ରସ୍ତୁତ ଅଛି । ସେମାନଙ୍କୁ ଠିକଣା ଜବାବ୍ ଦେବାକୁ ଆମର ସ୍ୱେଚ୍ଛାସେବକମାନଙ୍କୁ ହୁକୁମ୍ ଦିଆଯାଇଛି । ଆପଣମାନଙ୍କର ଭୟର କାରଣ ନାହିଁ । ମୁଁ ନିଜେ କହୁଚି-ଭୟର କାରଣ ନାହିଁ । ବସି ପଡ଼ନ୍ତୁ ।'

ମୁରାରୀ ଦାସ ଦେଖିଲେ, ଦଳେ କଳା ମୋଟା ନିଶୁଆ ଲୋକ ଉପରକୁ ଠେଂଗା ଟେକି ଲୋକଂକୁ 'ବସିଯା' 'ବସିଯା' କହୁଛନ୍ତି ଓ ଦରକାର ପଡ଼ିଲେ କାହାରି କାହାରି ମୁଣ୍ଡକୁ ଠେଙ୍ଗାରେ ଧୀରେ ଧୀରେ ପିଟି ଦେଉଛନ୍ତି । ମୁରାରୀ ଏଇ ସ୍ୱେଚ୍ଛାସେବକମାନଙ୍କୁ 'ବ୍ୟାଧି-ନିବାରିଣୀ' ପାଖରେ ଦେଖିଥିଲେ । ସେମାନେ ସଭା ସମିତିରେ ଗଣ୍ଡଗୋଳ କରନ୍ତି

ବୋଲି ତାଙ୍କର ଧାରଣା ଥିଲା । ଆଜି କିନ୍ତୁ ଦେଖିଲେ, ସେମାନେ ଗଣ୍ଡଗୋଳ ବନ୍ଦ କରୁଛନ୍ତି । କିଛି ସମୟ ପରେ ଲୋକେ ପୁଣି ସ୍ଥିର ହୋଇ ବସିଲେ । ହଠାତ୍ ମାଇକ୍ କିଛି ସମୟ ପାଇଁ ଘାଉଁ ଘାଉଁ ହେବା ପରେ ମୁଖ୍ୟମନ୍ତ୍ରୀ ଗୋବର୍ଦ୍ଧନ ଚୌଧୁରୀ କହୁଥିବାର ଶୁଣାଗଲା, 'ଭାଇ ଓ ଭଉଣୀମାନେ, ଆଜି ଆପଣମାନଙ୍କ ସ୍ନେହର ଡାକରା ଏଡ଼ି ନପାରି ମୁଁ ଏଠି ଉପସ୍ଥିତ ହୋଇଛି । ଆଜି କେତେ ଜଣ ଶିଳ୍ପପତିଙ୍କ ସଙ୍ଗେ କଲିକତାରେ ଏକ ଜରୁରୀ ଆଲୋଚନା ଥିଲା । ଯିବାପାଇଁ ମୁଁ ପ୍ଲେନ୍ ଟିକେଟ୍ କାଟି ସାରିଥିଲି; କିନ୍ତୁ ପୁଣି ଭାବିଲି, ପୁରୀ ସହରର ଲକ୍ଷ ଲକ୍ଷ ଭାଇଭଉଣୀ ମୋତେ ଅପେକ୍ଷାକରି ବସିଥିବେ ମୋ ମୁହଁରୁ ପଦେ ଶୁଣିବା ପାଇଁ । ତେଣୁ ପ୍ରୋଗ୍ରାମ୍ କ୍ୟାନ୍ସଲ୍ କରି ବନ୍ଧୁ କୋଇଲିଙ୍କ ସହ ଏଠାରେ ଉପସ୍ଥିତ ହେଲି । (କରତାଳି) ଭାଇ ଓ ଭଉଣୀମାନେ, ସମୟ ଅଳ୍ପ । ଆଉ ମାତ୍ର କେତେ ଘଣ୍ଟା ପରେ ନିର୍ବାଚନ । ଖୁବ୍ ସଂକ୍ଷେପରେ ମୋ ଭାଷଣ ଦେଇସାରି ମୁଁ ସଂଗେ ସଂଗେ କଟକ ଫେରିଯିବି । ମୋର ଆଶା, ମୁଁ ଯାହା କହିବି, ଆପଣମାନେ ମନେ ରଖିବେ । ଖଟିଖିଆ ପାର୍ଟିର ଚାର୍‌ଶୋବିଶ୍ କଥାରେ ଭୁଲିଯିବେ ନାହିଁ ।

ଭାଇମାନେ ! ଆମ ଦଳ ମୋ ନେତୃତ୍ୱରେ (ଗୋବର୍ଦ୍ଧନ ନିଜ ପ୍ରଶସ୍ତ ବକ୍ଷସ୍ଥଳକୁ ଅଙ୍ଗୁଳି ନିର୍ଦ୍ଦେଶ କଲେ) କ୍ଷମତାକୁ ଆସିବା ଦିନୁ ଓଡ଼ିଶାରେ ନବଜାଗରଣ ଆସିଛି । ସମଗ୍ର ଭାରତ ତଥା ବିଶ୍ୱର ଦୃଷ୍ଟି ଓଡ଼ିଶା ଉପରେ ପଡିଛି । ଖାରବେଳ ଓ କପିଳେନ୍ଦ୍ରଦେବଙ୍କ ପରେ ଇତିହାସରେ ଆଉ କେଉଁ ଶାସକ ଅମଳରେ ଓଡ଼ିଶା ଏଭଳି ପ୍ରସିଦ୍ଧି ପାଇନଥିଲା (କରତାଳି) । ଆପଣମାନେ ଜାଣନ୍ତି, ମୁଁ ମୁଖ୍ୟମନ୍ତ୍ରୀ ହେବା ପରେ ପୃଥିବୀର ବିଭିନ୍ନ ଦେଶ ଗସ୍ତ କରିଛି । ବିଭିନ୍ନ ଦେଶର ନେତା ଓ ଶିଳ୍ପପତିମାନଙ୍କ ସଂଗେ ଓଡ଼ିଶାର ଉନ୍ନତି ବିଷୟରେ ଆଲୋଚନା କରିଛି । ସେମାନେ ସମସ୍ତେ ମୋତେ କ'ଣ କହନ୍ତି, ହୁଏତ ଆପଣମାନେ ଯେତେବେଳେ ମୋ ଉପରେ ଏତେ ସ୍ନେହ ଢାଳି ଦେଉଛନ୍ତି, ସତ କଥାଟା ଆପଣମାନଙ୍କ ଆଗରେ ଖୋଲି ନ କହିଲେ ମନଟା ଛଟପଟ ହେବ । ଭାଇ ଭାଇ ହୃଦୟ ଖୋଲି କଥା ନ କହିବ ତ କହିବ କାହା ଆଗରେ ? (କରତାଳି) -ସେମାନେ ସମସ୍ତେ କହନ୍ତି; ଓଡିଶା ଦିନେ ନା ଦିନେ ଅଲବତ୍ ପୃଥିବୀର ସବୁଠାରୁ ଧନୀ ରାଜ୍ୟ ହେବ । ଗୋଟାଏ ନୁହେଁ, ପନ୍ଦରଟା ବମ୍ବେ କଲିକତା ଏଇ ଓଡ଼ିଶାରେ ମୁଣ୍ଡ ଟେକିବ । ଗୋଟିଏ ବି ଚାଳଘର କେଉଁଠି ରହିବ ନାହିଁ, ସବୁ ଘର ହେବ କୋଠାଘର । ଘରେ ଘରେ ଇଲେକ୍‌ଟ୍ରିକ୍ ଆଲୁଅ, ରେଫ୍ରିଜରେଟର, ଇଲେକ୍ଟ୍ରିକ୍ ଓଭେନ୍ । ରାସ୍ତାସବୁ ହେବ ଲଣ୍ଡନ୍ ବା ପ୍ୟାରିସ୍‌ର ରାସ୍ତା ପରି ସୁନ୍ଦର । ପ୍ରତି ପରିବାରରେ ଅନ୍ତତଃ ଗୋଟିଏ ଲେଖାଏଁ କାର୍ ରହିବ । ସମସ୍ତଙ୍କ ହାତରେ ବ୍ୟାଙ୍କ୍ ବାଲାନ୍‌ସ୍ । ଆଉ ଏ ସବୁ ହେବ କେବଳ ମୋରି ନେତୃତ୍ୱରେ । ଏ କଥା ମୁଁ କହୁନାହିଁ । ପୃଥିବୀର ସବୁ ବଡ଼ ବଡ଼ ଦେଶର ନେତା ଓ ଶିଳ୍ପପତିମାନଙ୍କର ଏଇ ମତ । ଆପଣମାନେ ଖବରକାଗଜରେ ପଢ଼ିଥିବେ, ଅତୀତରେ ମୁଁ କେତେ ବଡ଼ ବଡ଼ କାମ

କରିଛି, କେତେ ବଡ଼ ବଡ଼ ଲୋକଙ୍କ ଜୀବନ ବଂଚାଇଛି । ଯେତେବେଳେ ଇଂରେଜ ସରକାର ବିରୁଦ୍ଧରେ ଭାରତବାସୀ ସ୍ୱାଧୀନତା ପାଇଁ ସଂଗ୍ରାମ କରୁଥିଲେ, ସେତେବେଳେ ମୁଁ ବିଦେଶରେ ରହି ସ୍ୱାଧୀନତା ପରେ ଦେଶର କିପରି ଉନ୍ନତି ହେବ, କିପରି ନୂଆ ନୂଆ କଳକାରଖାନାମାନ ସ୍ଥାପିତ ହେବ, ସେଇ ବିଷୟ ଚିନ୍ତା କରୁଥିଲି । ବର୍ତ୍ତମାନ ଆଉ ଚିନ୍ତା କରିବାର ସମୟ ନାହିଁ; କାମର ସମୟ ଆସିଚି-କାମ ଦରକାର, ଆକ୍ସନ୍-ଆକ୍ସନ୍- । (ଗୋବର୍ଦ୍ଧନ ମୁଷ୍ଟିବଦ୍ଧ ହାତ ଉପରକୁ ଟେକିଲେ ଓ ଜନତା ମଧ୍ୟରୁ କରତାଳି ହେଲା ।)

କରତାଳି ବନ୍ଦ ହେବାପରେ ଗୋବର୍ଦ୍ଧନ ଆହୁରି ଉତ୍ସାହିତ ହେଲା ଭଳି ସାମାନ୍ୟ ହସି ଆରମ୍ଭ କଲେ, 'ଆପଣମାନେ ଜାଣନ୍ତି, ଆଜି ଆଉ ପୁରୁଣାଯୁଗ ନାହିଁ, ଜମାନା ବଦଳି ଯାଇଛି । ଦେଶକୁ ଆଜି ରୁଷ୍ ଆମେରିକା ଭଳି ଧନୀ କରିବାକୁ ପଡ଼ିବ । ଖଟିଖିଆ ପାର୍ଟି ଦେଶକୁ ପଛକୁ ଟାଣୁଛି । ସେମାନେ ଜନତାର ଦୁଷ୍ମନ୍ । ଆପଣମାନଙ୍କର ଦୁଷ୍ମନ୍ । ସେଇମାନେ ଆପଣଙ୍କର ନେତା ଦୀନ ଦରିଦ୍ରର ସାଥୀ ଭଗୀରଥ ମହାପାତ୍ରଙ୍କ ବିରୁଦ୍ଧରେ ପ୍ରଚାର କରୁଛନ୍ତି, ସେ କୁଆଡ଼େ ଦୁର୍ନୀତି କରି କୋଠାଘର ତୋଳାଇଛନ୍ତି । ଏ ମିଥ୍ୟା ପ୍ରଚାରରେ ଭୁଲନ୍ତୁ ନାହିଁ । ଏ ଦେଶ ସବୁଦିନେ ଦରିଦ୍ର ରହୁ, ଏହା କ'ଣ ଆପଣମାନେ ଚାହାନ୍ତି ? ଦେଶ ଧନୀ ହେବା ଅର୍ଥ, ଦେଶର ପ୍ରତି ଲୋକ ଧନୀ ହେବା । ମୁଁ ଚାହେଁ, ଆପଣମାନେ ସମସ୍ତେ କୋଠାଘର ତୋଳନ୍ତୁ । ଭଗୀରଥ ବି ଆପଣମାନଙ୍କ ଭିତରୁ ଜଣେ । ସେ ଘରଟିଏ ତୋଳିଲେ, ଭୁଲ୍ କ'ଣ ହେଲା ? ଭଗୀରଥ ଏଇ ତ ମୋତେ କହୁଥିଲେ, ସେ ତାଙ୍କ ନିଜ ରହିବା ପାଇଁ ଏତେବଡ଼ କୋଠା ତୋଳାଇଛନ୍ତି ବୋଲି କହିବା ଭୁଲ-ପୂରାପୂରି ମିଛ । ତାଙ୍କ ପରିବାରରେ ତ ସେମାନେ ମାତ୍ର ଦୁଇଜଣ ସ୍ୱାମୀ ଆଉ ସ୍ତ୍ରୀ । ଭଗୀରଥଙ୍କ ଉଦ୍ଦେଶ୍ୟ – ଯେଉଁମାନଙ୍କର ଘରଦ୍ୱାର ନାହିଁ, ଶୀତ କାକରରେ ରାସ୍ତାଘାଟରେ ପଡୁଛନ୍ତି, ସେଇମାନେ ସେଠି ଆଶ୍ରୟ ନେଇ ପାରିବେ । ସେ କୋଠା ଆପଣମାନଙ୍କର – ପୁରୀ ସହରର ଦୀନ ଦଳିତ ମଣିଷର । ସେ କୋଠା ଘରେ ରହିବାକୁ ଚାହେଁ ନାହିଁ । ସେ ଧନସଂପତ୍ତି କ୍ଷମତା ଚାହେଁ ନାହିଁ, ସେ ଚାହେଁ, ଆପଣମାନଙ୍କର ଖଣ୍ଡିଏ ଭୋଟ୍-' (କରତାଳି)

ମୁଖ୍ୟମନ୍ତ୍ରୀ ଗୋବର୍ଦ୍ଧନ ଉତ୍ତେଜିତ ହୋଇ ପାଣି ଗିଲାସେ ପାଇଁ ନିର୍ଦ୍ଦେଶ ଦେଲେ । ଜଣେ ସ୍ୱେଚ୍ଛାସେବକ ପାଣି ଗିଲାସେ ବଢ଼ାଇ ଦେଲେ । ଗୋବର୍ଦ୍ଧନ ପାଣି ଗିଲାସଟି ପାଖକୁ ନେଉଛନ୍ତି, ଏହି ସମୟରେ ସଭାରେ ପୁଣି ଗଣ୍ଡଗୋଳ ଆରମ୍ଭ ହେଲା । ସଭାର ଦକ୍ଷିଣ ଦିଗରେ ବସିଥିବା ଲୋକେ 'ଟେକା' 'ଟେକା' ବୋଲି ଚିତ୍କାର ଆରମ୍ଭ କଲେ । ଆଉ ଦୁଇଟି ହାବେଲୀ ବାଣ ମଧ୍ୟ ସୁ ସୁ ହୋଇ ଆକାଶ ମାର୍ଗରେ ଉଠିଲା । ଗୋବର୍ଦ୍ଧନ ହାତ ଘଡ଼ିକୁ ଅନାଇ ଦେଖିଲେ, ଆଉ ଅଳ୍ପ ସମୟ ଭିତରେ କଟକରେ ପହଂଚିବାକୁ ହେବ । ସଭାରେ ବିଶୃଙ୍ଖଳା ସତ୍ତ୍ୱେ ଚଢ଼ା ଗଳାରେ ପୁଣି କହିବା ଆରମ୍ଭ କରିଦେଲେ, 'ଦେଖନ୍ତୁ ଭାଇମାନେ, ଖଟିଖିଆ ପାର୍ଟି ସଭା ଭଣ୍ଡୁର କରିବାକୁ ବସିଚି, ମାତ୍ର ସେଥିପାଇଁ ମୁଁ ବ୍ୟସ୍ତ

ନୁହେଁ । ମୁଁ ଜାଣେ, ଆପଣମାନେ ଆମର ହାତଟଣା ରିକ୍ସା ଚିହ୍ନରେ ହିଁ ମୋହର ଦେବେ । ଓଡ଼ିଶାର ସବୁଠାରେ ଆମରି ପ୍ରତିନିଧିମାନେ ହିଁ ଜିଣିବେ । ଆମରି ଦଳ ହିଁ ସରକାର ଗଢ଼ିବେ । ଖଟିଖିଆ ଦଳକୁ ଭୋଟ୍ ଦେବା ଯାହା, ଭୋଟ୍ କାଗଜ ଖଣ୍ଡିକ ପାଣିରେ ପକାଇଦେବା ସେଇଆ । ଆପଣମାନେ ଜାଣନ୍ତି, ଆପଣମାନଙ୍କର ଏଇ ସହରକୁ ଲଣ୍ଡନ୍ ବା ପ୍ୟାରିସ୍ ସହର ଭଳି ସୁନ୍ଦର କରିବାକୁ ଆମେ ଏକ ଯୋଜନା ପ୍ରସ୍ତୁତ କରି ସାରିଛୁ । ଏଇ ଥର ଆମେ ସରକାର ଗଢ଼ିସାରିଲା ପରେ ସେ ଯୋଜନା ହାତକୁ ନେବୁ । ସମୁଦ୍ର କୂଳେ ମ୍ୟାରିନ୍ ଡ୍ରାଇଭ୍ ନିର୍ମାଣ ହେବ । ସହରର ସବୁ ରାସ୍ତା ଚଉଡ଼ା ହେବ । ରାସ୍ତାରେ କେଉଁଠି ଟିକିଏ ବି ମଇଳା ରହିବ ନାହିଁ । ରାସ୍ତା କଡ଼େ କଡ଼େ ଫୁଲଗଛ ଲଗା ହେବ । ଚାଳଘର ସବୁ କୋଠା ହେବ । ସେଥିପାଇଁ ସରକାରୀ ସାହାଯ୍ୟ ମିଳିବ । ଖଟିଖିଆ ପାର୍ଟିକୁ ଭୋଟ୍ ଦେଲେ ସହରର ଅବସ୍ଥା କେବେ ବଦଳିବ ନାହିଁ । ଖଟିଖିଆ ପାର୍ଟିକୁ ଭୋଟ୍ ଦେଲେ ଆପଣମାନେ ଅନୁତାପ କରିବେ ।'

ଏହା ପରେ ଜନତାର କୋଳାହଳ ଓ କରତାଳି ମଧ୍ୟରେ ମୁଖ୍ୟମନ୍ତ୍ରୀ ବକ୍ତୃତା ଶେଷ କଲେ । ଭଗୀରଥ ମହାପାତ୍ର ଓ କୋଇଲି ଭଗତ ଅଳ୍ପ କିଛି କହିବା ପରେ ସଭା ସାଙ୍ଗ ହେଲା । ମୁଖ୍ୟମନ୍ତ୍ରୀ ଯଥାଶୀଘ୍ର କାର୍‌ରେ ସଭାସ୍ଥଳରୁ ପଳାଇଲେ । ନବଘନ ଓ ମାଧବଙ୍କ ନେତୃତ୍ୱରେ ଦଳେ ଲୋକ ବହୁ ସମୟ ଯାଏଁ 'ଭୋଟ୍ ଦେବ କେଉଁଠି,' 'ରିକ୍ସା ଚିହ୍ନ ଯେଉଁଠି', 'ଆମର ନେତା, ଭଗୀରଥ ମହାପାତ୍ର', ପ୍ରଭୃତି ସ୍ଲୋଗାନ୍‌ରେ ସିଂହଦ୍ୱାର କମ୍ପାଇବାରେ ଲାଗିଥାନ୍ତି ।

ଅବଶେଷରେ ସେଇ ଦିନଟି ଆସିଗଲା ।

ଭଗୀରଥ ଖୁବ୍ ସକାଳୁ ଉଠି ତାଙ୍କ କୋଠାଘର ବାଲ୍‌କୋନି ଉପରେ ଠିଆ ହୋଇ ଜଗନ୍ନାଥଙ୍କ ଦେଉଳଆଡ଼େ ଅନାଇ ବହୁ ସମୟ ଯାଏ କ'ଣ କହିଲେ ଓ ବାରମ୍ବାର ନମସ୍କାର କଲେ । ଆଜିର ସକାଳଟି ଅନ୍ୟ ଯେ କୌଣସି ଦିନର ସକାଳ ପରି ଥିଲା ଶାନ୍ତ ଓ ଶୀତଳ । ଅଳ୍ପ ଦୂରରେ ସମୁଦ୍ରଟା ଚିରାଚରିତ ରୀତିରେ ଗର୍ଜନ କରି ଚାଲିଥିଲା ଓ କେବେ କେବେ କେହି ଜଣେ ଦି'ଜଣ ନୀରବରେ ସମୁଦ୍ରକୂଳ ଅଭିମୁଖେ ଚାଲିଥିଲେ । ଭଗୀରଥଙ୍କୁ କିନ୍ତୁ ଆଜିର ଦିନଟି ଅନ୍ୟ ଦିନଗୁଡ଼ିକଠାରୁ ଭିନ୍ନ ଜଣାଗଲା । ତାଙ୍କର ମନେ ହେଲା, ସମସ୍ତେ - ରାସ୍ତାରେ ଚାଲିଥିବା ଲୋକମାନେ, ପ୍ରତି ଘରେ ପୁରୁଷ ଓ ସ୍ତ୍ରୀ, ସମ୍ବାଦପତ୍ର ଓ ରେଡ଼ିଓ- ଯେମିତି ଉଦ୍‌ଗ୍ରୀବ ହୋଇ ଅପେକ୍ଷା କରିଛନ୍ତି ଆଜିର ଦିନଟି ପାଇଁ । ପୁଣି ଥରେ ନିର୍ବାଚନରେ ଜିଣିଲେ ସେ ହିଁ ହେବେ ଅପ୍ରତିଦ୍ୱନ୍ଦୀ ଜନନେତା, ମନ୍ତ୍ରୀ ତ ନିଶ୍ଚୟ ଓ ତାପରେ ପ୍ରଶଂସା-ସମ୍ବାଦପତ୍ରରେ ଫଟୋ-ସେ ହସୁଛନ୍ତି, ବେକରେ ବୋଝେ ଫୁଲମାଳ- କିମ୍ବା ସେ ବକ୍ତୃତା ଦେଉଛନ୍ତି ମାଇକ୍ ସାମ୍ନାରେ, ବାଁ ପାଖରେ ଚୌକିରେ ତାଙ୍କ ସ୍ତ୍ରୀ କାଂଚନଦେବୀ । ସଭା ସମିତିରେ ତାଙ୍କର ପରିଚୟ ଦିଆ ଯାଉଛି-ଛାତ୍ର ଜୀବନରୁ ସେ ଦେଶସେବାକୁ ହିଁ ବ୍ରତ କରି ନେଇଥିଲେ; ଇଚ୍ଛା କରିଥିଲେ ବଡ ଚାକିରୀ କରି ପାରିଥାନ୍ତେ, କଲେ ନାହିଁ; ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳ ଓଡ଼ିଶାରେ ମିଶାଇବା ପାଇଁ ଜେଲ୍ ଯାଇଥିଲେ, ଦୁଃଖ ଦାରିଦ୍ର୍ୟ ବିରୁଦ୍ଧରେ ସଂଗ୍ରାମ କରି ଆଜି ଦେଶବାସୀଙ୍କର ଆଦର୍ଶ ହୋଇଛନ୍ତି । କିନ୍ତୁ ହାରିଗଲେ ? ସବୁ ନୀରବ । କେବେ କେବେ ପାର୍ଟିର ଜିଲ୍ଲା ଶାଖାର ମିଟିଂରେ ବକ୍ତୃତା ଦେବାରେ ସମସ୍ତ ରାଜନୀତିକ କାର୍ଯ୍ୟକଳାପର ସମାପ୍ତି । କଳା ମଳିନ କୋଟ୍ ପିନ୍ଧି ପୁଣି ଓକିଲାତି, ପେଟି ଅଫିସରଙ୍କୁ ଖୋସାମତି । କେବେ କେବେ ସନ୍ଧ୍ୟାରେ ନୂତନ ମିଷ୍ଟାନ୍ନ ଭଣ୍ଡାର ଆଡ଼େ ଗଲେ କେତେଜଣ ପରିଚିତ ଲୋକଙ୍କ ନମସ୍କାର ଓ ଅଶ୍ୱାସନା ଯେ ଆସନ୍ତା

ନିର୍ବାଚନରେ ପୁଣି ସେ ହିଁ ଜିତିବେ; - ନୂଆ ଏମ୍.ଏଲ୍.ଏ. ସବୁବେଳେ ଭୁବନେଶ୍ୱରରେ ମଉଜ ମଜ୍ଲିସ୍‌ରେ ବ୍ୟସ୍ତ, ଭୟରେ ଆଉ ନିଜ ସାହୀ ମାଡୁନାହାନ୍ତି ।

ପଛରୁ କାଂଚନ ଦେବୀ ପାଟି କଲେ- 'କ'ଣ ଭାବୁଚ ମ ? ପୂଜାରୀ ଚା' କରି ସାରିଲାଣି ।'

ଭଗୀରଥ ପଛକୁ ଅନାଇଲେ । କାଂଚନଦେବୀ କେତେବେଳେ ସ୍ନାନାଦି ଶେଷ କରି ବହୁଦିନୁ ଅବ୍ୟବହୃତ ମଠାଲୁଗାଟି ପିନ୍ଧି ହାତରେ ପ୍ଲାଷ୍ଟିକ୍ ବାସ୍କେଟ୍‌ଟିଏ ଓହଳାଇ ଠିଆ ହୋଇଥିଲେ । ଭଗୀରଥ ଆଜି ପରି ସିରିୟସ୍ ଦିନରେ ବି ରହସ୍ୟ କରି କହିଲେ, 'ଏ କେଉଁ ଗୋସାଣୀ ବାହାରିଲେ ?'

କାଂଚନଦେବୀ ପାହାନ୍ତାରୁ ଉଠି ନିତ୍ୟକର୍ମ ସାରି ଶ୍ୟାମାକାଳୀ ଦେଉଳକୁ ବାହାରିଥିଲେ । ସ୍ୱାମୀ ତାଙ୍କୁ କୌଣସି ଗୋସାଣୀ ସହିତ ତୁଳନା କରିବାଟା ତାଙ୍କୁ ଭଲ ଲାଗିଲା ନାହିଁ । ସେ ନିଜ ଶରୀରର ପୃଥୁଳତା ସଂପର୍କରେ ହଠାତ୍ ସଚେତନ ହୋଇ ପଡ଼ିଲେ । ଆଃ-ଏଇଥର ଜିତିଯାନ୍ତେ ହେଲେ, ଆଉ ପଛେ ନିର୍ବାଚନରେ ଠିଆ ନ ହୁଅନ୍ତେ ! କହିଲେ, 'ମୁଁ ଟିକିଏ ଶ୍ୟାମାକାଳୀ ଯାଉଚି । ଶୀଘ୍ର ଫେରିବି । ତମେ ଜଳଖିଆ ନଖାଇ କୁଆଡ଼େ ଯିବ ନାହିଁ ।'

କାଂଚନଦେବୀ ଧୀରେ ଧୀରେ କୋଠା ଉପରୁ ଓହ୍ଲାଇଗଲେ । ଭଗୀରଥ ସୋଫା ଉପରେ ବସି ପଡ଼ି ଟି ପୟରୁ କପ୍‌ରେ ଚା ଢ଼ାଳିଲେ । ଚା କପ୍‌ରେ ମୁହଁ ଲଗାଇଛନ୍ତି, କଲିଂବେଲ୍ ବାଜିଲା । ଭଗୀରଥ ବୁଝିଲେ, ସେମାନେ ଆସିଗଲେ । ପୂଜାରୀ ଉଦ୍ଦେଶ୍ୟରେ ପାଟି କଲେ, 'ଉପରକୁ ଡାକିଦିଅ ।'

ସେମାନେ ଧୀରେ ଧୀରେ ଉପରକୁ ଆସିଲେ । ଗିରିଧାରୀ, ଜୟ ହନୁମାନ, ମାଧବ, ରାବଣା ଦୋରା, ଘନ ନାୟକ । ପୂଜାରୀ ସଂକୁଚିତ ହୋଇ ଉପରକୁ ଆସି ସମସ୍ତଙ୍କୁ ଚା' ଦେଲା । ଗିରିଧାରୀ ସୁ କରି ଚା' ଢୋକି କହିଲେ, 'ଗୋବର୍ଦ୍ଧନଙ୍କ ଭାଷଣଟା ବଢ଼ିଆ କାମ ଦେଇଚି । ସବୁଠି ସେଇ ଗୋଟିଏ କଥା । ମହା ଜନତା ପାର୍ଟି ତ ସରକାର ଗଢ଼ିବ । ଖଟିଖିଆ ପାର୍ଟିକି ଭୋଟ ଦେଇ ଲାଭ କ'ଣ ?'

ଜୟ ହନୁମାନ କହିଲେ, 'ଓଃ-ଜିତାପଟ ତ ଆମର ହେବ ଇ ହେବ । ନବଘନ କାଲି ରାତିସାରା ଶୋଇନାହିଁ । ନବଘନଟାର କାଇଁ ସକାଳୁ ଦର୍ଶନ ନାଇଁ ?'

'ମୁଁ ବି ରାତିସାରା ଶୋଇନି ।' ରାବଣା କହିଲା, 'ଶଳା ହାଡ଼ିସାଇରେ ଛ'ଟିଣ ହାଣ୍ଡିଆ ଖତମ୍ ହୋଇଗଲା । ହେଇ ଘନ ତ ଅଛି । ପଚାରୁନ ହାଡ଼ିସାଇର ସବୁ ଭୋଟ୍ ଆମର । ଶଳା ନରସିଂଗା କାଲି ମୋ ସାଂଗେ ବାଜି ପକେଇଚି । ଖଟିଖିଆ ପାର୍ଟି ହାରିଗଲେ ମୋତେ ଶହେ ଟଙ୍କା ଦେବ ।'ମାଧବ କହିଲା, 'କାଲି ବିଶୁନି ପୁଣି ପାମ୍ଫଲେଟ୍ ବାଣ୍ଟିଚି । ସେଇ କଥା - ଭଗୀରଥ ମହାପାତ୍ରଙ୍କ କୋଠାଘର ଗରିବ- ଗୁରୁବାଙ୍କ ଟଙ୍କାରେ ତିଆରି ।

ଆମେ ସାଇ ସାଇ ବୁଲି ବୁଝେଇଚୁ- ଆରେ, ଏ କୋଠା ଗରିବ ଜନତାର । ଭୋଟ୍ ପଇଲେ ଭଗୀରଥ ତାଙ୍କର ଯୋଡ଼ିଏ ବଖରା ରଖି ସବୁ ଛାଡ଼ିଦେବେ ଜନତା ପାଇଁ । ଯାହା କହ, ଅଧର ଦୟିତାପତି, ନୋକନି, କୁସୁନ ମୋ ସାଂଗେ ସାରା ରାତି ଡକଲିପି ହେଇ ବୁଲିଚନ୍ତି । ପାଞ୍ଚଟି ଟଙ୍କାକୁ ଚାହିଁ ଖାସା ମେହନତ କରିଚନ୍ତି । ଖାଲି ଆମେ ଭୋଟ ପାଇଗଲେ ରଘୁନି ବିଶୁନି ଦି'ଭାଇଙ୍କୁ ଘଣା ପେଲେଇବା କଥା ।'

ରାବଣା ଉତ୍ତେଜିତ ହୋଇ କହିଲା, 'ସେ ନରସିଂଗାଟା ବି ହାରାମୀ ଅଛି । ତାକୁ ଜେଲରେ ଠୁଙ୍କିବା ନା ? !'

ଭଗୀରଥ ଗମ୍ଭୀର ହୋଇ ବସିଥିଲେ । ଗିରିଧାରୀ ଚିନ୍ତିତ ହୋଇ କହିଲେ, 'ଆମର ବି ପ୍ରଚାର ପତ୍ର କାଲି ବଣ୍ଟା ଯାଇଚି । ଆଠବର୍ଷ ତଳେ ଅର୍ଜୁନ ଗୋଛିକାରର ଭାଉଜ ନେତ୍ରମଣି ଦେବୀଙ୍କର ଯେଉଁ ଅକାଳ ମୃତ୍ୟୁ ହୋଇଥିଲା, ସେଥିରେ ଅର୍ଜୁନ ଜଡ଼ିତ ଥିଲା । ସେ ବିଷୟ ତଦନ୍ତ କରିବା ପାଇଁ ପୁରୀର ଜନସାଧାରଣ ଦାବୀ କରନ୍ତି ।'

ଭଗୀରଥ ହସିଲେ । ଗିରିଧାରୀ ବି । ଆତ୍ମହତ୍ୟା ପରେ ନେତ୍ରମଣିଙ୍କ ଭାଇ ଅର୍ଜୁନ ବଡ଼ ଭାଇଙ୍କ ନାମରେ ଯେଉଁ କେଶ୍ କରିଥିଲେ, ସେଥିରେ ଭଗୀରଥ ଅର୍ଜୁନ ବଡ଼ ଭାଇଙ୍କ ସପକ୍ଷରେ ଲଢ଼ି ତାଙ୍କୁ ନିର୍ଦ୍ଦୋଷରେ ମୁକୁଳାଇ ଦେଇଥିଲେ ଓ ମୋଟା ଫି ଆଦାୟ କରିଥିଲେ । ଆଜି କିନ୍ତୁ ରାଜନୈତିକ ଶତ୍ରୁତା ଯୋଗୁଁ ସେ ପୁଣି ଥରେ ସେଇ ପୁରୁଣା ଗୁଜବଟା ପ୍ରଚାର କରିଛନ୍ତି । ନିର୍ବାଚନର ଠିକ୍ ସକାଳେ ଶହ ଶହ ପ୍ରଚାରପତ୍ର ସହର ସାରା ବିଛାଇ ଦିଆ ଯାଇଛି । ଅର୍ଜୁନର ଉତ୍ତର ଦେବାକୁ ସମୟ ନାହିଁ । ଗଦାଧରଙ୍କ ଭଳି ବିଚକ୍ଷଣ ରାଜନୀତିଜ୍ଞ ବି ଏଥିରେ ବୋକା ପାଲଟି ଯାଇଥିବେ ।

ମାଧବ କହିଲା, 'ହେଇ ପରା ଶୁଣି ଆଇଲି-ଅର୍ଜୁନଟା ଆମ ପାମ୍ପଲେଟ୍ ଦେଖି କୁଆଡ଼େ କଦଳୀ ଗଛ କାଟିଲା ପରି ଭୁଷ୍ କିନା ତଳେ ପଡ଼ିଗଲା । ଖଟିଖିଆ ଦଳର କର୍ମୀମାନଙ୍କ ମୁହଁ କଳା ପଡ଼ି ଯାଇଚି । ଖାଲି ଅର୍ଜୁନର ଅମାନତଟା ଉଡ଼ି ନ ଯାଉ ଯା ଛଡ଼ା ତାଙ୍କର ଆଉ କିଛି ଚିନ୍ତା ନାଇଁ ।'

ଗିରିଧାରୀ କହିଲେ, 'ଆରେ ସାତଟା ବାଜିବ, ଆଉ ବସି ରହିବା କାହିଁକି ? ସବୁ ବୁଥ୍‌ରେ ଏଜେଣ୍ଟ୍ ପହଂଚିଲେ କି ନାହିଁ, ଦେଖିବାକୁ ହେବ । ଆପଣ ବାହାରନ୍ତୁ, ଭଗୀରଥ ବାବୁ ।'

ଭଗୀରଥ ବାବୁ ତରତର ହୋଇ ଅନ୍ୟ ରୁମ୍‌କୁ ଗଲେ ଓ ପ୍ରାୟ କୋଡିଏ ମିନିଟ୍ ପରେ ତାଙ୍କର ଖଦଡ଼ ପଂଜାବି ପିନ୍ଧି ବାହାରି ଆସିଲେ ।

ତା'ପରେ ସେମାନେ ସମସ୍ତେ ତଳକୁ ଓହ୍ଲାଇଲେ । କର୍ମୀମାନେ ଆଗେ ଆଗେ ଭଗୀରଥ ପଛେ ପଛେ । ସେତେବେଳ ଯାଏ ରାସ୍ତାରେ ଲୋକଗହଳି ହୋଇ ନଥାଏ । ଉଜ୍ଜ୍ୱଳ ସୂର୍ଯ୍ୟାଲୋକରେ ରାସ୍ତାଟା ଦିଶୁଥାଏ ଅଧିକ ନିର୍ଜନ । ଭଗୀରଥଙ୍କୁ ବି କେଜାଣି

କାହିଁକି ବଡ଼ ଏକୁଟିଆ, ବଡ଼ ନିଃସହାୟ ଲାଗିଲା । କିପରି ଗୋଟାଏ ଅବସନ୍ନ ଭାବ ସମଗ୍ର ଶରୀରକୁ ଆକ୍ରାନ୍ତ କରିଦେଲା । କେଉଁଆଡ଼େ ଚାଲିଛନ୍ତି ସେ - କେଉଁ ଉଦ୍ଦେଶ୍ୟରେ ? ଏତେ ନିନ୍ଦା, ଅପମାନ, ଏତେ ମାନସିକ ଯନ୍ତ୍ରଣାର ପରିଣତି କ'ଣ ? ଭୂତକୋଠି ପରି ପ୍ରକାଣ୍ଡ ଖାଁ ଖାଁ କୋଠାଘର, ଛୋଟ ନେଳିଆ ଖାତାଟିରେ ଲେଖା କେତୋଟି ସଂଖ୍ୟା- ଯାହାର ନାମ ବ୍ୟାଙ୍କ୍ ବାଲାନ୍ସ-ଟାଉଟର୍ କଳା ବ୍ୟବସାୟୀଙ୍କ ଗହଣରେ ଦିନ ପରେ ଦିନ ଅପବ୍ୟୟ-ଏସବୁରୁ ସେ ପାଇଛନ୍ତି କ'ଣ ? କାଂଚନଦେବୀ ହୁଏତ ସ୍ୱାମୀଙ୍କ ବିଜୟ ମନାସି ଶ୍ୟାମାକାଳୀଙ୍କ ଏରୁଣ୍ଡିରେ ମଥା କୋଡ଼ି ଚାଲିଥିବେ । ପୃଥୁଳଶରୀରା ନିଃସନ୍ତାନା କାଂଚନ ଦେବୀ । ସ୍ୱାମୀଙ୍କ ବିଜୟରୁ ସେ କ'ଣ ପାଇବେ ହୁଏତ ଜାଣନ୍ତି ନାହିଁ । ରାଜନୀତିଜ୍ଞ ସ୍ୱାମୀ ଦିନ ରାତି ଅର୍ଥହୀନ-ଜଂଜାଳ ଭିତରେ ବୁଡ଼ି ରହିଥିଲା ବେଳେ ଲୋଭ କାରୁଣ୍ୟର ପ୍ରତୀକ ଏଇ ନାରୀ, ପ୍ରକାଣ୍ଡ କୋଠାଘର ଓ କେତୋଟି ଷ୍ଟିଲ୍ ଆଲମିରାକୁ ଜଗି ରହିଥିବେ ଓ ଅପେକ୍ଷା କରିଥିବେ, କେବେ ସ୍ୱାମୀ ରାଜନୀତିକ କାର୍ଯ୍ୟବ୍ୟସ୍ତତାରୁ ମୁକ୍ତ ହେବେ... !

ବାପାଙ୍କ ଛବି ଭଗୀରଥଙ୍କ ଆଖି ସାମ୍ନାରେ ଉଇଁ ଉଠିଲା । ତମ୍ବା ରଙ୍ଗର ଚେହେରା, ଚନ୍ଦା ମୁଣ୍ଡ, ଉଜ୍ଜ୍ୱଳ ଚକ୍ଷୁ । ନଅର ଗଳିର ଦରିଦ୍ର ମୋହରିର ଚକ୍ରପାଣି ମହାପାତ୍ର । ନଅର ଗଳିରୁ କଚେରୀ, କଚେରୀରୁ ନଅର ଗଳି, ଘରୁ ଜଗନ୍ନାଥ ମନ୍ଦିର, ଜଗନ୍ନାଥ ମନ୍ଦିରରୁ ଘର । ଜୀବନର ଲକ୍ଷ୍ୟ କେଡ଼େ ସରଳ ହୋଇପାରେ ! ଆଜି ସେ ବଂଚିଥିଲେ ପୁଅର କାର୍ଯ୍ୟକଳାପରେ ଅଣନିଶ୍ୱାସୀ ହୋଇ ପଡ଼ିଥାନ୍ତେ !

ନୂତନ ମିଷ୍ଟାନ୍ନ ଭଣ୍ଡାରରେ ଦଳେ ଲୋକ ସବୁଦିନ ପରି ବସି ଚା' ପାନ ଓ ଆଲୋଚନାରେ ବ୍ୟସ୍ତ ଥିଲେ । ଗିରିଧାରୀ, ଜୟ ହନୁମାନ ଓ ମାଧବ ସେ ବାଟେ ଯିବାର ଦେଖି ହୋଟେଲ୍ ଭିତରୁ ବିଶୁନି ପଶୁପାଳକ ପାଟି କରି ଉଠିଲେ- 'ଆରେ, କିଳାପୋତା ଟଙ୍କାରେ ତିଆରି କୋଠା ଭୁଷୁଡ଼ି ପଡ଼ିବ ମ !'

ମାଧବ ଏଥିରେ ଉତ୍କ୍ଷିପ୍ତ ହୋଇ ପାଗଳ ପରି ଡାହାଣ ହାତ ଉପରକୁ ଛାଟି ଚିତ୍କାର କଲା- 'ଭଗୀରଥ ବାବୁଙ୍କ କୋଠା କାହାର ?' ପୂର୍ବରୁ ପ୍ରସ୍ତୁତ ଥିଲା ଭଳି ରାବଣା ଓ ଘନ ନାୟକ ତତ୍କ୍ଷଣାତ୍ ମିଳିତ ସ୍ୱରରେ ଗର୍ଜନ କରି ଉଠିଲେ - 'ଚାଷୀ ମୂଲିଆର- ଆମ ସମସ୍ତଙ୍କର !'

ଭଗୀରଥ ନିକଟତମ ପୁଲିଂ ବୁଥ୍ ଆଡ଼େ ଆଗେଇ ଯାଉଥିବାବେଳେ ତାଙ୍କ କର୍ମୀମାନଙ୍କ ବୁଦ୍ଧିକୁ ମନେ ମନେ ପ୍ରଶଂସା କରୁଥିଲେ ।

(ରଚନା କାଳ: ୧୯୭୩-୭୪)



ଗଣେଶ୍ୱର ମିଶ୍ର ସମକାଳର ଜଣେ ଦକ୍ଷ କଥାକାର । ବିଭିନ୍ନ ସମୟରେ ପ୍ରକାଶ ପାଇ ପାଠକୀୟ ଆଦର ଲାଭ କରିଥିବା ତାଙ୍କର ତିନୋଟି ଉପନ୍ୟାସ : 'ସାମୁଦ୍ରିକ', 'ଆରୋହୀ' ଏବଂ 'ନେତା'କୁ ନେଇ 'ତିନୋଟି ଉପନ୍ୟାସ'ର ପରିକଳ୍ପନା । ଉପନ୍ୟାସଭୁକ୍ ପାଠକପାଠିକାଙ୍କୁ ଏହା ବିଶେଷ ଆନନ୍ଦ ଦେବ ବୋଲି ଆଶା କରାଯାଇପାରେ ।




cover design: saroj bal